

# ନେହରୁ ରଚନାବଳୀ

# ବିଶ୍ୱ ଇତିହାସ

ଗ୍ରନ୍ଥମନ୍ଦିର

# ବିଶ୍ୱଇତିହାସ

[ ପ୍ରଥମ ଖଣ୍ଡ ]

ପଣ୍ଡିତ ଜବାହରଲାଲ ନେହରୁ

ଅନୁବାଦକ : ସୁରେନ୍ଦ୍ରନାଥ ଦ୍ୱିବେଦୀ

ଗ୍ରନ୍ଥମନ୍ଦିର

GLIMPSES OF WORLD HISTORY-Vol-I

By Pandit Jawaharlal Nehru

Translated by Surendranath Dwivedy

Published by Grantha Mandir, Cuttack-2, Orissa

Reprinted—January 1989, 1100 copies

Library Edition : Rs. 68/-

Paper-back : Rs. 60/-



ପ୍ରକାଶକ : ଅଭିରାମ ମହାପାତ୍ର

ଗ୍ରନ୍ଥମନ୍ଦିର, ବିନୋଦବିହାରୀ, କଟକ-୨

ମୁଦ୍ରକ : କୃଷ୍ଣଚନ୍ଦ୍ର ନାୟକ

ସତ୍ୟବ୍ରତ ପ୍ରେସ୍, ପିଠାପୁର, କଟକ-୧

ପୁନର୍ମୁଦ୍ରଣ : ଜାନୁଆରୀ, ୧୯୮୯
୧୧୦୦ ବହି

ମୂଲ୍ୟ : ପାଠାଗାର ସଂସ୍କରଣ ଟ ୬୮.୦୦

ପେପରବ୍ୟାକ୍ ଟ ୬୦.୦୦

# ଅନୁବାଦକର କଥା

ଜବାହରଲାଲଙ୍କ 'Glimpses of World History' ପ୍ରଥମେ ୧୯୩୪ ମସିହାରେ ପ୍ରକାଶିତ ହୋଇଥିଲା । ଦୀର୍ଘ ୧୭ ବର୍ଷ ବିତିଗଲାଣି । ଏଥି ଭିତରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଯାଇ ପୁଣି ତୃତୀୟଟି ଆସି ଧକ୍‌କା ମାରିଲାଣି । ସେହି ହିସାବରେ ଦେଖିଲେ ଏଥିରେ ବର୍ଣ୍ଣିତ ଦେଶ ଓ ରାଜ୍ୟର ଅବସ୍ଥା ବହୁତ ବଦଳିଗଲାଣି ଏବଂ ହୁଏତ ଆଉ କେତେ ମାସ ବା ବର୍ଷପରେ ଅଧିକ ପରିବର୍ତ୍ତନ ଘଟିବ । ଜବାହରଲାଲ ଯେଉଁ ଦୃଷ୍ଟି-କୋଣରୁ ଇତିହାସ ଲେଖିଛନ୍ତି ଏବଂ ଇତିହାସର ବିଷୟବସ୍ତୁକୁ ଯେପରି ବାସ୍ତବ ଜୀବନ ସହ ମିଳାଇ ପ୍ରାଣଦାନ କରିଛନ୍ତି, ସେପରି କୌଣସି ବିଶ୍ୱଇତିହାସର ଲେଖକ ଆଜି ସୁଦ୍ଧା କରିଛନ୍ତି କି ନାହିଁ ସନ୍ଦେହ । ପୃଥିବୀରେ ଯେଉଁ ପରିବର୍ତ୍ତନ ଘଟିଯାଇଛି ବା ଘଟିବା ଆସନ୍ନପ୍ରାୟ ମନେକରାଯାଉଛି, ସେ ସମ୍ବନ୍ଧରେ ଭଲକରି ଜାଣିବାକୁ ହେଲେ ଏହି ପୁସ୍ତକ ପାଠକରିବା ଅନିବାର୍ଯ୍ୟ ହୋଇପଡ଼ିବ ।

୧୯୪୪ରେ ଜେଲ ଭିତରେ ମୁଁ ପୁସ୍ତକଟିର ପୂର୍ଣ୍ଣ ଅନୁବାଦ ସମାପ୍ତ କରିଥିଲି । ସେଥିରେ ଦୁଇଟି ଉଦ୍ଦେଶ୍ୟ ପୂରଣ ହୋଇଥିଲା । ପ୍ରଥମରେ ନିଜେ ଜେଲ ଭିତରେ ବହୁଦିନ ନିର୍ଦ୍ଦିଷ୍ଟ କାମରେ ନିଯୁକ୍ତ ରହିପାରିଲି, ଦ୍ୱିତୀୟରେ ଇଂରେଜୀ ଜାଣି ନ ଥିବା କେତେକ ଜେଲସାଥି ଏହା ପଢ଼ି ସାରା ଦୁନିଆ ସମ୍ବନ୍ଧରେ ଗୋଟାଏ ମୋଟାମୋଟି ଧାରଣା କରିପାରିଲେ । ମାତ୍ର ଏହା ଯେ ପ୍ରକାଶିତ ହୋଇପାରିବ, ଏ ଆଶା ମୋର ନ ଥିଲା ଏବଂ ଅନୁବାଦ ଚାଲିବେଳେ କେତେକ ବନ୍ଦୀସାଥି ସେପରି ଆଶଙ୍କା ପ୍ରକାଶ କରି ମତେ ଏଥିରୁ ନିବର୍ତ୍ତାଇଥିଲେ । ମାତ୍ର ମୁଁ ତାହା ନ ମାନି ଧୈର୍ଯ୍ୟ ସହକାରେ ଲାଗିଲି ଏବଂ ଆଜି ଏହାର ପ୍ରଥମ ଖଣ୍ଡ ପ୍ରକାଶିତ ହୋଇଥିବାରୁ ଅତ୍ୟନ୍ତ ଖୁସି । ୧୯୪୬ ମସିହା ଅପ୍ରେଲରୁ ମୁଁ ଜେଲମୁକ୍ତ ହେଲି ପରେ ଏହାକୁ ଶୀଘ୍ର ପ୍ରକାଶ କରିବା ନିମନ୍ତେ ନାନା ଉଦ୍ୟମ କରିଥିଲି; ମାତ୍ର ବହୁ କାରଣରୁ ଆଜି ପର୍ଯ୍ୟନ୍ତ ସମ୍ଭବ ହୋଇପାରି ନ ଥିଲା ।

ପୁସ୍ତକଟି ଚାରିଖଣ୍ଡରେ ବିଭକ୍ତ ହୋଇଛି ଏବଂ ସବୁମୋଟ ଆନୁମାନିକ ୧୬୦୦ ପୃଷ୍ଠା ହେବ । ଏତେବଡ଼ ପୁସ୍ତକ ପ୍ରକାଶରେ ବ୍ୟୟ-ଭାର ବହନ କରିବା କୌଣସି ପ୍ରକାଶକ ପକ୍ଷରେ କିଛି ସହଜ କଥା ନୁହେଁ । ମାତ୍ର ଓଡ଼ିଆ ସାହିତ୍ୟକୁ ଉତ୍ସାହିତ କରିବା ନିମନ୍ତେ ଶିକ୍ଷାବିଭାଗ ହାତରେ ଥିବା ପାଣ୍ଠିରୁ ୪ ହଜାର ଟଙ୍କାର ପୁସ୍ତକ କିଣିନେବା ନିମନ୍ତେ

ଆଗରୁଦ୍ଧ ସ୍ଥିର କରିବାରେ ଉତ୍କଳ ବିଶ୍ୱବିଦ୍ୟାଳୟ ମାରଫତରେ ଟଙ୍କା ମିଳିବାର ପ୍ରତିଶ୍ରୁତି ମିଳିବାରୁ ଏହାର ପ୍ରକାଶ-ଯୋଜନା କରାଗଲା ଏବଂ ବାକୀ ଟଙ୍କା ଭକ "ଗୋପବନ୍ଧୁ ସାହିତ୍ୟ ମନ୍ଦିର" ତରଫରୁ ଶ୍ରୀଯୁକ୍ତ ରାଧାନାଥ ରଥ ବହନ କରିବା ନିମନ୍ତେ ପ୍ରସ୍ତୁତ ହେବାରୁ ଏହା ପ୍ରକାଶ ପାଇବା ସମ୍ଭବ ହେଲା । ପ୍ରଥମ ଖଣ୍ଡଟି ବର୍ତ୍ତମାନ ପ୍ରକାଶ ପାଉଛି ଏବଂ ଦ୍ୱିତୀୟ ଓ ତୃତୀୟ ଖଣ୍ଡର ମୁଦ୍ରଣ ଏକସଙ୍ଗରେ ଚାଲିଛି । ମୋର ବିଶ୍ୱାସ, ଅଳ୍ପ କେତେମାସ ଭିତରେ ସମସ୍ତ ପୁସ୍ତକଟି ପାଠକମାନେ ପାଇପାରିବେ । ପାଠକଙ୍କର ସୁବିଧା ନିମନ୍ତେ ପ୍ରଥମ ଖଣ୍ଡର ସୂଚୀପତ୍ର ସହିତ ଅନ୍ୟ ତିନି ଖଣ୍ଡର ବିଷୟ-ସୂଚୀ ମଧ୍ୟ ଦିଆଯାଇଛି ।

ବାସ୍ତବିକ ପୁସ୍ତକ-ପ୍ରକାଶର ସମସ୍ତ ଆଶା ଏକ ସମୟରେ ମୁଁ ହରାଇ ବସିଥିଲି । କାରଣ ରାଜନୀତିକ ଜୀବନର କାର୍ଯ୍ୟଚାପ ଏତେ ବେଶି ଯେ ଲେଖାଗୁଡ଼ିକ ପୁନର୍ବାର ପଢ଼ିଲି ଭଳି ସମୟ ମୋର ନ ଥିଲା; ପ୍ରୁଫ୍ ଆଦି ଦେଖିବା ତ ଦୂରର କଥା । "କୃଷକ"ର ସମ୍ପାଦକ ଶ୍ରୀ ପ୍ରଦ୍ୟୁମ୍ନ କିଶୋର ଦାସ ପାଣ୍ଡୁଲିପିର ପୁନଃପଠନ ଓ ପ୍ରୁଫ୍ ଆଦି ଦେଖିବାର ସମସ୍ତ ଭାର ବହନ କରିବା ହେତୁ ଆଜି ପୁସ୍ତକାକାରରେ ଏହା ଆତ୍ମପ୍ରକାଶ କରିପାରିଲା । ତାଙ୍କର ଶ୍ରମ ଯୋଗୁଁ ପୁସ୍ତକର ବହୁ ଦୋଷ ଦୂର ହୋଇପାରିଛି । ଇଂରେଜୀରେ ଥିବା କବିତାଗୁଡ଼ିକୁ ଚିତ୍ତରଞ୍ଜନ ଦାସ ପଦ୍ୟ ଆକାରରେ ଓଡ଼ିଆରେ ଅନୁବାଦ କରିଛନ୍ତି ଏବଂ ଫରାସୀ କବିତାର ଅନୁବାଦ ସଂଗ୍ରହ କରାଯାଇଛି । ଶିକ୍ଷାବିଭାଗ କର୍ତ୍ତୃକ ନିଯୁକ୍ତ କମିଟି ତରଫରୁ ଓଡ଼ିଶାର ପ୍ରତିଷ୍ଠିତ ଅଧ୍ୟାପକ ଓ ସାହିତ୍ୟିକ ଶ୍ରୀଯୁକ୍ତ ଆର୍ତ୍ତବଲ୍ଲଭ ମହାନ୍ତି ପାଣ୍ଡୁଲିପିଗୁଡ଼ିକର କେତେକାଂଶ ପଢ଼ି ସଂଶୋଧନ କରିଥିବାରୁ ଏବଂ ଅନୁକୂଳ ମତ ବ୍ୟକ୍ତ କରିଥିବା ହେତୁ ମୁଁ ତାଙ୍କ ନିକଟରେ ଋଣୀ ।

ଜେଲ ଭିତରେ ବହୁଦିନ ଯାବତ୍ ଏହି କାର୍ଯ୍ୟରେ ଲାଗିରହି ଧୈର୍ଯ୍ୟଚ୍ୟୁତି ହେବାବେଳକୁ ସ୍ୱେଚ୍ଛାକୃତ ଭାବେ ସାଥି ପିଅରୀମୋହନ ଦାସ ମୋ ପାଖରେ ବସି ଶ୍ରୁତିଲିଖନ ପରି କେତେକ ପାଣ୍ଡୁଲିପି ଲେଖିଥିବାରୁ ମୁଁ ତାଙ୍କ ନିକଟରେ ବିଶେଷଭାବରେ କୃତଜ୍ଞ ।

କଟକ,
ତା ୧।୧।୫୧

**ସୁରେନ୍ଦ୍ର ନାଥ ଦ୍ୱିବେଦୀ**

# ଦ୍ୱିତୀୟ ଇଂରାଜୀ ସଂସ୍କରଣର ଭୂମିକା

୧୯୩୦ ମସିହା ଅକ୍ଟୋବରଠାରୁ ୧୯୩୩ ଅଗଷ୍ଟ—ଏହି ତିନି ବର୍ଷ ଭିତରେ ଭାରତର ବିଭିନ୍ନ ଜେଲରେ 'Glimpses of World History' ଲେଖା ଯାଇଥିଲା । ଲେଖକ ଭାରତର ସ୍ୱାଧୀନତା-ସଂଗ୍ରାମରେ ଭାଗ ନେଇଥିବାରୁ ଏବଂ ଇଂରେଜ କର୍ତ୍ତୃତ୍ୱର ବିରୋଧ କରୁଥିବାରୁ ତାଙ୍କୁ କାରାବାସ ଭୋଗ କରିବାକୁ ପଡ଼ିଥିଲା ।

ଏହି ବାଧ୍ୟତାମୂଳକ ବିଶ୍ରାମକୁ ପଣ୍ଡିତ ଜବାହରଲାଲ ନେହରୁ "ଅବକାଶ ଓ ନିର୍ଲିପ୍ତଭାବ" ସମୟ ବୋଲି କହିଛନ୍ତି । ସେ ଏହାର ସୁଯୋଗ ନେଇ ବିଶ୍ୱଇତିହାସ ସମ୍ବନ୍ଧରେ ଲେଖିଲେ । ତାଙ୍କର ଜ୍ୟେଷ୍ଠ ଝିଅଟି ନିକଟକୁ ଚିଠି ଆକାରରେ ଏଗୁଡ଼ିକ ଲେଖାହୋଇଛି । ଜେଲ ଭିତରେ ରହିବାରୁ ଝିଅର ଶିକ୍ଷା ତତ୍ତ୍ୱାବଧାନ କରିବା ନିମନ୍ତେ ତାଙ୍କର ସୁଯୋଗ ଘଟି ନ ଥିଲା କହିଲେ ଚଳେ ।

ପୁଣି ୧୯୩୪ ମସିହା ଫେବୃୟାରି ୧୨ ତାରିଖରେ ପଣ୍ଡିତ ନେହରୁ ଗିରଫହୋଇ 'ରାଜଦ୍ରୋହ' ନିମନ୍ତେ ଦୁଇ ବର୍ଷ ଦଣ୍ଡ ଭୋଗିବା ପୂର୍ବରୁ ଯେଉଁ ଅଳ୍ପ କେତେକ ସମୟ ବାହାରେ ଥିଲେ, ସେତିକବେଳେ ଏହି ଚିଠିଗୁଡ଼ିକ ସଂଗୃହୀତ ହୋଇଥିଲା । ଯୁକ୍ତପ୍ରଦେଶର ସ୍ୱାୟତ୍ତଶାସନ ଓ ସାଧାରଣ ସ୍ୱାସ୍ଥ୍ୟବିଭାଗର ବର୍ତ୍ତମାନ ମନ୍ତ୍ରୀ, ତାଙ୍କର ଭଉଣୀ ମାନନୀୟା ବିଜୟଲକ୍ଷ୍ମୀ ପଣ୍ଡିତ ୧୯୩୪ରେ 'Glimpses of World History' ବୋଲି ଆଖ୍ୟା ଦେଇ ଏଗୁଡ଼ିକ ପୁସ୍ତକ ଆକାରରେ ଛପାଇବାର ବ୍ୟବସ୍ଥା କଲେ ।

ନାମକରଣ ଯଥାର୍ଥ ହୋଇଅଛି । ବହିରେ କ'ଣ ଅଛି, ଏଥିରୁ ଜଣାପଡ଼ୁଛି । ଭାରତରେ ଯେଉଁ ପ୍ରଥମ ସଂସ୍କରଣ ବାହାରିଥିଲା, ତାହା ବିକ୍ରୀ ହୋଇସାରିଛି ଏବଂ ଗତ କେତେମାସ ହେଲା ପୁସ୍ତକ ଆଉ ମିଳୁ ନ ଥିଲା । ଯାହାହେଉ ଭାରତ ବାହାରେ ଏହା ବିଶେଷ ପ୍ରଚାରିତ ହୋଇ ନାହିଁ ।

୧୯୩୭ ମସିହାରେ ଜେଲରୁ ଖଲାସ ହେଲା ପରେ ପଣ୍ଡିତ ନେହରୁ ପୁଣି ତାଙ୍କର ସାଧାରଣ କାର୍ଯ୍ୟରେ ପୂରା ଦମରେ ଲାଗି ପଡ଼ିଛନ୍ତି । ସେହିଦିନଠାରୁ ତାଙ୍କୁ ଖୁବ୍ କର୍ମରତ ହେବାକୁ ପଡ଼ୁଛି ଏବଂ ଦାୟିତ୍ୱ ବହନ କରିବାକୁ ପଡ଼ୁଛି । ତାହା ସାଙ୍ଗକୁ ଦୁର୍ଭାଗ୍ୟବଶତଃ ବ୍ୟକ୍ତିଗତ ଦୁଃଖ ବି ଆସି ପହଞ୍ଚୁଛି । ଭାରତରେ ଘଟଣାବଳୀର ଗତି ଦ୍ରୁତ

ଓ ବ୍ୟାପକ ହୋଇଯାଇଛି । ଇଉରୋପ ତଥା ପୃଥିବୀରେ ଆନ୍ଦୋଳନ ଏବଂ ବିରାଟ ପରିବର୍ତ୍ତନ ଘଟିଛି । ଏହିସବୁ ଘଟଣାବଳୀ ସଭ୍ୟତାର ଭବିଷ୍ୟତ ଦୃଷ୍ଟିରୁ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ଏବଂ ଲେଖକ ଏଥିରେ ଦର୍ଶକ ଓ ନାୟକ ଉଭୟ ଭାବରେ କାର୍ଯ୍ୟ କରିଛନ୍ତି । ସାଧାରଣ ଜୀବନରେ ଥିବା ବ୍ୟକ୍ତିବିଶେଷଙ୍କ ଭିତରେ ପଣ୍ଡିତ ନେହେରୁଙ୍କ ପରି କଠିନ ପରିଶ୍ରମ ସଙ୍ଗେ ସଙ୍ଗେ ଦୂରଦୃଷ୍ଟି ଓ ନିର୍ଲିପ୍ତଭାବ ରଖିଥିବା ଲୋକ ଖୁବ୍ ବିରଳ । ଇଉରୋପରେ ଗସ୍ତ କରୁଥିଲାବେଳେ ପାଶ୍ଚାତ୍ୟ ଜଗତର ଆଧୁନିକ ଘଟଣାବଳୀରୁ କେତେକ ସେ ସ୍ୱଚକ୍ଷୁରେ ଦେଖି ଆସିଛନ୍ତି । ଚୀନ ଓ ସ୍ପେନରେ ଯେ ସଂଗ୍ରାମ ଲାଗିଛି, ତାହା ସହିତ ତାଙ୍କର ଘନିଷ୍ଠ ସମ୍ପର୍କ ରହିଛି ।

ନାନା ଦିଗରୁ ଏହି ପୁସ୍ତକଟି ଏକ ନୂତନ ପୁସ୍ତକ । ଏହାର ସଂଶୋଧନ କରାଯାଇଛି; ଅନେକ କଥା ପୁନର୍ବାର ଲେଖାଯାଇଛି ଏବଂ ଲେଖକ ନିଜେ ୧୯୩୮ ମସିହା ପର୍ଯ୍ୟନ୍ତ ଘଟିଥିବା ଘଟଣାବଳୀ ଏଥିରେ ପୁଣି ଯୋଗ କରିଛନ୍ତି । ଏହି କାମଟି ଅବଶ୍ୟ ଜେଲଖାନା ବାହାରେ କରାଯାଇଛି; କିନ୍ତୁ ଏହାବୋଲି ମୂଳଲେଖାର ଯେ ଉଦ୍ଦେଶ୍ୟ ଥିଲା, ତାହା କୌଣସିଠାରେ କ୍ଷୁଣ୍ଣ ହୋଇ ନାହିଁ । ଅଧିକ ଅଭିଜ୍ଞତା ଓ ଜ୍ଞାନ ହେତୁ ଏହା ଆହୁରି ତଥ୍ୟପୂର୍ଣ୍ଣ ହୋଇଛି ।

"ବିଶ୍ୱ ଇତିହାସ" କେବଳ ଘଟଣାବଳୀର ବର୍ଣ୍ଣନା ନୁହେଁ, ସେ ହିସାବରେ ମଧ୍ୟ ଏହା ଅତ୍ୟନ୍ତ ମୂଲ୍ୟବାନ୍ ସନ୍ଦେହ ନାହିଁ; ମାତ୍ର ଲେଖକଙ୍କର ବ୍ୟକ୍ତିତ୍ୱର ଛାପ ମଧ୍ୟ ଏଥିରେ ରହିଛି । ତାଙ୍କର ବିଚକ୍ଷଣ ବୁଦ୍ଧି ଓ ଭାବପ୍ରବଣ ମନ ଏହି ଇତିହାସକୁ ଅଦ୍ୱିତୀୟ ପୁସ୍ତକ କରିପାରିଛି । ଗୋଟିଏ ବଢ଼ନ୍ତା ପିଲା ନିକଟକୁ ଚିଠି ଆକାରରେ ଏଗୁଡ଼ିକ ଯେପରି ଲେଖା ଯାଇଥିଲା, ସେହିପରି ଭାବରେ ରଖାଯାଇଛି । ଏହା ସରଳ ଓ ପ୍ରତ୍ୟକ୍ଷ ହୋଇଛି; ମାତ୍ର ସେଥିଯୋଗୁଁ ଏହାର ବର୍ଣ୍ଣନା ଯେ ଉପରଠାଉରିଆ ହୋଇଛି, ତାହା ନୁହେଁ । କୌଣସି ସ୍ଥାନରେ ବିଷୟବସ୍ତୁ ବା ବ୍ୟାଖ୍ୟାକୁ ଅତି ସରଳ କରାଯାଇ ନାହିଁ ।

'Glimpses of World History'ରେ ଜେ. ଏଫ୍. ହୋରାବିନ୍ ୫୦ଟି ମାନଚିତ୍ର ଦେଇଛନ୍ତି । ଏହା ଏହି ପୁସ୍ତକର ଏକ ବିଶେଷତ୍ୱ । ତାହାଛଡ଼ା ଏଥିରେ ୨୨ ପୃଷ୍ଠାବିଶିଷ୍ଟ ଏକ ପୂର୍ଣ୍ଣ ବିଷୟ-ସୂଚୀ ଦିଆଯାଇଛି, ତାହା ମଧ୍ୟ ଏକ ବିଶେଷତ୍ୱ ।

ଏହି ପୁସ୍ତକଟିରେ ମୋଟ ୧୦୧୬ ପୃଷ୍ଠା ରହିଛି; ତଥାପି ପ୍ରକାଶକମାନେ ଏହାର ମୂଲ୍ୟ ଖୁବ୍ କମ୍ ରଖିଛନ୍ତି । ଏହା ଫଳରେ ସାରା ପୃଥିବୀରେ ବହୁସଂଖ୍ୟକ ପାଠକଙ୍କ ପାଖରେ ଏହା ପହଞ୍ଚିପାରିବ ।

ଲଣ୍ଡନ
ମେ, ୧୯୩୯

ଭି. କେ. କୃଷ୍ଣମେନନ

# ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଅଭିମତ

ଭାରତର ବରପୁତ୍ର ଜବାହରଲାଲଙ୍କ "ବିଶ୍ୱଇତିହାସ" ଗୋଟିଏ ଅତି ଉପାଦେୟ ଗ୍ରନ୍ଥ । ଏହି ଗ୍ରନ୍ଥ ପାଠକଲେ ଲୋକର ଜ୍ଞାନାଲୋକର ପ୍ରସାର ହୁଏ । ଶ୍ରଦ୍ଧେୟ ଶ୍ରୀ ସୁରେନ୍ଦ୍ର ନାଥ ଏହି ଗ୍ରନ୍ଥରକୁ ଓଡ଼ିଆରେ ଅତି ପ୍ରାଞ୍ଜଳ ଭାବରେ ଅନୁବାଦ କରି ଧନ୍ୟ ହୋଇଅଛନ୍ତି । ମୁଁ ଏହି ଗ୍ରନ୍ଥ ପାଠକରି ଅତିଶୟ ପ୍ରୀତ ହୋଇଅଛି । ଏହି ଗ୍ରନ୍ଥ ଜନସାଧାରଣ ପାଠକଲେ ତାଙ୍କର ମନୋଭାବ ଉନ୍ନତ ହେବ, ନିଃସନ୍ଦେହ ।

# ମୂଳ ସଂସ୍କରଣର ମୁଖବନ୍ଧ

ଏହି ଚିଠିଗୁଡ଼ିକ କେବେ ବା କେଉଁଠି ପ୍ରକାଶିତ ହେବ କିମ୍ବା ଆଦୌ ପ୍ରକାଶିତ ହେବ କି ନାହିଁ, କହିପାରିବି ନାହିଁ । କାରଣ ଭାରତ ତ ଆଜି ଏକ ବିଚିତ୍ର ଅବସ୍ଥାରେ ରହିଛି ଏବଂ ଏ ଅବସ୍ଥାରେ ଆଗାମୀ କଥା କହିପାରିବା କଷ୍ଟକର । ଅନ୍ୟ ଘଟଣାବଳୀ ମତେ ଅଭିଭୂତ କରିବା ପୂର୍ବରୁ ମୁଁ ଯେଉଁ ସୁଯୋଗ ଲାଭ କରିଛି, ସେଥିରେ ଏହି କେତେ ଧାଡ଼ି ଲେଖି ପକାଉଛି ।

ଇତିହାସକୁ ଏପରି ଚିଠି ଆକାରରେ ଲେଖିବା ସମ୍ବନ୍ଧରେ ମୋର କୈଫିୟତ୍ ଦେବା ଓ କ୍ଷମା ମାଗିନେବା ଆବଶ୍ୟକ । ଯେଉଁ ପାଠକମାନେ କଷ୍ଟ ସ୍ୱୀକାର କରି ଏହା ପାଠକରିବେ, ସେମାନେ ବୋଧହୁଏ ଏହି କୈଫିୟତ ଓ କ୍ଷମାପ୍ରାର୍ଥନା ପାଇପାରିବେ । ବିଶେଷଭାବରେ ଶେଷ ଚିଠି ପ୍ରତି ମୁଁ ପାଠକଙ୍କର ଦୃଷ୍ଟି ଆକର୍ଷଣ କରିବି । ଏହି ଗୋଳ-ମାଳିଆ ଦୁନିଆରେ ଶେଷରୁ ଆରମ୍ଭ କରିବା ବୋଧହୁଏ ଭଲ ହେବ ।

ଚିଠିଗୁଡ଼ିକ ଲେଖୁ ଲେଖୁ ଏତେ ହୋଇଗଲା । ଆଗରୁ କିଛି ଯୋଜନା କରି ଲେଖା ଯାଇ ନ ଥିଲା ଏବଂ ତାହା ବର୍ତ୍ତମାନ ଆକାର ଧାରଣ କରିବ ବୋଲି ମୁଁ କେବେ-ହେଲେ କଳ୍ପନା କରି ନ ଥିଲି । ମୋର ଝିଅ ଦଶବର୍ଷର ହୋଇଥିଲାବେଳେ ପ୍ରାୟ ଛଅ ବର୍ଷ ତଳେ ମୁଁ ତାହା ନିକଟକୁ କେତେଗୁଡ଼ିଏ ଚିଠି ଲେଖିଥିଲି । ସେଥିରେ ପୃଥିବୀର ଆଦିକାଳ ସମ୍ବନ୍ଧରେ ସଂକ୍ଷିପ୍ତ ଓ ସରଳ ବିବରଣୀ ଦିଆଯାଇଥିଲା । ଏହିସବୁ ଚିଠିଗୁଡ଼ିକ ପରେ ଗୋଟିଏ ପୁସ୍ତକ ଆକାରରେ ପ୍ରକାଶିତ ହୋଇଥିଲା ଏବଂ ଖୁବ୍ ଆଦୃତ ହେଲା । ସେହିପରି ଚିଠି ଆକାରରେ ପୁନର୍ବାର ଲେଖିବା କଥାଟା ମୋ ମନ ଭିତରେ ଖେଳୁଥାଏ; କିନ୍ତୁ କାର୍ଯ୍ୟବ୍ୟସ୍ତ ଜୀବନରେ ସର୍ବଦା ରାଜନୀତିକ କାର୍ଯ୍ୟରେ ବ୍ୟସ୍ତ ଥିବାଯୋଗୁଁ ଏହା ହୋଇପାରୁ ନ ଥିଲା । ମୁଁ ଯେଉଁ ସୁଯୋଗ ଲୋଡ଼ୁଥିଲି, ତାହା ଜେଲଖାନାରେ ମିଳିଲା ଏବଂ ମୁଁ ତା'ର ଉପଯୋଗ କଲି ।

କାରାଗାର ଜୀବନର କେତେକ ସୁବିଧା ରହିଛି; ଏଠାରେ ଅବକାଶ ମିଳେ ଏବଂ କେତେକ ପରିମାଣରେ ବାହାର ଦୁନିଆର ସମ୍ପର୍କ ରହେ ନାହିଁ । କିନ୍ତୁ ଅସୁବିଧାଗୁଡ଼ିକ ମଧ୍ୟ ଅତି ସ୍ପଷ୍ଟ । ବନ୍ଦୀ ପାଖରେ କୌଣସି ଲାଇବ୍ରେରୀ ବା ବିଶ୍ୱରମସୁଧା ଲାଗି ପୁସ୍ତକ ନ ଥାଏ ।

ଏପରି ଅବସ୍ଥାରେ କୌଣସି ବିଷୟ ବିଶେଷତଃ ଇତିହାସ ଲେଖିବାକୁ ଚେଷ୍ଟା କରିବା ଗୋଟାଏ ଅତି ଦୁଃସାହସିକ ଉଦ୍ୟମ । ବହୁତ ପୁସ୍ତକ ମୋ ପାଖକୁ ଆସିଥିଲା; ମାତ୍ର ସେଗୁଡ଼ିକ ରଖାଯାଇ ପାରିଲା ନାହିଁ । ବହି ଆସିଲା ଓ ଫେରିଗଲା । ଯାହାହେଉ ୧୨ ବର୍ଷ ପୂର୍ବେ ଯେତେବେଳେ ମୋ ଦେଶର ବହୁସଂଖ୍ୟକ ନରନାରୀଙ୍କ ପରି ମୁଁ ଜେଲଯାତ୍ରା ଆରମ୍ଭ କଲି, ସେତେବେଳକୁ ଯେଉଁ ବହିସବୁ ମୁଁ ପଢ଼େ, ତାର ନୋଟ ରଖିବା ଅଭ୍ୟାସଟା କରି ନେଇଥିଲି । ଏମିତି ବହୁତଗୁଡ଼ିଏ ନୋଟବହି ହୋଇଯାଇଥିଲା ଏବଂ ଲେଖା ଆରମ୍ଭ କଲାବେଳକୁ ଏଗୁଡ଼ିକ ଖୁବ୍ ସାହାଯ୍ୟ କଲା । ଅବଶ୍ୟ ଅନ୍ୟ ବହିଗୁଡ଼ିକରୁ ସାହାଯ୍ୟ ମିଳିଥିଲା, ବିଶେଷଭାବରେ ଏଚ୍ ଜି. ଓ୍ୱେଲ୍ସଙ୍କର Outline of Historyରୁ । କିନ୍ତୁ ପରାମର୍ଶ ଲାଗି ଭଲ ପୁସ୍ତକର ଅଭାବ ଖୁବ୍ ଅନୁଭବ କଲି ଏବଂ ସେଥିପାଇଁ ଅନେକ ସମୟରେ ବର୍ଣ୍ଣନା ଅପୂର୍ଣ୍ଣ ହୋଇଛି ବା କେତେବେଳର ଘଟଣାକୁ ଗଡ଼ାଇ ପକାଇଛି ।

ଏଗୁଡ଼ିକ ବ୍ୟକ୍ତିଗତ ଚିଠି ଏବଂ ଅନେକ ସ୍ଥଳରେ ଘରୁଆ କଥାର ଉଲ୍ଲେଖ ରହିଛି । ଏଗୁଡ଼ିକ କେବଳ ମୋର ଝିଅ ଉଦ୍ଦେଶ୍ୟରେ ଲେଖା ହୋଇଥିଲା । ସେଗୁଡ଼ିକ ବିଷୟରେ କ'ଣ କରିବାକୁ ହେବ ମୁଁ ଜାଣେ ନାହିଁ, କାରଣ ଖୁବ୍ କସରତ ନ କଲେ ସେସବୁ ବାଦ୍ ଦେବା ସହଜ କଥା ନୁହେଁ । ତେଣୁ ମୁଁ ସେଗୁଡ଼ିକ ସେହିପରି ରଖିଲି । ଦୈହିକ ଅସୁସ୍ଥତା ଘଟିଲେ ଲୋକ ଅନ୍ତର୍ନିରୀକ୍ଷଣ କରେ ଏବଂ ନାନା ଭାବ ମନରେ ଖେଳେ । ମୋର ଅନୁମାନ ଏହି ଚିଠିଗୁଡ଼ିକରେ ଏପରି ପରିବର୍ତ୍ତନୀୟ ଭାବର ଛାପ ବି ଆପାତତଃ ରହିଯାଇଛି ଏବଂ ଏକ ଐତିହାସିକ ଦୃଷ୍ଟିକୋଣରୁ ଏ ବିଷୟଗୁଡ଼ିକ ଲେଖାଯାଇ ନାହିଁ । ମୁଁ ନିଜକୁ ଜଣେ ଐତିହାସିକ ବୋଲି ଦାବୀ କରେ ନାହିଁ । ଏଥିରେ ଆଉ ଗୋଟିଏ ବିଚିତ୍ର ସମ୍ମିଶ୍ରଣ ହୋଇଛି– କେତେକ ସ୍ଥଳରେ ଛୋଟ ପିଲାଙ୍କୁ ପ୍ରାଥମିକ ଜ୍ଞାନ ଦେବାଭଳି ଲେଖାହୋଇଛି ଓ ଆଉ କେତେ ସ୍ଥାନରେ ବେଳେ ବେଳେ ବୟସ୍କ ଲୋକଙ୍କ ଲାଗି ବଡ଼ ବଡ଼ ଭାବଧାରା ଆଲୋଚନା ହୋଇଛି । ବହୁସ୍ଥାନରେ ପୁନରୁକ୍ତି କରାଯାଇଛି । ବାସ୍ତବିକ୍ ଏ ଚିଠିଗୁଡ଼ିକରେ ଯେଉଁ ସବୁ ଦୋଷ ରହିଛି, ତାର ଅନ୍ତ ନାହିଁ । କେତେକ ମୋଟାମୋଟି ଚିତ୍ରଗୁଡ଼ିକୁ ଗୋଟିଏ ସୂକ୍ଷ୍ମ ସୂତ୍ରରେ ଏକତ୍ର କରାଯାଇଛି ମାତ୍ର । ନାନାପ୍ରକାର ପୁସ୍ତକରୁ ମୁଁ ବିବରଣୀ ଓ ଭାବ ସଂଗ୍ରହ କରିଛି ଏବଂ ଅନେକ ଭୁଲ ରହିଯାଇ ଥାଇପାରେ । ମୋର ଇଚ୍ଛା ଥିଲା କୌଣସି ଜଣେ ଖ୍ୟାତନାମା ଐତିହାସିକଙ୍କ ଦ୍ୱାରା ଏଗୁଡ଼ିକ ପଢ଼ାଇ ନେଇଥାନ୍ତି । କିନ୍ତୁ ମୁଁ ଯେଉଁ ଅଳ୍ପ କେତେ ସମୟ ଜେଲ ବାହାରେ ରହିଲି, ସେଥି ଭିତରେ ଏପରି କୌଣସି ବ୍ୟବସ୍ଥା କରିବାକୁ ସମୟ ପାଇଲି ନାହିଁ ।

ଏହି ଚିଠିଗୁଡ଼ିକରେ ବେଳେବେଳେ ମୁଁ ଟିକିଏ ଉଗ୍ର ଭାବରେ ମତପ୍ରକାଶ କରିଛି । ଏହି ମତଗୁଡ଼ିକର ମୁଁ ସମର୍ଥକ । ଏପରି କି ଚିଠିଗୁଡ଼ିକ ଲେଖିଲା ବେଳେ ଇତିହାସ ସମ୍ବନ୍ଧରେ ମୋର ଦୃଷ୍ଟିକୋଣ କ୍ରମେ ପରିବର୍ତ୍ତିତ ହୋଇଛି । ଆଜି ଯଦି ମତେ ପୁଣି ଲେଖିବାକୁ ପଡ଼େ, ତେବେ ମୁଁ ଏହାକୁ ଅନ୍ୟ ରୂପରେ ଏବଂ ଅନ୍ୟ ବିଷୟ ଉପରେ ଜୋର ଦେଇ ଲେଖନ୍ତି । କିନ୍ତୁ ମୁଁ ଯାହା ଲେଖିସାରିଛି, ତାକୁ ଛିଣ୍ଡାଇ ପକାଇ ପୁଣି ନୂଆ ଆରମ୍ଭ କରିପାରେ ନାହିଁ ।

ଜାନୁଆରୀ ୧, ୧୯୩୪

ଜବାହରଲାଲ ନେହରୁ

# ସୂଚୀପତ୍ର

ବିଷୟ | ପୃଷ୍ଠା
---|---

| ବିଷୟ | ପୃଷ୍ଠା |
|---|---|

# ଜନ୍ମଦିନ ଚିଠି

( ଇନ୍ଦିରା ପ୍ରିୟଦର୍ଶିନୀର ତ୍ରୟୋଦଶ ଜନ୍ମ ଦିବସ ଉପଲକ୍ଷେ ଲିଖିତ )

ନଇନୀ କେନ୍ଦ୍ର ଜେଲ,
ଅକ୍ଟୋବର ୨୬, ୧୯୩୦

ତୋର ଜନ୍ମଦିବସରେ ତୁ କେତେ ଉପହାର ଓ ଶୁଭକାମନା ପାଇଆସିଛୁ; ଏବେ ମଧ୍ୟ ବହୁତ ଆଶୀର୍ବାଦ ପାଇପାରୁ । ମାତ୍ର ନଇନୀ ଜେଲରୁ ମୁଁ ତୋତେବା କ'ଣ ଉପହାର ଦେଇପାରିବି ? ମୋର ଉପହାର କୌଣସି ବସ୍ତୁ ଆଖିଦୃଶିଆ ହୋଇପାରିବ ନାହିଁ । ତାହା ପବନ ପରି ସୂକ୍ଷ୍ମ; କେବଳ ମନ ଓ ଆତ୍ମା ସହିତ ହିଁ ତାର ସମ୍ବନ୍ଧ । ତାକୁ ଜେଲଖାନାର ଉଚ୍ଚ ପାଚେରୀ ବନ୍ଦ କରିପାରିବ ନାହିଁ । ଜଣେ ଭଲ ଗୁରୁ ହୁଏତ ତୋତେ ଏପରି ଶୁଭକାମନା ଦେଇପାରନ୍ତି ।

ତୁ ଜାଣୁ, ମୁଁ କିପରି ପରାମର୍ଶ ଦେବା କି ଦୀକ୍ଷା ଦେବା ପ୍ରବୃତ୍ତିକୁ ପସନ୍ଦ କରେ ନାହିଁ । ଯେତେବେଳେ ମୁଁ ଏପରି କରିବା ନିମନ୍ତେ ଇଚ୍ଛାକରେ, ସେତେବେଳେ "ଅତି ଜ୍ଞାନୀ ଲୋକ" ଗଳ୍ପ ମୋର ମନେ ପଡ଼ିଯାଏ । ଯେଉଁ ବହିରେ ସେ ଗପ ଅଛି, ତୁ ହୁଏତ ଦିନେ ସେ ବହି ପଢ଼ିବୁ । ତେର ଶହ ବର୍ଷ ପୂର୍ବେ ଜ୍ଞାନ ଓ ବିଦ୍ୟା ଅନ୍ୱେଷଣରେ ଜଣେ ପ୍ରସିଦ୍ଧ ପର୍ଯ୍ୟଟକ ଚୀନଦେଶରୁ ଭାରତକୁ ଆସିଥିଲେ । ତାଙ୍କ ନାମ ହେଉଛି ହୁଏନସାଂ । ତାଙ୍କର ଜ୍ଞାନ ଅର୍ଜ୍ଜନ କରିବାର ପ୍ରବଳ ପିପାସା ଥିଲା । ତେଣୁ ସେ ଉତ୍ତରର ବହୁତ ମରୁଭୂମି ଓ ପର୍ବତ ଉପର ଦେଇ ଅନେକ ବାଧାବିଘ୍ନ ଅତିକ୍ରମ କରି ଆସିଥିଲେ । ସେ ଭାରତରେ ଅନେକ ବର୍ଷ ରହିଥିଲେ—ନିଜେ ଶିକ୍ଷାଲାଭ କଲେ ଓ ଅନ୍ୟମାନଙ୍କୁ ଶିକ୍ଷା ଦେଲେ । ସେ ବିଶେଷତଃ ପାଟଳୀପୁତ୍ର (ବର୍ତ୍ତମାନ ଯାହାକୁ ପାଟନା ବୋଲି କହୁଛନ୍ତି ) ନିକଟସ୍ଥ ନାଳନ୍ଦା ବିଶ୍ୱବିଦ୍ୟାଳୟରେ ରହି ଶିକ୍ଷା ଦେଉଥିଲେ । ହୁଏନସାଂ ନିଜେ ଖୁବ୍ ଜ୍ଞାନ ଅର୍ଜ୍ଜନ କଲେ । ତାଙ୍କୁ "ଆଇନ-ବିଶାରଦ" (ବୁଦ୍ଧଙ୍କ ଆଇନ) ବୋଲି ଉପାଧି ଦିଆ ହୋଇଥିଲା । ଆମର ଏହି ବିରାଟ ଦେଶରେ ସେବକାଳରେ ଯେଉଁ ଲୋକ

ରହୁଥିଲେ, ସେମାନଙ୍କ ରୀତିନୀତି ସେ ଜାଣିଲେ ଓ ଭାରତସାରା ବୁଲିଲେ । ଅନେକ କଥା ଦେଖିଲେ । ତତ୍ପରେ ନିଜ ପର୍ଯ୍ୟଟନ ସମ୍ବନ୍ଧରେ ସେ ଗୋଟିଏ ବହି ଲେଖିଥିଲେ । ସେ ବହିରେ ଏହି ଗପ ଅଛି । ତାହା ହେଉଛି—ବିହାରର ଭାଗଲପୁର ସହର ନିକଟରେ ଥିବା କର୍ଣ୍ଣସୁବର୍ଣ୍ଣ ବୋଲି ଏକ ସହରକୁ ଦକ୍ଷିଣ-ଭାରତରୁ ଜଣେ ଲୋକ ଆସିଥିଲା । ଲୋକଟି ତମ୍ବାପଟାସବୁ ଅଣ୍ଟାରେ ବାନ୍ଧିଥିଲା ଓ ମୁଣ୍ଡରେ ଗୋଟିଏ ଆଲୁଅ ଥୋଇଥିଲା । ଏହି ଅଦ୍ଭୁତ ପୋଷାକ ପିନ୍ଧି ହାତରେ ବାଡ଼ି ଧରି ସେ ଖୁବ୍ ଗର୍ବ ସହକାରେ ବୁଲିବାକୁ ଲାଗିଲା । ଏପରି ଅଦ୍ଭୁତ ରୂପ ସମ୍ବନ୍ଧରେ ତାକୁ ଯଦି କେହି ପଚାରେ, ସେ କହେ, ତାହାର ଜ୍ଞାନ ଏତେ ବେଶୀ ଯେ, ଯଦି ତମ୍ବାପଟା ନ ପିନ୍ଧେ, ତାର ପେଟ ଫାଟିଯିବାର ଆଶଙ୍କା ଅଛି ଏବଂ ତାହାର ଚାରିଆଡ଼େ ଯେଉଁ ସବୁ ମୂର୍ଖ ଲୋକେ ଅନ୍ଧାରରେ ରହିଛନ୍ତି, ସେମାନଙ୍କ ପ୍ରତି ଦୟା ଦେଖାଇ ସେ ମୁଣ୍ଡରେ ଆଲୁଅ ନେଉଛି ।

ମାତ୍ର ଏକଥା ନିଶ୍ଚୟ ଯେ ବହୁତ ଜ୍ଞାନ ଯୋଗୁ ମୋର ପେଟ ଫାଟିଯିବାର ଆଶଙ୍କା ନାହିଁ; ତେଣୁ ତମ୍ବାପଟା କମ୍ବା ଆଉ କିଛି ପିନ୍ଧିବାର ଦରକାର ନାହିଁ । ମୋର ଯାହା ବା ଜ୍ଞାନ ଅଛି, ତାହା ମୋ ପେଟରେ ନାହିଁ ବୋଲି ମୋର ବିଶ୍ୱାସ । ମୋର ଜ୍ଞାନ ଯେଉଁଠି ଥାଉ ପଛକେ ସେଠାରେ ଆହୁରି ରଖିବା ପାଇଁ ଯଥେଷ୍ଟ ସ୍ଥାନ ଅଛି ଏବଂ ସେ ସ୍ଥାନ ଖାଲି ନ ରହିବାର ସମ୍ଭାବନା ନାହିଁ । ମୋର ଜ୍ଞାନ ଏତେ ଅଳ୍ପ ହୋଇଥିବା-ବେଳେ ମୁଁ 'ଜ୍ଞାନୀ' ବୋଲି ନିଜକୁ ପରିଚୟ ଦେଇ ଅନ୍ୟମାନଙ୍କୁ ପରାମର୍ଶ ଦାନ କରିବି ବା କପରି ? ତେଣୁ ମୁଁ ସବଦା ଭାବେ, କ'ଣ କରିଯିବା ଉଚିତ ଏବଂ କ'ଣ ନ କରିବା ଉଚିତ; କେଉଁଟା ଠିକ୍ ଏବଂ କେଉଁଟା ଠିକ୍ ନୁହେ - ଏହା ଜାଣିବାକୁ ହେଲେ କେବଳ ଉପଦେଶ ଦ୍ୱାରା ହେବ ନାହିଁ; ମାତ୍ର କଥାବାର୍ତ୍ତା ଓ ଆଲୋଚନାରେ ଜାଣିହେବ । ଆଲୋଚନା ଫଳରେ ସମୟେ ସମୟେ ସତ୍ୟ ପ୍ରକାଶ ପାଇଥାଏ । ତୋ ସହିତ କଥାବାର୍ତ୍ତା କରିବାକୁ ମୁଁ ଭଲ ପାଏ ଏବଂ ଆମେ ଅନେକ କଥା ଆଲୋଚନା କରିଛେ । ଆମ ପୃଥିବୀଟି ଖୁବ୍ ବିସ୍ତୃତ ଏବଂ ଆମ ଦୁନିଆ ବାହାରେ ବି ଅନେକ ଅଦ୍ଭୁତ ଓ ରହସ୍ୟ-ଜନକ ଜଗତ୍ ରହିଛି । ତେଣୁ ହୁଏନ୍‌ସାଂ ଯେଉଁ ବୋକା ଓ ଗର୍ବୀ ଲୋକ କଥା ଲେଖିଛନ୍ତି, ତାହା ପରି ଆମେ କେହି କେବେହେଁ ଭାବିବୁ ନାହିଁ ଯେ ଶିକ୍ଷଣୀୟ ସମସ୍ତ ବିଷୟ ଆମେ ଶିଖିଛେ ଏବଂ ବଡ଼ ଜ୍ଞାନୀ ହୋଇଛେ । ଆହୁରି ମଧ୍ୟ ଆମେ ଯେ ବଡ଼ ଜ୍ଞାନୀ ହୋଇ ନ ପାରିଛେ, ଏହା ହୁଏ ତ ଭଲ; କାରଣ ବଡ଼ ଜ୍ଞାନୀ ଯଦି କେହି ଥାଆନ୍ତି, ତାଙ୍କ ପାଇଁ ଆଉ ଶିଖିବାକୁ କିଛି ନାହିଁ ଭାବି ସେମାନେ ନିଶ୍ଚୟ ବେଳେ ବେଳେ ଉଦାସୀନ ରହୁଥିବେ । ଆମ୍ଭେମାନେ ନୂଆ ଜିନିଷ ଆବିଷ୍କାର କରିବା ଓ ନୂଆ କଥା ଶିଖିବାର ଚେଷ୍ଟା କରିବାରେ ଯେଉଁ ଆନନ୍ଦ ପାଇବା ସେମାନେ ତାହା ହରାଇବେ ।

ଏହି ହେତୁରୁ ମୁଁ ତୋତେ କିଛି ଉପଦେଶ ଛଳରେ ବକ୍ତୃତା ଶୁଣାଇବି ନାହିଁ । କିନ୍ତୁ ମୁଁ କ'ଣ କରିବି ତାହାହେଲେ ? ଚିଠିଟା କିଛି କଥାବାର୍ତ୍ତାର ସ୍ଥାନ ନେଇପାରେ ନାହିଁ; କାରଣ ଏହା ଏକପାଖିଆ । ତେଣୁ ମୋ କଥାରୁ କିଛି ଯଦି ତୋତେ କେବଳ ଉପଦେଶ ପରି ବୋଧହୁଏ, ତେବେ ଗୋଟିଏ ବିସ୍ୱାଦ ଔଷଧବଟିକା ପରି ତାହା ଗିଳିବାକୁ ପଡ଼ିବ ବୋଲି ମନେକରିବୁ ନାହିଁ । ମୁଁ ତୋତେ ଆଗରୁ କହିଥିଲି ଚିନ୍ତା କରିବା ଲାଗି । ସେହିପରି ଚିନ୍ତାକରି ଆମେ କଥାବାର୍ତ୍ତା କରୁଛେ ବୋଲି ମନେ କରିନେବୁ ।

ବଡ଼ ବଡ଼ ଲୋକଙ୍କ ଜୀବନୀ, ବଡ଼ ବଡ଼ ଘଟଣାର ବର୍ଣ୍ଣନା ଏବଂ ଜାତିର ଜୀବନରେ ଘଟିଯାଇଥିବା ଅନେକ କିଛି କଥା ଆମେ ଇତିହାସରେ ପଢ଼ିବାକୁ ପାଉଁ ଏବଂ ବେଳେ ବେଳେ ସ୍ୱପ୍ନ ଓ କଳ୍ପନାରେ ଆମେ ସେହି କାଳରେ ରହୁଛେ ବୋଲି ଭାବୁରୁ ଏବଂ ପୂର୍ବକାଳର ବୀର ନରନାରୀଙ୍କ ସାହସିକ କାର୍ଯ୍ୟ ପରି କାମ କରୁଛୁ ବୋଲି ମନେକରୁ । ତୁ ଯେତେବେଳେ ପ୍ରଥମେ "ଜୋଆନ୍ ଡ଼ ଆର୍କ"ଙ୍କ ବିଷୟ ପଢ଼ିଲୁ, ସେତେ-ବେଳେ କିପରି ମୁଗ୍ଧ ହୋଇଥିଲୁ ଏବଂ ତାଙ୍କ ପରି ହେବା ନିମନ୍ତେ କିପରି ଇଚ୍ଛା ପ୍ରକାଶ କରିଥିଲୁ ତୋର ମନେଅଛି ତ ? ସାଧାରଣ ନରନାରୀ ପ୍ରାୟ ସାହସୀ ହୋଇ ନ ଥାନ୍ତି । ସେମାନେ ନିଜର ପେଟପାଟଣା, ପିଲାକବିଲା, ଘରର ଜଞ୍ଜାଳ ଓ ଏହିପରି ଅନ୍ୟ ଚିନ୍ତାରେ ବ୍ୟସ୍ତ ରହନ୍ତି । ମାତ୍ର ଏପରି ଏକ ସମୟ ପହଞ୍ଚେ, ଯେତେବେଳେ ସମସ୍ତେ କୌଣସି ଗୋଟିଏ ମହତ୍ ଉଦ୍ଦେଶ୍ୟରେ ବିଶ୍ୱାସ ସ୍ଥାପନ କରନ୍ତି । ସେତେବେଳେ ଅତି ସାଧାରଣ ସ୍ତ୍ରୀ-ପୁରୁଷ ବୀର ହୋଇପାରନ୍ତି ଏବଂ ଇତିହାସ ଶୃଙ୍ଖଳାମୟ ଓ ଯୁଗ ପ୍ରବର୍ତ୍ତକ ହୋଇଯାଏ । ବଡ଼ ନେତାଙ୍କ ଭିତରେ ଏପରି କିଛି ଥାଏ, ଯାହା ସବୁ ଲୋକଙ୍କୁ ଉତ୍ସାହ ଦିଏ ଓ ସେମାନେ ମହତ୍ କାର୍ଯ୍ୟ କରନ୍ତି ।

୧୯୧୭ ମସିହାରେ ତୋର ଜନ୍ମ—ଏହି ବର୍ଷଟି ଇତିହାସର ଗୋଟିଏ ସ୍ମରଣୀୟ ବର୍ଷ । ଏହି ବର୍ଷ ଜଣେ ବଡ଼ ନେତା—ଯାହାଙ୍କ ହୃଦୟ ଦରିଦ୍ର ଓ ନିପୀଡ଼ିତ ଲୋକଙ୍କ ପ୍ରତି ସହାନୁଭୂତି ଓ ଶ୍ରଦ୍ଧାପୂର୍ଣ୍ଣ ଥିଲା—ସେ ନିଜ ଦେଶ ଲୋକଙ୍କଦ୍ୱାରା ଇତିହାସର ଏକ ବୃହତ୍ ଓ ଅପାଶୋରା ଆଧ୍ୟାୟ ଲେଖାଇଛନ୍ତି । ତୁ ଯେଉଁ ମାସରେ ଜନ୍ମ ହୋଇଛୁ, ସେହି ମାସରେ ଲେନିନ୍ ବିରାଟ ବିପ୍ଳବ କରାଇଲେ ଏବଂ ତାହା ରୁଷ ଓ ସାଇବେରିଆକୁ ସମ୍ପୂର୍ଣ୍ଣରୂପେ ବଦଳାଇଦେଲା । ଆଜି ଭାରତରେ ଆଉ ଏକ ବଡ଼ ନେତା ବାହାରିଛନ୍ତି । ଦୁଃଖୀରଙ୍କିଙ୍କ ପ୍ରତି ତାଙ୍କର ଶ୍ରଦ୍ଧା ରହିଛି ଓ ତାଙ୍କୁ ସାହାଯ୍ୟ କରିବା ନିମନ୍ତେ ସେ ବ୍ୟଗ୍ର । ବିରାଟ ଉଦ୍ୟମ ଓ ତ୍ୟାଗ ନିମନ୍ତେ ସେ ଆମ ଲୋକଙ୍କୁ ପ୍ରେରଣା ଦେଇଛନ୍ତି, ଯାହା ଫଳରେ ସେମାନେ ସ୍ୱାଧୀନ ହୋଇପାରିବେ ଏବଂ ଭୋକିଲା, ଦରିଦ୍ର ଓ ଅତ୍ୟାଚାରିତ

ଲୋକମାନେ ନିଜର କଷ୍ଟ ଦୂର କରିପାରିବେ । ବାପୁଜୀ * ଜେଲରେ ଅଛନ୍ତି, ମାତ୍ର ତାଙ୍କ ବାଣୀ ମ୍ୟାଜିକ୍ ପରି ଭାରତର ଲକ୍ଷ ଲକ୍ଷ ଲୋକଙ୍କ ହୃଦୟରେ ପ୍ରବେଶ କରିଛି ଏବଂ ସ୍ତ୍ରୀ-ପୁରୁଷ ଏପରିକି ଛୋଟ ଛୋଟ ବାଳକ-ବାଳିକାମାନେ ଘରୁ ବାହାରି ଆସି ଭାରତର ସ୍ୱାଧୀନତା-ଯୁଦ୍ଧର ସୈନିକ ହୋଇଛନ୍ତି । ଆଜି ଆମେ ହିଁ ଭାରତରେ ଇତିହାସ ଗଢ଼ୁଛେ ଏବଂ ତୁ ଓ ମୁଁ ଭାଗ୍ୟବାନ୍ ଯେ ଆମ ନିଜ ସମ୍ମୁଖରେ ସବୁ ଘଟଣା ଦେଖିପାରୁଛେ ଓ ଏହି ମହାନ୍ ନାଟକରେ ଭାଗ ନେଇପାରୁଛେ ।

ଏହି ବିରାଟ ଆନ୍ଦୋଳନରେ ଆମେ କେତେଦୂର ସମର୍ଥ ହେବା ? କିପରି ବା ଭାଗ ନେବା ? ଆମ ଭାଗ୍ୟରେ କ'ଣ ଘଟିବ ମୁଁ କହିପାରିବି ନାହିଁ; ମାତ୍ର ଯାହାହେଉ ପଛକେ, ଆମର ମନେ ରଖିବା ଉଚିତ ଯେ ଆମେ ଏପରି କିଛି କରିବୁ ନାହିଁ ଯେଉଁଥିରେ ଆମ ଉଦ୍ଦେଶ୍ୟରେ ବାଧା ପଡ଼ିବ କିମ୍ବା ଆମ ଲୋକଙ୍କର ସମ୍ମାନରେ ହାନି ଘଟିବ । ଆମକୁ ଭାରତର ସୈନିକ ହେବାକୁ ହେଲେ ତାର ଗୌରବ ଓ ସମ୍ମାନ ରକ୍ଷାକରିବାକୁ ହେବ ଏବଂ ତାହା ଆମର ଏକ ପବିତ୍ର କର୍ତ୍ତବ୍ୟ । କେତେବେଳେ କେମିତି ଆମେ କ'ଣ କରିବୁ, ସେ ସମ୍ବନ୍ଧରେ ସନ୍ଦେହରେ ପଡ଼ିପାରୁଁ । କ'ଣ ଠିକ୍ ଏବଂ କ'ଣ ଠିକ୍ ନୁହେଁ, ତାହା ସ୍ଥିର କରିବା ସହଜ କଥା ନୁହେଁ । ତୁ ଯେତେବେଳେ ସନ୍ଦେହରେ ପଡ଼ିବୁ, ସେତେବେଳେ ଗୋଟିଏ କଥା ପରୀକ୍ଷା କରିବା ଲାଗି ମୁଁ ତୋତେ କହିବି । ଏହା ତୋତେ ସାହାଯ୍ୟ କରିପାରେ । ଗୁପ୍ତଭାବରେ କିଛି କାର୍ଯ୍ୟ କରିବୁ ନାହିଁ କିମ୍ବା ଅନ୍ୟକୁ ଲୁଚାଇଲା ଭଳି କୌଣସି କାମରେ ହାତ ଦେବୁ ନାହିଁ । କାରଣ କିଛି ଲୁଚାଇବାକୁ ଇଚ୍ଛା କରିବାର ଅର୍ଥ ହେଉଛି ତୁ ଭୟ କରୁଛୁ । ଭୟ ଅତି ଖରାପ କଥା ଏବଂ ଏହା ତୋ ପକ୍ଷରେ ଶୋଭନୀୟ ନୁହେ । ସାହସୀ ହେଲେ ଅନ୍ୟ ସମସ୍ତ କାମ ଆପେ ଆପେ ହୋଇଯାଏ । ତୁ ଯଦି ସାହସୀ ହୋଇଥାଉ, ତାହାହେଲେ ଡରିବୁ ନାହିଁ ଏବଂ ଏପରି କିଛି କାର୍ଯ୍ୟ କରିବୁ ନାହିଁ ଯାହା ତୋତେ ଲଜ୍ଜାଜନକ ବୋଲି ମନେ ହେବ । ତୁ ଜାଣୁ, ବାପୁଜୀଙ୍କ ନେତୃତ୍ୱରେ ଚାଲୁଥିବା ଆମର ଏହି ମହାନ୍ ଆନ୍ଦୋଳନରେ ଗୁପ୍ତ ରଖିବା ବା ଲୁଚାଇବାର ସ୍ଥାନ ନାହିଁ । ଆମର ଲୁଚାଇବାର କିଛି ନାହିଁ । ଆମେ ଯାହା କରୁ ବା କହୁ, ସେଥିପାଇଁ ଆମେ ଡରୁ ନାହିଁ । ଆମେ ତ ଦିନ ଦ୍'ପହରେ ପ୍ରକାଶ୍ୟରେ କାର୍ଯ୍ୟ କରୁଛୁ । ଏପରିକି ଆମର ବ୍ୟକ୍ତିଗତ ଜୀବନରେ ଏହିପରି କାର୍ଯ୍ୟ କରିବା ଉଚିତ୍ ଏବଂ ଲୁଚାଇ ଛପାଇ କିଛି କରିବା ଠିକ୍ ନୁହେଁ । ଅବଶ୍ୟ ବ୍ୟକ୍ତିଗତ ଜୀବନରେ ଟିକିଏ ଏକାନ୍ତ ହେବା ଦରକାର ଏବଂ ତାହା ହେବା ଉଚିତ୍ ମଧ୍ୟ । ମାତ୍ର ଗୋପନୀୟତା ଏକଦମ୍ ଅଲଗା ଜିନିଷ । ତୁ ଯଦି ସେପରି କରୁ, ତାହାହେଲେ ଯାହା ଘଟୁ ପଛକେ ତୁ ନିର୍ଭୟ ଓ ଧାର୍ମିକ ହୋଇଉଠିବୁ ।

---

* ମହାତ୍ମା ଗାନ୍ଧୀ ( ୧୯୪୮ ଜାନୁୟାରି ୩୦ ତାରିଖରେ ମହାପ୍ରୟାଣ କରିଛନ୍ତି )

ମୁଁ ତୋତେ ଗୋଟିଏ ଦୀର୍ଘ ଚିଠି ଲେଖିଲି; ତଥାପି ଅନେକ କଥା ବାକି ରହିଗଲା । ମୁଁ ତୋତେ ସବୁକଥା ଲେଖିବାକୁ ଚାହେଁ । ଗୋଟିଏ ଚିଠିରେ ସେସବୁ କିପରି ଲେଖିପାରିବି ? ମୁଁ କହୁଛି, ଆମ ଦେଶରେ ଚାଲିଥିବା ବିରାଟ ସ୍ୱାଧୀନତା-ଯୁଦ୍ଧ ଯେ ତୁ ଦେଖିପାରୁଛୁ, ଏଥିପାଇଁ ତୁ ସୌଭାଗ୍ୟବତୀ । ଆହୁରି ସୌଭାଗ୍ୟର କଥା ଯେ, ତୋର ମା ତୋ ସହିତ ଅଛି । ସେ ଜଣେ ସାହସୀ ଓ ଅଦ୍ଭୁତ ନାରୀ । ତୋର ସନ୍ଦେହ ବା ବିପଦ ବେଳେ ତା ଅପେକ୍ଷା ତୋର ବଡ଼ ବନ୍ଧୁ ଆଉ କେହି ହୋଇପାରନ୍ତି ନାହିଁ ।

ବିଦାୟ ଭାରତର ସେବା ଲାଗି ତୁ ଜଣେ ସାହସୀ ସୈନିକା ହୁଅ ।
ମୋର ସ୍ନେହ ଓ କଲ୍ୟାଣ ନେବୁ ।

## ୧ । ନୂଆବର୍ଷର ଦାନ

ଜାନୁଆରୀ ପହିଲା, ୧୯୩୧

ଆଜକୁ ପ୍ରାୟ ଦୁଇବର୍ଷରୁ ବେଶୀ ହେବ ମୁଁ ତୋତେ ଯେଉଁସବୁ ଚିଠି ଲେଖିଥିଲି, ତୋର ତା ମନେ ଅଛି ତ ? ସେତେବେଳେ ତୁ ମସୋରୀରେ ଥିଲୁ, ମୁଁ ଏଲାହାବାଦରେ ଥିଲି । ତୋତେ ସେ ଚିଠିଗୁଡ଼ିକ ଭଲ ଲାଗୁଥିଲା ବୋଲି ତୁ ମୋତେ ସେତେବେଳେ କହିଥିଲୁ । ସେହି ଚିଠିଲେଖା ପୁଣିଥରେ ଆରମ୍ଭ କରି ଆମର ଏ ପୃଥିବୀ ସମ୍ବନ୍ଧରେ ତୋତେ ଆଉ କିଛି କହିବା ଲାଗି ମୁଁ ଅନେକ ସମୟରେ ଭାବେ । କିନ୍ତୁ ମୁଁ ତାହା କରିବା ପାଇଁ ପଛୁଇଛି । ପୃଥିବୀର ପୁରୁଣା ଇତିହାସ ଓ ସେଥିରେ ବଡ ବଡ଼ ଲୋକଙ୍କ ସମ୍ବନ୍ଧରେ ଓ ଅନେକ ମହତ୍ ଘଟଣାର ଯେ ଉଲ୍ଲେଖ ରହିଛି, ତାହା ଚିନ୍ତାକଲେ ବଡ଼ ଆନନ୍ଦ ମିଳେ । ଇତିହାସ ପଢ଼ିବା ଖୁବ୍ ଭଲ; ପୁଣି ଇତିହାସ ଗଢ଼ିବାରେ ସାହାଯ୍ୟ କରିବା ଆହୁରି ଆନନ୍ଦଦାୟକ ଓ ମନମୁଗ୍ଧକର । ତୁ ଜାଣୁ, ଆଜି ଆମ ଦେଶରେ ଇତିହାସ ତିଆରି ହେଉଛି । ଭାରତର ଅତୀତ ଖୁବ୍ ଅନେକ ଦିନର ପୁରୁଣା ଏବଂ ପୁରାତନର ଛାୟାରେ ଏହା ଲୁଚିଯାଇଛି । ଏହାର ଅନେକ ଦୁଃଖଦାୟକ ଅପ୍ରିୟ ଓ ନିରାନନ୍ଦ ସମୟ ବି ରହିଛି । ତାହା ପଢ଼ି ଆମେ ଲଜ୍ଜିତ ହେଉ, କଷ୍ଟ ବୋଧକରୁ । କିନ୍ତୁ ମୋଟାମୋଟି ଆମର ଅତୀତ କାହାଣୀ ଖୁବ୍ ଉଜ୍ଜ୍ୱଳମୟ—ଏଥିଲାଗି ଆମେ ଗର୍ବ ଓ ଆନନ୍ଦ ଅନୁଭବ କରୁ । ମାତ୍ର ଆଜି ଅତୀତର ବିଷୟ ଭାବିବା ଲାଗି ଆମର ଅବସର କାହିଁ ? ଭବିଷ୍ୟତ୍ ଲାଗି ଆମ ମନ ବ୍ୟଗ୍ର—ଆମେ ସେ ଭବିଷ୍ୟତ୍ ଗଢ଼ୁଛେ, ଯାହା ବର୍ତ୍ତମାନ ଆମର ସମସ୍ତ ସମୟ ଓ ଶକ୍ତି ନେଇଯାଉଛି ।

ନଇନୀ ଜେଲ୍‌ରେ ଇଚ୍ଛାନୁସାରେ ପଢ଼ିବା କିମ୍ବା ଲେଖିବା ପାଇଁ ମୋର ଯଥେଷ୍ଟ ସମୟ ଅଛି । କିନ୍ତୁ ମୋ ମନ ବାହାରେ ଘୂରୁଛି ଏବଂ ବାହାରେ ଯେଉଁ ବିରାଟ ସଂଗ୍ରାମ ଚାଲିଛି, ଅନ୍ୟମାନେ ସେଥିରେ କ'ଣ କରୁଛନ୍ତି ଓ ମୁଁ ତାଙ୍କ ସାଙ୍ଗରେ ଥିଲେ କ'ଣ କରୁଥାନ୍ତି, ଏହିସବୁ କଥା ମୁଁ ଭାବୁଛି । ମୋର ମନ ବର୍ତ୍ତମାନ

ଓ ଭବିଷ୍ୟତ କାହାଣିରେ ଭରି ହୋଇଛି—ଅତୀତ କଥା ଭାବିବାକୁ ଫୁର୍‌ସତ୍‌ ନାହିଁ; ତଥାପି ମୁଁ ବୁଝୁଛି ଏହା ଅନୁଚିତ । ମୁଁ ଯେତେବେଳେ ବାହାର କାର୍ଯ୍ୟରେ ନିଜକୁ ଲଗାଇ ପାରୁ ନାହିଁ, ସେତେବେଳେ ସେ ବିଷୟରେ ଏତେ ବ୍ୟସ୍ତ ହେବି କାହିଁକି ?

କିନ୍ତୁ ପ୍ରକୃତରେ ମୁଁ କାହିଁକି ଚିଠିଲେଖାରେ ଏତେ ଡେରି କଲି, ତୋତେ କହିବି କି ? ମୋର ସନ୍ଦେହ ହେଉଛି ଯେ ତୋତେ ଶିକ୍ଷାଦେବା ଭଳି ଯଥେଷ୍ଟ ଜ୍ଞାନ ମୋର ନାହିଁ । ତୁ ଏବେ ଜଲ୍‌ଦି ବଡ଼ ହେଉଛୁ ଓ ଏପରି ଗୋଟିଏ ଶ୍ରେଷ୍ଠ ଜ୍ଞାନୀ ଲୋକ ରୂପେ ବଢ଼ିଉଠୁଛୁ ଯେ ମୁଁ ସ୍କୁଲ କଲେଜରେ ଏବଂ ତାହାପରେ ଯାହା ଶିଖିଥିଲି, ତାହା ତୋ ପକ୍ଷେ ଯଥେଷ୍ଟ ହୋଇ ନ ପାରେ ଏବଂ ଅତି ପୁରୁଣା କଥା ପରି ତୋତେ ଲାଗିପାରେ । ହୁଏତ କେତେ ଦିନ ପରେ ଏମିତି ଘଟିପାରେ ଯେ ତୁ ଶିକ୍ଷକ ହୋଇ ମୋତେ ଅନେକ ନୂଆ କଥା ଶିଖାଇବୁ । ତୋର ଜନ୍ମଦିନରେ ମୁଁ ଯେଉଁ ଚିଠି ଲେଖିଥିଲି ସେଥିରେ ଅଧିକ ଜ୍ଞାନ ଯୋଗୁଁ ପେଟ ଫାଟିପଡ଼ିବା ଭୟରେ ତମ୍ବାପଟି ପିନ୍ଧୁଥିବା ଅତି ଜ୍ଞାନୀ ଲୋକ କଥା ଲେଖିଛି । ମୁଁ ତ ସେଥିରେ ଲେଖିଥିଲି, ମୁଁ ଆଦୌ ସେପରି ନୁହେଁ ।

ତୁ ମସୋରୀରେ ଥିବାବେଳେ ପୃଥିବୀର ପ୍ରାରମ୍ଭକାଳ ସମ୍ବନ୍ଧରେ ଲେଖିବା ମୋ ପକ୍ଷରେ ସହଜ ଥିଲା । କାରଣ ସେକାଳ ସମ୍ବନ୍ଧରେ ଆମର ଯାହା ବା ଜ୍ଞାନ ଅଛି, ତାହା ଅତ୍ୟନ୍ତ ଅନିର୍ଦ୍ଦିଷ୍ଟ ଓ ଅସ୍ପଷ୍ଟ । କିନ୍ତୁ ସେହି ଅତି ପୁରାତନ କାଳ ପରେ ଇତିହାସ ଆସ୍ତେ ଆସ୍ତେ ଆରମ୍ଭ ହୋଇଛି ଏବଂ ପୃଥିବୀର ନାନା କାର୍ଯ୍ୟରେ ମନୁଷ୍ୟ ତାର ଅଦ୍ଭୁତ ଭାଗ ନେଇଛି । ମଣିଷ ଏହି ଜୀବନରେ କେତେବେଳେ ବୁଦ୍ଧିମାନ୍‌ର ପରିଚୟ ଦେଇଛି, କେତେବେଳେ ବା ବଳିପାଗଳ ବା ବୋକା ପରି କାର୍ଯ୍ୟ କରିଛି । ମନୁଷ୍ୟର ଏହି ଅଦ୍ଭୁତ କର୍ମକୁ ଅନୁସରଣ କରିବା କିଛି ସହଜ କଥା ନୁହେଁ । ବହି ସାହାଯ୍ୟରେ ଏ ସମ୍ପର୍କରେ କେହି ଅବା ଉଦ୍ୟମ କରିପାରେ; କିନ୍ତୁ ନଇନୀ ଜେଲ୍‌ରେ ପୁସ୍ତକାଗାର ବା ଲାଇବ୍ରେରୀ ନାହିଁ । ତେଣୁ ପୃଥିବୀର ଗୋଟିଏ ଧାରାବାହିକ ଇତିହାସ ତୋ ପାଖକୁ ଲେଖିବାକୁ ମୋର ଖୁବ୍‌ ଇଚ୍ଛା ଥିଲେ ସୁଦ୍ଧା ମୋ ପକ୍ଷରେ ତାହା ଲେଖିବା ସମ୍ଭବ ନୁହେଁ ବୋଲି ମୁଁ ବୋଧକରୁଛି ।

ପିଲାମାନେ କେବଳ ଗୋଟିଏ ଦେଶର ଇତିହାସ ପଢ଼ିବାଟା ମୁଁ ପସନ୍ଦ କରେ ନାହିଁ—ତା ପୁଣି ସେମାନେ କେତେକ ତାରିଖ ଓ ଘଟଣା ମୁଖସ୍ଥ କରି ଶିଖି-ଥାନ୍ତି । ଇତିହାସ ଏକ ଧାରାବାହିକ ସମଷ୍ଟି ଏବଂ ପୃଥିବୀର ଅନ୍ୟ ଦେଶମାନଙ୍କରେ

ଯାହାସବୁ ଘଟିଛି, ତାହା ନ ଜାଣିଲେ ତୁ ଗୋଟିଏ ଦେଶର ସୁଦ୍ଧା ଇତିହାସ ବୁଝିପାରିବୁ ନାହିଁ । ମୁଁ ଆଶାକରେ, ତୁ ଏମିତି କେବଳ ଗୋଟିଏ ବା ଦୁଇଟି ଦେଶର ଇତିହାସ ଜାଣିବା ଲାଗି ଇତିହାସକୁ ସୀମାବଦ୍ଧ ଭାବରେ ଶିଖିବାକୁ ଇଚ୍ଛା କରିବୁ ନାହିଁ; ତୁ ସମଗ୍ର ପୃଥିବୀ ଆଡ଼କୁ ନଜର ପକାଇବୁ । ଏକଥା ମନେ ରଖିଥା ଯେ, ଆମେ ସାଧାରଣତଃ ଯେମିତି ଭାବିଥାଉଁ, ପ୍ରକୃତରେ ବିଭିନ୍ନ ଦେଶ ଲୋକଙ୍କ ଭିତରେ ସେପରି କିଛି ପାର୍ଥକ୍ୟ ନାହିଁ । ମାନଚିତ୍ର ଓ ଆଟ୍ଲାସରେ ଆମେ ଦେଶଗୁଡ଼ିକୁ ଭିନ୍ନ ଭିନ୍ନ ରଙ୍ଗରେ ଦେଖୁଁ । ଏଥିରେ ସନ୍ଦେହ ନାହିଁ ଯେ ବିଭିନ୍ନ ଦେଶବାସୀଙ୍କ ମଧ୍ୟରେ ପାର୍ଥକ୍ୟ ଦେଖାଯାଏ; କିନ୍ତୁ ସେମାନଙ୍କ ଭିତରେ ଅନେକ ସାମଞ୍ଜସ୍ୟ ରହିଛି—ଏ କଥାଟି ମନେ ରଖିବା ଭଲ । ମାନଚିତ୍ରର ରଙ୍ଗ ବା ଦେଶର ସୀମାସବୁ ଦେଖି ଏକଥା ଯେପରି ଭୁଲି ନ ଯାଉ । ମୋର ଇଚ୍ଛା ମୁତାବକ ଇତିହାସ ମୁଁ ତୋତେ ଲେଖିପାରିବି ନାହିଁ । ଏଥିଲାଗି ତୋତେ ଅନ୍ୟ ବହିସବୁ ପଢ଼ିବାକୁ ହେବ । କିନ୍ତୁ ଅତୀତ ସମ୍ବନ୍ଧରେ, ସେହି ପୂର୍ବକାଳରେ ବାସ-କରୁଥିବା ଲୋକଙ୍କ ବିଷୟରେ ଓ ପୃଥିବୀମଞ୍ଚରେ ଯେଉଁମାନେ ବେଶୀ ଅଭିନୟ କରି ଯାଇଥିଲେ, ସେମାନଙ୍କ ସମ୍ବନ୍ଧରେ ମୁଁ କ୍ରମେ ତୋତେ କିଛି କିଛି ଲେଖିବି ।

ମୁଁ ଜାଣେ ନାହିଁ ମୋ ଚିଠି ପଢ଼ିବାକୁ ତୋର ଆଗ୍ରହ ଜନ୍ମିବ କି ନାହିଁ; ତୋର ବେଶୀ ଜାଣିବା ଲାଗି କୌତୂହଳ ହେବ କି ନାହିଁ । ବାସ୍ତବିକ୍ ତୁ ଏଗୁଡ଼ିକୁ କେବେ ଯାଇ ଦେଖିବୁ କି ଆଦୌ ଦେଖିପାରିବୁ ନାହିଁ, ତାହା ବି ମୁଁ ଜାଣେ ନାହିଁ । ଆମେ ଏତେ ନିକଟରେ ଥାଇ ସୁଦ୍ଧା ଏତେ ଦୂରରେ ରହିଛେ । ମସୋରୀଠାରେ ତୁ ମୋଠାରୁ କେତେ ଶହ ମାଇଲ ଦୂରରେ ଥିଲୁ । ତଥାପି ମୋର ଯେତେ ଇଚ୍ଛା ତୋତେ ଲେଖିପାରୁଥିଲି ଓ ତୋତେ ଦେଖିବା ଲାଗି ଇଚ୍ଛା ପ୍ରବଳ ହେଲେ ମାତ୍ରକେ ତୋ ପାଖକୁ ଦଉଡ଼ି ଯାଉଥିଲି । ମାତ୍ର ଏଠି ଯମୁନା ନଦୀର ଦୁଇ ପାଖରେ ଆମେ ରହିଛେ, ବେଶୀ କିଛି ଦୂର ନୁହେଁ । ତଥାପି ନଇନୀ ଜେଲର ବଡ଼ ପାଚେରି ଆମକୁ କେତେ ଦୂରରେ ରଖିଛି । ପନ୍ଦର ଦିନରେ ମୁଁ ଖଣ୍ଡେ ଚିଠି ଲେଖିପାରିବି ଓ ଖଣ୍ଡେ ପାଇପାରିବି ଏବଂ ପନ୍ଦର ଦିନରେ ଥରେ ମୋର ୨୦ ମିନିଟ୍ ପର୍ଯ୍ୟନ୍ତ ବାହାରର ଲୋକଙ୍କ ସହିତ ସାକ୍ଷାତ ହୋଇପାରିବ । ତଥାପି ଏସବୁ କଟକଣା ବି ମୋତେ ଭଲ ଲାଗେ । ଆମେ ଯାହାକୁ ଖୁବ୍ ସହଜରେ ପାଉ, ତାହାର ଆଦର ଆମ ପାଖରେ କମ୍ ଏବଂ ମୋର କ୍ରମେ ବିଶ୍ୱାସ ଜନ୍ମୁଛି ଯେ, ଲୋକର ଶିକ୍ଷା ନିମନ୍ତେ ବନ୍ଦୀ-ଜୀବନ ଏକ ଆବଶ୍ୟକୀୟ ଜିନିଷ । ସୌଭାଗ୍ୟର କଥା ଯେ ଆମ ଦେଶରେ ହଜାର ହଜାର ଲୋକ ଆଜି ଏହି ଶିକ୍ଷା ପାଉଛନ୍ତି ।

ମୁଁ ଜାଣେ ନାହିଁ, ତୁ ଏ ଚିଠିଗୁଡ଼ିକ ଦେଖିଲେ ପସନ୍ଦ କରିବୁ କି ନାହିଁ । କିନ୍ତୁ ମୋର ନିଜର ଆନନ୍ଦ ପାଇଁ ମୁଁ ଏହା ଲେଖିବା ଲାଗି ସ୍ଥିର କରିଛି । ଏହାକୁ

ଲେଖିବାଦ୍ୱାରା ତୁ ମୋର ଅତି ନିକଟରେ ଅଛୁ ବୋଲି ମୁଁ ବୋଧ କରେ; ସତେ ଯେପରି ମୋର ତୋ ସହିତ କଥାବାର୍ତ୍ତା ହେଉଛି । ମୁଁ ଅନେକ ସମୟରେ ତୋ କଥା ଭାବେ; କିନ୍ତୁ ଆଜି ତୁ ମୋ ମନରୁ ଆଦୌ ଅନ୍ତର ହୋଇ ନାହୁଁ । ଆଜି ନୂତନ ବର୍ଷର ଆରମ୍ଭ ଦିବସ । ଭୋରବେଳେ ମୁଁ ବିଛଣାରେ ପଡ଼ି ଆକାଶରେ ନକ୍ଷତ୍ରଗୁଡ଼ିକର ଗତି ଲକ୍ଷ୍ୟ କରୁଥିବାବେଳେ ଗତ ହେଉଥିବା ବର୍ଷରେ ଯେତେ ଆଶା, ଆନନ୍ଦ, ନିରାନନ୍ଦ ଜାଗ୍ରତ ହୋଇଛି ଏବଂ ଯେତେ ମହତ୍ ଓ ସାହସିକ କାର୍ଯ୍ୟ ସମ୍ପନ୍ନ ହୋଇଛି, ସେ ସମ୍ବନ୍ଧରେ ଚିନ୍ତା କରୁଥିଲି । ସ୍ୱେରବାଦୀ ଜେଲ୍ ଭିତରେ ବସି ନିଜର ଅଭୂତ ସ୍ପର୍ଶରେ ଆମର ପୁରୁଣା ଦେଶକୁ ଏପରି ଜୀବନ୍ତ ଓ ତେଜସ୍ୱୀନ କରିଥିବା ବାପୁଜୀଙ୍କ କଥା ଭାବୁଥିଲି । ଦାଦୁ * ଓ ଅନ୍ୟ ଅନେକଙ୍କ କଥା ବି ମନରେ ଖେଳିଗଲା । ବିଶେଷରେ ମମୀ † ଓ ତୋ କଥା ମୁଁ ଭାବୁଥିଲି । ପରେ ଖବର ପାଇଲି ଯେ ମମୀ ଧରାହୋଇ ଜେଲ୍ ଯାଇଛି । ଏହା ମୋ ପକ୍ଷରେ ଏକ ନୂତନ ବର୍ଷର ଗୋଟିଏ ଆନନ୍ଦଦାୟକ ଦାନ । ଅନେକ ଦିନରୁ ଏହା ଆଶା କରାଯାଉଥିଲା ଏବଂ ମମୀ ଯେ ଖୁବ୍ ଖୁସି ଓ ସନ୍ତୋଷ ଲାଭ କରିଥିବ ଏଥିରେ ମୋର ସନ୍ଦେହ ନାହିଁ ।

କିନ୍ତୁ ତୁ ଏକୁଟିଆ ହୋଇଗଲୁ । ପନ୍ଦର ଦିନରେ ଥରେ ତୁ ମୋତେ ଦେଖିବୁ, ଆଉ ପନ୍ଦର ଦିନରେ ମମୀ ସହିତ ସାକ୍ଷାତ କରିବୁ ଏବଂ ଆମଠାରୁ ପରସ୍ପର ଲାଗି ସମ୍ବାଦ ନିଅଆଣ କରିବୁ । ମୁଁ କାଗଜ କଲମ ଧରି ତୋ କଥା ଭାବୁଥିଲି, ତୁ କେତେବେଳେ ଚୁପ କରି ମୋ ପାଖକୁ ଆସିବୁ; ଆମେ ଅନେକ ବିଷୟରେ କଥାବାର୍ତ୍ତା ହେବା । ଆମେ ଅତୀତର ସ୍ୱପ୍ନ ଦେଖିବା ଏବଂ ଭବିଷ୍ୟତକୁ ଅତୀତ ଅପେକ୍ଷା କିପରି ଆହୁରି ମହତ୍ କରିପାରିବା, ସେ ଉପାୟ ପାଞ୍ଚିବା । ତେଣୁ ଆଜି ନୂତନ ବର୍ଷର ପ୍ରଥମ ଦିବସରେ ଆମେ ପଣ କରିବା ଯେ ଏହି ବର୍ଷ ଶେଷ ହୋଇ ପୁରୁଣା ହେଲାବେଳକୁ ଆମେ ଆମର ଭବିଷ୍ୟତ ଜ୍ୱଳନ୍ତ ସ୍ୱପ୍ନକୁ ବର୍ତ୍ତମାନର ନିକଟତର କରିପାରିଥିବା ଏବଂ ଭାରତର ଅତୀତ ଇତିହାସରେ ଗୋଟିଏ ଉଜ୍ଜ୍ୱଳ ଅଧ୍ୟାୟ ଲେଖି ଦେଇଥିବା ।

---

* ଦାଦୁ—ଇନ୍ଦିରାର ପିତାମହ ପଣ୍ଡିତ ମୋତିଲାଲ ନେହେରୁ ।

† ମମୀ—ଇନ୍ଦିରାର ମାଆ କମଳା ନେହେରୁ ।

# ୨ । ଇତିହାସରୁ ଶିକ୍ଷା

୫ ଜାନୁୟାରୀ, ୧୯୩୧

ମୁଁ ତୋତେ କଅଣ ଲେଖିବି ? କେଉଁଠାରୁ ଆରମ୍ଭ କରିବି ? ଅତୀତର କଥା ଭାବିଲାବେଳକୁ ମୋ ମନ ଆଗରେ ଅସଂଖ୍ୟ ଚିତ୍ର ନାଚିଯାଉଛି । କେତେକ ଚିତ୍ରର ଛାୟା ମୋ ମନରେ ଅନେକ ସମୟ ପର୍ଯ୍ୟନ୍ତ ରହେ । ସେଗୁଡ଼ିକ ମୋର ପ୍ରିୟବସ୍ତୁ ଏବଂ ସେ ସମ୍ବନ୍ଧରେ ମୁଁ ଚିନ୍ତା କରିବାକୁ ଆରମ୍ଭ କରେ । ବର୍ତ୍ତମାନର ଘଟଣା ସହିତ ମୁଁ ଅତୀତର ଘଟଣାଗୁଡ଼ିକୁ ପ୍ରାୟ ଅଜାଣତରେ ତୁଳନା କରେ ଓ ମୋର ନିଜ ଜାଣିବା ନିମନ୍ତେ ସେଥିରୁ ଉପଦେଶ ବାହାର କରିବାକୁ ଚେଷ୍ଟା କରେ । କିନ୍ତୁ ମନୁଷ୍ୟର ମନଟା କି ବିଚିତ୍ର ! ଅଧଜଡ଼ା ହୋଇ ରହିଥିବା ଛବି ପରି ଏହା କୌଣସି ସମ୍ବନ୍ଧହୀନ ଚିନ୍ତା ଓ ବିଶୃଙ୍ଖଳ ଭାବରେ ରଖାହୋଇଥିବା ପ୍ରତିଛବିରେ ଭରି । ଏଥିଲାଗି ପୂରା ଦୋଷ ଆମର ନୁହେ । ବୋଧହୁଏ ଆମ ଭିତରୁ ଅନେକେ ଘଟଣାବଳୀକୁ ଆହୁରି ଶୃଙ୍ଖଳିତ ଭାବରେ ଆମ ଆଗରେ ରଖିପାରିଥାନ୍ତେ । କିନ୍ତୁ ଘଟଣାସବୁ ଅଦ୍ଭୁତ ପ୍ରକାରେ ଘଟେ ଓ କୌଣସି ଯୋଜନାନୁଯାୟୀ ଏହାକୁ ଖାପ ଖୁଆଇବା କଷ୍ଟକର ହୁଏ ।

ମୋର ମନେଅଛି, ପୃଥିବୀ କ୍ରମେ କ୍ରମେ ଅଥଚ ନିଶ୍ଚିତ ଭାବରେ କିପରି ଉନ୍ନତ କରିଛି । ଆଗେ ଥିବା ସରଳ ଜୀବ ବଦଳରେ କିପରି ଉନ୍ନତ ପଶୁ ଜାତ ହେଲେ ଏବଂ ଶେଷକୁ କିପରି ଜୀବମାନଙ୍କ ମଧ୍ୟରେ ସବୁଠାରୁ ବଡ଼ ମଣିଷ ଆସିଲା ଏବଂ ତାର ବିଚକ୍ଷଣତା ବଳରେ ମଣିଷ କିପରି ଅନ୍ୟମାନଙ୍କ ଉପରେ ଜୟଲାଭ କଲା, ଇତିହାସ ପଢ଼ିଲେ ଆମେ ଜାଣିପାରିବା ବୋଲି ମୁଁ ତୋତେ ଥରେ ଲେଖିଥିଲି । ବର୍ବରତାରୁ ସଭ୍ୟତା ଆଡ଼କୁ ମନୁଷ୍ୟର ପ୍ରଗତି ବିଷୟରେ ହିଁ ଇତିହାସ ପୂର୍ଣ୍ଣ ହୋଇଛି । କିପରି ସହଯୋଗ ଓ ଏକସଙ୍ଗରେ କାର୍ଯ୍ୟ କରିବାର ଧାରଣା ଜାତ ହେଲା ଏବଂ ସାଧାରଣଙ୍କ ମଙ୍ଗଳ ନିମନ୍ତେ ଏକତ୍ର କାର୍ଯ୍ୟ କରିବା ଆମର ଆଦର୍ଶ ହେବା ଉଚିତ, ଏହା ମୁଁ ମୋର କେତେକ ଚିଠିରେ ତୋତେ ଦେଖାଇବା ଲାଗି ଚେଷ୍ଟା କରିଛି । କିନ୍ତୁ ବେଳେ ବେଳେ ଇତିହାସର ବ୍ୟାପକତା ପ୍ରତି ଦୃଷ୍ଟିପାତ କଲେ ଏହି ଆଦର୍ଶରେ ପହଞ୍ଚିବା ଲାଗି ଆମେ ଯେ ବେଶୀଦୂର ଅଗ୍ରସର ହୋଇଛେ କିମ୍ବା ଆମେ ଖୁବ୍ ସଭ୍ୟ ବା ଉନ୍ନତ ହୋଇଛେ, ଏହା ବିଶ୍ୱାସ କରିବା କଷ୍ଟକର ମନେହୁଏ । ବର୍ତ୍ତମାନ ସହଯୋଗର ଅଭାବ ଯଥେଷ୍ଟ ଦେଖାଯାଉଛି, ଗୋଟିଏ ଦେଶ ବା ଦେଶର ଲୋକେ ଅନ୍ୟ ଦେଶ ଉପରେ ସ୍ୱାର୍ଥପର ଭାବରେ ଆକ୍ରମଣ କରୁଛନ୍ତି, ଜଣେ ଅନ୍ୟଜଣକୁ ଶୋଷଣ କରୁଛି । ଯଦି ଲକ୍ଷ ଲକ୍ଷ ବର୍ଷର ପ୍ରଗତି ପରେ ଆମେ ଏତେ ଅସଂପୂର୍ଣ୍ଣ ରହିଥାଉଁ ଏବଂ ପଛରେ ପଡ଼ିଥାଉଁ, ତେବେ

ସଚେତନ ଓ ବିଶ୍ୱରବିଳ୍ପ ମନୁଷ୍ୟ ଯୋଗ୍ୟ ବ୍ୟବହାର ଶିଖିବା ପାଇଁ ଆମକୁ ଆଉ କେତେ ଦିନ ଲାଗିବ ? ସମସ୍ତ ସମୟରେ ପୁରାତନ ଇତିହାସ ଆମର ଇତିହାସ ଅପେକ୍ଷା ଅଧିକ ଉନ୍ନତ, ଶିକ୍ଷିତ ପରି ମନେ ହୁଏ ଏବଂ ଏହା ଦେଖିଲେ ଆମ ଦୁନିଆ ବାସ୍ତବିକ୍ ଆଗକୁ ଯାଉଛି କି ପଛୁଉଛି, ଏଥିରେ ସନ୍ଦେହ ଜନ୍ମେ । ଆମ ନିଜ ଦେଶର ଅତୀତ ଇତିହାସ ଉଜ୍ଜ୍ୱଳ ଘଟଣାପୂର୍ଣ୍ଣ ଓ ବର୍ତ୍ତମାନ ଅପେକ୍ଷା ସବୁପ୍ରକାରେ ଯଥେଷ୍ଟ ଭଲ ।

ଏକଥା ସତ ଯେ ଭାରତବର୍ଷ, ଇଜିପ୍ଟ, ଚୀନ୍, ଗ୍ରୀସ୍ ଓ ଅନ୍ୟ ଅନେକ ଦେଶର ଅତୀତ ଇତିହାସକାହାଣୀ ଉଜ୍ଜ୍ୱଳମୟ ଏବଂ ଏଥିରୁ ଅନେକ ଦେଶ ଉଠିଛି ଏବଂ କେତେକ ପଡ଼ିଯାଇଛି । ଏଥିଲାଗି ଆମର ନିରୁତ୍ସାହିତ ହେବାର କୌଣସି କାରଣ ନାହିଁ । ପୃଥିବୀ ଅତି ବିଶାଳ ଏବଂ କୌଣସି ଗୋଟିଏ ଦେଶର କେତେକ ସମୟ ଲାଗି ଉନ୍ନତି ଓ ଅବନତିରେ ମୋଟାମୋଟି ଏତେ ବଡ଼ ଦୁନିଆରେ କିଛି ପାର୍ଥକ୍ୟ ଘଟି ନ ପାରେ ।

ଆଜିକାଲି ଅନେକ ଲୋକ ଆମର ମହାନ୍ ସଭ୍ୟତା ଓ ବିଜ୍ଞାନର ଅଦ୍ଭୁତ ଆବିଷ୍କାର ଆଦି କଥା କହି ବାହାଦୁରି ଦେଖାଇ ହୁଅନ୍ତି । ବିଜ୍ଞାନ ବାସ୍ତବିକ ହିଁ ଅଦ୍ଭୁତ କାର୍ଯ୍ୟ କରିଛି ଏବଂ ବଡ ବଡ଼ ବୈଜ୍ଞାନିକମାନେ ଆମର ସମ୍ମାନଯୋଗ୍ୟ । କିନ୍ତୁ ଯେଉଁମାନେ ବାହାଦୁରି ଦେଖାନ୍ତି, ସେମାନେ ଯେ ବଡ଼ ତାହା ନୁହେଁ । ଏକଥା ମଧ୍ୟ ସ୍ମରଣ ରଖିବା ଉଚିତ୍ ଯେ ଅନେକ ବିଷୟରେ ମଣିଷ ଅନ୍ୟ ଜୀବମାନଙ୍କ ଅପେକ୍ଷା ବିଶେଷ କିଛି ଉନ୍ନତ କରି ନାହିଁ । କେତେକ ବିଷୟରେ କେତେକ ଜୀବ ମଣିଷ ଅପେକ୍ଷା ବର୍ତ୍ତମାନ ସୁଦ୍ଧା ଶ୍ରେଷ୍ଠ ହୋଇ ରହିଛନ୍ତି । ଏହାକୁ କେହି ନିର୍ବୋଧ କଥା ବୋଲି କହିପାରନ୍ତି ଏବଂ ଜାଣି ନଥିବା ଲୋକେ ହସରେ ଉଡ଼ାଇ ଦେଇପାରନ୍ତି । ତୁ କିଛିଦିନ ତଳେ ମିଟରଲିଙ୍କଙ୍କ "ମହୁମାଛି, ଉଇ ଓ ପିମ୍ପୁଡ଼ିର ଜୀବନ" ସମ୍ବନ୍ଧରେ ବହି ପଢ଼ିଛୁ ଏବଂ ଏହି କୀଟମାନଙ୍କର ସାମାଜିକ ସଂଗଠନ ବିଷୟ ପଢ଼ି ତୁ ତାଟକା ହୋଇଥିବୁ । ଏହି କୀଟଗୁଡ଼ିକୁ ଆମେ ଜୀବଜଗତର ସବୁଠାରୁ ଶ୍ରେଷ୍ଠ ରୂପେ ଗଣୁ, ଅଥଚ ଏହି ଶ୍ରେଷ୍ଠ ଜୀବଗୁଡ଼ିକ ମନୁଷ୍ୟ ଅପେକ୍ଷା ଭଲଭାବରେ ସାଧାରଣ ମଙ୍ଗଳ ନିମନ୍ତେ ସହଯୋଗ କରିବା ଓ ତ୍ୟାଗ କରିବାର ମହତ୍ତ୍ୱ ଶିଖିଛନ୍ତି । ଉଇ ତାର ସାଥିମାନଙ୍କ ପାଇଁ ଯେ ତ୍ୟାଗ କରେ, ତାହା ପଢ଼ିଲାଦିନୁ ମୋର ତା ପ୍ରତି ଗୋଟାଏ ମମତା ହୋଇଯାଇଛି । ଯଦି ସମାଜର ମଙ୍ଗଳ ନିମନ୍ତେ ପରସ୍ପର ସହଯୋଗ ଓ ତ୍ୟାଗ ହିଁ ସଭ୍ୟତାର ମାପକାଠି ହୁଏ, ତେବେ ଉଇ ଓ ପିମ୍ପୁଡ଼ି ମନୁଷ୍ୟ ଠାରୁ ଏ ଦୃଷ୍ଟିରୁ ଉନ୍ନତ ବୋଲି ଆମେ କହିପାରୁଁ ।

ଆମ ପୁରୁଣା ସଂସ୍କୃତ ବହିରେ ଗୋଟିଏ ଶ୍ଳୋକ ଅଛି, ଯାହାର ଅର୍ଥ ହେଉଛି— "ପରିବାର ଲାଗି ବ୍ୟକ୍ତିକୁ ତ୍ୟାଗ କର, ସମ୍ପ୍ରଦାୟ ଲାଗି ପରିବାର ତ୍ୟାଗ କର, ଦେଶଲାଗି

ସଂପ୍ରଦାୟ ତ୍ୟାଗ କର ଏବଂ ଆତ୍ମା ଲାଗି ସାରା ଦୁନିଆକୁ ତ୍ୟାଗ କର ।"* ଆତ୍ମା କ'ଣ ଜିନିଷ, ତାହା ଆମ ଭିତରୁ ପ୍ରାୟ କେହି ଜାଣନ୍ତି ନାହିଁ କି କହିପାରିବେ ନାହିଁ ଏବଂ ପ୍ରତ୍ୟେକେ ଏହାର ଭିନ୍ନ ଭିନ୍ନ ଅର୍ଥ କରନ୍ତି । କିନ୍ତୁ ଏହି ସଂସ୍କୃତ ଶ୍ଳୋକରୁ ଯେଉଁ ଉପଦେଶ ମିଳୁଛି, ତାହା ହେଉଛି—ବୃହତ୍ତର ମଙ୍ଗଳ ନିମନ୍ତେ ସହଯୋଗ ଓ ତ୍ୟାଗ । ପ୍ରକୃତ ଶ୍ରେଷ୍ଠତ୍ୱପ୍ରାପ୍ତିର ଏହି ଉତ୍କୃଷ୍ଟ ପନ୍ଥାକୁ ଆମେ ଭାରତବର୍ଷରେ ଅନେକ ଦିନ ପର୍ଯ୍ୟନ୍ତ ଭୁଲି ଯାଇଥିଲୁଁ; ତେଣୁ ଆମର ପତନ ହେଲା । ଆମେ ପୁଣି ଏହାର କିଞ୍ଚିତ ଆଭାସ ପାଇପାରୁଛୁ । ତା ଫଳରେ ସାରା ଦେଶରେ ଶୃଙ୍ଖଳା ଖେଳିଯାଇଛି । ପୁରୁଷ, ସ୍ତ୍ରୀ, ବାଳକ ଏବଂ ବାଳିକା ଭାରତ ଉଦ୍ଦେଶ୍ୟରେ କୌଣସି ଦୁଃଖଯନ୍ତ୍ରଣାକୁ ଖାତିର ନକରି ଆନନ୍ଦର ସହିତ ଅଗ୍ରସର ହେବାର ଦେଖିବା ଏକ ଆଶ୍ଚର୍ଯ୍ୟଜନକ ଘଟଣା ନୁହେଁ କି ? ଏକ ମହତ୍ ଲକ୍ଷ୍ୟ ଲାଗି ସେବା କରିବାରେ ଯେଉଁମାନେ ଆନନ୍ଦ ଲାଭ କରନ୍ତି ସେହିମାନେ ହିଁ ବାସ୍ତବିକ ସୁଖୀ ହୋଇପାରନ୍ତି ଏବଂ ଭାଗ୍ୟବାନ ଲୋକେ ତ୍ୟାଗ କରିବାରେ ହିଁ ଆନନ୍ଦ ଉପଭୋଗ କରନ୍ତି । ଆଜି ଆମେ ଭାରତକୁ ସ୍ୱାଧୀନ କରିବା ନିମନ୍ତେ ଉଦ୍ୟମ କରୁଥାଉଁ—ଏହା ଏକ ବଡ଼କଥା; କିନ୍ତୁ ଏହାପେକ୍ଷା ବଡ଼ ହେଉଛି ମାନବଜାତିର କାର୍ଯ୍ୟ । ଆମେ ଅନୁଭବ କରୁଛୁଁ ଯେ ଦୁଃଖ ଓ କଷ୍ଟ ନିବାରଣ କରିବା ନିମନ୍ତେ ସମଗ୍ର ମାନବଜାତି ଯେ ସଂଗ୍ରାମ କରୁଛି, ଆମର ସଂଗ୍ରାମ ତାହାର ଏକ ଅଂଶ । ତେଣୁ ବିଶ୍ୱର ପ୍ରଗତି ଲାଗି ଆମେ ଆମର କ୍ଷୁଦ୍ର ଶକ୍ତିରେ ସାହାଯ୍ୟ କରୁଛୁ ବୋଲି ଆନନ୍ଦ ଲଭିବାର କଥା ।

ତୁ ବର୍ତ୍ତମାନ ଆନନ୍ଦଭବନରେ † ବସିଥିବୁ, ମମୀ ମଲକା ଜେଲରେ ଏବଂ ମୁଁ ଏଠି ନଇନୀ ଜେଲରେ । ସମୟ ସମୟରେ ଆମେ ପରସ୍ପରକୁ ଭାରି ଖୋଜୁଁ । ନୁହେଁ କି ? କିନ୍ତୁ ଯେଉଁ ଦିନ ଆମ ତିନି ଜଣଙ୍କର ସାକ୍ଷାତ ହେବ, ସେ ଦିନ କଥା ଭାବିଲୁ ? ମୁଁ ସେ ଦିନକୁ ଅନାଇରହିଛି ଏବଂ ତାକୁ ଭାବିଲାବେଳକୁ ମୋ ହୃଦୟ ଆନନ୍ଦ ଓ ଉଚ୍ଛ୍ୱାସପୂର୍ଣ୍ଣ ହୋଇଉଠୁଛି ।

---

* ତ୍ୟଜେଦେକଂ କୁଲସ୍ୟାର୍ଥେ ଗ୍ରାମସ୍ୟାର୍ଥେ କୁଲଂ ତ୍ୟଜେତ୍
ଗ୍ରାମଂ ଜନପଦସ୍ୟାର୍ଥେ ଆତ୍ମାର୍ଥେ ପୃଥିବୀଂ ତ୍ୟଜେତ୍ । —ପଞ୍ଚତନ୍ତ୍ର

† ଏଲାହାବାଦରେ ପଣ୍ଡିତ ଜବାହରଲାଲଙ୍କର ରହିବା ଘର ।

# ୩ । ଇନ୍‌କିଲାବ୍ ଜିନ୍ଦାବାଦ୍

୭ ଜାନୁୟାରି, ୧୯୩୧

ପ୍ରିୟଦର୍ଶିନୀ * ଦେଖିବାକୁ ସୁନ୍ଦର, ଦେଖା ନ ଦେଲେ ଆହୁରି ସୁନ୍ଦର ବୋଧହୁଏ । ମୁଁ ଆଜି ତୋତେ ଲେଖିବା ପାଇଁ ଏଠି ବସିଥିଲି ବେଳେ ଦୂରରୁ କେତେକ ପରି ଅସ୍ପଷ୍ଟ ଧ୍ୱନି ଶୁଣାଗଲା । ଏହା କି ଶବ୍ଦ ପ୍ରଥମେ ମୁଁ ଠିକ୍ କରିପାରିଲି ନାହିଁ; କିନ୍ତୁ ସେଗୁଡ଼ିକ ଜଣାଶୁଣା ଶବ୍ଦ ପରି ମାଲୁମ୍ ହେଲା ଓ ମୋ ହୃଦୟରେ ତାର ପ୍ରତିଧ୍ୱନି ବାଜିଲା । କ୍ରମେ ତାହା ନିକଟବର୍ତ୍ତୀ ହୋଇଗଲା ଓ ବେଶୀ ଜୋରରେ ଶୁଣାଗଲା ଏବଂ ମୋର ଜାଣିବାରେ ଆଉ ଡେରି ହେଲା ନାହିଁ ଯେ ତାହା ହେଉଛି "ଇନ୍‌କିଲାବ୍ ଜିନ୍ଦାବାଦ୍" । ଗୋଟିଏ ଆହ୍ୱାନରେ କାରାଗାର କମ୍ପି ଉଠିଲା ଏବଂ ଏହା ଶୁଣି ଆମ ମନ ପ୍ରସନ୍ନ ହୋଇଗଲା । ଆମ ଜେଲ୍ ବାହାରେ ଏତେ ନିକଟରେ କିଏ ଆମର ଯୁଦ୍ଧ-ଧ୍ୱନି କରୁଥିଲେ, ସେମାନେ ସହରର ନରନାରୀ କି ଗ୍ରାମର ଗ୍ରାମୀ, ତାହା ମୁଁ ଜାଣେ ନାହିଁ । ଆଜି କେଉଁ ଉପଲକ୍ଷେ ତାହା ହେଉଥିଲା, ତାହା ବି ମୋତେ ଜଣା ନାହିଁ; ମାତ୍ର ଯେ କେହି ହୁଅନ୍ତୁ ପଛକେ, ସେମାନେ ଆମକୁ ଉତ୍‌ଫୁଲ୍ଲ କରାଇଲେ । ଆମେ ନୀରବରେ ତାଙ୍କ ଅଭିବାଦନର ଉତ୍ତର ଦେଲୁ ଏବଂ ଆମର ଶୁଭବାଞ୍ଛା ପଠାଇଲୁ ।

ଆମେ କାହିଁକି "ଇନ୍‌କିଲାବ୍ ଜିନ୍ଦାବାଦ" ଧ୍ୱନି କରୁ ? ଆମେ ବା କାହିଁକି ବିପ୍ଳବ ଓ ପରିବର୍ତ୍ତନ ଚାହୁଁ ? ଭାରତ ବର୍ତ୍ତମାନ ଏ ବିରାଟ ପରିବର୍ତ୍ତନ ଆବଶ୍ୟକ କରେ । ମାତ୍ର ଆମେ ଯେଉଁ ବିରାଟ ପରିବର୍ତ୍ତନ ଚାହୁଁଛୁ, ତାହା ଘଟିଲେ ଓ ଭାରତ ସ୍ୱାଧୀନ ହେଲେ ସୁଦ୍ଧା ଆମେ ଚୁପ୍ ହୋଇ ରହିପାରିବା ନାହିଁ । ପୃଥିବୀରେ କୌଣସି ଜୀବନ୍ତ ବସ୍ତୁର ପରିବର୍ତ୍ତନ ନ ହୋଇ ରହେ ନାହିଁ । ସାରା ପ୍ରକୃତି ହିଁ ଦିନକୁ ଦିନ ଓ ପ୍ରତି କ୍ଷଣରେ ପରିବର୍ତ୍ତିତ ହୁଏ; କେବଳ ମୃତ ହିଁ ଅପରିବର୍ତ୍ତିତ ରହେ ଓ ଜୀବଶୂନ୍ୟ ହୋଇ ପଡ଼ିଥାଏ । ତଟକା ପାଣି ବହି ଯାଉଥାଏ ଏବଂ ତାକୁ ରୋକିଦେଲେ ତାହା ସ୍ଥିର ହୋଇଯାଏ । ଜଣେ ମନୁଷ୍ୟ ବା ଗୋଟିଏ ଜାତିର ଜୀବନରେ ମଧ୍ୟ ଠିକ୍ ସେହିପରି । ଆମେ ଚାହୁଁ ବା ନ ଚାହୁଁ ଆମେ ବୁଢ଼ା ହୋଇଯାଉ । ଛୁଆ ଝିଅ ଛୋଟ ବାଳିକା ହୁଏ, ଛୋଟ ବାଳିକା ବଡ଼ ବାଳିକା ହୁଏ ଏବଂ କ୍ରମେ ଯୁବତୀ ଓ ବୃଦ୍ଧା ସ୍ତ୍ରୀ ହୁଏ । ଆମକୁ ଏଇ ପରିବର୍ତ୍ତନ ଦେଇ ଯିବାକୁ ହେବ । କିନ୍ତୁ ଏପରି ଅନେକ ଲୋକ ଅଛନ୍ତି, ଯେଉଁମାନେ ପୃଥିବୀର ଯେ ପରିବର୍ତ୍ତନ ହେଉଛି, ତାହା ସ୍ୱୀକାର କରିବାକୁ ନାରାଜ ।

---

* ଇନ୍ଦିରାଙ୍କ ଦ୍ୱିତୀୟ ନାମ ।

ସେମାନେ ତାଙ୍କ ମନକୁ ବନ୍ଦ କରି ତାଲା ପକାଇ ଦେଇଛନ୍ତି ଏବଂ କୌଣସି ନୂତନ ଭାବ ସେଥିରେ ପ୍ରବେଶ କରିବାକୁ ଦିଅନ୍ତି ନାହିଁ । ଚିନ୍ତା କରିବାର ଧାରଣା ତାଙ୍କ ମନରେ ଯେ ଭୟ ସଞ୍ଚାର କରେ, ତାହା ଅନ୍ୟ କେଉଁଠାରେ ହୁଏ ନାହିଁ । ତା ଫଳରେ କ'ଣ ହୁଏ ? ତାଙ୍କର ଏପରି ମନୋଭାବ ସତ୍ତ୍ୱେ ପୃଥିବୀ ଗତି କରିଯାଏ ଏବଂ ଏହିପରି ଲୋକମାନେ ପରିବର୍ତ୍ତନଶୀଳ ପରିସ୍ଥିତି ସହିତ ନିଜକୁ ଚଳାଇ ନ ନେଇ ପାରୁଥିବା ହେତୁ ସମସ୍ତ ସମୟରେ ଖୁବ୍ ବିରାଟ ଉଦ୍‌ଗୀରଣମାନ ହୁଏ । ପ୍ରାୟ ୧୪୦ ବର୍ଷ ପୂର୍ବେ ହୋଇଥିବା ଫରାସୀ ବିପ୍ଳବ କିମ୍ବା ୧୩ ବର୍ଷ ପୂର୍ବେ ହୋଇଥିବା ରୁଷ ବିପ୍ଳବ ପରି ବିରାଟ ବିପ୍ଳବମାନ ଘଟେ । ସେହିପରି ଆଜି ଆମେ ଆମ ନିଜ ଦେଶରେ ଏକ ବିପ୍ଳବ ମଝିରେ ରହିଛେ । ଆମେ ସ୍ୱାଧୀନତା ତ ଚାହୁଁ ଏବଂ ତାଠାରୁ ଆହୁରି ଅଧିକ କିଛି ଚାହୁଁ ମଧ୍ୟ । ଆମେ ଆଗେ ସ୍ଥିର ଜଳ ବାହାରକରି ସବୁ ସ୍ଥାନରେ ତାହା ପାଣି ପୂରାଇବାକୁ ଚାହୁଁ । ଆମକୁ ଆମ ଦେଶରୁ ସମସ୍ତ ମଇଳା, ଦାରିଦ୍ର୍ୟ ଓ ଯାତନା ପୋଛିଦେବାକୁ ହେବ । ଯେତେଦୂର ସମ୍ଭବ ଆମ ଦେଶର କେତେକ ଲୋକଙ୍କ ମନ ଉପରେ ଯେ ଶିଉଳି ବସିଛି, ଯାହା ଫଳରେ ସେମାନେ ଚିନ୍ତା କରିପାରୁ ନାହାନ୍ତି ଏବଂ ଆମ ସମ୍ମୁଖରେ ପଡ଼ିଥିବା ମହତ୍ କାର୍ଯ୍ୟରେ ସହଯୋଗ କରିପାରୁ ନାହାନ୍ତି, ସେ ଶିଉଳିକୁ ସଫା କରିଦେବାକୁ ହେବ । ଏହା ଏକ ବଡ଼ କାମ ଏବଂ ଏଥିପାଇଁ ସମୟ ଲାଗିବ । ଚାଲ, ଆମେ ଏହାକୁ ଗୋଟିଏ ଧକ୍‌କା ଦେବା—ଇନ୍‌କିଲବ୍ ଜିନ୍ଦାବାଦ୍ ।

ଆମେ ଏକ ବିରାଟ ବିପ୍ଳବ ଭିତରେ ରହିଛେ । ଭବିଷ୍ୟତ କ'ଣ ହେବ ଆମେ କହିପାରିବା ନାହିଁ । ମାତ୍ର ଆମର ବର୍ତ୍ତମାନ ହିଁ ଆମ ଶ୍ରମ ଅପେକ୍ଷା ଅଧିକ ଫଳ ଆଣି ଦେଇଛି । ଭାରତର ନାରୀମାନଙ୍କୁ ଦେଖ—ସେମାନେ ଏ ସଂଗ୍ରାମରେ କିପରି ଆଗୁଆ ହୋଇ ଚାଲିଛନ୍ତି । ଭଦ୍ର, ସାହସୀ ଏବଂ ଅକ୍ଲାନ୍ତ ଭାବରେ ସମସ୍ତଙ୍କ ସହିତ ପାଦ ପକାଇ ଚାଲିଛନ୍ତି । ଯେଉଁ ପରଦା ଆମର ସାହସୀ ଓ ସୁନ୍ଦରୀ ନାରୀମାନଙ୍କୁ ଲୁଚାଇ ରଖିଥିଲା ଏବଂ ତାଙ୍କ ପକ୍ଷରେ ଓ ଆମ ଦେଶ ପକ୍ଷରେ ଏକ ଅଭିଶାପ ଥିଲା, ତାହା ଆଜି କାହିଁ ? ଯେଉଁ ଯାଦୁଘରେ ଆମ ପୁରୁଣା ଯୁଗର ଚିହ୍ନସବୁ ରଖୁ, ସେହିଠାରେ ହିଁ ଏହା ରହିବାର ଉପଯୁକ୍ତ ସ୍ଥାନ—ସେଠାକୁ ଏହା ଏବେ ତରବରରେ ପଳାଉଛି କି ?

ଛୋଟ ଛୋଟ ପିଲା, ବାନରସେନା ଏବଂ ବାଳକ ଓ ବାଳିକା ସଭାଗୁଡ଼ିକୁ ମଧ୍ୟ ଲକ୍ଷ୍ୟ କର । ପୂର୍ବେ ଅନେକଙ୍କର ବାପ ମା ହୁଏତ ଭୀରୁ କିମ୍ବା ଦାସଭାବରେ କାର୍ଯ୍ୟ କରିଥିଲେ । କିନ୍ତୁ ଆଜି ଆମର ପିଲାମାନେ କୌଣସି ଦାସତ୍ୱ ବା ଭୀରୁତା ସହ୍ୟ କରିବେ—ଏହା କି କେବେ କାହାରି ମନରେ ଉଠିପାରେ ?

ଏହିପରି ପରିବର୍ତ୍ତନ-ଚକ୍ର ଘୂରୁଛି ଓ ଯେ ତଳେ ପଡ଼ିଥିଲେ ସେ ଉପରକୁ ଉଠୁଛନ୍ତି ଏବଂ ଯେ ଉପରେ ଥିଲେ ସେ ତଳକୁ ଖସି ପଡ଼ୁଛନ୍ତି । ଆମ ଦେଶ ଗତି କରିବାର ମଧ୍ୟ ଏହା ସମୟ । ଆମ ଚକକୁ ଏଥରକ ଆମେ ଏପରି ଏକ ଧକ୍କା ଦେଉଛେ ଯେ ଏହା କେବେହେଁ ବନ୍ଦ ହେବ ନାହିଁ ।

ଇନ୍‌କଲବ୍ ଜିନ୍ଦାବାଦ୍

## ୪ । ଏସିଆ ଓ ୟୁରୋପ

୮ ଜାନୁୟାରୀ, ୧୯୩୧

ମୁଁ ମୋର ଗତ ଚିଠିରେ କହିଥିଲି ଯେ ପ୍ରତ୍ୟେକ ଜିନିଷର କ୍ରମେ ପରିବର୍ତ୍ତନ ହୁଏ । ଇତିହାସ ଏହି ବଦଳୁଥିବା ଘଟଣାସମଷ୍ଟି ଛଡ଼ା ଆଉ କ'ଣ ? ଅତୀତରେ ଯଦି ବିଶେଷ ପରିବର୍ତ୍ତନ ହୋଇ ନ ଥାନ୍ତା, ତେବେ ଇତିହାସରେ ଦେଖିଲା ଭଳି କିଛି ନ ଥାନ୍ତା ।

ସ୍କୁଲ କିମ୍ବା କଲେଜରେ ଆମେ ଯେଉଁ ଇତିହାସ ପଢ଼ୁ, ତାହା ସାଧାରଣତଃ ପ୍ରାୟ କିଛି ନୁହେଁ । ମୁଁ ଅନ୍ୟମାନଙ୍କ କଥା କହିପାରିବି ନାହିଁ । ମାତ୍ର ମୁଁ ନିଜେ ସ୍କୁଲରେ ବିଶେଷ କିଛି ଇତିହାସ ଶିକ୍ଷା କରି ନାହିଁ । ମୁଁ ଭାରତ ଓ ଇଂଲଣ୍ଡ ଇତିହାସ ସମ୍ବନ୍ଧରେ ଅତି ସାମାନ୍ୟ ଶିକ୍ଷାଲାଭ କରିଥିଲି ! ଯାହା ବା ଭାରତ ଇତିହାସ ପଢ଼ିଥିଲି, ତାହା ଏକବାରେ ଭୁଲ ଓ ବିକୃତ ଏବଂ ଆମ ଦେଶକୁ ଘୃଣାଚକ୍ଷୁରେ ଦେଖୁଥିବା ଲୋକେ ହିଁ ସେ ଇତିହାସ ଲେଖିଛନ୍ତି । ଅନ୍ୟ ଦେଶର ଇତିହାସ ସମ୍ବନ୍ଧରେ ମୋର ଖୁବ୍ ଅସ୍ପଷ୍ଟ ଜ୍ଞାନ ଥିଲା । କଲେଜ ଛାଡ଼ିବା ପରେ ହିଁ ପ୍ରକୃତ ଇତିହାସ କିଛି ମୁଁ ପଢ଼ିଲି । ସୌଭାଗ୍ୟର କଥା ଯେ ମୁଁ ଅନେକ ଥର ଜେଲ୍ ଆସିବାଦ୍ୱାରା ମୋର ଜ୍ଞାନ ବଢ଼ାଇବାର ସୁବିଧା ପାଇଲି ।

ପ୍ରଥମ କେତେକ ଚିଠିରେ ମୁଁ ତୋତେ ଭାରତର ପୁରାତନ ସଭ୍ୟତା, ଦ୍ରାବିଡ଼ ଓ ଆର୍ଯ୍ୟଙ୍କ ଆଗମନ ସମ୍ବନ୍ଧରେ ଲେଖିଛି । ଆର୍ଯ୍ୟମାନଙ୍କ ଆସିବାର ପୂର୍ବ ଅବସ୍ଥା ସମ୍ବନ୍ଧରେ ମୁଁ ବିଶେଷ କିଛି ଲେଖି ନାହିଁ, କାରଣ ମୋତେ ସେ ବିଷୟରେ ସେପରି କିଛି ଜଣା ନାହିଁ । କିନ୍ତୁ ତୁ ଜାଣି ଖୁସିହେବୁ ଯେ ଗତ କେତେ ବର୍ଷ ଭିତରେ ଭାରତର ଅତି ପୁରାତନ

ସଭ୍ୟତାର ଏକ ଚିହ୍ନ ବାହାର କରାଯାଇଛି । ଏହା ହେଉଛି ଉତ୍ତର-ପଶ୍ଚିମ ଭାରତର ମହେଞ୍ଜୋଦାରୋ ନାମକ ସ୍ଥାନର ଗୃହପାଖରେ । ପ୍ରାୟ ପାଞ୍ଚ ହଜାର ବର୍ଷ ପୂର୍ବର ଏହି କୀର୍ତ୍ତିକୁ ଲୋକେ ଖୋଳି ବାହାର କରିଛନ୍ତି ଏବଂ ପୁରାତନ ଇଜିପଟ୍ ପରି ମମି ବା ମସଲଦ୍ୱାରା ରକ୍ଷିତ ମୃତଦେହ ଆବିଷ୍କାର କରିଛନ୍ତି । ଥରେ ଚିନ୍ତା କର, ଆର୍ଯ୍ୟମାନେ ଆସିବାର ବହୁପୂର୍ବରୁ ହଜାର ହଜାର ବର୍ଷ ତଳେ ଏହା ଘଟିଥିଲା । ସେତେବେଳେ ଇଉରୋପ ନିଶ୍ଚୟ ଏକ ଅଗମ୍ୟ ରାଜ୍ୟ ଥିବ ।

ଆଜି ଇଉରୋପ ଶକ୍ତିଶାଳୀ ଓ ବଳବାନ୍ ଏବଂ ଏହାର ଲୋକେ ପୃଥିବୀରେ ସବୁଠାରୁ ସଭ୍ୟ ଓ ଶିକ୍ଷିତ ବୋଲି ନିଜକୁ ବିଚାରନ୍ତି । ସେମାନେ ଏସିଆ ଓ ଏହାର ଲୋକମାନଙ୍କୁ ଶ୍ରେଷ୍ଠ ଚକ୍ଷୁରେ ଦେଖନ୍ତି ଏବଂ ଏଠାକୁ ଆସି ଏସିଆ ଦେଶରୁ ଯାହା ପାଆନ୍ତି, ଗିଳି ପକାଉଛନ୍ତି । କାଳର କି ପରିବର୍ତ୍ତନ ! ଇଉରୋପ ଓ ଏସିଆ ପ୍ରତି ଭଲଭାବରେ ଦୃଷ୍ଟି ପକାଅ । ଆଟ୍‌ଲାସ ଖୋଲି ଦେଖିଲେ ଦେଖାଯିବ, ଏଡ଼େ ଶ୍ରେଷ୍ଠ ଇଉରୋପ ଏସିଆର ବିରାଟ ମହାଦେଶମାନଙ୍କ ସହିତ ଲାଗିରହିଛି । ମନେ ହେଉଛି, ଯେପରି କି ଏସିଆ ଦେଶ ଏପରି ବଢ଼ି ଯାଇଛି । ତୁ ଇତିହାସ ପଢ଼ିଲେ ଜାଣିପାରିବୁ ଯେ ଅନେକ କାଳ ପର୍ଯ୍ୟନ୍ତ ଏସିଆର ପ୍ରାଧାନ୍ୟ ଥିଲା । ଏସିଆରୁ ଦଳ ଦଳ ଲୋକ ଯାଇ ଇଉରୋପକୁ ଜୟ କଲେ । ସେମାନେ ଇଉରୋପରେ ଖେଦିଲେ ଏବଂ ସଭ୍ୟତା ବି ଶିଖାଇଲେ । ଆର୍ଯ୍ୟ, ସିଦିୟାନ୍, ହୁନ, ଆରବ, ମୋଗଲ ଏବଂ ତୁର୍କୀବାସୀ ଏସବୁ ଏସିଆର କୌଣସି ଏକ ସ୍ଥାନରୁ ଆସି ଏସିଆ ଓ ଇଉରୋପରେ ବିସ୍ତାର ଲାଭ କଲେ । ପଙ୍ଗପାଳ ପରି ଏସିଆରେ ଏମାନଙ୍କର ଜନ୍ମ ହୋଇଥିଲା ପରି ବୋଧ ହେଉଛି । ବାସ୍ତବିକ ଅନେକ ବର୍ଷପର୍ଯ୍ୟନ୍ତ ଇଉରୋପ ଏସିଆର ଗୋଟିଏ ଉପନିବେଶ ପରି ଥିଲା ଏବଂ ଆଧୁନିକ ଇଉରୋପର ଅନେକ ଅଧିବାସୀ ଏସିଆର ଏହି ଆକ୍ରମଣକାରୀମାନଙ୍କର ବଂଶଧର ।

ମାନଚିତ୍ରରେ ଏସିଆ ଠିକ୍ ଏକ ରାକ୍ଷସ ପରି ପଡ଼ିରହିଛି । ଇଉରୋପ ଗୋଟିଏ ଶ୍ରେଷ୍ଠ ଦେଶ । ଏଥିରୁ କେହି ବୁଝିବ ନାହିଁ ଯେ ଏସିଆର ବୃହତ୍ ଆକାର ଯୋଗୁଁ ତାହା ବଡ଼ ହୋଇଛି କିମ୍ବା ଇଉରୋପରେ ସେପରି କିଛି ଉଲ୍ଲେଖଯୋଗ୍ୟ ଘଟଣା ଘଟି ନାହିଁ । କୌଣସି ମଣିଷ ବା ଦେଶର ମହତ୍ତ୍ୱ ଜାଣିବାର ମାପକାଠି ଆକୃତି ନୁହେଁ । ଆମେ ଭଲରୂପେ ଜାଣୁ ଯେ ଇଉରୋପ ସବୁ ମହାଦେଶ ଭିତରେ ଶ୍ରେଷ୍ଠ ହେଲେ ସୁଦ୍ଧା ଆଜି ବଡ଼ । ଆମେ ଏକଥା ମଧ୍ୟ ଜାଣୁ ଯେ ଏହାର ଅନେକ ଦେଶର ଇତିହାସ ବଡ଼ ଉଜ୍ଜ୍ୱଳମୟ । ଏହି ଦେଶରେ ବଡ଼ ବଡ଼ ବୈଜ୍ଞାନିକ ଜାତ ହୋଇଛନ୍ତି । ସେମାନଙ୍କ ଆବିଷ୍କାର ଫଳରେ ମାନବସଭ୍ୟତା ଅତ୍ୟନ୍ତ ଉନ୍ନତ ହୋଇଛି ଓ ଲକ୍ଷ ଲକ୍ଷ ନରନାରୀଙ୍କ

ଜୀବନଯାତ୍ରା ନିର୍ବାହ ସହଜ ହୋଇପାରିଛି । ସେମାନଙ୍କ ଭିତରେ ଅନେକ ବଡ଼ ଲେଖକ, ଭାବୁକ, ଶିଳ୍ପୀ, ସଙ୍ଗୀତଜ୍ଞ ଓ କାର୍ଯ୍ୟକ୍ଷମ ଲୋକ ଜନ୍ମ ହୋଇଛନ୍ତି । ଇଉରୋପର ମହତ୍ତ୍ୱ ନ ଚିହ୍ନି ପାରିବା ହେଉଛି ମୂର୍ଖତା ।

ସେହିପରି ଏସିଆର ମହତ୍ତ୍ୱ ସ୍ୱୀକାର ନ କରିବା ମଧ୍ୟ ନିର୍ବୋଧତା । ଇଉରୋପର ଜାକଜମକ ଦେଖି ଆମେ ଅତୀତ ଭୁଲି ଯାଇପାରୁ । ଆମର ମନେ ରଖିବା ଉଚିତ୍ ଯେ ଏସିଆର ବଡ଼ ବଡ଼ ଚିନ୍ତାଶୀଳ ଲୋକେ ହିଁ ପୃଥିବୀ ଉପରେ ବହୁତ ପ୍ରଭାବ ପକାଇଛନ୍ତି; ବୋଧହୁଏ ପୃଥିବୀରେ ଅନ୍ୟ କେହି ଆଉ କୌଣସିଠାରେ ଏପରି କରିପାରି ନାହାନ୍ତି । ପ୍ରଧାନ ଧର୍ମର ସ୍ରଷ୍ଟାସବୁ ଏହି ଦେଶର । ବର୍ତ୍ତମାନ ପ୍ରଚଳିତ ଧର୍ମ ମଧ୍ୟରେ ସବୁଠାରୁ ପୁରାତନ ହିନ୍ଦୁ ଧର୍ମ ତ ଭାରତରୁ ଜାତ । ଏହାର ବଡ଼ ଭଉଣୀ ବୌଦ୍ଧଧର୍ମ ମଧ୍ୟ ସେହିପରି ଭାରତରୁ ବାହାରି ଚୀନ୍, ଜାପାନ୍, ବର୍ମା, ତିବ୍ବତ ଓ ସିଂହଳରେ ବିସ୍ତାର ଲାଭ କରିଛି । ଇହୁଦୀ ଓ ଖ୍ରୀଷ୍ଟିୟାନ୍‌ଙ୍କ ଧର୍ମ ମଧ୍ୟ ଏସିଆରୁ ଜାତ । କାରଣ ଏହା ଏସିଆର ପଶ୍ଚିମରେ ପାଲେଷ୍ଟାଇନରେ ଉଦ୍ଭବ ହୋଇଥିଲା । ପାର୍ସିଙ୍କ ଧର୍ମ ଜୋରେଷ୍ଟ୍ରିୟାନିଜିମ୍ ଇରାନ୍‌ରେ ଆରମ୍ଭ ହେଲା ଏବଂ ତୁ ଜାଣୁ, ଇସଲାମ ଧର୍ମଗୁରୁ ମହମ୍ମଦ ଆରବ ଦେଶର ମକ୍‌କାରେ ଜନ୍ମ ହୋଇଥିଲେ । କୃଷ୍ଣ, ମହମ୍ମଦ, ବୁଦ୍ଧ, ଜୋରୋଷ୍ଟାର, ଖ୍ରୀଷ୍ଟ ଓ ଚୀନର ବିଖ୍ୟାତ ଦାର୍ଶନିକ କନ୍‌ଫୁସିୟସ୍ ଏବଂ ଲାଓଜି ଏହିପରି ଏସିଆର ବଡ଼ ବଡ଼ ଚିନ୍ତାଶୀଳ ଲୋକଙ୍କ ନାମରେ ଇତିହାସର ପୃଷ୍ଠା ଭର୍ତ୍ତି କରି ଦିଆଯାଇପାରେ । ଏସିଆର ବଡ଼ କର୍ମୀମାନଙ୍କ ନାମ ମଧ୍ୟ ସେହିପରି ଲେଖାଯାଇପାରେ ଏବଂ ଅତୀତକାଳରେ ଆମର ଏହି ପୁରୁଣା ମହାଦେଶ କିପରି ଜୀବନ୍ତ ଓ ମହତ୍ ଥିଲା, ତାହା ମୁଁ ଆହୁରି ଅନେକ ବାଟରେ ତୋତେ ଦେଖାଇପାରିବି ।

କାଳ କିପରି ବଦଳିଯାଇଛି ! ଆଜି ଆମ ଆଖି ଆଗରେ ସେହିପରି ସବୁ ବଦଳୁଛି । ସାଧାରଣତଃ ଆସ୍ତେ ଆସ୍ତେ ଶତ ଶତ ବର୍ଷ ଧରି ଇତିହାସ ଗଢି କରେ— ଅବଶ୍ୟ ହଠାତ୍ ବେଳେ ବେଳେ କ୍ଷିପ୍ର ବେଗରେ ଗଢ଼ି କରିଛି । ଯାହାହେଉ ବର୍ତ୍ତମାନ ଏସିଆର ଇତିହାସ ଦ୍ରୁତ ଗତି କରୁଛି ଏବଂ ଅନେକ ଦିନ ପଡ଼ିରହିଲା ପରେ ଆଜି ଏହି ପୁରୁଣା ଦେଶ ଜାଗ୍ରତ ହେଉଛି । ଆଜି ସମଗ୍ର ଦୁନିଆର ଆଖି ତା ଉପରେ; କାରଣ ପ୍ରତ୍ୟେକେ ଜାଣନ୍ତି ଯେ ଭବିଷ୍ୟତରେ ଏସିଆ ହିଁ ବଡ଼ ଅଂଶ ନେବ ।

## ୫ । ପୁରାତନ ସଭ୍ୟତା ଓ ଆମର ପୂର୍ବପୁରୁଷ

୯ ଜାନୁଆରୀ, ୧୯୩୧

ଆମର ଏଠାକୁ ହିନ୍ଦି ଖବରକାଗଜ 'ଭାରତ' ସପ୍ତାହରେ ଦୁଇ ଥର ଆସେ ଓ ତାହାର ସମ୍ବାଦ କିଛି ଆଣେ । କାଲି ସେଥିରେ ମୁଁ ପଢ଼ିଲି ଯେ ମଲକା ଜେଲ୍‌ରେ ମମୀ ପ୍ରତି ଭଲ ବ୍ୟବହାର କରାଯାଉ ନାହିଁ ଓ ତାଙ୍କୁ ଶୀଘ୍ର ଲକ୍ଷ୍ନୌ ଜେଲ୍‌କୁ ପଠାଇ ଦିଆଯିବ । ମୁଁ ଟିକିଏ ଅସ୍ଥିର ହେଲି ଓ ମନ ବ୍ୟସ୍ତ ହେଲା । ବୋଧହୁଏ 'ଭାରତ'ରେ ଯେଉଁ ଜନରବ ବାହାରିଛି, ସେଥିରେ କୌଣସି ସତ୍ୟତା ନାହିଁ । ମାତ୍ର ଏ ସମ୍ବନ୍ଧରେ କୌଣସି ସନ୍ଦେହ ଜାତ କରିବାକୁ ଦେବା ବି ଠିକ୍ ନୁହେଁ । ନିଜର ଅସୁବିଧା ଓ କଷ୍ଟ ସହିବା ଖୁବ୍ ସହଜ । ଏଥିରେ ପ୍ରତ୍ୟେକଙ୍କର ମଙ୍ଗଳ ହୁଏ, ନଚେତ୍ ଏହା ବ୍ୟତିରେକେ ଆମେ ସବୁ ନିହାତ ଦୁର୍ବଳ ହୋଇଯାଆନ୍ତେ । କିନ୍ତୁ ଆମର ପ୍ରିୟ ଲୋକର ଅସୁବିଧା କଥା ଭାବିଲେ ବିଶେଷତଃ ତାହା ପାଇଁ କିଛି କରି ନ ପାରୁଥିଲାବେଳେ ମନ ସହଜରେ ସ୍ଥିର ହୁଏ ନାହିଁ କିମ୍ବା ସନ୍ତୋଷ ପାଏ ନାହିଁ । ସୁତରାଂ 'ଭାରତ' ପଢ଼ି ମୋ ମନରେ ଯେଉଁ ସନ୍ଦେହ ଜାତ ହେଲା, ସେଥିରେ ମମୀ ବିଷୟରେ ଭାବି ମୁଁ ବିଚଳିତ ହେଲି । ସେ ସାହସୀ ଓ ସିଂହ ପରି ତାର ହୃଦୟ ଦମ୍ଭ; ମାତ୍ର ତାହାର ଶରୀର ବଡ଼ ଦୁର୍ବଳ ଏବଂ ଆହୁରି ଦୁର୍ବଳ ହେବାକୁ ମୁଁ ଚାହେଁ ନାହିଁ । ଆମର ହୃଦୟ ଯେତେ ଶକ୍ତ ହେଉ ପଛକେ ଯଦି ଦେହ ଦୁର୍ବଳ ହୋଇଯାଏ, ତାହାହେଲେ ଆମେ କ'ଣ କରିପାରିବା ? ଯଦି ଆମେ କୌଣସି କାର୍ଯ୍ୟ ଭଲରୂପେ କରିବାକୁ ଚାହୁଁ, ତେବେ ଆମର ସ୍ୱାସ୍ଥ୍ୟ, ଶକ୍ତି ଓ ସୁସ୍ଥ ଶରୀର ଥିବା ଦରକାର ।

ମମୀ ଲକ୍ଷ୍ନୌ ଗଲେ ବୋଧହୁଏ ଭଲ ହେବ । ସେ ଲକ୍ଷ୍ନୌରେ ଟିକିଏ ସ୍ୱଚ୍ଛନ୍ଦରେ ରହିପାରେ ଓ ସୁଖୀ ହୋଇପାରେ ଏବଂ ଲକ୍ଷ୍ନୌ ଜେଲରେ ଆଉ କେତେକ ସାଥି ମିଳିପାରନ୍ତି । ମଲକାରେ ସେ ବୋଧହୁଏ ଏକା ଅଛି । ତଥାପି ସେ ସେ ଦୂରରେ ନାହିଁ, କେବଳ ଆମ ଜେଲରୁ ଚାରି ପାଞ୍ଚ ମାଇଲ ଅନ୍ତରରେ ଅଛି, ଏହା ଜାଣି ମନରେ ଆନନ୍ଦ ହୁଏ । ଏହିପରି ଆନନ୍ଦ ପାଇବା ଗୋଟାଏ ବୋକାମି କହିଲେ ଚଳେ । ଜେଲ୍‌ଖାନାର ବଡ଼ କାନ୍ଥ ମଝିରେ ଥିଲାବେଳେ ପାଞ୍ଚ ମାଇଲ ଓ ପଚାଶ ମାଇଲ ସମାନ ।

ଦାଦୁ ଏଲାହାବାଦ ଫେରି ଆସିଛନ୍ତି ଓ ଭଲ ଅଛନ୍ତି ଜାଣି ମୁଁ ଆଜି ଭାରି ଖୁସି ହେଲି । ମଲକା ଜେଲ୍‌ରେ ମମୀଙ୍କୁ ଦେଖିବାକୁ ସେ ଯାଇଥିଲେ ଜାଣି ଆହୁରି ଆନନ୍ଦିତ ହେଲି । ବୋଧହୁଏ ଭାଗ୍ୟରେ ଥିଲେ ଆସନ୍ତା କାଲି ତୁମ ସମସ୍ତଙ୍କୁ ମୁଁ

ସାକ୍ଷାତ କରିପାରେ । କାରଣ କାଲି ମୋର ସାକ୍ଷାତ ଦିବସ ଏବଂ ଜେଲ୍‌ଖାନାରେ 'ମୁଲାକାତ୍‌ନା ଦିନ' ଗୋଟାଏ ବଡ଼ ଉତ୍ସବ ଦିବସ । ମୁଁ ପ୍ରାୟ ଦୁଇ ମାସ ହେବ ତାଙ୍କୁ ଦେଖି ନାହିଁ । ମୁଁ ଆଶା କରୁଛି, ତାଙ୍କୁ ସୁସ୍ଥ ଅବସ୍ଥାରେ ଦେଖି ସନ୍ତୋଷ ପାଇବି । ତୋ ସହିତ ମଧ୍ୟ ଦୀର୍ଘ ପନ୍ଦର ଦିନ ପରେ ସାକ୍ଷାତ ହେବ ଓ ତୁ ମୋତେ ତୋର ଓ ମମୀର ସମ୍ବାଦ ଦେବୁ ।

ବାଃରେ ! ମୁଁ ଅତୀତ ଇତିହାସ ସମ୍ବନ୍ଧରେ ତୋ ପାଖକୁ ଲେଖିବି ବୋଲି ବସିଲି; ଅଥଚ ପାଗଳ ପରି ପ୍ରଳାପ କଥାଗୁଡ଼ାକ ଲେଖୁଛି । କିଛିକ୍ଷଣ ପାଇଁ ଚାଲ ଆମେ ବନ୍ଦୀମାନଙ୍କୁ ଭୁଲିଯିବା ଓ ଦୁଇ ତିନି ହଜାର ବର୍ଷ ପୂର୍ବକୁ ଯିବା ।

ମୋର ଗତ କେତେକ ଚିଠିରେ ମୁଁ ତୋତେ ଇଜିପ୍ଟ ଓ କ୍ରିଟ୍‌ର ନୋସାସ୍ * ସମ୍ବନ୍ଧରେ କିଛି ଲେଖିଥିଲି । ଆଉ ମଧ୍ୟ ଲେଖିଥିଲି ଯେ, ଏହି ଦୁଇ ଦେଶରେ ଏବଂ ବର୍ତ୍ତମାନ କୁହାଯାଉଥିବା ଇରାକ୍ କିମ୍ବା ମେସୋପଟାମିଆ, ଚୀନ୍, ଭାରତ ଓ ଗ୍ରୀସ୍ ଦେଶମାନଙ୍କରେ ପୁରାତନ ସଭ୍ୟତା ବ୍ୟାପିଥିଲା । ଅନ୍ୟ ଦେଶଗୁଡ଼ିକ ଅପେକ୍ଷା ଗ୍ରୀସ୍‌ରେ ଟିକିଏ ବିଳମ୍ବରେ ଏହା ପ୍ରବେଶ କରିଥିଲା । ସୁତରାଂ ଇଜିପ୍ଟ, ଚୀନ୍ ଓ ଇରାକ୍ ଦେଶର ଏବଂ ଭାରତର ସଭ୍ୟତା ପ୍ରାୟ ଏକ ସମୟର । ଏପରିକି ପୁରାତନ ଗ୍ରୀସ୍ ଏମାନଙ୍କର କନିଷ୍ଠ ଭଉଣୀ । ଏହି ପୁରାତନ ସଭ୍ୟତା ଗଲା କୁଆଡ଼େ ? ନୋସାସ୍ ଆଉ ନାହିଁ । ବାସ୍ତବିକ ପ୍ରାୟ ତିନି ହଜାର ବର୍ଷ ହେଲା ଏହାର କୌଣସି ପତ୍ତା ମିଳୁନାହିଁ । ଗ୍ରୀସ୍‌ର ଲୋକେ ଆସି ଏହାକୁ ଧ୍ୱଂସ କଲେ । ଇଜିପ୍ଟର ପୁରାତନ ସଭ୍ୟତା ହଜାର ହଜାର ବର୍ଷ ରହି ଏକ ଇତିହାସ ସୃଷ୍ଟି କରିଥିଲା; ମାତ୍ର ତାହା ବି ଲୋପ ହେଲା ଏବଂ କେତେକ ବଡ଼ ପିରାମିଡ଼, ସ୍ଫିଙ୍କ୍‌ସ † ବଡ଼ ମନ୍ଦିରମାନଙ୍କର ଭଙ୍ଗା ଚିହ୍ନ, ମମି (ମୁର୍ଦ୍ଦାର) ସବୁ ଓ ସେହିପରି ଆଉ ଅନେକ ଜିନିଷ ଛଡ଼ା ତାହାର କୌଣସି ଚିହ୍ନ ନାହିଁ । ଅବଶ୍ୟ ଇଜିପ୍ଟ ଦେଶ ସେହିପରି ଅଛି; ପୁରୁଣା କାଳ ପରି ନୀଳ ନଦୀ ବି ସେ ଦେଶରେ ବହିଯାଉଛି ଏବଂ ଅନ୍ୟ ଦେଶମାନଙ୍କ ପରି ସ୍ତ୍ରୀ ପୁରୁଷ ଏଥିରେ ବାସ କରୁଛନ୍ତି । କିନ୍ତୁ ଏହି ଆଧୁନିକ ଲୋକ ଓ ତାଙ୍କ ଦେଶର ପୁରାତନ ସଭ୍ୟତା ଭିତରେ କୌଣସି ସମ୍ବନ୍ଧ ନାହିଁ ।

---

* ରାଜା ମାଇନସ୍‌ଙ୍କ ସମୟରେ ଭୂମଧ୍ୟସାଗରସ୍ଥ କ୍ରୀଟ୍ ନାମକ ଦ୍ୱୀପର ରାଜଧାନୀ ଥିଲା । ମାଟିକାମ, ସୁନାରୂପାର କାମ ଓ ହତିଆର ତିଆରି ଲାଗି ଏହା ପ୍ରସିଦ୍ଧ ଥିଲା ।

† ଗ୍ରୀସ୍‌ର କାହାଣୀ ଅନୁସାରେ ଏହା ଏକ ବଡ଼ ଦାନବୀ । ଏହାର ମୁଣ୍ଡ ସ୍ତ୍ରୀ ପରି ଓ ଶରୀର ପକ୍ଷ ଲାଗିଥିବା ସିଂହ ପରି । ଏହାର ମୂର୍ତ୍ତିସବୁ ରକ୍ଷିତ ହୋଇଛି ।

ଇରାକ ଓ ଇରାନ ! ଏଠି କେତେ ଯେ ସାମ୍ରାଜ୍ୟ ହୋଇଛି, ଠିକ୍ ନାହିଁ ଏବଂ ସବୁ ଗୋଟିକ ପରେ ଗୋଟିଏ କବର ପାଇଛନ୍ତି । କେବଳ ବେବିଲୋନିଆ, ଆସିରିଆ ଓ କେଲଡ଼ିଆନ ନାମସବୁ ରହିଛି ମାତ୍ର। ବେବିଲନ୍ ଓ ନିନେଭେ ହେଉଛି ଏହାର ବଡ଼ ସହର । ବାଇବେଲର ପୁରାତନ ନିୟମ (Old Testament) ରେ ଏହିସବୁ ଲୋକଙ୍କ କାହାଣୀ ପୂରିରହିଛି । କିଛି ଦିନ ଅତୀତ ଇତିହାସର ଏହି ଦେଶରେ ଆହୁରି କେତେକ ସାମ୍ରାଜ୍ୟ ମଧ୍ୟ ଟେକିଥିଲା; ମାତ୍ର ତାହାସବୁ ମଧ୍ୟ କ୍ରମେ ଲୁଚିଗଲା । 'ଆରବ୍ୟାନ୍ ନାଇଟ୍‌ସ'ର ଲିଖିତ ସହର ବାଗଦାଦ୍ ମଧ୍ୟ ଏହି ଦେଶରେ ଥିଲା । ସମ୍ରାଜ୍ୟସବୁ ଆସେ ଓ ଯାଏ ଏବଂ ବଡ଼ ବଡ଼ ଅଭିମାନୀ ରାଜା ଓ ସମ୍ରାଟମାନେ ପୃଥିବୀରେ କିଛିକ୍ଷଣ ପାଇଁ ବିଚରଣ କରିଯାଆନ୍ତି । କିନ୍ତୁ ସଭ୍ୟତା ଅନେକ ଦିନ ରହେ । ଯାହାହେଉ ଇଜିପ୍ଟର ପୁରାତନ ସଭ୍ୟତା ଗଲା ପରି ଇରାକ୍ ଓ ଇରାନ୍‌ର ପୁରାତନ ସଭ୍ୟତା ଲୋପ ପାଇଲା ।

ଆଗକାଳରେ ଗ୍ରୀସ୍ ବାସ୍ତବିକ ବିରାଟ ଥିଲା ଏବଂ ଲୋକେ ଆଜିସୁଦ୍ଧା ଆଶ୍ଚର୍ଯ୍ୟ ହୋଇ ସେ ଦେଶର ଗୌରବକାହାଣୀ ପଢ଼ନ୍ତି । ସେ ଦେଶର ଶଙ୍ଖମଲ୍‌ମଲ୍ ମୂର୍ତ୍ତିର ସୌନ୍ଦର୍ଯ୍ୟ ଦେଖି ଆମେ ମୁଗ୍ଧ ହେଉ । ତାର ପୁରାତନ ସାହିତ୍ୟରୁ ଯାହା ବା ଆମର ଦୃଷ୍ଟିପଥକୁ ଆସେ, ସେଥିରେ ଆମେ ବିସ୍ମିତ ହୋଇଯାଉ । ଇଉରୋପ ଗ୍ରୀକ୍‌ର ଚିନ୍ତା ଓ ଗ୍ରୀକ୍ ସାହିତ୍ୟରେ ଏପରି ପ୍ରଭାବିତ ହୋଇଛି ଯେ ଆଧୁନିକ ଇଉରୋପ ଅନେକ ପରିମାଣରେ ପୁରାତନ ଗ୍ରୀସର ସନ୍ତାନ ବୋଲି ଯାହା କୁହାଯାଏ, ତାହା ଯଥାର୍ଥ । କିନ୍ତୁ ଗ୍ରୀସର ସେ ଯଶ ଓ ଗୌରବ ଆଜି କାହିଁ ? ଅନେକ ବର୍ଷ ହେଲା ସେହି ଅତୀତ ସଭ୍ୟତା ଲୋପ ପାଇଛି ଓ ଅନ୍ୟ ସଭ୍ୟତା ତାହାର ସ୍ଥାନ ନେଇଛି ଏବଂ ଆଜି ଇଉରୋପର ଦକ୍ଷିଣ-ପୂର୍ବରେ ଗ୍ରୀସ୍ ଗୋଟିଏ କ୍ଷୁଦ୍ର ଦେଶ ହୋଇ ରହିଛି ।

ଇଜିପ୍ଟ, ନୋସାସ୍, ଇରାକ୍ ଓ ଗ୍ରୀସ୍—ଏସବୁ ଯାଇଛି । ଏଥିର ପୁରାତନ ସଭ୍ୟତା ଏପରି କି ବେବିଲନ୍ ଓ ନିନେଭେର ମଧ୍ୟ ଆଉ ଅସ୍ତିତ୍ୱ ନାହିଁ । ଏହି ଅତୀତ ସଭ୍ୟତା ସଙ୍ଗରେ ଆଉ ଯେଉଁ ଦୁଇଟି ସଭ୍ୟତା ଥିଲା, ସେଗୁଡ଼ିକର ହାଲ କ'ଣ ? ଭାରତ ଓ ଚୀନ୍ ଅବସ୍ଥା କିପରି ? ଅନ୍ୟ ଦେଶମାନଙ୍କ ପରି ଏଠାରେ ମଧ୍ୟ ସାମ୍ରାଜ୍ୟ ପରେ ସମ୍ରାଜ୍ୟ ଆସିଲା । ଏ ଦେଶ ଦୁଇଟିରେ ଆକ୍ରମଣ ହୋଇଛି ଓ ବହୁପରିମାଣରେ ଧ୍ୱଂସ ଓ ଲୁଟ ହୋଇଛି । ଶହ ଶହ ବର୍ଷ ପର୍ଯ୍ୟନ୍ତ ରାଜବଂଶସବୁ ରାଜୁତି କରିଛନ୍ତି ଏବଂ ପରେ ଅନ୍ୟମାନେ ତାଙ୍କ ସ୍ଥାନ ଦଖଲ କରିଛନ୍ତି । ଅନ୍ୟ ଦେଶ ପରି ଏସବୁ ଘଟଣା ଭାରତ ଓ ଚୀନ୍ ଦେଶରେ ଘଟିଛି । କିନ୍ତୁ ଭାରତ ଓ ଚୀନ୍ ଦେଶର ସଭ୍ୟତା ଯେପରି ବରାବର ରହିଆସିଛି, ତାହା ଅନ୍ୟ କୌଣସି ଦେଶରେ ହୋଇ ନାହିଁ । ଏତେ ଆକ୍ରମଣ, ଯୁଦ୍ଧ ଓ ପରିବର୍ତ୍ତନ ସତ୍ତ୍ୱେ ବି ପୁରାତନ ସଭ୍ୟତାର ଧାରା ଏହି

ଦୁଇଟିଯାକ ଦେଶରେ ଲାଗିରହିଛି । ଏକଥା ସତ ଯେ ଏ ଦେଶ ଦୁଇଟି ତାଙ୍କ ପୁରାତନ ଅବସ୍ଥାରୁ ବହୁତ ପଛରେ ପଡ଼ିଛନ୍ତି ଏବଂ ଅତୀତ ସଂସ୍କୃତି ଦୀର୍ଘବର୍ଷ ଧରି ଜମା ହୋଇଥିବା ଧୂଳି ଓ ଅଳିଆଗଦା ଦ୍ୱାରା ଘୋଡ଼ାଇ ହୋଇପଡ଼ିଛି । ତଥାପି ଏହା ମୁଣ୍ଡଟେକି ରହିଛି ଓ ପୁରାତନ ଭାରତୀୟ ସଭ୍ୟତା ହିଁ ଆଧୁନିକ ଭାରତୀୟ ସଭ୍ୟତାର ମୂଳଭିତ୍ତି । ବର୍ତ୍ତମାନ ଦୁନିଆରେ ନୂଆଁ ନୂଆ ଅବସ୍ଥା ସୃଷ୍ଟି ହେଲାଣି; ଅଗ୍ନିବୋଟ, ରେଳ ଓ ବଡ଼ ବଡ଼ ଶିଳ୍ପକାରଖାନା ଯୋଗୁଁ ଜଗତର ରୂପ ବଦଳିଗଲାଣି । ଯେପରିଭାବରେ ବଦଳିଯାଉଛି, ସେଥିରେ ମଧ୍ୟ ଭାରତର ରୂପ ବଦଳିବା ବାସ୍ତବିକ ସମ୍ଭବ ହୋଇପାରେ । ମାତ୍ର ଇତିହାସର ଆରମ୍ଭରୁ ଦୀର୍ଘଦିନ ଗତହୋଇ ସୁଦ୍ଧା ଆଜି ଭାରତୀୟ ସଂସ୍କୃତି ଓ ସଭ୍ୟତାର କ୍ରମଧାରା ଅକ୍ଷୁଣ୍ଣ ରହିଛି—ଏହି ବିଷୟ ସ୍ମରଣ କଲେ ମନରେ ଆନନ୍ଦ ଓ ବିସ୍ମୟ ଜନ୍ମେ । ଆମେ ସବୁ ଭାରତରେ ଏହି ହଜାର ହଜାର ବର୍ଷର ଏକପ୍ରକାର ଉତ୍ତରାଧିକାରୀ । ଯେଉଁ ପୂର୍ବପୁରୁଷମାନେ ଉତ୍ତର-ପଶ୍ଚିମ ପର୍ବତ ପାରହୋଇ ବ୍ରହ୍ମାବର୍ତ୍ତ, ଆର୍ଯ୍ୟାବର୍ତ୍ତ, ଭାରତବର୍ଷ ଏବଂ ହିନ୍ଦୁସ୍ଥାନ ବୋଲି କୁହାଯାଉଥିବା ସୁନ୍ଦର ସମତଳଭୂମିକୁ ଆସିଥିଲେ; ଆମେ ସେମାନଙ୍କର ପ୍ରତ୍ୟକ୍ଷ ବଂଶଧର । ସେମାନେ ପର୍ବତଗୁହା ଭିତର ଦେଇ ଏପରି ଅଜଣା ସ୍ଥାନକୁ ଆସିବାଟା ତୁ ଅନୁମାନ କରିପାରୁଛୁ ତ ? ସେମାନେ ସାହସୀ ବା ଦୁଃସାହସୀ ଥିଲେ ଏବଂ ଫଳାଫଳ ପ୍ରତି ଖାତିର ନରଖି ସେମାନେ ସାହସର ସହିତ ଅଗ୍ରସର ହେବାକୁ ଲାଗିଲେ । ମୃତ୍ୟୁକୁ ବି ତାଙ୍କର ଡର ନଥିଲା—ତାହା ଆନନ୍ଦରେ ବରଣ କରୁଥିଲେ । ସେମାନଙ୍କର ନିଜ ପ୍ରାଣ ପ୍ରତି ମମତା ଓ ଶ୍ରଦ୍ଧା ଥିଲା ଏବଂ ସେମାନେ ବୁଝିଥିଲେ ଯେ ଜୀବନ ଉପଭୋଗ କରିବାର ଏକମାତ୍ର ପନ୍ଥା ହେଉଛି ନିର୍ଭୟ ହେବା, ପରାଜୟ ଓ ନିରାଶ ସମ୍ବନ୍ଧରେ ଘାଣ୍ଟି ନହେବା । ଯେଉଁମାନେ ଡରନ୍ତି ନାହିଁ, ସେମାନଙ୍କଠାରୁ ପରାଜୟ ଓ ନିରାଶା ଆପେ ଆପେ ଦୂରରେ ରହେ । ଥରେ ଆମର ସେହି ପୁରାତନ ବଂଶଧରମାନଙ୍କ କଥା ଭାବିଲୁ ! ସେମାନେ ଅଗ୍ରସର ହୋଇ ଯେତେବେଳେ ହଠାତ୍ ଆସି ସମୁଦ୍ର ଆଡ଼କୁ ବହିଯାଉଥିବା ଗଙ୍ଗାନଦୀ କୂଳରେ ପହଞ୍ଚିଥିବେ, ସେ ଦୃଶ୍ୟ ଦେଖି ସେମାନଙ୍କର ହୃଦୟ କିପରି ଆନନ୍ଦରେ ପୂରି ଯାଇ ନଥିବ ! ସୁତରାଂ ସେମାନେ ଯେ ଗଙ୍ଗାକୁ ଦେଖି ମୁଣ୍ଡ ନୁଆଁଇଲେ ଓ ଅତି ସୁନ୍ଦର ଭାଷାରେ ଯେ ତାହାର ସ୍ତୁତିଗାନ କଲେ, ସେଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ?

ଆମେମାନେ ଏହିସବୁ ଯୁଗର ବଂଶଧର ବୋଲି ଭାବିଲେ ପ୍ରକୃତରେ ବିସ୍ମିତ ହେବାକୁ ପଡ଼େ । କିନ୍ତୁ ସ୍ଥା ବୋଲି ଆମେ ଗର୍ବିତ ହେବା ଉଚିତ ନୁହେଁ; କାରଣ ଆମେ ଯଦି ସେହି ଯୁଗର ବଂଶଧର, ତେବେ ଭଲ ଓ ମନ୍ଦ ଉଭୟର ବି ଆମେ ଅଧିକାରୀ । ଭାରତରେ ଆମର ପ୍ରଚଳିତ ବଂଶଧରଙ୍କର ଅନେକ ଦୋଷ ରହିଛି । ଏହା ହିଁ ଆମକୁ ପୃଥିବୀରେ ବହୁତ ତଳେ ପକାଇ ଦେଇଛି, ଆମର ମହାନ୍ ଦେଶକୁ ଅତି ଦରିଦ୍ର

କରିପକାଉଛୁ ଓ ଅନ୍ୟମାନଙ୍କ ହାତରେ ଖେଳନା କରୁଛୁ । କିନ୍ତୁ ଏହାକୁ ଆଉ ଚଳେଇ ନଦେବା ଲାଗି ଆମେ ସ୍ଥିର କରିନାହେଁ କି ?

## ୭ । ହେଲନ୍‌ସ

୧୦ ଜାନୁଆରୀ, ୧୯୩୧

ତୁମ ଭିତରୁ କେହି ଆଜି ସାକ୍ଷାତ୍ କରିବାକୁ ଆସିଲ ନାହିଁ ଓ 'ମୁଲାକାତ୍‌କା ଦିନ'ଟା ଖାଲି ପଡ଼ିଲା । ମୁଁ ହତାଶ ହେଲି । ନ ଆସିବାର କାରଣଟା ଶୁଣି ଆହୁରି ମନ ଖରାପ ହେଲା । ମୋତେ ଶୁଣାଇ ଦିଆଗଲା ଯେ ଦାଦୁଙ୍କ ଦେହ ଭଲ ନାହିଁ । ଆଉ ଅନ୍ୟ କାରଣ କିଛି ମୁଁ ଜାଣିପାରିଲି ନାହିଁ । ଯାହାହେଉ ମୁଁ ଯେତେବେଳେ ଦେଖିଲି ଯେ ଆଜି ଆଉ ସାକ୍ଷାତ୍ ହୋଇପାରୁ ନାହିଁ, ଚରଖା ଧରି କିଛି ସୂତା କାଟିଲି । ମୁଁ ଦେଖୁଛି, ସୂତାକଟା ଓ ଫିତା ବୁଣାରେ ମନରେ ଶାନ୍ତି ଓ ସନ୍ତୋଷ ଲାଭ ହୁଏ । ତେଣୁ ମନରେ ଯଦି କିଛି ସନ୍ଦେହ ବା ଅସ୍ଥିରତା ଆସେ, ତେବେ ମୁଁ ସୂତା କାଟେ ।

ଆମେ ଗତ ଚିଠିରେ ଇଉରୋପ ଓ ଏସିଆର ତୁଳନା କରିଥିଲେ । ଆଗେ ଯେଉଁ ଇଉରୋପ ଥିଲା, ତାହାର ଆଲୋଚନା କରାଯାଉ । ଇଉରୋପ ବୋଇଲେ ଭୂମଧ୍ୟସାଗରର କେତେଗୁଡ଼ିଏ ଦେଶକୁ ଅନେକ ଦିନ ପର୍ଯ୍ୟନ୍ତ ବୁଝାଉଥିଲା । ସେକାଳରେ ଉତ୍ତର ଇଉରୋପୀୟ ଦେଶର କୌଣସି ବର୍ଣ୍ଣନା ନାହିଁ । ଭୂମଧ୍ୟସାଗରର ନିକଟବର୍ତ୍ତୀ ଲୋକେ ଭାବୁଥିଲେ ଯେ ଜର୍ମାନୀ, ଇଂଲଣ୍ଡ ଓ ଫ୍ରାନ୍‌ସ ଦେଶରେ ବନ୍ୟ ଓ ଅସଭ୍ୟ ଲୋକେ ବାସ କରୁଥିଲେ । ବାସ୍ତବିକ ପ୍ରଥମେ ସଭ୍ୟତା ପୂର୍ବ-ଭୂମଧ୍ୟସାଗରରେ ସୀମାବଦ୍ଧ ଥିଲା ବୋଲି ଧରା ଯାଉଥିଲା । ତୁ ତ ଜାଣୁ, ପ୍ରଥମେ ଇଜିପ୍ଟ ( ଏହା ଇଉରୋପରେ ନୁହେଁ, ଆଫ୍ରିକାରେ ) ଏବଂ ନୋସାସ୍ ଦେଶ ହିଁ ଆଗଭର ହୋଇଥିଲେ । କ୍ରମେ ଆର୍ଯ୍ୟମାନେ ଏସିଆରୁ ପଶ୍ଚିମ ଆଡ଼କୁ ଗଲେ ଏବଂ ଗ୍ରୀସ ଓ ତା ଆଖପାଖ ଦେଶ ଉପରେ ଆକ୍ରମଣ କଲେ । ଏହି ଆର୍ଯ୍ୟ ଗ୍ରୀକ୍‌ବାସୀଙ୍କ ସମ୍ବନ୍ଧରେ ଆମେ ପଢ଼ିଛେ ଓ ପୁରାକାଳର ଗ୍ରୀକ୍‌ମାନଙ୍କୁ ଏତେ ସାବାସ୍ କରୁ । ମୋର ମନେହୁଏ ଯେଉଁ ଆର୍ଯ୍ୟମାନେ ଆଗେ ଭାରତକୁ ଆସିଥିଲେ, ସେମାନଙ୍କଠାରୁ ଏମାନଙ୍କର ବିଶେଷ କିଛି ପାର୍ଥକ୍ୟ ନ ଥିଲା । କିନ୍ତୁ ପରିବର୍ତ୍ତନ ହେଲା ଏବଂ କ୍ରମେ ଆର୍ଯ୍ୟମାନଙ୍କର ଏହି ଦୁଇଟି ଶାଖା ଭିତରେ ଅଧିକ ପାର୍ଥକ୍ୟ ଘଟିଲା । ଭାରତୀୟ ଆର୍ଯ୍ୟମାନେ ଭାରତର ଆହୁରି ପୁରାତନ ଦ୍ରାବିଡ଼ ସଭ୍ୟତାଦ୍ୱାରା ବିଶେଷ ଭାବରେ

ପ୍ରଭାବିତ ହେଲେ ଏବଂ ଏହି ମେଳ୍ୟତାର ଚିହ୍ନ ଆଜି ଆମେ ମହେଞ୍ଜୋଦାରୋରେ ଦେଖିବାକୁ ପାଉଁ । ଆର୍ଯ୍ୟ ଓ ଦ୍ରାବିଡ଼ମାନେ ପ୍ରତ୍ୟେକେ ପ୍ରତ୍ୟେକଠାରୁ ଅନେକ ଚାଲିଚଳନ ଗ୍ରହଣ କଲେ ଓ ଦେଲେ । ଏହିପରି ଭାବରେ ଏକ ସାଧାରଣ ସଂସ୍କୃତି ଗଢ଼ିଉଠିଲା ।

ସେହିପରି ଗ୍ରୀସ୍‌ରେ ଯେଉଁ ଅତି ପୁରାତନ ନୋସାସ୍ ସଭ୍ୟତା ଥିଲା, ଗ୍ରୀସ୍‌ର ଆର୍ଯ୍ୟମାନଙ୍କ ଉପରେ ତାର ବହୁତ ପ୍ରଭାବ ପଡ଼ିଥିଲା । କିନ୍ତୁ ଏଥିରେ ପ୍ରଭାବିତ ହେଲେ ସୁଦ୍ଧା ସେମାନେ ନୋସାସ୍ ଓ ତାର ବାହାର ରୂପକୁ ଧ୍ୱଂସ କଲେ ଏବଂ ତାର ଧ୍ୱଂସ ଉପରେ ସେମାନଙ୍କର ନିଜ ସଭ୍ୟତା ଗଢ଼ିଲେ । ଆମର ମନେରଖିବା ଦରକାର ଯେ ସେକାଳରେ ଗ୍ରୀକ୍ ଓ ଭାରତ ଉଭୟ ଦେଶର ଆର୍ଯ୍ୟମାନେ ଖୁବ୍ ନିଷ୍ଠୁର ଓ ପ୍ରବଳ ଯୋଦ୍ଧା ଥିଲେ । ସେମାନେ ଖୁବ୍ ସାହସୀ ଥିଲେ । ତେଣୁ ସେମାନଙ୍କଠାରୁ ଯେଉଁ ଅଧିକ କିମ୍ବା ଅଳ୍ପ ସଭ୍ୟ ଲୋକଙ୍କ ସହ ତାଙ୍କର ଭେଟ ହେଉଥିଲା, ତାଙ୍କୁ ନଷ୍ଟ କରୁଥିଲେ କିମ୍ବା ନିଜ ସହିତ ମିଶାଇ ନେଉଥିଲେ ।

ଖ୍ରୀଷ୍ଟ ଜନ୍ମ ହେବାର ପ୍ରାୟ ଏକ ହଜାର ବର୍ଷ ପୂର୍ବେ ନୋସାସ୍ ଧ୍ୱଂସ ହୋଇ ଯାଇଥିଲା । ନୂତନ ଗ୍ରୀକ୍‌ବାସୀମାନେ ଗ୍ରୀସ୍ ଓ ତାର ଆଖପାଖରେ ଥିବା ଦ୍ୱୀପମାନଙ୍କରେ ବସତି ସ୍ଥାପନ କଲେ । ସମୁଦ୍ରରେ ସେମାନେ ଏସିଆ ମାଇନରର ପଶ୍ଚିମ ଉପକୂଳ, ଦକ୍ଷିଣ ଇଟାଲି ଓ ସିସିଲି ଏବଂ ଏପରି କି ଫ୍ରାନ୍‌ସର ଦକ୍ଷିଣ ପର୍ଯ୍ୟନ୍ତ ଯାଇଥିଲେ । ଫ୍ରାନ୍‌ସର ମାସାଇ ବା ମର୍ସେଲିସ ସହର ସେମାନେ ସ୍ଥାପନା କରିଥିଲେ । ବୋଧହୁଏ ସେମାନେ ଯିବା ପୂର୍ବରୁ ସେଠାରେ ଫୋନେସିଆନମାନେ ବାସ କରୁଥିଲେ । ତୋର ମନେଥିବ ଯେ ସେମାନେ ଏସିଆ ମାଇନରର ଏକ ଜଳପଥ ଯାତ୍ରୀ ଜାତି ଏବଂ ସେମାନେ ବାଣିଜ୍ୟ ଲାଗି ଚାରିଆଡ଼େ ବହୁତ ଦୂର ଯାଉଥିଲେ । ସେତେବେଳେ ଇଂଲଣ୍ଡ ଏକ ଅସଭ୍ୟ ଦେଶ ଥିଲା । ଏମାନେ ସେଠାରେ ବି ପହଞ୍ଚିଥିଲେ ଏବଂ ଜିବ୍ରାଲଟର ଦେଇ ଏତେ ଲମ୍ବା ସମୁଦ୍ରଯାତ୍ରା ନିଶ୍ଚୟ ଖୁବ୍ ବିପଜ୍ଜନକ ହୋଇଥିବ ।

ଏଥେନ୍‌ସ, ସ୍ପାର୍ଟା, ଥେବସ୍ ଓ କରିନ୍ଥ ଆଦି ବିଖ୍ୟାତ ସହର ସବୁ ଗ୍ରୀସ୍ ଭିତରେ ଗଢ଼ି ଉଠିଲା । ଗ୍ରୀକ୍‌ମାନଙ୍କୁ ହେଲନ୍‌ସ ବୋଲି କହୁଥିଲେ ଏବଂ ସେମାନଙ୍କର ଇଲିୟାଡ୍ ଓ ଓଡ଼ିସି ବୋଲି ଦୁଇଟି ପ୍ରସିଦ୍ଧ କାବ୍ୟ ଅଛି । ତୁ ଏହି ଦୁଇ ପୁରାଣ ସମ୍ବନ୍ଧରେ କିଛି କିଛି ଜାଣୁ । ସେଗୁଡ଼ିକ ଆମର ରାମାୟଣ ଓ ମହାଭାରତ ଯେଉଁ ସମୟରେ ଲେଖା ହୋଇଥିଲା, ସେହି ସମୟର । ହୋମର୍ ବୋଲି ଜଣେ ଅନ୍ଧ ଏହା ଲେଖିଛନ୍ତି ବୋଲି କୁହାଯାଏ । ସୁନ୍ଦରୀ ହେଲେନାକୁ ପାରିସ କପଟ ଟ୍ରୟ ସହରକୁ ନେଇଯାଇଥିଲା, ଗ୍ରୀକ୍‌ରାଜା ଓ ସାମନ୍ତମାନେ ତାକୁ ଉଦ୍ଧାର କରିବା ପାଇଁ କପଟ ଟ୍ରୟ ସହର ଦଖଲ କଲେ—ସେଥିରେ ଏସବୁ ବର୍ଣ୍ଣନା ରହିଛି ।

ଓଡ଼ିସି ବା ୟୁଲିସେସ୍ ଟ୍ରୟ ଦଖଲ କରି ଫେରିଲାବେଳେ ବର୍ଣ୍ଣନାସବୁ ଓଡ଼ିସିରେ ଅଛି । ଏସିଆ ମାଇନରରେ ଏହି ଗ୍ରେଟ ଟ୍ରୟ ସହର ଥିଲା—ସମୁଦ୍ରକୂଳରୁ ବେଶୀ ଦୂର ନୁହେ । ଏହି ସହର ଆଜି ନାହିଁ—ଗତ ଅନେକ ବର୍ଷ ହେଲା ତାହାର ଅସ୍ତିତ୍ୱ ଯାଇଛି, ମାତ୍ର ଜଣେ କବିର ଲେଖାହିଁ ତାକୁ ଅମର କରି ରଖିଛି ।

ହେଲେନ୍ସ ବା ଗ୍ରୀକ୍‌ମାନଙ୍କର ଉନ୍ନତି କରିବା ସଙ୍ଗେ ସଙ୍ଗେ ହିଁ ଆଉ ଗୋଟିଏ ଶକ୍ତି ଯେ ଜନ୍ମ ହେଲା, ତାର ଇତିହାସ ବି ଆମୋଦଦାୟକ । ପରେ ଏହା ହିଁ ଗ୍ରୀସ୍‌କୁ ଜୟ କଲା ଓ ବୃଦ୍ଧି ପାଇଲା । ଏହି ସମୟରେ ରୋମ ସ୍ଥାପିତ ହୋଇଥିଲା ବୋଲି କହନ୍ତି । ଅନେକ ଶହ ବର୍ଷ ପର୍ଯ୍ୟନ୍ତ ଦୁନିଆରେ ଏହାର କିଛି ବିଶେଷତ୍ୱ ନ ଥିଲା; କିନ୍ତୁ ଯେଉଁ ସହର ଶହ ଶହ ବର୍ଷ ପର୍ଯ୍ୟନ୍ତ ଇଉରୋପୀୟ ଜଗତକୁ ଏକପ୍ରକାର ଶାସନ କଲା, ଯାହାକୁ "ଜଗତର ରାଣୀ" ଏବଂ "ଧାର୍ମିକ ସହର" ବୋଲି କହୁଥିଲେ, ତାହାର ସ୍ଥାପନ-କାହାଣୀ ବାସ୍ତବିକ ଉଲ୍ଲେଖଯୋଗ୍ୟ । ରୋମ ସହର ସ୍ଥାପନ ସମ୍ବନ୍ଧରେ ଅଦ୍ଭୁତ ଗପସବୁ ଅଛି ଏବଂ ଯେଉଁ ରୋମସ୍ ଓ ରମୁଲେସ୍ ଏହାକୁ ସ୍ଥାପନ କରିଥିଲେ, ସେମାନଙ୍କୁ ଗୋଟିଏ ମାଈ ଗଧ ଉଠାଇ ନେଇ କପରି ରଖିଲା ଇତ୍ୟାଦି ଗଳ୍ପ ଶୁଣାଯାଏ । ତୁ ବୋଧହୁଏ ସେ ଗପ ଜାଣିଥିବୁ ।

ଠିକ୍ ରୋମ ସହର ଯେଉଁ ସମୟରେ ହେଲା, ସେହି ସମୟରେ କିମ୍ବା ତାହାର କିଛିକାଳ ପୂର୍ବରୁ ଅତୀତ ଜଗତର ଆଉ ଏକ ବଡ଼ ସହର ଗଢ଼ି ଉଠିଥିଲା । ଏହା ହେଉଛି ଆଫ୍ରିକାର ଉତ୍ତର ଉପକୂଳରେ ଥିବା କାର୍ଥେଜ ସହର । ଫୋନେସିଆନ୍‌ମାନେ ଏହାକୁ ସ୍ଥାପନ କରିଥିଲେ । ଜଳପଥରେ ଏହା ଏକ ପ୍ରଧାନ ଶକ୍ତିଶାଳୀ ସହର ହେଲା । ରୋମ ଓ ଏହି ସହର ମଧ୍ୟରେ ଖୁବ୍ ବିବାଦ ଲାଗିଲା ଓ କେତେକ ଯୁଦ୍ଧ ବି ହୋଇଥିଲା । ଶେଷରେ ରୋମର ଜୟ ହେଲା ଏବଂ କାର୍ଥେଜ ପୂର୍ଣ୍ଣଭାବରେ ଧ୍ୱଂସ ପାଇଲା ।

ଆଜି ଏ ଚିଠି ଶେଷ କରିବା ପୂର୍ବରୁ ଟିକିଏ ପାଲେଷ୍ଟାଇନ୍ କଥା ଆଲୋଚନା କରିବି । ଅବଶ୍ୟ ପାଲେଷ୍ଟାଇନ୍ ଇଉରୋପରେ ନୁହେଁ କିମ୍ବା ଏହାର କିଛି ଐତିହାସିକ ଗୁରୁତ୍ୱ ନାହିଁ । ମାତ୍ର ଓଲ୍ଡ ଟେଷ୍ଟାମେଣ୍ଟ (Old Testament) ରେ ଏହାର ଉଲ୍ଲେଖ ଥିବାରୁ ଅନେକେ ଏହାର ପୁରୁଣା ଇତିହାସ ଜାଣିବା ଲାଗି ଆଗ୍ରହ ଦେଖାନ୍ତି । ଏଠି ବାସକରୁଥିବା ଇହୁଦୀଙ୍କ ଭିତରୁ କେତେକଙ୍କ ସହିତ ସେମାନଙ୍କର ଦୁଇ ପାଖରେ ଥିବା ପଡ଼ୋଶୀ ବେବିଲୋନିଆ, ଆସିରିଆ ଓ ଇଜିପ୍ଟବାସୀଙ୍କ ସହିତ ଯେଉଁ ବିବାଦ ଲାଗିଥିଲା; ଏଥିରେ ସେହି ଗଳ୍ପ ଲେଖାଅଛି । ଏହା ଯଦି ଇହୁଦୀ ଓ ଖ୍ରୀଷ୍ଟିୟାନ ଧର୍ମର ଏକ ଅଂଶ ହୋଇ ନ ଥାନ୍ତା, ତେବେ କେହି ହୁଏତ ଏହା ସମ୍ବନ୍ଧରେ କିଛି ଜାଣି ନ ଥାନ୍ତେ ।

ନୋହାସ୍ ଧ୍ୱଂସ ହେବା ସମୟରେ ପାଲେଷ୍ଟାଇନ୍‌ର ଗୋଟିଏ ଅଂଶ ଇସ୍ରାଏଲରେ ସାଲ ନାମକ ଜଣେ ରାଜା ଥିଲେ । ତାପରେ ଡେଭିଡ୍ ରାଜା ହେଲେ ଏବଂ ତାପରେ ରାଜା ସଲେମନ୍ ଖୁବ୍ ବିଜ୍ଞ ଲୋକ ବୋଲି ତାଙ୍କର ବିଶେଷ ଖ୍ୟାତି ଥିଲା ।

ତୁ ଏହି ତିନୋଟି ନାମ ବିଷୟରେ ପଢ଼ିଥିବୁ କିମ୍ବା ଶୁଣିଥିବୁ ଭାବି ମୁଁ ଏଠାରେ ସେ କଥା ଉଲ୍ଲେଖ କଲି ।

# ୭ । ଗ୍ରୀକ୍ ନଗରତନ୍ତ୍ର

୧୧ ଜାନୁୟାରୀ, ୧୯୩୧

ମୁଁ ଗତ ଚିଠିରେ ତୋତେ ଗ୍ରୀକ୍ ବା ହେଲନ୍‌ମାନଙ୍କ ସମ୍ବନ୍ଧରେ କିଛି ଲେଖିଥିଲି । ତାଙ୍କ ବିଷୟରେ ଆଉ ଟିକିଏ ଆଲୋଚନା କଲେ ସେମାନେ କିପରି ଲୋକ ଥିଲେ, ସେ ସମ୍ବନ୍ଧରେ ଆମର ଧାରଣା ହେବ । କେବେ ଆଖିରେ ଦେଖି ନ ଥିବା କୌଣସି ଜିନିଷ ବା ଲୋକ ସମ୍ବନ୍ଧରେ ପ୍ରକୃତ ଏବଂ ସତ୍ୟ ଧାରଣା କରିବା ଅବଶ୍ୟ ଅତି କଷ୍ଟକର । ଆମେ ଆମର ବର୍ତ୍ତମାନ ଅବସ୍ଥା ଓ ଚାଲିଚଳନରେ ଏତେ ଅଭ୍ୟସ୍ତ ହୋଇଗଲୁଣି ଯେ ଆଉ ଗୋଟିଏ ସମ୍ପୂର୍ଣ୍ଣ ଅଲଗା ଦୁନିଆ ସମ୍ବନ୍ଧରେ ହୁଏତ କିଛି କଳ୍ପନା କରିପାରିବା ନାହିଁ । କିନ୍ତୁ ଭାରତବର୍ଷ, ଚୀନ୍ ବା ଇଜିପ୍ଟ ଯେଉଁ ଦେଶ ହେଉ ପଛକେ, ଏହିସବୁ ପୁରୁଣା ଦୁନିଆ ବର୍ତ୍ତମାନଠାରୁ ସମ୍ପୂର୍ଣ୍ଣ ଭିନ୍ନ ଢଙ୍ଗର ଥିଲା । କେବଳ ସେମାନଙ୍କର ବହି, କୋଠାବାଡ଼ି ଓ ଅନ୍ୟ କୀର୍ତ୍ତିର ଅବଶେଷ ଦେଖି ସେ କାଳର ଲୋକେ କିପରି ଥିଲେ ଆମେ ଅନୁମାନ କରିପାରିବା ।

ଗ୍ରୀକ୍ ସମ୍ବନ୍ଧରେ ଆଉ ଗୋଟିଏ ଅତି ମଜା କଥା ଅଛି । ବୋଧହୁଏ ଗ୍ରୀକ୍‌ମାନେ ବଡ଼ ବଡ଼ ସାମ୍ରାଜ୍ୟ ବା ଜଣକର ଏକାଧିପତ୍ୟ ଶାସନ ଭଲ ପାଉ ନ ଥିଲେ । ସେମାନେ ଛୋଟ ଛୋଟ ନଗରତନ୍ତ୍ର ପସନ୍ଦ କରୁଥିଲେ ଅର୍ଥାତ୍ ପ୍ରତ୍ୟେକ ସହର ହିଁ ଗୋଟିଏ ଗୋଟିଏ ସ୍ୱାଧୀନ ରାଜ୍ୟ ଥିଲା । ତାହାର ନିଜର ଲୋକତନ୍ତ୍ର ସରକାର ଥିଲା, କେନ୍ଦ୍ରସ୍ଥଳରେ ସହର ଥିଲା ଏବଂ ତାର ଚାରିଆଡ଼େ କେତେକ ଜମି ଥିଲା । ସେହି ଜମିରୁ ଖାଦ୍ୟ ସହରକୁ ଆସୁଥିଲା । ତୁ ତ ଜାଣୁ, ଲୋକତନ୍ତ୍ର ସରକାରରେ ରାଜା ରହେ ନାହିଁ । ଏହି ଗ୍ରୀକ୍ ନଗରତନ୍ତ୍ରଗୁଡ଼ିକରେ ରାଜା ନ ଥିଲେ; କିନ୍ତୁ ଧନୀ ନାଗରିକମାନଙ୍କଦ୍ୱାରା

ଏଗୁଡ଼ିକ ଶାସିତ ହେଉଥିଲା । ସାଧାରଣ ଲୋକଙ୍କର ସରକାର ଚଳାଇବାରେ ପ୍ରାୟ କୌଣସି ହାତ ନ ଥିଲା । ଅନେକ ଦାସ ବି ରହୁଥିଲେ । ସେମାନଙ୍କର ଓ ସ୍ତ୍ରୀଲୋକ-ମାନଙ୍କର ରାଜକାର୍ଯ୍ୟରେ କୌଣସି ଅଧିକାର ନ ଥିଲା । ସୁତରାଂ ଏହି ନଗରତନ୍ତ୍ରର ଲୋକସଂଖ୍ୟାରୁ ଏକ ଅଂଶ ହିଁ ନାଗରିକ ଅଧିକାର ପାଉଥିଲେ ଏବଂ ସାଧାରଣ ସମସ୍ୟାରେ ଭୋଟ ଦେଇ ପାରୁଥିଲେ । ଏହି ନାଗରିକଙ୍କ ପକ୍ଷରେ ଭୋଟ ଦେବା କିଛି କଷ୍ଟକର ନ ଥିଲା; କାରଣ ସେମାନେ ସମସ୍ତେ ଗୋଟିଏ ଜାଗାରେ ଠୁଳହୋଇ ପାରୁଥିଲେ । କେବଳ ଏହା ଏକ ସରକାର ଅଧୀନସ୍ଥ ବୃହତ୍ ଦେଶ ନ ହୋଇ ଛୋଟ ଛୋଟ ନଗରତନ୍ତ୍ର ଥିବାରୁ ଏପରି ସମ୍ଭବ ହୋଇପାରୁଥିଲା । ଭାରତର ସବୁ ଭୋଟଦାତା କିମ୍ବା ଏପରି କି ବଙ୍ଗଳା ପ୍ରଦେଶ, କିମ୍ବା ଆଗ୍ରାର ସମସ୍ତ ଭୋଟଦାତା ଏକତ୍ର ହେବା କଥା କଳ୍ପନା କରି । ଏହା ଆଦୌ କରାଯାଇ ପାରିବ ନାହିଁ । ପରେ ଅନ୍ୟ ଦେଶମାନଙ୍କରେ ଏହିସବୁ ଅସୁବିଧା ଦେଖାଦେଲା ଓ ତେଣୁ "ପ୍ରତିନିଧିମୂଳକ ସରକାର" ଗଢ଼ାହୋଇ ଏହାର ସମାଧାନ ହେଲା । ଏହାର ଅର୍ଥ ହେଉଛି, କୌଣସି ଗୋଟିଏ ସମସ୍ୟା ବିଷୟରେ ନିଷ୍ପତ୍ତି କରିବା ପାଇଁ ଦେଶର ସମସ୍ତ ଭୋଟର ଠୁଳ ନ ହୋଇ ସେମାନେ ସେମାନଙ୍କର "ପ୍ରତିନିଧି" ନିର୍ବାଚନ କରିବେ । ସେମାନେ ଏକତ୍ର ହେବେ, ଦେଶର ସାଧାରଣ ପ୍ରଶ୍ନ ସମ୍ବନ୍ଧରେ ଆଲୋଚନା କରିବେ ଏବଂ ଦେଶପାଇଁ ଆଇନ୍ ତିଆରି କରିବେ । ଏହିପରି ଅପ୍ରତ୍ୟକ୍ଷ ଭାବରେ ଦେଶର ସାଧାରଣ ଲୋକ ହିଁ ତା ଦେଶର ସରକାର ଗଢ଼ିବାରେ ସାହାଯ୍ୟ କରେ ବୋଲି କୁହାଯାଏ ।

ମାତ୍ର ଗ୍ରୀସ୍ ହିସାବ ଏହାର କୌଣସି ସମ୍ପର୍କ ନାହିଁ । ଗ୍ରୀସ୍‌ରେ ନଗରତନ୍ତ୍ର ଅପେକ୍ଷା ବଡ଼ ବଡ଼ ରାଜ୍ୟ ନ ଥିବାରୁ ଏସବୁ ଅସୁବିଧା ଉଠିଲା ନାହିଁ । ତୋତେ ଯାହା ମୁଁ ଲେଖିଛି, ଯଦିଓ ଗ୍ରୀକ୍‌ମାନେ ସମସ୍ତ ଗ୍ରୀସ୍, ଦକ୍ଷିଣ ଇଟାଲି ଓ ସିସିଲି ଏବଂ ଭୂମଧ୍ୟସାଗରର ଅନ୍ୟ ଉପକୂଳ ପର୍ଯ୍ୟନ୍ତ ଅଗ୍ରସର ହୋଇଥିଲେ, ତଥାପି ସେମାନେ ସେମାନଙ୍କ ଅଧୀନରେ ଥିବା ଏହିସବୁ ସ୍ଥାନକୁ ଗୋଟିଏ ସାମ୍ରାଜ୍ୟ ବା ଗୋଟିଏ ସରକାର ଅଧୀନରେ ରଖିବାକୁ ଚେଷ୍ଟା କରି ନ ଥିଲେ । ସେମାନେ ଯେଉଁଠାକୁ ଯାଇଥିଲେ, ସେଠାରେ ସ୍ୱତନ୍ତ୍ର ନଗରତନ୍ତ୍ର ସ୍ଥାପନ କଲେ ।

ତୁ ମଧ୍ୟ ଦେଖିବୁ, ପୁରୁଣା କାଳରେ ଠିକ୍ ଗ୍ରୀକ୍ ନଗରତନ୍ତ୍ର ପରି ଭାରତରେ ସାଧାରଣ ଶାସନ ବା ରାଜ୍ୟସବୁ ଥିଲା । କିନ୍ତୁ ସେଗୁଡ଼ିକ ବେଶିଦିନ ରହିପାରି ନ ଥିଲା ଏବଂ ବଡ଼ ବଡ଼ ରାଜ୍ୟ ସହିତ ମିଶି ଯାଇଥିଲା । ତାହା ହୋଇ ସୁଦ୍ଧା ଅନେକକାଳ ପର୍ଯ୍ୟନ୍ତ ଆମର ଗ୍ରାମପଞ୍ଚାୟତ ହାତରେ ଯଥେଷ୍ଟ କ୍ଷମତା ଥିଲା । ବୋଧହୁଏ ପ୍ରବର୍ତ୍ତକ ଆର୍ଯ୍ୟମାନେ ଯେଉଁଠାକୁ ଯାଉଥିଲେ, ସେଠାରେ ତାଙ୍କର ପ୍ରଥମ କାର୍ଯ୍ୟ ହେଉଥିଲା ଛୋଟ ଛୋଟ

ନଗରତନ୍ତ୍ର ସ୍ଥାପନ କରିବା । କିନ୍ତୁ କ୍ରମେ କ୍ରମେ ଭୌଗୋଳିକ ଅବସ୍ଥା ଓ ଆହୁରି ଅତୀତ ସଭ୍ୟତା ସମ୍ପର୍କରେ ଆସି ସେମାନେ ଯେତେ ଦେଶ ଜୟ କଲେ, ସେଠାରେ ସେ ଧାରଣା ଦୂର କଲେ । ବିଶେଷତଃ ଆମେ ଇରାନ୍‌ରେ ବଡ଼ ବଡ଼ ଶାସନ ଓ ସାମ୍ରାଜ୍ୟ ସୃଷ୍ଟି ହୋଇଥିବାର ଦେଖୁଁ । ଭାରତରେ ମଧ୍ୟ ବଡ଼ ବଡ଼ ରାଜ୍ୟ ହେବାର ଗୋଟାଏ ପ୍ରବୃତ୍ତି ଦେଖାଯାଉଥିଲା । ଇତିହାସପ୍ରସିଦ୍ଧ ଜଣେ ଗ୍ରୀକ୍ ପୃଥିବୀ ବିଜୟ କରିବାର ପ୍ରଥମ ଉଦ୍ୟମ କରିବା ପୂର୍ବରୁ ଗ୍ରୀସ୍‌ରେ ଅନେକ କାଳ ପର୍ଯ୍ୟନ୍ତ ନଗରତନ୍ତ୍ରମାନ ଥିଲା । ସେହି ଗ୍ରୀକ୍‌ଙ୍କ ନାମ ହେଉଛି ଆଲେକ୍‌ଜାଣ୍ଡର । ତାହାଙ୍କ ବିଷୟରେ କିଛି ମୁଁ ପରେ କହିବି ।

ଏହିପରି ଗ୍ରୀକମାନେ ସେମାନଙ୍କର ଏହି ଶ୍ରେଷ୍ଠ ନଗରତନ୍ତ୍ରସବୁ ଏକତ୍ର କରି ଗୋଟିଏ ବଡ଼ ସରକାର, ରାଜ୍ୟ ବା ଲୋକତନ୍ତ୍ର କରିବାକୁ ଅସ୍ୱୀକାର କରୁଥିଲେ । ସେମାନେ ଯେ କେବଳ ଅଲଗା ଏବଂ ସ୍ୱତନ୍ତ୍ର ହୋଇ ରହିଥିଲେ ତାହା ନୁହେଁ, ସେମାନଙ୍କ ଭିତରେ ବରାବର ଲଢ଼ାଇ ହେଉଥିଲା । ସେମାନଙ୍କ ଭିତରେ ଖୁବ ବିବାଦ ହୋଇ ସମସ୍ତ ସମୟରେ ଯୁଦ୍ଧ ବି ହେଉଥିଲା ।

ତଥାପି ଏହି ନଗରତନ୍ତ୍ର ଭିତରେ ଅନେକ ସାଧାରଣ ଜିନିଷ ଥିଲା—ସେଥିରେ ପରସ୍ପର ସହିତ ସମ୍ପର୍କ ଜଣାପଡ଼େ । ସେମାନଙ୍କର ଏକ ଭାଷା, ଏକ ସଂସ୍କୃତି ଓ ଗୋଟିଏ ଧର୍ମ ଥିଲା । ତାଙ୍କ ଧର୍ମ ଭିତରେ ଅନେକ ଦେବଦେବୀଙ୍କୁ ସ୍ୱୀକାର କରାଯାଉଥିଲା ଏବଂ ପୁରାତନ ହିନ୍ଦୁପୁରାଣ ପରି ସେମାନଙ୍କର ମଧ୍ୟ ଖୁବ୍ ସୁନ୍ଦର ଓ ବିଖ୍ୟାତ ପୌରାଣିକ ଗଳ୍ପସବୁ ଅଛି । ସେମାନେ ସୌନ୍ଦର୍ଯ୍ୟର ପୂଜା କରୁଥିଲେ । ଆଜିସୁଦ୍ଧା ଶଙ୍ଖମଲ୍‌ମଲ୍ ପଥରରେ ଗଢ଼ା ପୁରାତନ ମୂର୍ତ୍ତିସବୁ ମିଳେ ଏବଂ ସେଗୁଡ଼ିକ ଅତି ସୁନ୍ଦର । ସେମାନେ ସୁସ୍ଥ ଓ ସୁନ୍ଦର ଶରୀରର ମହତ୍ତ୍ୱ ବୁଝୁଥିଲେ—ସେଥିପାଇଁ ଖେଳ, ଦୌଡ଼ ଆଦି କରାଉଥିଲେ । ଗ୍ରୀସ୍‌ର ଓଲିମ୍ପିସରେ ଥରକୁ ଥର ଏହିସବୁ ଖେଳ ହେଉଥିଲା ଏବଂ ଗ୍ରୀସ୍‌ର ଚାରିଆଡ଼ୁ ଲୋକ ସେଠାରେ ଏକତ୍ର ହେଉଥିଲେ । ଆଜି ମଧ୍ୟ ଏହି ଓଲିମ୍ପିକ ଖେଳ ହୁଏ—ତୁ ନିଶ୍ଚୟ ଏହା ଶୁଣିଥିବୁ । ପୁରାତନ ଗ୍ରୀସର ଏହି ଓଲିମ୍ପିସ୍‌ରୁ ହିଁ ଏହାର ନାମକରଣ ହୋଇଛି ଏବଂ ବିଭିନ୍ନ ଦେଶରେ ହେଉଥିବା ଖେଳ ଓ ପ୍ରତିଯୋଗିତାରେ ଏହି ନାମ ପ୍ରୟୋଗ କରାଯାଉଛି ।

ସୁତରାଂ ଗ୍ରୀସ୍‌ର ନଗରତନ୍ତ୍ର ସବୁ ଅଲଗା ଅଲଗା ଥିଲେ; ଖେଳବେଳେ ଏକତ୍ର ହେଉଥିଲେ ଏବଂ ଅନେକ ସମୟରେ ନିଜ ନିଜ ଭିତରେ ଲଢ଼ାଇ କରୁଥିଲେ । ଯାହାହେଉ ଯଦି ବାହାରୁ ଗୋଟିଏ ବଡ଼ ବିପଦ ଆସୁଥିଲା, ତେବେ ତାର

ବିରୋଧ କରିବା ପାଇଁ ସମସ୍ତେ ଏକାଠି ହୋଇଯାଉଥିଲେ । ଇରାନ୍‌ବାସୀମାନେ ଆକ୍ରମଣ କଲାବେଳେ ଏହିପରି ହୋଇଥିଲା । ସେ ସମ୍ବନ୍ଧରେ ମୁଁ ତୋତେ ପରେ କିଛି କହିବି ।

## ୮ । ପଶ୍ଚିମ-ଏସିଆର ସାମ୍ରାଜ୍ୟ

୧୩ ଜାନୁୟାରି, ୧୯୩୧

ତୁମ ସମସ୍ତଙ୍କୁ କାଲି ଦେଖି ଖୁସି ହେଲି; ମାତ୍ର ଡାଡୁଙ୍କୁ ଦେଖି ମୋର ଡର ହୋଇଗଲା । ସେ ଏତେ ଦୁର୍ବଳ ଓ ରୋଗା ଦେଖାଯାଉଛନ୍ତି ! ତୁ ତାଙ୍କର ଯତ୍ନ ନେବୁ ଏବଂ ତାଙ୍କୁ ବଳୁଆ ଓ ସୁସ୍ଥ କରିବୁ । ମୋର କାଲି ତୋ ସହିତ ପ୍ରାୟ କଥାବାର୍ତ୍ତା ହୋଇପାରିଲା ନାହିଁ । ଏତେ ଅଳ୍ପ ସମୟ ସାକ୍ଷାତ୍ ଭିତରେ କଣେ ବା କ'ଣ କରିପାରିବ ? ଆମର ସାକ୍ଷାତ ଓ କଥାବାର୍ତ୍ତାରେ ଯାହା କିଛି ଅଭାବ ରହିଯାଏ, ମୁଁ ସେଗୁଡ଼ିକ ଏ ଚିଠି ଲେଖି ପୂରଣ କରିବାକୁ ଚେଷ୍ଟା କରେ । ମାତ୍ର ଏଥିରେ ଅଭାବ ମେଣ୍ଟେ ନାହିଁ ଏବଂ ଏପରି ମନବୋଧ କରିବା ବି ବେଶି ଦିନ ରହେ ନାହିଁ । ତଥାପି ଏହି ଉପାୟରେ ମନବୋଧ କରିବା ବି ସମୟ ସମୟରେ ଭଲ ।

ଆଚ୍ଛା, ଅତୀତ କାହାଣୀସବୁ ଚିନ୍ତା କର । ଆମେ ଆଗେ ପୁରାତନ ଗ୍ରୀକ୍‌ଙ୍କ ସମ୍ବନ୍ଧରେ ଆଲୋଚନା କରୁଥିଲେ । ମାତ୍ର ଏହି ସମୟରେ ଅନ୍ୟ ଦେଶଗୁଡ଼ିକର ଅବସ୍ଥା କ'ଣ ଥିଲା ? ଇଉରୋପର ଅନ୍ୟ ଦେଶମାନଙ୍କ ସମ୍ବନ୍ଧରେ ଆମର ବ୍ୟସ୍ତହେବା ଦରକାର ନାହିଁ । ସେମାନଙ୍କ ସମ୍ବନ୍ଧରେ ଆମ୍ଭେମାନେ ଅନ୍ତତଃ ମୁଁ ବିଶେଷ କିଛି ମଜା କଥା ଜାଣେ ନାହିଁ । ଉତ୍ତର-ଇଉରୋପର ପାଣିପାଗ ବୋଧହୁଏ ପରିବର୍ତ୍ତିତ ହେଉଥିଲା ଓ ଏଥିରେ ନୂତନ ଅବସ୍ଥା ବି ସୃଷ୍ଟି ହୋଇଥିବ । ତୋର ହୁଏତ ମନେଥିବ ଯେ ଅନେକ ବର୍ଷ ଆଗେ ସମଗ୍ର ଉତ୍ତର-ଇଉରୋପ ଓ ଉତ୍ତର-ଏସିଆରେ ଭୀଷଣ ଅଣ୍ଡା ପଡ଼ୁଥିଲା । ଏହାକୁ 'ବରଫଯୁଗ' ବୋଲି କୁହାଯାଏ । ପ୍ରକାଣ୍ଡ ବରଫଖଣ୍ଡ (ଗ୍ଲାସିଅର୍) ସବୁ କେନ୍ଦ୍ର ଇଉରୋପ ପର୍ଯ୍ୟନ୍ତ ବହି ଆସୁଥିଲା । ମଣିଷ ସମ୍ଭବତଃ ସେତେବେଳେ ନ ଥିଲା କିମ୍ବା ଥିଲେ ସେ ମଣିଷ ନ ହୋଇ ବେଶି ଭାଗ ପଶୁ ଥିଲା । ତୁ ଆଶ୍ଚର୍ଯ୍ୟ ହୋଇ ପଚାରିପାରୁ ଯେ ସେ ସମୟରେ ବରଫଖଣ୍ଡ (ଗ୍ଲାସିଅର୍) ସବୁ ଥିବା କଥା ଆମେ କିପରି ଜାଣିଲୁ । ଅବଶ୍ୟ କୌଣସି ବହିରେ ଏସବୁ ଘଟଣାର ଉଲ୍ଲେଖ ନାହିଁ; କାରଣ ସେତେବେଳେ କୌଣସି ବହି ନ ଥିଲା

କିମ୍ବା କିଛି ଲେଖକ ବି ନ ଥିଲେ । ମାତ୍ର ମୁଁ ଆଶା କରେ, ପ୍ରକୃତି ଯେ ନିଜେ ଏକ
ପୁସ୍ତକ, ତୁ ଏକଥା ଭୁଲି ନ ଥିବୁ । ପ୍ରକୃତି ତାହାର ପାହାଡ଼ ଓ ପଥରରେ ନିଜର
ଇତିହାସ ଲେଖେ ଏବଂ ଯେ ଇଚ୍ଛା କରିବ, ସେ ତାହା ପଢ଼ିପାରେ । ଏହା ଏକପ୍ରକାର
ଆତ୍ମକାହାଣୀ ଅର୍ଥାତ୍ ନିଜର ଇତିହାସ । ବରଫଖଣ୍ଡ ସବୁ ଥିଲେ ତାହା ଜାଣିବାର
ଗୋଟିଏ ବିଚିତ୍ର ଚିହ୍ନମାନ ଅଛି । ତୁ ଥରେ ତାହା ଜାଣିପାରିଲେ ପ୍ରାୟ ଆଉ ଭୁଲିପାରିବୁ
ନାହିଁ । ତୋର ଏସବୁ ଚିହ୍ନ ଚିହ୍ନିବାର ଇଚ୍ଛା ଥିଲେ ତୁ ହିମାଳୟ ବା ଆଲପସ୍ କିମ୍ବା
ଅନ୍ୟ ସ୍ଥାନକୁ ଗଲେ ବରଫଖଣ୍ଡ ଦେଖିପାରିବୁ । ଆଲପସ୍ ପର୍ବତରେ ଥିବା ମାଉଣ୍ଟ ବ୍ଲାଙ୍କ
ଗୃହକଡ଼ରେ ଥିବା ବରଫଖଣ୍ଡସବୁ ତୁ ନିଜେ ଦେଖିଛୁ; ମାତ୍ର ତୋତେ ବୋଧହୁଏ ଏହି
ବିଶେଷ ଚିହ୍ନଗୁଡ଼ିକ କେହି ଦେଖାଇ ନାହାନ୍ତି । କାଶ୍ମୀର ଓ ହିମାଳୟର ଅନ୍ୟ କେତେକ
ସ୍ଥାନରେ ଅନେକ ସୁନ୍ଦର ବରଫଖଣ୍ଡସବୁ ରହିଛି । ଆମର ଅତି ନିକଟରେ ପିଣ୍ଡାରୀ
ବରଫଖଣ୍ଡ ଅଛି । ଆଲମୋରାଠାରୁ ଏହା ପ୍ରାୟ ୭ ଦିନର ରାସ୍ତା । ମୁଁ ଅତି ପିଲାବେଳେ
ଏପରିକି ତୋଠାରୁ ମଧ୍ୟ ବହୁତ ଛୋଟ ଥିଲାବେଳେ ଥରେ ସେଠିକି ଯାଇଥିଲି ଏବଂ
ଏବେ ସୁଦ୍ଧା ମୋର ତାହା ପରିଷ୍କାର ମନେ ଅଛି ।

ତୋତେ ଇତିହାସ ଓ ଅତୀତ କାହାଣୀ ଲେଖିବା ବଦଳରେ ମୁଁ ବରଫଖଣ୍ଡ
ଓ ପିଣ୍ଡାରୀ ବର୍ଣ୍ଣନାରେ ଲାଗିଗଲି । ଏହା ବି ମନବୋଧର ଗୋଟାଏ ଖେଳ । ତୁ ସତେ କି
ଏଠି ଅଛୁ, ଏହା ଭାବି ମୁଁ ତୋ ସହିତ କଥାବାର୍ତ୍ତା ହେଲା ପରି ମନେକରୁଛି ଏବଂ
ଏହା କଲାବେଳେ ସମୟ ସମୟରେ ବରଫଖଣ୍ଡ କିମ୍ବା ସେହିପରି ଜିନିଷ ଦେଖିବା ଲାଗି
ଯିବାଟା ବି ହେବ ।

ବରଫଯୁଗ କଥା ଲେଖୁ ଲେଖୁ ଆମେ ବରଫଖଣ୍ଡ ବିଷୟ ଆଲୋଚନା
କଲେ । କେନ୍ଦ୍ର ଇଉରୋପ ଓ ଇଂଲଣ୍ଡକୁ ବରଫଖଣ୍ଡ ସବୁ ଆସିଥିଲା ବୋଲି ଆମେ
କହିପାରୁ; କାରଣ ଏହିସବୁ ଦେଶରେ ଆଜି ସୁଦ୍ଧା ବରଫଖଣ୍ଡର ଚିହ୍ନସବୁ ଦେଖିବାକୁ
ମିଳେ । ପୁରୁଣା ପାହାଡ଼ ସବୁରେ ଏହି ଚିହ୍ନ ଦେଖାଯାଏ ଏବଂ ସମସ୍ତ କେନ୍ଦ୍ର ଓ ଉତ୍ତର
ଇଉରୋପରେ ସେତେବେଳେ ଭୀଷଣ ଥଣ୍ଡା ଥିଲା ବୋଲି ଆମେ ଏଥିରୁ ବୁଝୁ । ପରେ
ଏଠାରେ କ୍ରମେ ଗ୍ରୀଷ୍ମ ହେଲା ଏବଂ ବରଫଖଣ୍ଡସବୁ ତରଳିଗଲା । ଭୂତତ୍ତ୍ୱବିତ୍‌ମାନେ
(ଯେଉଁମାନେ ଭୂମିର ଇତିହାସ ଗବେଷଣା କରନ୍ତି ) କହନ୍ତି ଯେ ଏହି ଥଣ୍ଡା ପରେ
ଏପରି ଏକ ଗ୍ରୀଷ୍ମ ପଡ଼ିଥିଲା, ଯାହା ବର୍ତ୍ତମାନ ସୁଦ୍ଧା ଇଉରୋପରେ ହୁଏ ନାହିଁ । ଏହି
ଉଷ୍ଣତା ଫଳରେ ଇଉରୋପରେ ଘନ ଜଙ୍ଗଲସବୁ ଜାତ ହେଲା ।

ଆର୍ଯ୍ୟମାନେ ମଧ୍ୟ କେନ୍ଦ୍ର ଇଉରୋପରେ ପହଞ୍ଚିଥିଲେ । ଏହି ସମୟରେ
ସେମାନେ ସେଠାରେ ସ୍ମରଣୀୟ ବିଶେଷ କିଛି କରିଥିଲାପରି ମନେହୁଏ ନାହିଁ;

ତେଣୁ ସେ ବିଷୟରେ ବର୍ତ୍ତମାନ ଆମେ ଆଲୋଚନା କରିବା ନାହିଁ । ସମ୍ଭବତଃ ଗ୍ରୀସ୍ ଓ ଭୂମଧ୍ୟସାଗରର ସଭ୍ୟ ଲୋକେ କେନ୍ଦ୍ର ଓ ଉତ୍ତର-ଇଉରୋପର ଲୋକଙ୍କୁ ବର୍ବର ବୋଲି ମନେ କରୁଥିଲେ । ମାତ୍ର ଏହି "ବର୍ବରମାନେ" ସେମାନଙ୍କର ଜଙ୍ଗଲ ଓ ଗ୍ରାମରେ ଏକ ଯୋଦ୍ଧା ଓ ସୁସ୍ଥ ଜାତି ଭାବରେ ଜୀବନ କଟାଉଥିଲେ ଏବଂ ନିଜ ଅଜ୍ଞାତରେ ଦକ୍ଷିଣ-ଇଉରୋପରେ ଅଧିକ ସଭ୍ୟ ସହରବାସୀଙ୍କ ଉପରେ କର୍ତ୍ତୃତ୍ୱ କରିବା ଲାଗି ପ୍ରସ୍ତୁତ ହେଉଥିଲେ । କିନ୍ତୁ ଏହା ଅନେକ ଦିନ ପରେ ଘଟିଥିଲା; ତେଣୁ ସେ ବିଷୟରେ ଆମର ଆଗରୁ ଚିନ୍ତା କରିବା ଦରକାର ନାହିଁ ।

ଉତ୍ତର-ଇଉରୋପ ସମ୍ବନ୍ଧରେ ଆମେ ଖୁବ୍ ଅଳ୍ପ ଜାଣୁ । ବଡ଼ ବଡ଼ ମହାଦେଶ ଓ ଅନ୍ୟ ରାଜ୍ୟଗୁଡ଼ିକ ସମ୍ବନ୍ଧରେ ଆମେ କିଛି ଜାଣୁନା ବୋଲି ଧରାଯିବ । କଲମ୍ବସ୍ ଆମେରିକା ଆବିଷ୍କାର କରିଥିଲେ ବୋଲି ଧରାଯାଏ । ତେଣୁ ସେଠାରେ ଯେ ପୂର୍ବରୁ ସଭ୍ୟ ଲୋକେ ନ ଥିଲେ, ଏହା ନୁହେଁ—ଏକଥା ସତ୍ୟ ନୁହେଁ ବୋଲି ଏବେ ଦେଖା-ଯାଉଅଛି । କିନ୍ତୁ ଯାହାହେଉ ଆମେ ଯେଉଁ ଆଦିକାଳ ବିଷୟ ଆଲୋଚନା କରୁଛେ, ସେକାଳର ଆମେରିକା ସମ୍ବନ୍ଧରେ ଆମେ କିଛି ଜାଣୁ ନା । ସେହିପରି ଇଜିପ୍ଟ ଓ ଭୂମଧ୍ୟସାଗରର ଉପକୂଳ ଛଡ଼ା ଆଫ୍ରିକା ମହାଦେଶ ସମ୍ବନ୍ଧରେ ଆମକୁ ବିଶେଷ କିଛି ଜଣା ନାହିଁ । ଏତେବେଳେ ଇଜିପ୍ଟର ପୁରାତନ ସଭ୍ୟତା ବୋଧହୁଏ ଲୋପ ହେବା ଉପରେ ଥିଲା । ମାତ୍ର ତାହାହେଲେ ସୁଦ୍ଧା ସେତିକାଳରେ ଏହା ଗୋଟିଏ ଅତି ଉନ୍ନତ ଦେଶ ଥିଲା ।

ଏସିଆରେ କ'ଣ ହେଉଥିଲା ଆମେ ବର୍ତ୍ତମାନ ଆଲୋଚନା କରିବା । ତୁ ଜାଣ୍ଣ, ମେସୋପଟମିଆ, ଭାରତ ଓ ଚୀନ ଏହି ତିନୋଟି ହିଁ ଏସିଆରେ ପୁରାତନ ସଭ୍ୟତାର କେନ୍ଦ୍ର ଥିଲା ।

ସେହି ପ୍ରାଚୀନ କାଳରେ ସୁଦ୍ଧା ମେସୋପଟମିଆ, ଇରାନ୍ ଓ ଏସିଆ ମାଇନରରେ ସାମ୍ରାଜ୍ୟ ପରେ ସାମ୍ରାଜ୍ୟ ଗଢ଼ିଉଠିଛି ଓ ଲୋପ ପାଇଛି । ସେତେବେଳେ ଆସିରିଆନ୍ ମେଡ଼ିୟାନ, ବେବିଲୋନିୟାନ୍ ଏବଂ ପରେ ଇରାନୀ ସାମ୍ରାଜ୍ୟ ସବୁ ଥିଲା । ଏହି ସାମ୍ରାଜ୍ୟ କିପରି ନିଜ ନିଜ ଭିତରେ ଲଢ଼ାଇ କରୁଥିଲେ କିମ୍ବା ଶାନ୍ତିରେ ବାସ କରୁଥିଲେ କିମ୍ବା ପ୍ରତ୍ୟେକ ପ୍ରତ୍ୟେକଙ୍କୁ ଧ୍ୱଂସ କରୁଥିଲେ, ଏ ବିଷୟରେ ବିସ୍ତୃତ ବିବରଣୀ ଆମର ବର୍ତ୍ତମାନ ଜାଣିବା ଦରକାର ନାହିଁ । ଗ୍ରୀକ୍ ନଗରତନ୍ତ୍ର ଓ ପଶ୍ଚିମ ଏସିଆରେ ଥିବା ସାମ୍ରାଜ୍ୟ ଭିତରେ ପାର୍ଥକ୍ୟ ତୁ ନିଜେ ଲକ୍ଷ୍ୟ କରିବୁ । ଅତି ଆଦିକାଳରୁ ଏହିସବୁ ଦେଶ ଭିତରେ ବଡ଼ ଶାସନ ବା ସାମ୍ରାଜ୍ୟ ଆଡ଼କୁ ଗୋଟାଏ ଝୁଙ୍କ ଥିବାର ଦେଖାଯାଏ । ଏହା ସେମାନଙ୍କର ଅତୀତ ସଭ୍ୟତା କିମ୍ବା ଅନ୍ୟ କୌଣସି କାରଣରୁ ହୋଇପାରିଥାଏ ।

ଗୋଟିଏ ନାମ ଜାଣିବାକୁ ତୋର ନିଶ୍ଚୟ ଆଗ୍ରହ ହେବ । ତାହା ହେଉଛି କ୍ରୀସସ୍ । ଏ ନାମ ତୁ ନିଶ୍ଚୟ ଶୁଣିଥିବୁ । 'କ୍ରୀସସ୍ ପରି ଧନୀ ହେବା' ବୋଲି ଗୋଟିଏ ଇଂରେଜୀରେ ପ୍ରଚଳିତ କଥା ଅଛି । ଏହି କ୍ରୀସସ୍ କିପରି ଧନୀ, ଗର୍ବୀ ଏବଂ କିପରି ନମ୍ର ବି ଥିଲା, ଏ ସମ୍ବନ୍ଧରେ ତୁ ଗଳ୍ପ ପଢ଼ିଥାଇପାରୁ । ଆଜିକାଲି ଯେଉଁଠି ଏସିଆ ମାଇନର ଅଛି, ସେଠାରେ ଏସିଆର ପଶ୍ଚିମ ଉପକୂଳରେ ଲିଦିଆ ବୋଲି ଏକ ଦେଶ ଥିଲା । କ୍ରୀସସ୍ ଏହି ଦେଶର ରାଜା ଥିଲେ । ଏହି ଦେଶଟି ସମୁଦ୍ରକୁ ଲାଗିଥିବାରୁ ଏଠାରେ ଖୁବ୍ ବାଣିଜ୍ୟ ହେଉଥିଲା । ତାଙ୍କ ସମୟରେ ସାଇରସ୍ ଅଧୀନରେ ଇଂରାଜୀ ସାମ୍ରାଜ୍ୟ ଗଢ଼ିଉଠିଥିଲା ଓ ଶକ୍ତିଶାଳୀ ହୋଇଥିଲା । ସାଇରସ୍ ଓ କ୍ରୀସସ୍ ମଧ୍ୟରେ ବିବାଦ ଲାଗିଲା ଏବଂ ସାଇରସ୍ କ୍ରୀସସ୍‌କୁ ପରାସ୍ତ କଲା । ଗ୍ରୀକ୍ ଇତିହାସଲେଖକ ହିରୋଡ଼ୋଟସ୍ ଏହି ପରାଜୟ ଏବଂ ଦୁଃଖବେଳେ ସୁଦ୍ଧା କିପରି ଗର୍ବୀ କ୍ରୀସସ୍‌ର ଜ୍ଞାନ ଓ ବୁଦ୍ଧି ଜନ୍ମିଥିଲା, ସେ ସମ୍ବନ୍ଧରେ ଲେଖିଛନ୍ତି ।

ସାଇରସ୍‌ର ଖୁବ୍ ବଡ଼ ସାମ୍ରାଜ୍ୟ ଥିଲା; ସମ୍ଭବତଃ ପୂର୍ବଦିଗରେ ଏହା ଭାରତ ପର୍ଯ୍ୟନ୍ତ ବିସ୍ତାର ଲଭିଥିଲା । ମାତ୍ର ତାର ଜଣେ ଉତ୍ତରାଧିକାରୀ ଡାରାୟସ୍‌ର ଆହୁରି ବଡ଼ ସାମ୍ରାଜ୍ୟ ଥିଲା । ଇଜିପ୍ଟ୍ ଏବଂ କେନ୍ଦ୍ର ଏସିଆର ସାମାନ୍ୟ ଅଂଶ ଏବଂ ଏପରିକି ସିନ୍ଧୁ (Indus) ନଦୀ ପାଖରେ ଭାରତର କେତେକ ଅଂଶ ଏହାର ଅନ୍ତର୍ଗତ ଥିଲା । ଭେଟି ସ୍ୱରୂପ ଏହି ଭାରତୀୟ ପ୍ରଦେଶରୁ ବହୁପରିମାଣ ସୁନାଗୁଣ୍ଡ ତାଙ୍କ ନିକଟକୁ ପଠାଯାଉଥିଲା ବୋଲି କୁହାଯାଏ । ସେ ସମୟରେ ସିନ୍ଧୁନଦୀ ନିକଟରେ ନିଶ୍ଚୟ ସୁନାଗୁଣ୍ଡ ମିଳୁଥିବ । ଆଜିକାଲି ସେଠାରେ କିଛି ଦେଖିବାକୁ ମିଳେ ନାହିଁ ଏବଂ ଏ ଅଞ୍ଚଳଟି ପଡ଼ିଆ ଜମି କହିଲେ ଚଳେ । କିପରି ଜଳବାୟୁ ପରିବର୍ତ୍ତନ ହୋଇଛି, ତାହା ଏଥିରୁ ବୁଝାପଡ଼େ ।

ତୁ ଇତିହାସ ପଢ଼ି ଅତୀତ ଅବସ୍ଥା ସମ୍ବନ୍ଧରେ ଚିନ୍ତା କଲେ ଏବଂ ବର୍ତ୍ତମାନ ଅବସ୍ଥା ସମ୍ବନ୍ଧରେ ତାହାର ତୁଳନା କଲେ ମଧ୍ୟ-ଏସିଆରେ କିପରି ସବୁ ପରିବର୍ତ୍ତନ ଘଟିଛି, ତାହା ଜାଣିବା ପାଇଁ ତୋହର ଆଗ୍ରହ ବଢ଼ିବ । ଏହି ସ୍ଥାନରୁ ହିଁ ଅସଂଖ୍ୟ ଜାତି, ଦଳ ଦଳ ହୋଇ ନରନାରୀ ବାହାରି ସୁଦୂର ମହାଦେଶମାନଙ୍କ ଆଡ଼କୁ ଚାଲିଯାଇଥିଲେ । ଏହିଠାରେ ହିଁ ଅତୀତରେ ଆମର ବମ୍ବେ ବା କଲିକତାଠାରୁ ଆହୁରି ବଡ଼ ଓ ଇଉରୋପର ରାଜଧାନୀ ସଦୃଶ ବଡ଼ ବଡ଼ ସହରସବୁ ଥିଲା । ସେଗୁଡ଼ିକ ଖୁବ ସମୃଦ୍ଧିଶାଳୀ ଓ ଜନବହୁଳ ଥିଲା । ବଗିଚା, ଶସ୍ୟାଗାର ପ୍ରତ୍ୟେକ ସ୍ଥାନରେ ରହିଥିଲା ଏବଂ ଜଳବାୟୁ ସମଶୀତଳ ଥିଲା ଅର୍ଥାତ୍ ବେଶି ଗରମ ହେଉ ନଥିଲା କିମ୍ବା ବେଶି ଥଣ୍ଡା ପଡ଼ୁନଥିଲା । ଏ ଦେଶରେ ଏହିସବୁ ଥିଲା । ଆଜି ଶହ ଶହ ବର୍ଷ ହେଲା ଏ ଦେଶ ଫାଙ୍କା ହୋଇ ଏକ ମରୁଭୂମି ପରି ପଡ଼ିରହିଛି । ସମରକନ୍ଦ ଓ ବୋଖାର ସହର ଆଜି ସୁଦ୍ଧା ରହିଛି । ଏହା ସ୍ମରଣ କଲାବେଳକୁ ଅନେକ ଅତୀତ ସ୍ମୃତି ଜାଗିଉଠୁଛି; କିନ୍ତୁ ଏଗୁଡ଼ିକ ଏହାର ଅତୀତର ଭୂତ ପରି ରହିଛି ।

ମୁଁ ପୁଣି ଆଗେଇଗଲିଣି—ଆମେ ଯେଉଁ ଅତୀତ କାଳ ଆଲୋଚନା କରୁଛେ, ସେତେବେଳେ ସମରକନ୍ଦ ବା ବୋଖାର୍ ସହର ନ ଥିଲା । ଏହା ପରେ ହେଲା । ଭବିଷ୍ୟତର ଆବରଣ ଏହାକୁ ଘୋଡ଼ାଇ ରଖିଥିଲା । ମଧ୍ୟ ଏସିଆର ଉତ୍ଥାନ ଓ ପତନ ବିଷୟ ତୁ ପରେ ଜାଣିବୁ ।

# ୯ । ପୁରାତନ ରୀତିର ଚୋଙ୍ଗ

ଜାନୁଆରୀ ୧୪, ୧୯୩୧

ଜେଲ୍‌ଖାନାରେ ମୋର ବିଚିତ୍ର ଅଭ୍ୟାସ ସବୁ ହେଉଛି । ସେଥିରୁ ଗୋଟିଏ ହେଉଛି ଖୁବ୍ ସକାଳୁ ଉଠିବା । ଆଜିକାଲି ସକାଳ ହେବା ପୂର୍ବରୁ ମୁଁ ଉଠୁଛି । ଗଲା ଗ୍ରୀଷ୍ମକାଳରୁ ଏହା ଆରମ୍ଭ ହୋଇଛି; କାରଣ ସକାଳର ଆଗମନ ଓ କ୍ରମେ ଉପରେ ତାରାସବୁ ଲିଭିଯାଏ, ଲକ୍ଷ୍ୟ କରିବାକୁ ମୁଁ ଭଲପାଏ । ସକାଳ ହେଲା ପୂର୍ବରୁ ଚନ୍ଦ୍ରକିରଣ ତୁ କେବେ ଦେଖିଛୁ କି ? ତାହା ଉପରେ ଦିନହେଲେ ଧୀରେ ଧୀରେ ବଦଳିଯାଏ ଦେଖିଛୁ ତ ? ମୁଁ ଅନେକ ସମୟରେ ଚନ୍ଦ୍ରାଲୋକ ଓ ସକାଳ ମଧ୍ୟରେ ଲାଗୁଥିବା ବିବାଦକୁ ଲକ୍ଷ୍ୟ କରିଛି; ସକାଳ ହିଁ ସବୁବେଳେ ଜୟ କରିଛି । ଯେଉଁ ମନ୍ଦ ଆଲୋକ ପଡ଼ିଥାଏ, ସେଥିରେ ଏହା ଚନ୍ଦ୍ରକିରଣ କି ଆସନ୍ନା ଦିନର ଆଲୁଅ କହିବା କଷ୍ଟକର ହୋଇପଡ଼େ । କିଛିକ୍ଷଣ ପରେ ସନ୍ଦେହ ଦୂର ହୋଇଯାଏ, ଦିନ ବୋଲି ପରିଷ୍କାର ଜଣାପଡ଼େ ଏବଂ ଧୂସର ଚନ୍ଦ୍ର ମାଡ଼ ଖାଇ ବିବାଦରୁ ହଟି ପଳାଏ ।

ମୋର ଏହି ଅଭ୍ୟାସ ଯୋଗୁଁ ମୁଁ ଆଜି ଉଠିଲାବେଳକୁ ତାରାସବୁ ସେହିପରି ଥିଲେ । ସକାଳ ପୂର୍ବରୁ ଯେଉଁ ଗୋଟାଏ ଅଦ୍ଭୁତ ଜିନିଷ ଲୋକ ଦେଖିପାରେ, ସେଥିରୁ ସକାଳ ହେଉଛି ବୋଲି ଅନୁମାନ ହୁଏ । ମୁଁ ପଢ଼ିବାକୁ ବସିଥିଲାବେଳେ ଦୂରରୁ ଶବ୍ଦ ଓ ଚିତ୍କାରରେ ସକାଳର ନୀରବତା ଭଙ୍ଗ ଗଲା । କୋଳାହଳ କ୍ରମେ ବୃଦ୍ଧି ପାଉଥାଏ । ମୋର ମନେପଡ଼ିଲା ଯେ ଆଜି ସଂକ୍ରାନ୍ତି—ଏହା ମାଘମେଳାର ପ୍ରଥମ ଦିବସ । ସଙ୍ଗମସ୍ଥଳରେ ବୁଡ଼ ପକାଇବା ପାଇଁ ହଜାର ହଜାର ଯାତ୍ରୀ ଗଲେଣି । ସଙ୍ଗମସ୍ଥଳରେ ଗଙ୍ଗା ଓ ଯମୁନା ମିଶିଛନ୍ତି ଏବଂ ଅଦୃଶ୍ୟ ହୋଇ ରହିଥିବା ସରସ୍ୱତୀ ମଧ୍ୟ ଏମାନଙ୍କ ସହିତ ଯୋଗ ଦେଇଛି ବୋଲି କୁହନ୍ତି । ସେମାନେ ଗଲାବେଳେ ଗୀତ ଗାଉଥାନ୍ତି ଓ ସମୟ ସମୟରେ "ଗଙ୍ଗା ମାଇ କି ଜୟ" ବୋଲି ଚିତ୍କାର କରୁଥାନ୍ତି । ନଇନୀ ଜେଲ୍ ପାଚେରି ଭେଦ କରି ସେମାନଙ୍କ ଶବ୍ଦ ଆସି ମୋ

କାନରେ ବାଜୁଥାଏ । ଏହା ଶୁଣିଲାକ୍ଷଣି କିପରି ଏକ ଦୃଢ଼ ବିଶ୍ୱାସ ଅସଂଖ୍ୟ ଲୋକଙ୍କୁ ନଦୀକୁ ଟାଣିନେଉଛି ଏବଂ କ୍ଷଣକାଳ ପାଇଁ ସେମାନେ ନିଜର ଦୁଃଖଦାରିଦ୍ର୍ୟ ପାସୋରି ପକାନ୍ତି, ସେ କଥା ଚିନ୍ତା କର । ଆଜିକି କେତେ ଶହ ବା କେତେ ହଜାର ବର୍ଷ ହେଲା ବର୍ଷକୁ ବର୍ଷ ଏହିପରି ଯାତ୍ରୀସବୁ ତ୍ରିବେଣୀକୁ ଆସୁଛନ୍ତି । ମଣିଷ ଆସେ ଓ ଯାଏ; ଶାସକ ଏବଂ ସାମ୍ରାଜ୍ୟସବୁ ଏହା ଉପରେ କିଛିକ୍ଷଣ କର୍ତ୍ତୃତ୍ୱ କରି ଅତୀତ ଗର୍ଭରେ ଲୁଚିଯାଆନ୍ତି; କିନ୍ତୁ ପୁରାତନ ରୀତି ସେହିପରି ରହିଛି ଏବଂ ବଂଶାନୁକ୍ରମେ ଲୋକେ ତାକୁ ମାନି ଚାଲୁଛନ୍ତି । ରୀତି ବା ପ୍ରଥାରେ ଅନେକ ମଙ୍ଗଳ ହୁଏ; କିନ୍ତୁ ସମୟ ସମୟରେ ଏହା ଏକ ଭୀଷଣ ବୋଝ ହୋଇପଡ଼େ ଓ ଏଥିଯୋଗୁଁ ଆମ ପକ୍ଷରେ ଅଗ୍ରସର ହେବା କଷ୍ଟକର ହୁଏ । ଏହି ପ୍ରଥା ଯେ ଆମକୁ ଅସ୍ପଷ୍ଟ ଓ ସୁଦୂର ଅତୀତ ସହିତ ବାନ୍ଧିରଖିଛି, ଏହା ଭାବିଲେ ବେଶ୍ ଆମୋଦ ଲାଗେ । ୧୩୦୦ ବର୍ଷ ପୂର୍ବର ମେଳା କାହାଣୀ ପଢ଼ିଲେ ଆହୁରି ଖୁସି ଲାଗେ— ସେତେବେଳେ ପୁଣି ଏହା ଗୋଟାଏ ପ୍ରଥାରୂପେ ଚାଲୁଥିଲା । କିନ୍ତୁ ଆମେ ଆଗକୁ ଗତି କରିବାକୁ ଚାହୁଁ ଥିଲାବେଳେ ଏହି ଜଞ୍ଜିର ଆମକୁ ଟାଣିଧରେ ଏବଂ ପ୍ରାୟ ଏହି ପ୍ରଥା ମଧ୍ୟରେ ବନ୍ଦୀ କରିପକାଏ । ଆମକୁ ଅତୀତର ଅନେକ ଘଟଣା ସହିତ ସମ୍ବନ୍ଧ ରଖିବାକୁ ହେବ; ମାତ୍ର ତାହା ସଙ୍ଗେ ସଙ୍ଗେ ଯଦି ଏହା ଆମର ଅଗ୍ରଗତିରେ ବାଧା ପହଞ୍ଚାଇବ, ତେବେ ଏହି ବନ୍ଦୀଘରକୁ ଭାଙ୍ଗି ଦେବାକୁ ପଡ଼ିବ ମଧ୍ୟ ।

୩୦୦୦ ଓ ୨୫୦୦ ବର୍ଷ ପୂର୍ବେ ଦୁନିଆଟା କିପରି ଥିଲା, ତାହାର ଗୋଟାଏ ଚିତ୍ର ଆଙ୍କିବାକୁ ମୁଁ ଗତ ଦିନ ଚିଠିରେ ଚେଷ୍ଟା କରିଛି । ମୁଁ କୌଣସି ତାରିଖର ଉଲ୍ଲେଖ କରି ନାହିଁ । ମୁଁ ତାହା ପସନ୍ଦ କରେ ନାହିଁ ଓ ତାରିଖ ନେଇ ତୋତେ ବ୍ୟସ୍ତ କରିବାକୁ ବି ଚାହେଁ ନାହିଁ । ଏହି ଅତୀତକାଳର ଘଟଣାସବୁର ଠିକ୍ ତାରିଖ ଜାଣିବା ସହଜ ନୁହେଁ । ଶୃଙ୍ଖଳିତ ଭାବରେ ଘଟଣାସବୁ ସ୍ମରଣ ରଖିବା ନିମନ୍ତେ ପରେ କେତେ କେତେବେଳେ ଦରକାରୀ ତାରିଖ ଦିଆଯାଇପାରେ ଓ କେତେକ ତାରିଖ ମନେରଖିବା ମଧ୍ୟ ଆବଶ୍ୟକ ।

ଗ୍ରୀସ୍, ଭୂମଧ୍ୟସାଗର, ଇଜିପ୍ଟ, ଏସିଆ ମାଇନର ଓ ଇରାନ୍ ସମ୍ବନ୍ଧରେ ଆମର ଗୋଟାଏ ଧାରଣା ହେଲା । ବର୍ତ୍ତମାନ ଆମ ନିଜ ଦେଶକୁ ଆସିବା । ଭାରତର ପ୍ରାରମ୍ଭିକ ଇତିହାସ ପଢ଼ିବାରେ ଗୋଟିଏ ବଡ଼ ଅସୁବିଧା ଅଛି । ଏଠାରେ ଆଦି-ଆର୍ଯ୍ୟମାନେ; ଯାହାଙ୍କୁ ଇଣ୍ଡୋ ଆର୍ଯ୍ୟାନ୍ (Indo Aryan) ବୋଲି କହନ୍ତି, କୌଣସି ଇତିହାସ ଲେଖି ନ ଥିଲେ । ସେମାନେ କିପରି ଅନେକ ବିଷୟରେ ବଡ଼ ଥିଲେ, ତାହା ଆମେ ଆମର ଆଗ ଚିଠିରେ ଦେଖିଛେ । ତାଙ୍କ ସମୟରେ ଲେଖା ବହି ବେଦ, ଉପନିଷଦ, ରାମାୟଣ, ମହାଭାରତ ଓ ଅନ୍ୟ ବହିସବୁ କେବଳ ମହାନ୍ ଲୋକେ ହିଁ ଲେଖିପାରନ୍ତି । ଏହି ବହି ଓ ଅନ୍ୟ ସାମଗ୍ରୀରୁ ଆମେ ଅତୀତ ଇତିହାସ ଜାଣିପାରୁ । ଆମର ପୂର୍ବପୁରୁଷଙ୍କର

ସ୍ଥୂଳଚଳନ, ଶସ୍ତ୍ରାଧାର, ଜୀବନଧାରଣ ପ୍ରଣାଳୀ ଆଦି ସମ୍ବନ୍ଧରେ ଆମେ ଏଥିରୁ ଜାଣୁ । କିନ୍ତୁ ଏଗୁଡ଼ିକ ପ୍ରକୃତ ଇତିହାସ ନୁହେଁ । ଏହି ସମୟରେ ଅନେକ ବର୍ଷ ପରବର୍ତ୍ତୀ କାଶ୍ମୀର ଇତିହାସ ସଂସ୍କୃତରେ ଲେଖା ଅଛି । ଏହାକୁ ରାଜତରଙ୍ଗିଣୀ କହନ୍ତି । ଏଥିରେ କାଶ୍ମୀର ରାଜାମାନଙ୍କର ବିବରଣୀସବୁ ରହିଛି ଏବଂ କଲ୍ହଣ ଏହାକୁ ଲେଖିଛନ୍ତି । ତୁ ଶୁଣି ଖୁସି ହେବୁ ଯେ ମୁଁ ତତେ ଏ ଚିଠିସବୁ ଲେଖୁଥିଲାବେଳେ ରଣଜିତ୍ ଫୁଫା * ସଂସ୍କୃତରୁ କାଶ୍ମୀରର ଏହି ଇତିହାସକୁ ଅନୁବାଦ କରୁଛନ୍ତି । ସେ ପ୍ରାୟ ଅଧା ଶେଷ କଲେଣି । ଏହା ଗୋଟିଏ ଖୁବ୍ ବଡ଼ ବହି । ଏହାର ପୁରା ଅନୁବାଦ ପ୍ରକାଶ ପାଇଲେ ଆମେ ସବୁ ନିଶ୍ଚୟ ଆଗ୍ରହରେ ପଢ଼ିବା; କାରଣ ଆମର ଦୁର୍ଭାଗ୍ୟ ଯେ ଆମ ଭିତରୁ ଅନେକଙ୍କର ମୂଳ ଗ୍ରନ୍ଥଟି ପଢ଼ିପାରିବା ଭଳି ସଂସ୍କୃତ ଜ୍ଞାନ ନାହିଁ ।

ଏହା ଗୋଟିଏ ସୁନ୍ଦର ପୁସ୍ତକ ବୋଲି ଯେ ଖାଲି ପଢ଼ିବା ତାହା ନୁହେଁ, ଏହାକୁ ପଢ଼ି ଆମେ ଅତୀତର ଅନେକ କଥା ଜାଣିପାରିବା—ବିଶେଷତଃ ଆମର ପୁରାତନ ଜନ୍ମସ୍ଥାନ କାଶ୍ମୀର ସମ୍ବନ୍ଧରେ ଜାଣିବା ।

ଆର୍ଯ୍ୟମାନେ ଭାରତକୁ ଆସିବାବେଳକୁ ଭାରତ ସଭ୍ୟ ଥିଲା । ବାସ୍ତବିକ ଉତ୍ତର-ପଶ୍ଚିମରେ ମହେଞ୍ଜୋଦାରୋ ବାହାରିଲାବେଳକୁ ଏହା ନିଶ୍ଚିତରୂପେ ଜଣାପଡ଼ୁଛି ଯେ ଆର୍ଯ୍ୟ ଆଗମନର ବହୁପୂର୍ବରୁ ଏଠାରେ ଏକ ମହାନ୍ ସଭ୍ୟତା ଥିଲା । ମାତ୍ର ଏ ସମ୍ବନ୍ଧରେ ଆମେ ଆଜିସୁଦ୍ଧା ବେଶୀ କିଛି ଜାଣୁ ନାହିଁ ।

ଯେଉଁମାନେ ପୁରାତନ ଭଗ୍ନାବଶେଷ ସମ୍ବନ୍ଧରେ ବିଶେଷରୂପେ ଗବେଷଣା କରନ୍ତି, ସେମାନେ ଯେତେବେଳେ ଏହି ସମସ୍ତ ଖୋଳି ବାହାର କରିବେ, ସେତେବେଳେ (ବାସ୍ତବିକ ଆଉ କେତେ ବର୍ଷ ପରେ) ଏ ସମ୍ବନ୍ଧରେ ଆମେ ଆହୁରି ଅନେକ କଥା ଜାଣିପାରିବା ।

ଏହାଛଡ଼ା ବି ଦକ୍ଷିଣ-ଭାରତ ଏବଂ ବୋଧହୁଏ ଉତ୍ତର-ଭାରତରେ ମଧ୍ୟ ସେ ସମୟରେ ଦ୍ରାବିଡ଼ ସଭ୍ୟତା ଖୁବ୍ ଉନ୍ନତ ଥିବା ପରି ଜଣାପଡ଼େ । ସେମାନଙ୍କର ଭାଷା ସଂସ୍କୃତରୁ ହୋଇ ନାହିଁ—ତାହା ଅତି ପୁରାତନ ଓ ସାହିତ୍ୟ ଖୁବ୍ ସୁନ୍ଦର । ସେ ଭାଷା ହେଉଛି ତେଲୁଗୁ, ତାମିଲ, କାନାଡ଼ୀ ଓ ମାଲୟାଲମ୍ । ଏହିସବୁ ଭାଷା ଆଜି ସୁଦ୍ଧା ଦକ୍ଷିଣ ଭାରତରେ ଚଳୁଛି । ତୁ ଜାଣୁ, ଜାତୀୟ କଂଗ୍ରେସ ବ୍ରିଟିଶ ସରକାର ପରି ପ୍ରଦେଶର ବିଭାଗ କରି ନାହିଁ – ଭାଷାସୂତ୍ରରେ ଭାରତର ପ୍ରଦେଶ ବିଭାଗ କରିଛି । ଏହା

* ରଣଜିତ୍, ଏସ୍. ପଣ୍ଡିତ—ପଣ୍ଡିତ ଜବାହରଲାଲଙ୍କ ଭଣୋଇ । ଦୁହେଁ ଏକ ସାଥିରେ ଜେଲ୍‌ରେ ଥିଲେ । (ଫୁଫା—ପିଇସା)

ଖୁବ୍ ଭଲ; କାରଣ ଏକଭାଷାଭାଷୀ ଏକା ଶାସନାଧୀନରେ ଚଳୁଥିବା ଲୋକେ ଏକ ପ୍ରଦେଶରେ ବାସ କରିବେ । ଆନ୍ଧ୍ର ଦେଶ ବା ଉତ୍ତର-ମାନ୍ଦ୍ରାଜର ଆନ୍ଧ୍ର ପ୍ରଦେଶରେ ତେଲୁଗୁ ଭାଷା ଚଳେ, ତାପରେ ଦକ୍ଷିଣରେ କର୍ଣ୍ଣାଟକ ଏଠି କାନାଡ଼ା ବା କାନାରୀ ଭାଷା ଚଳେ, ତାମିଲନାଡ଼ୁ ପ୍ରଦେଶରେ ତାମିଲ ଭାଷା ଚଳେ ଓ ମାଲବାର ପାଖାପାଖି କେରଳର ଲୋକେ ମାଲୟାଲମ୍ ଭାଷା କହନ୍ତି । ଏସବୁ ଅଞ୍ଚଳକୁ ପୁଣି କଂଗ୍ରେସ ଗୋଟିଏ ଗୋଟିଏ ପ୍ରଦେଶ କରିଛି । ଏଥିରେ କୌଣସି ସନ୍ଦେହ ନାହିଁ ଯେ ଭବିଷ୍ୟତରେ ଭାରତର ପ୍ରାଦେଶିକ ସୀମା ଧାର୍ଯ୍ୟ କଲାବେଳେ ପ୍ରତ୍ୟେକ ଅଞ୍ଚଳର ଭାଷା ପ୍ରତି ବିଶେଷ ଭାବରେ ଦୃଷ୍ଟି ଦିଆଯିବ ।

ଭାରତର ଭାଷା ସମ୍ବନ୍ଧରେ ତୋତେ ଏଠି କିଛି କୁହାଯାଇପାରେ । ଇଉରୋପ ଓ ଅନ୍ୟ ସ୍ଥାନରେ କେତେକ ଲୋକେ ଭାବନ୍ତି ଯେ ଭାରତରେ ଶହ ଶହ ଭାଷା ଚଳେ । ଏହା ଏକଦମ୍ ଭୁଲ ଧାରଣା ଏବଂ ଏପରି ଲୋକେ ନିଜର ଅଜ୍ଞତାର ହିଁ ପ୍ରମାଣ ଦିଅନ୍ତି । ଅବଶ୍ୟ ଭାରତ ପରି ଗୋଟିଏ ବଡ଼ ଦେଶରେ ଅନେକ ପ୍ରଚଳିତ ଭାଷା ରହିବ; ମାତ୍ର ସେହିଭଳି ପ୍ରଧାନ ଭାଷାର ସ୍ଥାନୀୟ ପ୍ରଚଳନ । ଅନେକ ପାହାଡ଼ିଆ ଜାତି ଏବଂ ଶ୍ରେଷ୍ଠ ଶ୍ରେଷ୍ଠ ସମ୍ପ୍ରଦାୟ ଦେଶର ନାନା ଅଂଶରେ ଅଛନ୍ତି, ଯେଉଁମାନେ ଅଲଗା ଭାଷା କହନ୍ତି । କିନ୍ତୁ ଭାରତକୁ ଗୋଟିଏ ସମଷ୍ଟି ଭାବରେ ଦେଖିଲେ ଏସବୁ କିଛି ନୁହେଁ । କେବଳ ଜନଗଣନା ଦୃଷ୍ଟିରୁ ତାର ଗୁରୁତ୍ୱ ଥାଇପାରେ । ମୋର ଆଗ ଚିଠିରେ ତୋତେ ମୁଁ ଯାହା ଲେଖିଛି, ଦ୍ରାବିଡ଼ ଓ ଆର୍ଯ୍ୟ ଏହି ଦୁଇ ବଂଶର ଭାଷା ହିଁ ପ୍ରକୃତରେ ଭାରତର ଭାଷା । ଆର୍ଯ୍ୟଙ୍କର ସଂସ୍କୃତ ହିଁ ପ୍ରଧାନ ଭାଷା ଥିଲା ଏବଂ ଭାରତର ଅନ୍ୟ ଆର୍ଯ୍ୟଭାଷା ସବୁ ସଂସ୍କୃତରୁ ଜାତ । ହିନ୍ଦି, ବଙ୍ଗଳା, ଗୁଜରାଟୀ ଓ ମରହଟ୍ଟୀ ଭାଷା ଏଥିରୁ ହୋଇଛି । ଏଥିରୁ ଆହୁରି କେତେକ ଭାଷା ବି ଅଛି । ଆସାମରେ ଆସାମୀ, ଓଡ଼ିଶା ବା ଉତ୍କଳରେ ଓଡ଼ିଆ ଭାଷା ଚଳେ । ଉର୍ଦ୍ଦୁ ମଧ୍ୟ ହିନ୍ଦିର ରୂପାନ୍ତର । ହିନ୍ଦି ଓ ଉର୍ଦ୍ଦୁ ଉଭୟ ଭାଷାର ମିଶ୍ରଣରେ ହିନ୍ଦୁସ୍ଥାନୀ ଭାଷା ହୋଇଛି । ସୁତରାଂ ଭାରତର ପ୍ରଧାନ ଭାଷା ହେଉଛି ଦଶଟି—ହିନ୍ଦୁସ୍ଥାନୀ, ବଙ୍ଗଳା, ଗୁଜରାଟୀ, ମରହଟ୍ଟୀ, ତାମିଲ୍, ତେଲୁଗୁ, କାନାରୀ, ମାଲୟାଲମ୍, ଓଡ଼ିଆ ଏବଂ ଆସାମୀ । ଏଥିରୁ ହିନ୍ଦୁସ୍ଥାନୀ ହେଉଛି ଆମର ମାତୃଭାଷା । ଏହା ପଞ୍ଜାବ, ଯୁକ୍ତପ୍ରଦେଶ, ବିହାର, ମଧ୍ୟପ୍ରଦେଶ, ରାଜପୁତାନା, ଦିଲ୍ଲୀ ଓ ମଧ୍ୟଭାରତରେ ଚଳେ । ପ୍ରାୟ ସମସ୍ତ ଉତ୍ତର-ଭାରତରେ ଏହି ଭାଷା କହନ୍ତି । ଏହା ଏକ ପ୍ରକାଣ୍ଡ ଅଞ୍ଚଳ ଏବଂ ଏଥିରେ ପ୍ରାୟ ୧୫୦,୦୦୦,୦୦୦ ଲୋକ ବାସକରନ୍ତି । ତେଣୁ ତୁ ଦେଖିପାରିବୁ ଯେ ୧୫ କୋଟି ଲୋକ ସାମାନ୍ୟ ସଂଶୋଧିତ ହିନ୍ଦୁସ୍ଥାନୀ ଭାଷା କହନ୍ତି ଏବଂ ତୁ ମଧ୍ୟ ଭଲଭାବେ ଜାଣୁ ଯେ ଭାରତର ଅଧିକାଂଶ ଅଞ୍ଚଳରେ ହିନ୍ଦୁସ୍ଥାନୀ ବୁଝିପାରନ୍ତି । ଏହା ଭାରତର ରାଷ୍ଟ୍ରଭାଷା ହେବା ସମ୍ଭବ । ମାତ୍ର ଏଥିରୁ ବୁଝିବା ଉଚିତ ନୁହେଁ ଯେ ମୁଁ ଆଉ ଯେଉଁସବୁ

ପ୍ରଧାନ ଭାଷାଗୁଡ଼ିକ କଥା କହିଲି; ତାହା ଲୋପ ହୋଇଯିବ । ସେଗୁଡ଼ିକ ପ୍ରାଦେଶିକ ଭାଷା ରୂପେ ଅବଶ୍ୟ ରହିବ; କାରଣ ତାର ସୁନ୍ଦର ସାହିତ୍ୟସବୁ ରହିଛି ଏବଂ ଗୋଟିଏ ଉନ୍ନତ ଭାଷାରୁ କେବେହେଁ ଲୋକଙ୍କୁ ବଞ୍ଚିତ କରାଯିବ ନାହିଁ । କୌଣସି ଦେଶର ଲୋକଙ୍କର ଉନ୍ନତି ପାଇଁ ଏବଂ ସେମାନଙ୍କର ସନ୍ତାନର ଶିକ୍ଷା ପାଇଁ ନିଜ ଭାଷା ହିଁ ଏକମାତ୍ର ବାଟ । ଭାରତରେ ଆଜି ସବୁକଥା ଓଲଟା ଓ ଆମେ ନିଜ ଭିତରେ ବହୁତ ଇଂରାଜୀ ବ୍ୟବହାର କରୁ । ତୋ ପାଖକୁ ଇଂରାଜୀରେ ଲେଖିବା ବି ଏକ ହାସ୍ୟାସ୍ପଦ କଥା; ତଥାପି ମୁଁ ତତେ ସେଥିରେ ଲେଖୁଛି । ଆମେ ଶୀଘ୍ର ଏ ଅଭ୍ୟାସ ଛାଡ଼ିବା ବୋଲି ମୁଁ ଆଶାକରେ ।

## ୧୦ । ଅତୀତ ଭାରତରେ ଗ୍ରାମପଞ୍ଚାୟତ

ଜାନୁୟାରି ୧୬, ୧୯୩୧

ମୁଁ ବେଳୁବେଳେ ଅସଲ କଥାରୁ ଛାଡ଼ି ଏଣେତେଣେ ଚାଲିଯାଉଛି । ଏପରି ଅବସ୍ଥାରେ ଅତୀତ ଇତିହାସ ସମ୍ବନ୍ଧରେ ଆମେ କିପରି ବେଶି ଆଲୋଚନା କରିପାରିବା ? ଗତ ଚିଠିରେ ମୁଁ ଠିକ୍ ଏହି ବିଷୟ ଲେଖିବାକୁ ଯାଉଥିବାବେଳେ ହିଁ ଭାରତର ଭାଷା ସମ୍ବନ୍ଧରେ ଆଲୋଚନାରେ ଲାଗିଗଲି ।

ଅତୀତ ଭାରତକୁ ଚାଲ ଯିବା । ତୁ ଜାଣୁ ଆଜିକାଲିକାର ଆଫଗାନିସ୍ଥାନ ସେତେବେଳେ ଓ ତାପରେ ଅନେକ ବର୍ଷ ପର୍ଯ୍ୟନ୍ତ ଭାରତର ଗୋଟିଏ ଅଞ୍ଚଳ ଥିଲା । ଭାରତର ଉତ୍ତର-ପଶ୍ଚିମ ଅଞ୍ଚଳକୁ ଗାନ୍ଧାର କହୁଥିଲେ । ସମଗ୍ର ଉତ୍ତର ଅଞ୍ଚଳରେ ସିନ୍ଧୁ ଓ ଗଙ୍ଗାନଦୀର ସମତଳ ଭୂମିରେ ବଡ଼ ବଡ଼ ଆର୍ଯ୍ୟବସତି ଥିଲା । ଏହି ଆର୍ଯ୍ୟମାନେ ବୋଧହୁଏ ସହର ଗଢ଼ିବା ଭଲ ରୂପେ ଜାଣିଥିଲେ; କାରଣ ସେମାନଙ୍କ ଭିତରୁ ଅନେକ ଇରାନ୍ ଓ ଇରାକ୍ ଆର୍ଯ୍ୟବସତିରୁ ଆସିଥିଲେ—ସେବକାଳରେ ମଧ୍ୟ ସେଠାରେ ଖୁବ୍ ବଡ଼ ବଡ଼ ସହର ଥିଲା । ଆର୍ଯ୍ୟବସତି ମଧ୍ୟରେ ବି ଅନେକ ଜଙ୍ଗଲ ଥିଲା ଏବଂ ବିଶେଷତଃ ଉତ୍ତର ଓ ଦକ୍ଷିଣ ଭାରତ ଭିତରେ ଗୋଟାଏ ବଡ଼ ଅରଣ୍ୟ ଥିଲା । ଏହି ଆର୍ଯ୍ୟଙ୍କ ଭିତରୁ କେହି ଅରଣ୍ୟ ଅତିକ୍ରମ କରି ଦକ୍ଷିଣକୁ ଯିବା ସମ୍ଭବ ନୁହେଁ; କିନ୍ତୁ କେତେଜଣ ଆବିଷ୍କାର ଓ ବାଣିଜ୍ୟ କରିବାକୁ ଏବଂ ଆର୍ଯ୍ୟ ସଂସ୍କୃତି ଓ ରୀତି ଦକ୍ଷିଣରେ ବିସ୍ତାର କରିବା ନିମନ୍ତେ ଯାଇ ପାରିଥାନ୍ତି । ପୁରାତନ ଗାଥାରୁ ଜଣାପଡ଼େ ଯେ ଦାକ୍ଷିଣାତ୍ୟରେ ପ୍ରଥମେ ଆର୍ଯ୍ୟଙ୍କ ଭିତରୁ ଋଷି ଅଗସ୍ତ୍ୟ ହିଁ ଯାଇ ଆର୍ଯ୍ୟଧର୍ମ ଓ ସଂସ୍କୃତି ପ୍ରଚାର କରିଥିଲେ ।

ଭାରତ ଓ ବିଦେଶୀ ରାଜ୍ୟ ଭିତରେ ଖୁବ୍ ବାଣିଜ୍ୟ ବ୍ୟବସାୟ ଚାଲୁଥିଲା । ଦକ୍ଷିଣର ଲଙ୍କାମରିଚ, ସୁନା ଓ ଆରବ ସମୁଦ୍ର ଆରପାରରୁ ଅନେକ ବିଦେଶୀ ବେପାରୀଙ୍କୁ ଟାଣି ଆଣିଥିଲା । ଖୁବ୍ ସମ୍ଭବତଃ ଧାନ ବି ରପ୍ତାନି ହେଉଥିଲା । ବେବିଲୋନଆର ପୁରାତନ କୋଠାମାନଙ୍କରେ ମାଲବାରର ଶାଗୁଆନ କାଠ ଦେଖିବାକୁ ମିଳେ ।

କ୍ରମେ ଆର୍ଯ୍ୟମାନେ ତାଙ୍କର ଗ୍ରାମ୍ୟପ୍ରଣାଳୀ ଭାରତରେ ପ୍ରଚଳନ କଲେ । ପୁରୁଣା ଦ୍ରାବିଡ଼ ଗ୍ରାମରେ ନୂଆ ଆର୍ଯ୍ୟ ଧାରଣା ମୁତାବକ ଗ୍ରାମ ଗଠନ ଚାଲିଲା । ଏସବୁ ଗ୍ରାମ ପ୍ରାୟ ସ୍ୱାଧୀନ ଥିଲେ ଏବଂ ନିର୍ବାଚିତ ପଞ୍ଚାୟତମାନଙ୍କ ଦ୍ୱାରା ଶାସିତ ହେଉଥିଲେ । ଗୋଟିଏ ରାଜା ବା ସାମନ୍ତ ଅଧୀନରେ କେତେଗୁଡ଼ିଏ ଗ୍ରାମ ବା ଛୋଟ ସହରକୁ ଏକାଠି କରି ରଖାଯାଉଥିଲା । ଏହି ରାଜା ବା ସାମନ୍ତ ବେଳେ ବେଳେ ନିର୍ବାଚିତ ହେଉଥିଲେ ଏବଂ ବଂଶାନୁକ୍ରମେ ନିଯୁକ୍ତ ହେଉଥିଲେ । ରାସ୍ତା, ପାଠଶାଳା, ଜଳସେଚନ ଲାଗି ନାଳ ଏବଂ ସାଧାରଣ ମଙ୍ଗଳ ଆଦି ସମଷ୍ଟିଗତ କାର୍ଯ୍ୟ କରିବା ନିମନ୍ତେ ବିଭିନ୍ନ ଗ୍ରାମଗୋଷ୍ଠୀ ସବୁ ପ୍ରାୟ ପରସ୍ପର ସହିତ ସହଯୋଗ କରୁଥିଲେ । ଏପରି ଦେଖାଯାଏ ଯେ ରାଜା ତାହାଙ୍କର ରାଜ୍ୟରେ ପ୍ରଧାନ ଲୋକ ହୋଇଥିଲେ ସୁଦ୍ଧା ତାଙ୍କ ମନଇଚ୍ଛା କାର୍ଯ୍ୟ କରିପାରୁ ନ ଥିଲେ । ତାଙ୍କୁ ଆର୍ଯ୍ୟ ଆଇନ୍ ଓ ରାଜନୀତି ମାନି ଚଳିବାକୁ ପଡ଼ୁଥିଲା ଏବଂ ସେ ଦେଶର ଲୋକେ ତାଙ୍କୁ କୋଣମାନି କରି ପାରୁଥିଲେ କିମ୍ବା ରାଜଗାଦିରୁ ତଡ଼ିଦେଇ ପାରୁଥିଲେ । ସୁତରାଂ ଆର୍ଯ୍ୟବର୍ତ୍ତରେ ଗୋଟାଏ ପ୍ରକାର ଗଣତନ୍ତ୍ର ଥିଲା—ତାହାର ଅର୍ଥ ଆର୍ଯ୍ୟମାନେ ଅନେକ ପରିମାଣରେ ନିଜ ସରକାର ଉପରେ କର୍ତ୍ତୃତ୍ୱ କରୁଥିଲେ ।

ଭାରତୀୟ ଆର୍ଯ୍ୟଙ୍କ ସହିତ ଗ୍ରୀକ୍ ଆର୍ଯ୍ୟଙ୍କୁ ତୁଳନା କର । ସେମାନଙ୍କ ଭିତରେ ଅନେକ ପାର୍ଥକ୍ୟ ଦେଖାଯାଉଥିଲେ ମଧ୍ୟ ଅନେକ ସାମଞ୍ଜସ୍ୟ ବି ଦେଖିବାକୁ ମିଳେ । ଉଭୟ ସ୍ଥାନରେ ଏକପ୍ରକାର ଗଣତନ୍ତ୍ର ଚାଲୁଥିଲା । ଆମର ସର୍ବଦା ଏକଥା ସ୍ମରଣ ରଖିବା ଦରକାର ଯେ ଏହି ଗଣତନ୍ତ୍ର ଅନେକ ପରିମାଣରେ ଆର୍ଯ୍ୟଙ୍କ ଭିତରେ ହିଁ ଆବଦ୍ଧ ଥିଲା । ସେମାନଙ୍କର ଦାସ କିମ୍ବା ସେମାନେ ଯାହାଙ୍କୁ ନୀଚ ଜାତି କରି ରଖିଥିଲେ, ସେମାନଙ୍କର କୌଣସି ଗଣତନ୍ତ୍ର ବା ସ୍ୱାଧୀନତା ନ ଥିଲା । ଆଜି ଆମେ ଅସଂଖ୍ୟ ଜାତି ଦେଖୁ—ସେ ସମୟରେ ଜାତିପ୍ରଥାର ଏତେ ବିଭାଗ ନ ଥିଲା । ସେ କାଳରେ ଭାରତୀୟ ଆର୍ଯ୍ୟସମାଜରେ ଚାରୋଟି ବିଭାଗ ବା ଜାତି ଥିଲା । ସେ ହେଉଛନ୍ତି—ବ୍ରାହ୍ମଣ ବା ବିଦ୍ୱାନ୍ ଲୋକ ବା ପୁରୋହିତ ବା ଋଷି, କ୍ଷତ୍ରିୟ ବା ଶାସକ, ବୈଶ୍ୟ ଅର୍ଥାତ୍ ବଣିକ ବା ବାଣିଜ୍ୟରେ ନିଯୁକ୍ତ ଲୋକସବୁ ଏବଂ ଶୂଦ୍ର ଅର୍ଥାତ୍ ଶ୍ରମିକ ବା ମୂଲିଆ ଲୋକ । ସୁତରାଂ ଏହି ବିଭାଗ ସବୁ ବ୍ୟବସାୟ ଉପରେ ଗଠିତ ହେଉଥିଲା । ବିଜିତ ଜାତିଠାରୁ ନିଜକୁ ଅଲଗା ରଖିବାର ଇଚ୍ଛା ଯୋଗୁ ଏହି ବିଭାଗ ସୃଷ୍ଟି କରାଯାଇଥିଲା । ଆର୍ଯ୍ୟମାନେ ଖୁବ୍ ଗର୍ବ ବା ବଡ଼ିମା ଦେଖାଉ-ଥିଲେ । ଅନ୍ୟ ଜାତିଙ୍କୁ ଛୋଟ ମନେ କରୁଥିଲେ ଏବଂ ସେମାନଙ୍କ ସହିତ ନିଜ ଲୋକଙ୍କୁ

ମିଶାଇଦେବାକୁ ଇଚ୍ଛୁକ ନଥିଲେ । ସଂସ୍କୃତରେ ଜାତି ପାଇଁ ଶବ୍ଦ ହେଉଛି ବର୍ଣ୍ଣ ବା ରଙ୍ଗ । ଏଥିରୁ ମନେହୁଏ ଯେ ଯେଉଁ ଆର୍ଯ୍ୟମାନେ ଆସିଲେ, ସେମାନଙ୍କର ବର୍ଣ୍ଣ ଭାରତର ଆଦିମ ଅଧିବାସୀଙ୍କ ଅପେକ୍ଷା ଟିକିଏ ଗୋରା ଥିଲା ।

ସୁତରାଂ ଆମକୁ ମନେ ରଖିବାକୁ ହେବ ଯେ ଆର୍ଯ୍ୟମାନେ ଏକ ପକ୍ଷରେ ଶ୍ରମିକ ଶ୍ରେଣୀଙ୍କୁ ଦବାଇ ରଖୁଥିଲେ ଓ ତାଙ୍କୁ ଗଣତନ୍ତ୍ରରେ ଭାଗନେବା ପାଇଁ ଅନୁମତି ଦେଉ ନ ଥିଲେ; ଅନ୍ୟ ପକ୍ଷରେ ସେମାନଙ୍କର ନିଜ ଭିତରେ ଖୁବ୍ ସ୍ୱାଧୀନତା ଥିଲା । ସେମାନେ ସେମାନଙ୍କର ରାଜା ବା ଶାସକଙ୍କୁ ଖରାପ ଆଚରଣ କରିବାକୁ ଦେଉ ନ ଥିଲେ; କୌଣସି ଶାସକ ଖରାପ ଆଚରଣ କଲେ ତାକୁ ତଡ଼ି ଦେଉଥିଲେ । ସାଧାରଣତଃ କ୍ଷତ୍ରିୟମାନେ ରାଜା ହେଉଥିଲେ । ମାତ୍ର ସମୟ ସମୟରେ ଯୁଦ୍ଧବେଳେ ଓ କୌଣସି ଅସୁବିଧା କାଳରେ ଶୂଦ୍ର କିମ୍ବା ନୀଚ ଜାତିର କୌଣସି ଲୋକ ଯଦି ଶକ୍ତିଶାଳୀ ହୋଇଥାଏ, ତେବେ ସେ ରାଜଗାଦି ପାଇପାରୁଥିଲା । ପରେ ଆର୍ଯ୍ୟଙ୍କର ଅବନତି ଘଟିଲା ଓ ତାଙ୍କ ଭିତରେ ଜାତିପ୍ରଥା ଆହୁରି କଠୋର ହୋଇଗଲା । ଅନେକ ବିଭାଗ ହେବା ଯୋଗୁଁ ଦେଶ ଦୁର୍ବଳ ହୋଇଗଲା ଏବଂ ତାହାର ପତନ ହେଲା । ସେମାନେ ସ୍ୱାଧୀନତାର ପୁରୁଣା ଧାରଣା ବି ପାସୋରି ପକାଇଲେ । କାରଣ କଥିତ ଅଛି ଯେ ପୂର୍ବକାଳରେ କୌଣସି ଆର୍ଯ୍ୟ କେବେହେଁ ଦାସ ହେବନାହିଁ, ଏପରି ପ୍ରଥା ଥିଲା ଏବଂ ଆର୍ଯ୍ୟ ନାମକୁ କଳଙ୍କିତ କରିବା ଅପେକ୍ଷା ମରିଯିବା ତାହା ପକ୍ଷରେ ଶ୍ରେୟସ୍କର ବୋଲି ମନେ କରାଯାଉଥିଲା ।

ଆର୍ଯ୍ୟବସତି ଅର୍ଥାତ୍ ସହର ଓ ଗ୍ରାମସବୁ ଅଧାପନ୍ତରିଆ ଭାବରେ ଗଢ଼ା ହୋଇ ନ ଥିଲା । ନକ୍ସା କରି ସହର ଓ ଗ୍ରାମସବୁ ତିଆରି କରା ହେଉଥିଲା ଏବଂ ଏ କଥା ଶୁଣି ଖୁସିହେବ ଯେ ଏହିସବୁ ନକ୍ସା କରିବାରେ ଜ୍ୟାମିତିର ଖୁବ୍ ସାହାଯ୍ୟ ନିଆ ଯାଉଥିଲା । ପ୍ରକୃତରେ ସେ ସମୟରେ ଦେବପୂଜାରେ ଜ୍ୟାମିତିକ ଚିତ୍ର ସବୁ ବ୍ୟବହୃତ ହେଉଥିଲା । ଆଜି ସୁଦ୍ଧା ଅନେକ ପୂଜାରେ ହିନ୍ଦୁଘରେ ଏସବୁ ଚିତ୍ର ଅଙ୍କା ଯାଇଥାଏ । ଆଜିକାଲି ଘର ଓ ସହର ନିର୍ମାଣରେ ଜ୍ୟାମିତି ବଡ଼ ଦରକାର ହୁଏ । ସେ କାଳରେ ସର୍ବଦା ଆକ୍ରମଣର ଭୟ ଥିବାରୁ ପୁରୁଣା ଆର୍ଯ୍ୟଗ୍ରାମସବୁ ଏକପ୍ରକାର ଯୁଦ୍ଧଶିବିର ପରି ଥିଲା, ଏପରିକି ଆକ୍ରମଣର ଭୟ ନଥିଲା ବେଳେ ମଧ୍ୟ ଏହି ଅନୁସାରେ ସହର ଗଢ଼ାଯାଉଥିଲା । ସେ ନକ୍ସା ଏପରି ତିଆରି ଯେ ବସତିର ଚାରିକଡ଼ରେ ପାଚେରୀ ଏବଂ ଚାରୋଟି ବଡ଼ ଫାଟକ ଓ ଚାରୋଟି ଛୋଟ ଫାଟକ ରହିପାରୁଥିଲା । ଏହି ପାଚେରୀର ଭିତର ପାଖରେ ସଜ୍ଜିତ ଭାବରେ ରାସ୍ତା ଏବଂ ଘରସବୁ ଥାଏ । ଗ୍ରାମର କେନ୍ଦ୍ରସ୍ଥାନରେ ପଞ୍ଚାୟତ ଘର ଥାଏ । ସେଠାରେ ଗ୍ରାମର ବୁଢ଼ାମାନେ ଏକତ୍ର ହୁଅନ୍ତି । ଛୋଟ ଗ୍ରାମମାନଙ୍କରେ ପଞ୍ଚାୟତ ଘର ପରିବର୍ତ୍ତେ ଗୋଟିଏ ବଡ଼ ଗଛ ଥାଏ । ପ୍ରତ୍ୟେକ ବର୍ଷ ଗାଁର ଲୋକେ ତାଙ୍କର ପଞ୍ଚାୟତ ନିର୍ବାଚନ କରିବା ନିମନ୍ତେ ଏକାଠି ହୁଅନ୍ତି ।

ଅନେକ ପାଠୁଆ ଲୋକେ ସହର ଓ ଗ୍ରାମର ନିକଟରେ ଥିବା ଜଙ୍ଗଲରେ ସରଳ ଜୀବନଯାପନ ପାଇଁ କମ୍ପ୍ରା ଶାନ୍ତିରେ ବସି ପଢ଼ିବା ଓ କାର୍ଯ୍ୟ କରିବା ପାଇଁ ବଣ ଭିତରକୁ ଚାଲିଯାଆନ୍ତି । ତାଙ୍କ ପାଖରେ ଛାତ୍ରସବୁ ଠୁଳ ହୁଅନ୍ତି ଏବଂ କ୍ରମେ ଏହି ଶିକ୍ଷକ ଓ ଛାତ୍ରଙ୍କୁ ଘେନି ନୂଆ ବସତିସବୁ ଗଢ଼ିଉଠେ । ଏହି ବସତିସବୁକୁ ଆମେ ବିଶ୍ୱବିଦ୍ୟାଳୟ ବୋଲି କହିପାରୁ । ସେଠାରେ ସୁନ୍ଦର କୋଠାବାଡ଼ି ବେଶୀ ନ ଥିଲା; ମାତ୍ର ଯେଉଁମାନେ ଜ୍ଞାନଅର୍ଜନ କରିବାକୁ ଚାହୁଁଥିଲେ, ସେମାନେ ଅନେକ ଦୂରରୁ ଏହି ବିଦ୍ୟାପୀଠକୁ ଆସୁଥିଲେ ।

ଆନନ୍ଦଭବନ*ର ସାମନାରେ ଭରଦ୍ୱାଜ ଆଶ୍ରମ ଅଛି । ତୁ ଏହା ଭଲରୂପେ ଜାଣୁ । ତୁ ବୋଧହୁଏ ଜାଣୁ ଯେ ରାମାୟଣ ଯୁଗରେ ଭରଦ୍ୱାଜ ଜଣେ ଖୁବ୍ ବିଦ୍ୱାନ ଲୋକ ଥିଲେ ବୋଲି କୁହାଯାଏ ଏବଂ ରାମଚନ୍ଦ୍ର ବନବାସ ସମୟରେ ତାଙ୍କୁ ଦେଖା କରିଥିଲେ ବୋଲି କହନ୍ତି ।

ହଜାର ହଜାର ଛାତ୍ର ତାଙ୍କ ସହିତ ବାସ କରୁଥିଲେ ବୋଲି ବି କହନ୍ତି । ସେଠି ନିଶ୍ଚୟ ଗୋଟିଏ ବିଶ୍ୱବିଦ୍ୟାଳୟ ଥିବ ଏବଂ ଭରଦ୍ୱାଜ ପ୍ରଧାନାଧକ୍ଷ ହୋଇଥିବେ । ସେକାଳରେ ଗଙ୍ଗା କୂଳରେ ତାଙ୍କ ଆଶ୍ରମ ଥିଲା । ଆଜିକାଲି ସେ ସ୍ଥାନରୁ ନଦୀ ପ୍ରାୟ ଏକ ମାଇଲ ଦୂର ହୋଇଥିଲେ ସୁଦ୍ଧା ସେ କାଳରେ ଏଠାରେ ଥିବା ସମ୍ଭବପର ମନେହେଉଛି । ଆମ ବଗିଚାର ଅନେକ ସ୍ଥାନ ବାଲି ଏବଂ ବୋଧହୁଏ ସେ ସମୟରେ ଏହା ଗଙ୍ଗାନଦୀ ଥିଲି ।

ସେ କାଳରେ ଭାରତରେ ଆର୍ଯ୍ୟଙ୍କର ପ୍ରଭୁତ୍ୱ ଥିଲା । ଦୁର୍ଭାଗ୍ୟବଶତଃ ସେକାଳର କୌଣସି ଇତିହାସ ଆମ ପାଖରେ ନାହିଁ ଏବଂ ଆମେ ଯେଉଁ ଘଟଣା ଜାଣୁ, ତାହା ଇତିହାସ ବହିସବୁରୁ ନିଆଯାଇ ନାହିଁ । ଦକ୍ଷିଣ-ବିହାରରେ ମଗଧ, ଉତ୍ତର-ବିହାରରେ ବିଦେହ, କାଶୀ ବା ବେନାରସ୍, କୋଶଳର ରାଜଧାନୀ ଥିଲା ଅଯୋଧ୍ୟା (ଆଜିକାଲିକା ଫଏଜାବାଦ୍) ଏବଂ ଗଙ୍ଗା ଓ ଯମୁନା ମଝିରେ ପାଞ୍ଚାଳ—ଏସବୁ ସେକାଳର ରାଜ୍ୟ ଓ ଲୋକତନ୍ତ୍ର ଥିଲା । ପାଞ୍ଚାଳ ଦେଶରେ ମଥୁରା ଓ କାନ୍ୟକୁବ୍ଜ ବୋଲି ଦୁଇଟି ବିଖ୍ୟାତ ସହର ଥିଲା । ପରେ ଇତିହାସରେ ମଧ୍ୟ ଏ ଦୁଇଟି ସହର ପ୍ରସିଦ୍ଧି ଲଭିଥିଲା । ଦୁଇଟିଯାକ ସହର ଆଜିସୁଦ୍ଧା ଅଛି । କାନପୁର ନିକଟରେ କନୌଜ ସହର ହେଉଛି ସେ କାଳର କାନ୍ୟକୁବ୍ଜ । ଉଜ୍ଜୟିନୀ ବି ସେ କାଳରେ ଥିଲା ଏବେ ଗୋୟାଲିୟରର ଷ୍ଟେଟ୍‌ର ଗୋଟିଏ ଶ୍ରେଷ୍ଠ ସହର ରୂପେ ଏହା ରହିଛି ।

ପାଟଳୀପୁତ୍ର ବା ପାଟନା ନିକଟରେ ବୈଶାଳୀ ନଗର ଥିଲା । ଭାରତ ଇତିହାସର ଲିଚ୍ଛବୀ ବଂଶର ଏହା ରାଜଧାନୀ ଥିଲା । ଏହି ରାଜ୍ୟର ଏକ ଲୋକତନ୍ତ୍ର ଥିଲା

* ପଣ୍ଡିତ ଜବାହରଲାଲଙ୍କର ଏଲାହାବାଦ ଘର ।

ଏବଂ ଏହା ଗୋଟିଏ ନିର୍ବାଚିତ ପରିଷଦଦ୍ୱାରା ଶାସିତ ହେଉଥିଲା । ଏହାର ଜଣେ ସଭାପତି ରହୁଥିଲେ, ତାଙ୍କ ନାମ ଥିଲା ନାୟକ ।

କାଳକ୍ରମେ ସହର ଓ ନଗରସବୁ ଗଢ଼ିଉଠିଥିଲା । ବାଣିଜ୍ୟର ଉନ୍ନତି ହେଲା ଏବଂ ଶିଳ୍ପ ଓ କାରିଗରଙ୍କ କାରୁକାର୍ଯ୍ୟ ବି ଉନ୍ନତିଲାଭ କଲା । ନଗରସବୁ ବାଣିଜ୍ୟକେନ୍ଦ୍ର ଥିଲା । ବିଦ୍ୱାନ୍ ବ୍ରାହ୍ମଣସବୁ ସେମାନଙ୍କ ଶିଷ୍ୟଙ୍କ ସହ ଜଙ୍ଗଲରେ ଯେଉଁ ଆଶ୍ରମମାନଙ୍କରେ ରହୁଥିଲେ, ତାହା ମଧ୍ୟ ବଡ଼ ବଡ଼ ବିଶ୍ୱବିଦ୍ୟାଳୟର ସହର ହୋଇ ଉଠିଥିଲା । ଏହି ବିଦ୍ୟାପୀଠରେ ସେ ସମୟରେ ଜ୍ଞାତବ୍ୟ ବିଷୟରେ ଶିକ୍ଷା ଦିଆଯାଉଥିଲା । ବ୍ରାହ୍ମଣମାନେ ବି ଯୁଦ୍ଧବିଜ୍ଞାନ ଶିକ୍ଷା ଦେଉଥିଲେ । ତୋର ମନେଥିବ, ମହାଭାରତରେ ଦ୍ରୋଣାଚାର୍ଯ୍ୟ ପାଣ୍ଡବଙ୍କର ଗୁରୁ ଥିଲେ । ସେ ଜଣେ ବ୍ରାହ୍ମଣ ଓ ଅନ୍ୟ ବିଷୟ ଛଡ଼ା ଯୁଦ୍ଧ କିପରି କରିବାକୁ ହୁଏ, ତାହା ଶିକ୍ଷା ଦେଉଥିଲେ ।

## ୧୧ । ଚୀନର ଏକହଜାର ବର୍ଷ

ଜାନୁୟାରି ୧୬, ୧୯୩୧

ବାହାରୁ ଆଜି ସମ୍ବାଦ ପହଞ୍ଚିଛି । ସମ୍ବାଦ ଶୁଣି ମନ ଚଞ୍ଚଳ ହେଉଛି, ଦୁଃଖ ବି ହେଉଛି; ତଥାପି ସେଥିରେ ମନ ଗର୍ବ ଓ ଆନନ୍ଦରେ ପୂରିଯାଉଛି । ସୋଲାପୁର ଲୋକଙ୍କ ଦୁର୍ଦ୍ଦଶା ଶୁଣିଛୁ । ଏହି ଦୁଃଖଜନକ ସମ୍ବାଦ ପହଞ୍ଚିବା ସଙ୍ଗେ ସଙ୍ଗେ ସାରା ଦେଶରେ କଣ ଘଟିଲା, ତାହା ମଧ୍ୟ କିଛି ଜାଣିଛୁ । ଆମର ଯୁବକମାନେ ଜୀବନ ଦେଉଥିବା ବେଳେ ଏବଂ ହଜାର ହଜାର ନରନାରୀ ପାଶବିକ ଲାଠିପ୍ରହାର ସହ୍ୟ କରୁଥିଲା ବେଳେ ଏଠାରେ ଚୁପ୍ ହୋଇ ବସିରହିବା କଷ୍ଟକର ହୋଇଉଠୁଛି । ମାତ୍ର ଏହା ଆମ ପକ୍ଷରେ ଗୋଟିଏ ଉତ୍ତମ ଶିକ୍ଷା । ମୋର ମନେହୁଏ, ଆମ ସମସ୍ତଙ୍କୁ ଏହିପରି ଥରେ ପରୀକ୍ଷା ଦେବାକୁ ସୁଯୋଗ ମିଳିବ । ଏବେ କଷ୍ଟ ସହିବା ପାଇଁ ଆମ ଲୋକେ କିପରି ଆଗେଇ ଚାଲିଛନ୍ତି, ଶତ୍ରୁର ନୂତନ ଅସ୍ତ୍ର ଓ ପ୍ରହାର ଫଳରେ ସେମାନେ କିପରି ଅଧିକ ଶକ୍ତିଶାଳୀ ହେଉଛନ୍ତି ଏବଂ ପ୍ରତିରୋଧ କରିବାରେ ସେମାନଙ୍କର ସଂକଳ୍ପ କିପରି ଦୃଢ଼ ହେଉଛି, ତାହା ଜାଣିଲେ ହୃଦୟ ଆନନ୍ଦରେ ଭରିଯାଏ ।

ଆଜି ଦିନର ସମ୍ବାଦ ମନରେ ଥିଲାବେଳେ ଆଉ ଅନ୍ୟ ବିଷୟସବୁ ଭାବିବା କଷ୍ଟକର ହୁଏ । ମାତ୍ର ଖାଲି ଭାବନାରେ କିଛି ଲାଭ ନାହିଁ । ଆମକୁ କୌଣସି ଠିକଣା

କାର୍ଯ୍ୟ କରିବାକୁ ହେଲେ ମନକୁ ଆୟତ୍ତ କରିବାକୁ ହେବ । ତେଣୁ ଚାଲ ଆମେ ପୁରୁଣା କାଳକୁ ଯିବା ଓ ଆମର ବର୍ତ୍ତମାନ ଗୋଳମାଳରୁ ଦୂରରେ କ୍ଷଣକାଳ ପାଇଁ ରହିବା ।

ଚାଲ ପୁରାତନ ଇତିହାସରେ ଭାରତର ଭାଇ ଚୀନ ଦେଶକୁ ଯିବା । ଚୀନ ଓ ଜାପାନ, କୋରିଆ, ଇଣ୍ଡୋ-ଚାଇନା, ଶ୍ୟାମ ଓ ବର୍ମା ପ୍ରଭୃତି ପୂର୍ବ-ଏସିଆର ଦେଶ-ଗୁଡ଼ିକରେ ଆର୍ଯ୍ୟ ନଥିଲେ । ଏଠାରେ ମାଙ୍ଗୋଲିଆ ଜାତି ଥିଲେ ।

ପ୍ରାୟ ୫୦୦୦ ବର୍ଷ ପୂର୍ବେ କିମ୍ବା ତାହା ଆଗରୁ ପଶ୍ଚିମରୁ ଚୀନ ଉପରେ ଆକ୍ରମଣ ହୋଇଥିଲା । ଏହି ଆକ୍ରମଣକାରୀ ଜାତି ମଧ୍ୟ-ଏସିଆରୁ ବି ଆସିଥିଲେ ଏବଂ ଟିକିଏ ଅଧିକ ସଭ୍ୟ ଥିଲେ । ସେମାନେ କୃଷି ଜାଣିଥିଲେ ଏବଂ ବଡ଼ ବଡ଼ ଗୋରୁ ଗାଈ ଗୋଠ ରଖୁଥିଲେ । ସେମାନେ ଭଲ ଘରସବୁ ନିର୍ମାଣ କରୁଥିଲେ ଏବଂ ତାଙ୍କର ସମାଜ ଖୁବ୍ ଉନ୍ନତ ଥିଲା । ସେମାନେ ହୋୟାଙ୍ଗ୍‌ହୋ ନଦୀ ନିକଟରେ ବସତି କଲେ । ଏହାକୁ ହଳଦିଆ ନଦୀ ବୋଲି ମଧ୍ୟ କହନ୍ତି । ଏହିଠାରେ ତାଙ୍କର ରାଜ୍ୟ ବିସ୍ତାର କଲେ । ଅନେକ କାଳ ପର୍ଯ୍ୟନ୍ତ ସେମାନେ ଚୀନ୍‌ରେ ବ୍ୟାପିରହିଲେ ଏବଂ ଶିଳ୍ପ ଓ କାରୁକାର୍ଯ୍ୟର ଉନ୍ନତି କଲେ । ଚୀନ ଲୋକେ ବେଶି କୃଷୀ ଥିଲେ ଏବଂ ଆଗ ଚଠିରେ ତତେ ଯେଉଁ କୁଳପତି (Patriarch)ଙ୍କ କଥାସବୁ ଲେଖିଥିଲି, ଏମାନଙ୍କର ପ୍ରଧାନ ଲୋକ ଠିକ୍ ସେହିପରି ଲୋକ ଥିଲେ । ୬ ବା ୭ ଶହ ବର୍ଷ ପରେ ଅର୍ଥାତ୍ ଆଜିକି ପ୍ରାୟ ୪ହଜାର ବର୍ଷରୁ ଆହୁରି ପୂର୍ବେ ୟାଓ ବୋଲି ଜଣେ ଲୋକ ନିଜକୁ ସମ୍ରାଟ ବୋଲି ପରିଚୟ ଦେଉଥିଲା । କିନ୍ତୁ ଇଜିପ୍ଟ ବା ଇରାକ୍ ପରି ସେ ସମ୍ରାଟ ନ ଥିଲା—ତାହାର ଏପରି ଉପାଧି ଥିଲା ଯେ ସେ ଗୋଟିଏ କୁଳପତି ଥିଲା କହିଲେ ଚଳେ । ଚୀନ ଲୋକେ କୃଷୀପରି ରହୁଥିଲେ ଏବଂ ସେଠାରେ କେନ୍ଦ୍ର ସରକାର ପରି କିଛି ନଥିଲା ।

କିପରି କୁଳପତିମାନେ ତାଙ୍କ ଦେଶ ଲୋକଙ୍କ ଦ୍ୱାରା ନିର୍ବାଚିତ ହେଉଥିଲେ ଓ ପରେ ସେମାନେ କିପରି ବଂଶାନୁକ୍ରମେ ରହିଲେ, ସେ ସମ୍ବନ୍ଧରେ ମୁଁ ତତେ କହିଛି । ଚୀନ୍‌ରେ ଏପରି ଘଟିଥିବାର ଦେଖାଯାଏ । ୟାଓ ପରେ ତାର ପୁଅ ହୋଇ ନଥିଲା; କିନ୍ତୁ ଦେଶରେ ସର୍ବାପେକ୍ଷା ସମର୍ଥ ଜଣେ ଲୋକକୁ ସେ ମନୋନୀତ କରିଥିଲା । ଯାହାହେଉ କ୍ରମେ ଅତି ଅଳ୍ପଦିନ ପରେ ଏହି ଉପାଧି ବଂଶାନୁକ୍ରମେ ହେଲା ଏବଂ ସିଆ (Shia) ବଂଶ ଚୀନ୍‌ରେ ପ୍ରାୟ ୪୦୦ ବର୍ଷ ରାଜୁତି କଲେ ବୋଲି କହନ୍ତି । ଶେଷ ସିଆ ଶାସନ ଖୁବ୍ ନିଷ୍ଠୁର ଥିଲା । ତା ସମୟରେ ବିପ୍ଳବ ହୋଇ ତାର ପତନ ହେଲା । ଏହାପରେ ସାଙ୍ଗ୍ ବା ସିନ୍ ବଂଶ କ୍ଷମତାକୁ ଆସିଲେ ଏବଂ ଏମାନେ ପ୍ରାୟ ୬୫୦ ବର୍ଷ ରାଜୁତି କଲେ ।

ଗୋଟିଏ ଚିଠି ପାରାରେ ଦୁଇ ବା ତିନୋଟି ବାକ୍ୟରେ ମୁଁ ଚୀନ୍‌ର ପ୍ରାୟ ୧୦୦୦ ବର୍ଷରୁ ଅଧିକ ଦିନର ଇତିହାସ ଶେଷ କରିଦେଲି । ଏତେ ଲମ୍ବା ଇତିହାସକୁ

ଏତେ ଅଳ୍ପରେ କହିବା ବାସ୍ତବିକ ଆଶ୍ଚର୍ଯ୍ୟର କଥା ନୁହେଁ କି ? କିନ୍ତୁ ତୁ ନିଶ୍ଚୟ ବୁଝି ପାରୁଥିବୁ ଯେ ମୁଁ ଗୋଟିଏ ଛୋଟ ପାରାରେ ଶେଷ କରିଦେଲି ବୋଲି ଚୀନ୍‌ର ଏହି ୧୦୦୦ ବା ୧୧୦୦ ବର୍ଷ କମ୍ ହୋଇଗଲା ନାହିଁ । ଆମେସବୁ ଦିନ, ମାସ ଓ ବର୍ଷ ଏହି ଭାବରେ ହିସାବ କରିବାରେ ଅଭ୍ୟସ୍ତ । ୧୦୦ ବର୍ଷ ବିଷୟରେ ଗୋଟାଏ ସ୍ପଷ୍ଟ ଧାରଣା ଆଣିବା ତୋ ପକ୍ଷରେ କଷ୍ଟକର । ତୋତେ ୧୩ ବର୍ଷ ହେଲାଣି—ଏହା ତୋତେ ଖୁବ୍ ବହୁତ ଜଣା ପଡ଼ୁନାହିଁ କି ? ଗୋଟିକ ପରେ ଗୋଟିଏ ବର୍ଷ ଗତହେବା ସଙ୍ଗେ ସଙ୍ଗେ ତୁ ଆହୁରି ବଡ଼ ହେଉଛୁ । ସୁତରାଂ ତୁ ୧୦୦୦ ବର୍ଷର ଇତିହାସ କିପରି ମନେ ରଖିପାରିବୁ ? ଏହା ଅନେକବର୍ଷ । ବଂଶ ପରେ ବଂଶ ଆସିଛି ଓ ଯାଇଛି; ଛୋଟ ସହର ସବୁ ବଡ଼ ବଡ଼ ନଗରରେ ପରିଣତ ହୋଇଛି ଏବଂ ପୁଣି ଧୂଳିସାତ୍ ହୋଇଯାଇଛି—ତାହା ସ୍ଥାନରେ ନୂଆ ସହର ସୃଷ୍ଟି ହୋଇଛି । ଗତ ଏକହଜାର ବର୍ଷର ଇତିହାସକୁ ଥରେ ଭାବିଲେ ତୁ ଏହି ଦୀର୍ଘକାଳ ସମ୍ବନ୍ଧରେ ଧାରଣା କରିପାରିବୁ । ଏହି ୧୦୦୦ ବର୍ଷ ଭିତରେ ଦୁନିଆରେ କି ଅଦ୍ଭୁତ ପରିବର୍ତ୍ତନ ସବୁ ହୋଇଯାଇଛି !

ଚୀନର ଇତିହାସ ଅଲୌକିକ ଘଟଣାପୂର୍ଣ୍ଣ । କେତେ ପୁରାକାଳର ରାଜନୀତି, ବଂଶଧରମାନେ କିଏ ୫୦୦ କିମ୍ବା ଏପରିକି ୮୦୦ ବର୍ଷ ବା ତହିଁରୁ ଅଧିକ ଦିନ ରହିଛନ୍ତି ।

ମୁଁ ଗୋଟିଏ ପାରାରେ ଚୀନର ଯେଉଁ ୧୧୦୦ ବର୍ଷର ଇତିହାସ ତୋତେ ଲେଖିଦେଲି, ତାର ପ୍ରଗାଢ଼ ବିଷୟରେ ଚିନ୍ତାକର । କ୍ରମେ କୁଳପତିଙ୍କ ଦ୍ୱାରା ଶାସିତ ପ୍ରଥା ଚାଲିଗଲା ଏବଂ କେନ୍ଦ୍ର ସଙ୍କୋଚ ହେଲା । ସୁନ୍ଦର ଭାବରେ ଶାସିତ ରାଜ୍ୟ ଦେଖାଗଲା । ଏହି ଅତୀତ କାଳରେ ସୁଦ୍ଧା ଚୀନ୍‌ର ଲୋକେ ଲେଖି ଜାଣିଥିଲେ । କିନ୍ତୁ ତୁ ଜାଣୁ, ଆମ ଲେଖା କିମ୍ବା ଇଂରାଜୀ ଓ ଫରାସୀ ଲେଖାଠାରୁ ଚୀନ ଲେଖା ସମ୍ପୂର୍ଣ୍ଣ ପୃଥକ୍ । ଏହାର କୌଣସି ଅକ୍ଷର ନାହିଁ । ଏହା କେବଳ ଚିହ୍ନ ବା ଚିତ୍ର ଆକାରରେ ଲେଖାଯାଏ ।

ପ୍ରାୟ ୬୪୦ ବର୍ଷ ରାଜୁତି କଲାପରେ ଗୋଟିଏ ବିପ୍ଳବ ଦ୍ୱାରା ସାଙ୍ଗ୍ ବଂଶର ଲୋପ ହେଲା ଏବଂ ଚୁଓ ବଂଶ କ୍ଷମତା ପାଇଲେ । ଏମାନେ ସାଙ୍ଗ୍‌ମାନଙ୍କ ଅପେକ୍ଷା ଆହୁରି ଅଧିକ ଦିନ ରାଜୁତି କଲେ । ଏହା ୮୬୭ ବର୍ଷ ରହିଲା । ଚୁଓ ବଂଶଧରଙ୍କ ଅମଳରେ ଏକ ସୁସଂଗଠିତ ଚୀନ ସରକାରର ଆବିର୍ଭାବ ହେଲା । ଏହି ସମୟରେ ଚୀନର ଦୁଇଟି ବିଖ୍ୟାତ ଦାର୍ଶନିକ କନ୍‌ଫୁସିୟସ୍ ଓ ଲାଓଜି ଥିଲେ । ଏ ଦୁଇଜଣଙ୍କ ବିଷୟରେ ପରେ କୁହାଯିବ ।

ସାଙ୍ଗ୍ ବଂଶ ତଡ଼ା ଖାଇଲା ପରେ କିଟ୍‌ସେ ବୋଲି ଏହାଙ୍କର ଜଣେ ବଡ଼ ଅଫିସର ଚୁଓଙ୍କର ଅଧୀନତା ସ୍ୱୀକାର ନ କରି ଦେଶ ଛାଡ଼ି ଚାଲିଗଲେ । ସେ ୫୦୦୦ ଅନୁଚରଙ୍କୁ ସାଙ୍ଗରେ ନେଇ ଚୀନ୍‌ରୁ କୋରିଆକୁ ଗଲେ । ସେ ଦେଶକୁ ଚୋଜନ୍ ବା

"ପ୍ରଭାତର ଶାନ୍ତଦେଶ" ବୋଲି ନାମ ଦେଲେ । କୋରିଆ ବା ସ୍ୱେଜନ୍ ଚୀନର ପୂର୍ବରେ । ନେଷ୍ଟୁ କିଟ୍‌ସେ ପୂର୍ବ ଦିଗରେ ସୂର୍ଯ୍ୟ ଉଦୟ ଆଡ଼କୁ ଗଲେ । ବୋଧହୁଏ ସେ ସେତେବେଳେ ଭାବିଥିଲେ ଯେ ସେ ଏକଦମ୍ ପୂର୍ବ ସୀମାରେ ପହଞ୍ଚି ସାରିଛନ୍ତି । ତେଣୁ ଏପରି ନାମ ଦେଇଥିଲେ । କିଟ୍‌ସେଙ୍କ ଯୋଗୁଁ ଖ୍ରୀଷ୍ଟ ଜନ୍ମର ୧୧୦୦ ବର୍ଷ ପୂର୍ବେ କୋରିଆର ଇତିହାସ ଆରମ୍ଭ ହେଲା । କିଟ୍‌ସେ ଏହି ନୂଆ ଦେଶରେ ଚୀନର ଶିଳ୍ପ, କାରିଗରୀ, ଗୃହନିର୍ମାଣ, କୃଷି ଏବଂ ରେଶମ ତିଆରି ଆଦିର ପ୍ରଚାର କଲେ । କିଟ୍‌ସେଙ୍କ ପରେ ଅନେକ ଚୀନ୍ ଲୋକ ବି ଆସିଲେ । କିଟ୍‌ସେଙ୍କର ବଂଶଧରମାନେ ପ୍ରାୟ ୯୦୦ ବର୍ଷ ପର୍ଯ୍ୟନ୍ତ ସ୍ୱେଜନ୍ ଶାସନ କଲେ ।

ଅବଶ୍ୟ ସ୍ୱେଜନ୍ ପୂର୍ବ ଦିଗର ଶେଷ ଦେଶ ନ ଥିଲା । ଏହାର ପୂର୍ବରେ ଜାପାନ ଥିବାର ଆମେ ଜାଣୁ । ମାତ୍ର କିଟ୍‌ସେ ସ୍ୱେଜନ୍‌କୁ ଯାଇଥିଲାବେଳେ ଜାପାନରେ କଅଣ ଥିଲା ଆମକୁ ଜଣା ନାହିଁ । ଚୀନ୍, କୋରିଆ ବା ସ୍ୱେଜନ୍ ପରି ଜାପାନର ଇତିହାସ ସେତେ ପୁରୁଣା ନୁହେଁ । ଜାପାନୀମାନେ କହନ୍ତି—ତାଙ୍କର ପ୍ରଥମ ଶାସକ ଥିଲେ ଜିମୁଟେନୋ ଏବଂ ସେ ଖ୍ରୀଷ୍ଟପୂର୍ବ ୫୦୦ ବା ୬୦୦ ବର୍ଷ ବେଳେ ରାଜତ୍ୱ କରୁଥିଲେ । ସେ ସୂର୍ଯ୍ୟଦେବତାଙ୍କ ବଂଶଧର ବୋଲି ଧରାଯାଏ; କାରଣ ଜାପାନରେ ସୂର୍ଯ୍ୟଙ୍କୁ ଦେବତା ବୋଲି କହନ୍ତି । ଜାପାନର ବର୍ତ୍ତମାନ ଶାସକ ଜିମୁଟେନୋର ପ୍ରତ୍ୟକ୍ଷ ବଂଶଧର ବୋଲି କୁହାଯାଏ ଏବଂ ସେ ମଧ୍ୟ ସେହିପରି ସୂର୍ଯ୍ୟଙ୍କ ବଂଶଧର ବୋଲି ଅନେକ ଜାପାନୀ ବିଶ୍ୱାସ କରନ୍ତି ।

ତୁ ଜାଣୁ, ଆମ ଦେଶରେ ରାଜପୁତମାନେ ମଧ୍ୟ ସେହିପରି ସୂର୍ଯ୍ୟ ଚନ୍ଦ୍ରଙ୍କ ବଂଶଧର ବୋଲି ଦାବୀ କରନ୍ତି । ସେମାନଙ୍କର ଦୁଇଟି ପ୍ରଧାନ ବଂଶ ହେଉଛି—(୧) ସୂର୍ଯ୍ୟବଂଶୀ ଅର୍ଥାତ୍ ସୂର୍ଯ୍ୟଙ୍କ ବଂଶ, (୨) ସୋମବଂଶୀ ଅର୍ଥାତ୍ ଚନ୍ଦ୍ରଙ୍କ ବଂଶଧର । ଉଦୟପୁରର ମହାରାଣା ସୂର୍ଯ୍ୟବଂଶର ପ୍ରଧାନ ଲୋକ ଏବଂ ତାଙ୍କର ବଂଶ ଅନେକକାଳରୁ ଲାଗିଅଛି ବୋଲି ଦେଖାନ୍ତି । ରାଜପୁତ୍‌ମାନେ ଖୁବ୍ ଅଦ୍ଭୁତ ଲୋକ ଏବଂ ସେମାନଙ୍କ ବୀରତ୍ୱ ଓ ଗୌରବ ସମ୍ବନ୍ଧରେ ଗଳ୍ପର ସୀମା ନାହିଁ ।

## ୧୨ । ଅତୀତର ଆହ୍ୱାନ

ଜାନୁଆରୀ ୧୬, ୧୯୩୧

ଆଜିକି ପ୍ରାୟ ୨୫୦୦ ବର୍ଷ ପୂର୍ବେ ପୁରାତନ ଦୁନିଆ କିପରି ଥିଲା, ସେ ସମ୍ବନ୍ଧରେ ଆମେ ସଂକ୍ଷେପରେ ଜାଣିଲେ । ଆମେ ଖୁବ୍ ସଂକ୍ଷେପ ଓ ସୀମାବଦ୍ଧ ଆଲୋଚନା କରିଛେ । କେବଳ ଯେଉଁସବୁ ଦେଶ ଟିକିଏ ଉନ୍ନତ ଥିଲା କିମ୍ବା ଯାହାର

କିଛି ଇତିହାସ ମିଳେ, ସେହିସବୁ ଦେଶ ସମ୍ବନ୍ଧରେ ଆମେ ଆଲୋଚନା କଲେ । ଇଜିପ୍ଟର ଯେଉଁ ବିରାଟ ସଭ୍ୟତାରେ ପିରାମିଡ଼, ସ୍ଫିଙ୍କସ୍ ଓ ଅନ୍ୟାନ୍ୟ ଜିନିଷ ଦେଖାଯାଇଥିଲି, ତାହା ଆମେ ଦେଖିଲେ—ସେସବୁ ଜିନିଷ ବର୍ତ୍ତମାନ ସଭ୍ୟତାରେ ହୋଇପାରିବ ନାହିଁ । ଏହି ବିଶାଳ ସଭ୍ୟତା ବି ଶେଷ ହେଲା ଏବଂ ଏପରି କି ଆମେ ଯେଉଁ ଆଦିକାଳ କଥା ଆଲୋଚନା କରୁଛେ, ସେ ସମୟରେ ଏହାର ପତନ ଘଟିଲା । ନୋସାସ୍ ଆସି ଶେଷ ହେବା ଉପରେ ଥିଲା । ଚୀନ୍‌ର ଯେଉଁ ଦୀର୍ଘକାଳ କଥା ମୁଁ ଆଲୋଚନା କଲି, ସେ ସମୟରେ ଚୀନ୍ ଗୋଟିଏ ବଡ଼ ସାମ୍ରାଜ୍ୟରେ ପରିଣତ ହେଲା ଏବଂ ଲେଖା, ରେଶମ ତିଆରି ଓ ଅନ୍ୟାନ୍ୟ ଅନେକ ପ୍ରକାର ସୁନ୍ଦର କଳାର ବିକାଶ ହେଲା । କୋରିଆ ଓ ଜାପାନ ସମ୍ବନ୍ଧରେ ମଧ୍ୟ ଆମେ କିଛି ଜାଣିଲେ । ସିନ୍ଧୁକୂଳରେ ମହେଞ୍ଜୋଦାରୋରେ ଭାରତର ଯେଉଁ ପୁରୁଣା ସଭ୍ୟତାର ଚିହ୍ନ ଦେଖାଯାଉଛି, ସେ ସମ୍ବନ୍ଧରେ ମୁଁ ଖାଲି ସୂଚନା ଦେଇଥିଲି । ଦ୍ରାବିଡ଼ମାନେ କିପରି ବିଦେଶୀ ରାଜାମାନଙ୍କ ସହିତ ବାଣିଜ୍ୟ କରୁଥିଲେ ଓ ଶେଷରେ ଆର୍ଯ୍ୟମାନଙ୍କ ସମ୍ବନ୍ଧରେ ବି ଟିକିଏ ଉଲ୍ଲେଖ କରିଥିଲି । ଆର୍ଯ୍ୟମାନେ ବେଦ, ଉପନିଷଦ, ରାମାୟଣ ଓ ମହାଭାରତ, ପୁରାଣ ଓ ଆଉ ଯେଉଁସବୁ ପ୍ରସିଦ୍ଧ ବହିସବୁ ଲେଖିଥିଲେ, ସେ ସମ୍ବନ୍ଧରେ ଲେଖିଛି । ସେମାନେ କିପରି ଉତ୍ତର-ଭାରତର ଚାରିଆଡ଼େ ବ୍ୟାପିଲେ, ଦକ୍ଷିଣକୁ ମଧ୍ୟ ଆସିଲେ ଏବଂ ଦ୍ରାବିଡ଼ଙ୍କ ସମ୍ପର୍କରେ ଆସି ଦ୍ରାବିଡ଼ ଓ ଆର୍ଯ୍ୟ ଉଭୟର ମିଶ୍ରଣରେ ଏକ ନୂଆ ସଭ୍ୟତା ଓ ସଂସ୍କୃତି ସୃଷ୍ଟି କଲେ, ତାହା ମଧ୍ୟ ଜାଣିଛେ । ବିଶେଷତଃ ସେମାନଙ୍କର ଗ୍ରାମପଞ୍ଚାୟତସବୁ ଗଣତନ୍ତ୍ର ନୀତି ଉପରେ ଗଢ଼ା ହୋଇଥିଲା । କ୍ରମେ ତାହା ସହର ଓ ନଗରରେ ପରିଣତ ହେଲା ଏବଂ ଅରଣ୍ୟରେ ଥିବା ଆଶ୍ରମସବୁ ବିଶ୍ୱବିଦ୍ୟାଳୟ ହେଲା, ତାହା ବି ଜାଣିଛେ । ଇରାକ୍ ଓ ଇରାନ୍‌ରେ କିପରି ସାମ୍ରାଜ୍ୟ ପରେ ସାମ୍ରାଜ୍ୟର ସୃଷ୍ଟି ହେଲା, ସେ ସମ୍ବନ୍ଧରେ ଆମେ ସଂକ୍ଷେପରେ ଆଲୋଚନା କରିଛେ । ଏହାଙ୍କ ଭିତରୁ ଡାରିୟୁସ୍‌ଙ୍କ ସାମ୍ରାଜ୍ୟ ଭାରତରେ ସିନ୍ଧୁନଦୀ ପର୍ଯ୍ୟନ୍ତ ବିସ୍ତୃତ ହୋଇଥିଲା । ପାଲେଷ୍ଟାଇନର ଯେଉଁ ଇହୁଦୀମାନଙ୍କ ବିଷୟରେ ଆମେ ସଂକ୍ଷେପରେ ଜାଣିଛେ, ସେମାନଙ୍କର ସଂଖ୍ୟା ଖୁବ୍ କମ୍ ଥିଲା—ସେମାନେ ପୃଥିବୀରେ ଏକ କୋଣରେ ରହୁଥିଲେ ସୁଦ୍ଧା ଦୁନିଆ ଲୋକଙ୍କର ତାଙ୍କ ଉପରେ ଖୁବ୍ ଦୃଷ୍ଟି ପଡ଼ିଥିଲା । ସେମାନଙ୍କର ରାଜା ଡେଭିଡ୍ ଓ ସଲୋମନ୍‌ଙ୍କ ନାମ ବାଇବେଲରେ ଉଲ୍ଲେଖ ଅଛି । ଅନେକ ବଡ଼ ବଡ଼ ରାଜାଙ୍କ ନାମ ହୁଏତ ଲୋକେ ଭୁଲି ଯାଉଛନ୍ତି, କିନ୍ତୁ ତାଙ୍କ ନାମ କେହି ଭୁଲୁ ନାହାନ୍ତି । ଆମେ ଦେଖିଛେ, ଗ୍ରୀସ୍‌ରେ ଅତୀତ ସଭ୍ୟତା ନୋସାସ୍‌ର ଧ୍ୱଂସ ଉପରେ ନୂତନ ଆର୍ଯ୍ୟସଭ୍ୟତା ବଢ଼ିଲା । ନଗରତନ୍ତ୍ରସବୁ ଗଢ଼ିଉଠିଲା ଏବଂ ଭୂମଧ୍ୟସାଗରର ସୀମାନ୍ତରେ ଗ୍ରୀକ୍ ଉପନିବେଶସବୁ ହେଲା । ରୋମ୍ ଯାହା ଦିନେ ଦୁନିଆରେ ବଡ଼ ସହରରେ ପରିଣତ ହେଲା ଓ କାର୍ଥେଜ ସହର ଯାହାକି ତାହାର ପ୍ରତିଦ୍ୱନ୍ଦୀ ଥିଲା, ଏହି ଦୁଇଟି ସହର କେବଳ ଆମ ଇତିହାସ-ଆକାଶରେ ଆସି ପହଞ୍ଚିଛନ୍ତି ।

ଏସବୁ ସମ୍ବନ୍ଧରେ ଆମେ ସଂକ୍ଷେପରେ ଦୃଷ୍ଟି ପକାଇଛେ । ମୁଁ ତତେ ଉତ୍ତର-ଇଉରୋପ ଓ. ଦକ୍ଷିଣ-ପୂର୍ବ-ଏସିଆ ସମ୍ବନ୍ଧରେ କିଛି କହି ନାହିଁ—ଏଠାରେ ଥିବା ଦେଶମାନଙ୍କ ସମ୍ବନ୍ଧରେ ତୋତେ କିଛି କହି ପାରିଥାନ୍ତି । ଏହି ଆଦିମକାଳରେ ସୁଦ୍ଧା ଭାରତୀୟ ନାବିକମାନେ ଦକ୍ଷିଣ-ଭାରତରୁ ବଙ୍ଗୋପସାଗର ଅତିକ୍ରମ କରି ମାଲୟ ଏବଂ ଏହାର ଦକ୍ଷିଣରେ ଥିବା ଦ୍ୱୀପପୁଞ୍ଜକୁ ଯିବାକୁ ସାହସ କରିଥିଲେ । କିନ୍ତୁ ଆମକୁ ବିଷୟର ସୀମା ନିର୍ଦ୍ଦେଶ କରିବାକୁ ପଡ଼ିବ, ନଚେତ୍ ଆମେ ବେଶୀଦୂର ଅଗ୍ରସର ହୋଇପାରିବା ନାହିଁ ।

ଆମେ ଯେଉଁସବୁ ଦେଶ କଥା ଆଲୋଚନା କଲେ, ତାହା ଅତୀତ ଦୁନିଆରେ ଥିଲି ବୋଲି ଧରିଯାଏ । ମାତ୍ର ମନେ ରଖିବାର କଥା ଯେ ସେ କାଳରେ ଦୂର ଦେଶ ସହିତ ଯାତାୟାତର ବିଶେଷ ସୁବିଧା ନ ଥିଲା । ଦୁଃସାହସୀ ନାବିକମାନେ ସମୁଦ୍ର ଅତିକ୍ରମ କରି ଯାଉଥିଲେ ଏବଂ କେତେକ ଲୋକ ବାଣିଜ୍ୟ କିମ୍ବା ଅନ୍ୟ ଉଦ୍ଦେଶ୍ୟରେ ସ୍ଥଳପଥରେ ଅନେକ ଦୂର ଯାଉଥିଲେ; କିନ୍ତୁ ଏପରି ଖୁବ୍ କମ୍ ଘଟିଥିବ, କାରଣ ଏଥିରେ ବିପଦ ଖୁବ୍ ବେଶି ଥିଲା । ଭୂଗୋଳ ଅତି କମ୍ ଜଣାଥିଲା । ସେତେବେଳେ ଜାଣିଥିଲେ ପୃଥିବୀଟା ଚେପ୍‌ଟା, ଗୋଲ୍ ନୁହେଁ । ସୁତରାଂ ନିଜ ପାଖରେ ଥିବା ଦେଶ ଛଡ଼ା ଅନ୍ୟ ଦେଶ ସମ୍ବନ୍ଧରେ କେହି କିଛି ଜାଣୁ ନଥିଲେ । ଏହିପରି ଭାବରେ ଗ୍ରୀସ୍‌ର ଲୋକେ ଚୀନ୍ ଓ ଭାରତ ସମ୍ବନ୍ଧରେ ବାସ୍ତବିକ କିଛି ଜାଣି ନଥିଲେ ଏବଂ ଚୀନ୍ ଓ ଭାରତର ଲୋକେ ଭୂମଧ୍ୟସାଗରରେ ଥିବା ଦେଶମାନଙ୍କ ସମ୍ବନ୍ଧରେ ଆଦୌ କିଛି ଜାଣି ନଥିଲେ ।

ତୁ ଯଦି କେଉଁଠି ଗୋଟିଏ ଅତୀତ ଜଗତର ମାନଚିତ୍ର ପାଉ, ତେବେ ଦେଖିବୁ । ଅତୀତ କାଳର ଲେଖକମାନେ ପୃଥିବୀର ଯେଉଁ ବର୍ଣ୍ଣନା କରିଛନ୍ତି, ତାହା ଓ ମାନଚିତ୍ରସବୁ ଦେଖିଲେ ବଡ଼ ରହସ୍ୟମୟ ବୋଧହେବ । ସେ ମାନଚିତ୍ରଗୁଡ଼ିକରେ କେତେକ ଦେଶର ଅସାଧାରଣ ଆକୃତି ଦିଆହୋଇଛି । ଆଜିକାଲି ଅତୀତ କାଳର ଯେଉଁ ସବୁ ମାନଚିତ୍ର ତିଆରି ହେଉଛି, ସେଗୁଡ଼ିକ ଖୁବ୍ ସାହାଯ୍ୟ କରିବ ଏବଂ ମୋର ଆଶା, ତୁ ଏକାଳର ଇତିହାସ ପଢ଼ିଲାବେଳେ ଏହି ମାନଚିତ୍ର ଦେଖିବୁ । ଅଧିକ୍ଷେତ୍ରରେ ମାନଚିତ୍ର ଖୁବ୍ ସାହାଯ୍ୟ କରେ । ମାନଚିତ୍ର ନ ଥିଲେ ଇତିହାସ ସମ୍ବନ୍ଧରେ ଆମର ପ୍ରକୃତ ଧାରଣା ହୁଏ ନାହିଁ । ପ୍ରକୃତରେ ଇତିହାସ ଶିଖିବାକୁ ହେଲେ ଜଣକ ପାଖରେ ଯେତେ ସମ୍ଭବ ମାନଚିତ୍ର ଓ ଚିତ୍ର ଥିବା ଦରକାର । ପୁରୁଣା କୋଠା ଧ୍ୱଂସାବଶେଷ ଓ ସେକାଳର ଅନ୍ୟ ଚିତ୍ରସବୁ ପାଖରେ ଥିବା ଦରକାର । ଏହି ଛବିସବୁ ଇତିହାସ କଙ୍କାଳରେ ଭରିଯାଇ ଏହାକୁ ଜୀବନ୍ତ କରିପକାଏ । ଆମର ଯଦି ଇତିହାସରୁ କିଛି ଶିଖିବାର ଥାଏ, ତେବେ ଆମ ମନରେ ଏହି ଜ୍ୱଳନ୍ତ ପ୍ରତିମୂର୍ତ୍ତି ପରି ରହିଥିବା ଦରକାର ତାହାହେଲେ ଇତିହାସ ପଢ଼ିଲାବେଳେ ଘଟଣାଗୁଡ଼ିକ ଆମ ଆଖିଆଗରେ ଘଟିଲାପରି ଆମେ ମନେ କରିପାରିବା । ମନେହେବ

ସତେ କି ନାଟକ ଦେଖୁଛେଁ—ଗୋଟିଏ ଦୁଃଖ ଆନନ୍ଦଦାୟକ ଓ ଅନ୍ୟଟି ବିଷାଦଜନକ । ଏହି ନାଟକଟି ପୃଥିବୀର ରଙ୍ଗମଞ୍ଚ ଉପରେ ଅଭିନୀତ ହେଉଛି ଏବଂ ସେଥିରେ ଅଭିନେତା ହେଉଛନ୍ତି ଅତୀତ ଜଗତର ମହାନ୍ ପୁରୁଷ ଓ ନାରୀ ।

ଇତିହାସର ଏହି ଆଶ୍ଚର୍ଯ୍ୟଜନକ ଘଟଣାବଳୀ ଜାଣିବାପାଇଁ ଛବି ଓ ମାନଚିତ୍ର ସବୁ ଆମ ଆଖି ଖୋଲିଦିଏ । ପ୍ରତ୍ୟେକ ବାଳକ ଓ ବାଳିକା ପାଖରେ ଏହା ଥିବା ଦରକାର । ମାତ୍ର ଛବି ଅପେକ୍ଷା ଭଲ ହେଉଛି ପୁରୁଣା ଇତିହାସର ଅବଶେଷ ବା ସ୍ମୃତି-ଚିହ୍ନସବୁକୁ ନିଜେ ଦେଖିଆସିବା । ଏସବୁ ଦୁନିଆର ସବୁଆଡ଼େ ପଡ଼ିରହିଛି ତେଣୁ ସବୁଗୁଡ଼ିକ ଦେଖିପାରିବା ସମ୍ଭବ ନୁହେଁ । କିନ୍ତୁ ଆମେ ଯଦି ସଜାଗ ଥାଉ, ତେବେ ଅତୀତର କେତେକ ସ୍ମୃତି ସତେକି ଖୁବ୍ ପାଖରେ ଘଟିଥିବା ପରି ମନେହେବ । ଶ୍ରେଷ୍ଠ ଶ୍ରେଷ୍ଠ ସ୍ମୃତି ଓ ଚିହ୍ନସବୁ ବଡ଼ ବଡ଼ ଯାଦୁଘରେ ସଂଗୃହୀତ ହୋଇଥାଏ । ଅତୀତ ଇତିହାସର ଅନେକ ସ୍ମୃତି ଭାରତରେ ବହୁ ପରିମାଣରେ ଅଛି; ମାତ୍ର ଅତି ପୁରାତନ କାଳର ସ୍ମୃତି ସଂଖ୍ୟା ଖୁବ୍ କମ୍ । ଏପର୍ଯ୍ୟନ୍ତ ମହେଞ୍ଜୋଦାରୋ ଓ ହରପ୍ପା ଏହି ଦୁଇଟି କେବଳ ଜଣା ଅଛି । ଉଷ୍ଣ ଜଳବାୟୁରେ ପୁରୁଣା କୋଠାସବୁ ଧୂଳିସାତ୍ ହୋଇ ଯାଇପାରେ । କିନ୍ତୁ ଭୂମିତଳେ ଅନେକ ଏବେ ପଡ଼ିଥାଇପାରେ—ଖୋଳାହେଲେ ତାହା ବାହାରନ୍ତା । ଆମେ ଏସବୁ ଖୋଳିଲେ ପୁରୁଣା ଚିହ୍ନ ଓ ଶିଳାଲେଖ ସବୁ ଦେଖିବା—ଆମ ଦେଶର ଅତୀତ ଇତିହାସର ପୃଷ୍ଠା କ୍ରମେ ଆମ ଆଖି ଆଗରେ ଖୋଲିଯିବ । ଆମର ପୂର୍ବପୁରୁଷ-ମାନେ ଅତି ପୁରୁଣା କାଳରେ କ'ଣ କରିଥିଲେ, ତାହା ଏହି ପଥର, ଇଟା ଓ କାନ୍ଥର ପୃଷ୍ଠାରେ ପଢ଼ିବା ।

ତୁ ଦିଲ୍ଲୀ ଯାଇଛୁ । ଦିଲ୍ଲୀ ସହରର ଚାରିପାଖରେ କେତେକ ପୁରୁଣା କୋଠା ଓ ସ୍ମୃତି ଅବଶେଷ ଦେଖିଛୁ । ତୁ ଯଦି ଆଉ କେବେ ତାହା ଦେଖିଲାବେଳେ ଅତୀତର କଥା ଭାବିବୁ, ତାହାହେଲେ ଏହା ତୋତେ ସେ କାଳକୁ ନେଇଯିବ ଏବଂ କୌଣସି ବହି ଅପେକ୍ଷା ଅଧିକ ଇତିହାସ ତୁ ଜାଣିପାରିବୁ । ମହାଭାରତ ଯୁଗଠାରୁ ଆଜିପର୍ଯ୍ୟନ୍ତ ଲୋକେ ଦିଲ୍ଲୀ ବା ତାହାର ପାଖରେ ରହି ଆସିଛନ୍ତି—ସେମାନେ ଦିଲ୍ଲୀ ସହରକୁ ଇନ୍ଦ୍ରପ୍ରସ୍ଥ, ହସ୍ତିନାପୁର, ତୁଗଲକାବାଦ୍, ସାହାଜାହାନବାଦ୍ ଏହିପରି ଅନେକ ନାମରେ ଡାକିଛନ୍ତି । ସବୁ ନାମ ମୋତେ ଜଣା ନାହିଁ । ପରମ୍ପରାରୁ ଆମେ ଜାଣୁ ଯେ ସାତଟି ବିଭିନ୍ନ ସ୍ଥାନରେ ଦିଲ୍ଲୀର ସାତଟି ସହର ଥିଲା—ଯମୁନା ନଦୀ ଧାର ଯୋଗୁଁ ସ୍ଥାନ ପରିବର୍ତ୍ତନ କରିବା ଦରକାର ହେଉଥାଏ । ଏବେ ଏ ଦେଶରେ ବର୍ତ୍ତମାନ ଶାସକଙ୍କ ହୁକୁମ ଅନୁସାରେ ରେଜାନା ବା ନୂତନ ଦିଲ୍ଲୀ ଅଷ୍ଟମ ସହର ରୂପେ ଠିଆ ହୋଇଛି । ଦିଲ୍ଲୀରେ ସାମ୍ରାଜ୍ୟ ପରେ ସାମ୍ରାଜ୍ୟ ଉନ୍ନତି କରିଛି ଏବଂ ଉଭେଇ ଯାଇଛି ।

ବାରାଣସୀ ବା କାଶୀକୁ ଯାଅ—ଏହା ସହରମାନଙ୍କ ଭିତରେ ସବୁଠୁଁ ପୁରୁଣା । ତାର ସୁଷ୍କନଧ୍ୱନ ପ୍ରତି କାନ ଡେରିବୁ । କେତେ ସାମ୍ରାଜ୍ୟସବୁ ଧ୍ୱଂସ ପାଉଥିଲାବେଳେ ସୁଦ୍ଧା ଏହି ସହର ବଞ୍ଚିରହିଛି ।ବୁଦ୍ଧ ତାଙ୍କର ନୂତନ ସନ୍ଦେଶ ଘେନି ଏଠାକୁ ଆସିଥିଲେ । ଶାନ୍ତି ଓ ମୁକ୍ତି ପାଇବାଲାଗି କେତେ ଲକ୍ଷ ଲକ୍ଷ ଲୋକ , ଯୁଗ ଯୁଗ ଧରି ଏଠାକୁ ଆସିଛନ୍ତି, ତାହା ଆମେ ଏହାର ଅତୀତର ସ୍ମୃତିରୁ ଜାଣିପାରିବା ନାହିଁ କି ? ବାରାଣସୀ ସହରଟି ହେଉଛି ଅତି ପୁରାତନ, ଆବର୍ଜନାପୂର୍ଣ୍ଣ ଓ ଦୁର୍ଗନ୍ଧମୟ; ତଥାପି ଏହା ଖୁବ୍ ଜୀବନ୍ତ ଏବଂ ଯୁଗ-ଶକ୍ତି ଧରି ବସିଛି । କାଶୀ ସହର ଆମୋଦ ଓ ବିସ୍ମୟଭରା; କାରଣ ତାହାର ଚକ୍ଷୁରେ ତୁ ଭାରତର ଅତୀତ ଦେଖିପାରିବୁ ଏବଂ ତାହାର ନଦୀର କଳ କଳ ଧ୍ୱନିରେ ଅତି ପ୍ରାଚୀନ ଯୁଗର ଶବ୍ଦ ଶୁଣିପାରିବୁ । ଆମର ଏଲାହାବାଦ ବା ପ୍ରୟାଗରେ ଥିବା ପୁରୁଣା ଅଶୋକସ୍ତମ୍ଭ ପାଖକୁ ଯାଅ । ସେଥିରେ ଅଶୋକଙ୍କ ଆଦେଶାନୁସାରେ ଯେଉଁ ଶିଳାଲେଖ ଖୋଳା ହୋଇଛି, ତାକୁ ଦେଖିଲେ ତୁ ଅଶୋକଙ୍କର ୨୦୦୦ ବର୍ଷ ତଳର ବାଣୀ ଶୁଣିପାରିବୁ ।

## ୧୩ । ଧନ ଯାଉଛି କୁଆଡ଼େ ?

ଜାନୁଆରି ୧୮, ୧୯୩୧

ତୋତେ ମୁଁ ମସୋରୀକୁ ଯେଉଁ ଚିଠି ଗତଥର ଲେଖିଥିଲି, ସେଥିରେ ମଣିଷ ଉନ୍ନତି କରିବା ସଙ୍ଗେ ସଙ୍ଗେ କେତେ ବନ୍ଧିନ୍ନ ଶ୍ରେଣୀର ଲୋକେ ବି ଉନ୍ନତି ଲାଭ କଲେ, ତାହା ଦେଖାଇବା ଲାଗି ଚେଷ୍ଟା କରିଥିଲି । ଆଦିମକାଳର ଲୋକଙ୍କୁ ଖାଦ୍ୟ ପାଇବା ଲାଗି ମଧ୍ୟ କଠିନ ପରିଶ୍ରମ କରିବାକୁ ପଡ଼ୁଥିଲା । ଖାଦ୍ୟ ଖୋଜିବା ଲାଗି ସେମାନେ ଶିକାର କରୁଥିଲେ; ଫଳ ଫୁଲ ସଂଗ୍ରହ କରୁଥିଲେ ଏବଂ ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ଯାଉଥିଲେ । କ୍ରମେ ସମ୍ପ୍ରଦାୟଗୁଡ଼ିକର ସୃଷ୍ଟି ହେଲା । ଏଗୁଡ଼ିକ ଆଉ କିଛି ନୁହେଁ, କେବଳ ବଡ଼ ବଡ଼ ପରିବାର ଏକାଠି ବାସ କରୁଥିଲେ ଓ ଶିକାର କରୁଥିଲେ— କାରଣ ଏକାକୀ ହେବା ଅପେକ୍ଷା ଏକାଠି ବାସକରିବା ନିରାପଦ ଥିଲା । ତାହାପରେ କୃଷି ଆବିଷ୍କାର ହେବା ଫଳରେ ଗୋଟାଏ ଅଦ୍ଭୁତ ପାର୍ଥକ୍ୟ ଘଟିଲା – ବିରାଟ ପରିବର୍ତ୍ତନ ହେଲା । ଲୋକେ ଦେଖିଲେ ଜମିରେ ଚାଷ କରିବାଦ୍ୱାରା ହିଁ ବରଂ ଶିକାର ଅପେକ୍ଷା ଅତି ସହଜରେ ଖାଦ୍ୟଦ୍ରବ୍ୟ ମିଳିପାରୁଥିଲା । ଜମିରେ ହଳ କରିବା, ବୁଣିବା ଏବଂ ଫଳ ପାଇବା ନିମନ୍ତେ ଜମି ନିକଟରେ ବାସକରିବା ଦରକାର ପଡ଼ିଲା । ସେମାନେ ଆଉ ଆଗପରି

ବୁଲିପାରିଲେ ନାହିଁ । ଜମି ନିକଟରେ ସେମାନଙ୍କୁ ରହିବାକୁ ହେଲା । ଏହିରୂପେ ଗ୍ରୋଷ୍ଟି ସହର ଓ ଗ୍ରାମମାନ ଗଢ଼ିଉଠିଲା ।

କୃଷି ହେତୁ ଆହୁରି କେତେକ ପରିବର୍ତ୍ତନ ବି ହେଲା । ଜମିରୁ ଯେଉଁ ଖାଦ୍ୟଦ୍ରବ୍ୟ ଉତ୍ପନ୍ନ ହେଉଥିଲା, ତାହା ତତ୍‌କାଳୀନ ଆବଶ୍ୟକୀୟ ଖରଚ ଅପେକ୍ଷା ଯଥେଷ୍ଟ ବେଶି । ଏହି ଅଧିକା ଜିନିଷଗୁଡ଼ିକ ସଞ୍ଚିତ ହୋଇ ରହିଲା । ପୁରୁଣା କାଳର ଶିକାରୀ ଜୀବନ ଅପେକ୍ଷା ଏହି ଜୀବନ ଅଧିକ ଜଞ୍ଜାଳପୂର୍ଣ୍ଣ ହେଲା । କେତେକ ଲୋକ ଜମି ଓ ଅନ୍ୟାନ୍ୟ ପ୍ରକୃତ ପରିଶ୍ରମରେ ଲାଗିଲେ ଏବଂ କେତେକ ପରିଚାଳନା ଓ ସଂଗଠନ କାମରେ ଲାଗିଲେ । ପରିଚାଳକ ଓ ସଂଗଠକମାନେ କ୍ରମେ ଅଧିକ ଶକ୍ତିଶାଳୀ ହେଲେ ଏବଂ ସେହିମାନେ ହିଁ କୁଳପତି (Patriarch), ଶାସକ, ରାଜା ଓ ସାମନ୍ତ ହେଲେ । କ୍ଷମତା ପାଇ ଉତ୍ପନ୍ନ ଖାଦ୍ୟର ବଳକା ଅଂଶରୁ ବେଶୀଭାଗ ସେମାନେ ନିଜ ଲାଗି ରଖିଲେ । ଏହିପରି ଭାବରେ ଏମାନେ ଧନୀ ହେଲେ ଏବଂ ଯେଉଁମାନେ ଜମିରେ କାମ କରୁଥିଲେ, ସେମାନେ ଜୀବନଧାରଣ ଉପଯୋଗୀ ପରିମାଣ ଖାଦ୍ୟ ପାଇଲେ । ସମୟକ୍ରମେ ଏହି ପରିଚାଳକ ଓ ସଂଗଠନକାରୀମାନେ ଏପରି ଅଳସୁଆ ବା ଅଯୋଗ୍ୟ ହୋଇପଡ଼ିଲେ ଯେ ସଂଗଠନ କାର୍ଯ୍ୟ ସୁଦ୍ଧା କରିପାରିଲେ ନାହିଁ । ସେମାନେ କିଛି କାମ କଲେ ନାହିଁ, ଅଥଚ ଜମିରେ ଶ୍ରମିକମାନେ ଯେଉଁ ଖାଦ୍ୟଦ୍ରବ୍ୟ ଉତ୍ପନ୍ନ କରୁଥିଲେ, ସେଥିରୁ ଅଧିକ ଅଂଶ ନିଜେ ନେଉଥିଲେ । ସେମାନେ କ୍ରମେ ଭାବିଲେ ଯେ ନିଜେ କିଛି ନ କରି ଏହିପରି ଅନ୍ୟର ଶ୍ରମ ଉପରେ ଚାଲିବା ପାଇଁ ତାଙ୍କର ପୂର୍ଣ୍ଣ ଅଧିକାର ଅଛି ।

ସୁତରାଂ ତୁ ଦେଖ, କୃଷି ପ୍ରଚଳନ ହେବା ସଙ୍ଗେ ସଙ୍ଗେ ମଣିଷ ଜୀବନରେ କେଡ଼େ ବଡ଼ ପରିବର୍ତ୍ତନ ହୋଇଗଲା ! ଖାଦ୍ୟଦ୍ରବ୍ୟ ପାଇବାର ଉପାୟ ଉନ୍ନତ ଓ ସହଜଲଭ୍ୟ ହେବା ସଙ୍ଗେ ସଙ୍ଗେ ସମାଜର ସମଗ୍ର ମୂଳଭିତ୍ତି ବି କୃଷିଦ୍ୱାରା ବଦଳିଗଲା । ଏତଦ୍ଦ୍ୱାରା ଲୋକେ ଅବସର ପାଇଲେ । ବିଭିନ୍ନ ଶ୍ରେଣୀର ଉତ୍ପତ୍ତି ହେଲା । ପ୍ରତ୍ୟେକ ଲୋକ କିଛି ଖାଦ୍ୟ ଉତ୍ପାଦନରେ ନିଯୁକ୍ତ ରହୁ ନ ଥିଲେ—ତେଣୁ କେତେକେ ଅନ୍ୟ ବୃତ୍ତି ଧରିଲେ । ନାନାପ୍ରକାର ଶିଳ୍ପ ଆରମ୍ଭ ହେଲା ଏବଂ ନୂଆ ସନ୍ଧାସବୁ ଖୋଲିଲା । ଯେ ଯାହାହେଉ, କ୍ଷମତା ମୁଖ୍ୟଭାବରେ ସଂଗଠନକାରୀ ଶ୍ରେଣୀଙ୍କ ହାତରେ ରହିଲା ।

ଖାଦ୍ୟଦ୍ରବ୍ୟ ଓ ଅନ୍ୟ ଆବଶ୍ୟକୀୟ ଜିନିଷ ଉତ୍ପନ୍ନ କରିବାର ନୂତନ ପ୍ରଣାଳୀ ବାହାରିବା ସଙ୍ଗେ ସଙ୍ଗେ କିପରି ବିରାଟ ପରିବର୍ତ୍ତନସବୁ ଘଟିଲା, ତାହା ତୁ କ୍ରମେ ପରେ ଇତିହାସରେ ଦେଖିବୁ । ଖାଦ୍ୟ ପରି ମନୁଷ୍ୟ ଆହୁରି ଅନେକ ଜିନିଷ ବି ଦରକାର କଲା । ତେଣୁ ଉତ୍ପାଦନପ୍ରଣାଳୀର କୌଣସି ବିରାଟ ପରିବର୍ତ୍ତନ ହେବା ସଙ୍ଗେ ସଙ୍ଗେ ସମାଜରେ ବିଶାଳ ପରିବର୍ତ୍ତନସବୁ ଘଟିଲା । ତତେ ଏହାର ଗୋଟିଏ ବଡ଼ ଉଦାହରଣ ଦିଏ ।

କଳକାରଖାନା, ରେଳ ଏବଂ ଜାହାଜ ଯେତେବେଳେ ବାଷ୍ପ ସାହାଯ୍ୟରେ ଚ୍ଚାଳିଲା, ସେତେବେଳେ ଉତ୍ପାଦନ ଓ ବଣ୍ଟନପ୍ରଣାଳୀରେ ବି ବହୁତ ପରିବର୍ତ୍ତନ ଘଟିଲା। କାରିଗର ଓ ମିସ୍ତ୍ରୀ ସେମାନଙ୍କର ହାତ ବା ଛୋଟ ଛୋଟ ହାତଯନ୍ତ୍ର ସାହାଯ୍ୟରେ ଯାହା କରୁଥିଲେ, ତାହା ଅପେକ୍ଷା ଅତି ସହଜରେ ଏବଂ ଖୁବ୍ ଶୀଘ୍ର ବାଷ୍ପଚ୍ଚାଳିତ କଳକାରଖାନା ଦ୍ୱାରା ତିଆରି ହୋଇପାରିଲା। ବଡ଼ ମେସିନ ବାସ୍ତବିକ ଗୋଟାଏ ବିରାଟ ଯନ୍ତ୍ର। ରେଳ ଓ ଜାହାଜରେ ଦୂର ଦେଶକୁ ଉତ୍ପନ୍ନ ଦ୍ରବ୍ୟ ଓ ଖାଦ୍ୟଦ୍ରବ୍ୟ ଶୀଘ୍ର ପଠାଯାଇପାରିଲା। ସମଗ୍ର ଜଗତରେ ଏହା କିପରି ଗୋଟାଏ ପାର୍ଥକ୍ୟ ଜାତ କରାଇଥିବ, ତୁ ବେଶ୍ ଅନୁମାନ କରିପାରିଥିବୁ।

କାଳକ୍ରମେ ଇତିହାସରେ ଖାଦ୍ୟଦ୍ରବ୍ୟ ଓ ଅନ୍ୟ ଜିନିଷ ଉତ୍ପାଦନର ସହଜ ଓ ସୁବିଧା ଉପାୟସବୁ ବାହାରିଲା। ତୁ ଅବଶ୍ୟ ଭାବୁଥିବୁ ଯେ ଉତ୍ପାଦନ ଲାଗି ଉନ୍ନତ ଉପାୟ ପ୍ରୟୋଗ କରାଯିବା ଦ୍ୱାରା ବେଶି ଉତ୍ପନ୍ନ ହେଉଥିବ; ପୃଥିବୀ ଧନୀ ହେଉଥିବ ଏବଂ ପ୍ରତ୍ୟେକ ଲୋକ ଆଗଠାରୁ ବେଶି ପାଉଥିବ। ତୋର ଏପରି ଭାବିବା ହେଉଛି ଅଧା ଭୁଲ ଓ ଅଧା ଠିକ୍। ଉତ୍ପାଦନର ସୁବିଧା ଉପାୟ ବାହାରିବା ଦ୍ୱାରା ପୃଥିବୀ ନିଶ୍ଚୟ ଅଧିକ ସମୃଦ୍ଧିଶାଳୀ ହୋଇଛି। କିନ୍ତୁ ପୃଥିବୀର କେଉଁ ଅଂଶଟା ଏପରି ହେଲା? ଏକଥା ଅବଶ୍ୟ ସତ୍ୟ ଯେ ଆମ ଦେଶରେ ଖୁବ୍ ଦାରିଦ୍ର୍ୟ ଓ ଦୁଃଖ ରହିଛି। କିନ୍ତୁ ଇଂଲଣ୍ଡ ପରି ଧନୀ ଦେଶରେ ସେହିପରି ଦାରିଦ୍ର୍ୟ ରହିଛି କାହିଁକି? ଧନ ଯାଉଛି କୁଆଡ଼େ? ଅଧିକରୁ ଅଧିକ ଧନ ଉତ୍ପନ୍ନ ହେଉଥିବା ସତ୍ତ୍ୱେ ଗରିବ ଗରିବ ହୋଇ ରହିଛନ୍ତି – ଏହା ହିଁ ଆଶ୍ଚର୍ଯ୍ୟ କଥା। କେତେକ ଦେଶରେ ଗରିବମାନେ ସାମାନ୍ୟ କିଛି ଉନ୍ନତ ହୋଇଛନ୍ତି; ମାତ୍ର ଯେଉଁ ପରିମାଣରେ ନୂଆ ଧନ ଉତ୍ପାଦନ ହେଲା, ତାହା ତୁଳନାରେ ଏହା କିଛି ନୁହେଁ। ଯାହାହେଉ ଏ ଧନ କାହା ପାଖକୁ ବେଶି ଯାଏ, ତାହା ଆମେ ସହଜରେ ଦେଖିପାରିବା। ସାଧାରଣତଃ ପରିଚ୍ଚାଳକ ଓ ସଙ୍ଗଠକମାନେ ସର୍ବଦା ଭଲ ଜିନିଷର ମୋଟା ଅଂଶ ନେବା ଲାଗି ଚେଷ୍ଟାରେ ଥାଆନ୍ତି। ସେହିମାନଙ୍କ ପାଖକୁ ହିଁ ଏହା ଯାଏ। ଆହୁରି ଆଶ୍ଚର୍ଯ୍ୟର କଥା ଯେ ମଣିଷ ସମାଜରେ ପୁଣି ଏଭଳି ଶ୍ରେଣୀ ସୃଷ୍ଟି ହେଲା, ଯେଉଁମାନେ ମୂଳରୁ କାମ କରିବେ ନାହିଁ, ସେହିମାନେ ହିଁ ଅନ୍ୟର ଶ୍ରମଫଳରୁ ମୋଟା ଅଂଶ ଭୋଗ କରିବେ। ତୁ କ'ଣ ବିଶ୍ୱାସ କରିବୁ? ପୁଣି ଏହି ଶ୍ରେଣୀ ସମ୍ମାନିତ ହୁଅନ୍ତି! କେତେକ ନିର୍ବୋଧ ଲୋକ ମନେ କରନ୍ତି ଯେ ନିଜ ପେଟ ଲାଗି ଶ୍ରମ କରିବା ସମ୍ମାନହାନିକର। ଆମ ଦୁନିଆରେ ଏହିପରି ଓଲଟା କାର୍ଯ୍ୟ ହେଉଛି। ସୁତରାଂ ପୃଥିବୀର ଖାଦ୍ୟଦ୍ରବ୍ୟ ଓ ସମ୍ପଦ ଉତ୍ପନ୍ନ କରୁଥିଲେ ସୁଦ୍ଧା ଜମିର କୃଷୀ ଓ କାରଖାନାର ମୂଲିଆମାନେ ଯେ ଗରିବ ହୋଇ ରହିଛନ୍ତି, ଏଥିରେ ଆଶ୍ଚର୍ଯ୍ୟର କଥା କ'ଣ ଅଛି? ଆମେ ଆମ ଦେଶର ସ୍ୱାଧୀନତା କଥା କହୁଛୁ; କିନ୍ତୁ ଯେଉଁ ସ୍ୱାଧୀନତା ଦୁନିଆର ଏହି ବିପରୀତ ନୀତିକୁ ଲୋପ ନ କରେ ଏବଂ

ଶ୍ରମ କରୁଥିବା ବ୍ୟକ୍ତିକୁ ତାର ଶ୍ରମଫଳ ଭୋଗ କରିବାକୁ ନ ଦିଏ, ସେ ସ୍ୱାଧୀନତାର ମୂଲ୍ୟ ବା କଅଣ ? ରାଜନୀତି, ଶାସନଚାଳନ ନୀତି, ଅର୍ଥଶାସ୍ତ୍ର ଏବଂ ଜାତିର ସମ୍ପଦ ବଣ୍ଟନ ସମ୍ବନ୍ଧରେ ବହୁତ ମୋଟା ମୋଟା ବହି ଲେଖାଯାଇଛି । ବିଦ୍ୱାନ୍ ଅଧ୍ୟାପକମାନେ ଏହିସବୁ ବିଷୟରେ ବକ୍ତୃତା ଦିଅନ୍ତି । ଏମାନେ ଆଳାପ ଆଲୋଚନା କରୁଥାନ୍ତି, ଅଥଚ ଏଣେ ଯିଏ ଶ୍ରମ କରୁଥାନ୍ତି ସେ କଷ୍ଟ ଭୋଗନ୍ତି । ଦୁଇ ଶହ ବର୍ଷ ପୂର୍ବେ ଫ୍ରାନ୍ସର ଜଣେ ବିଖ୍ୟାତ ଲୋକ ଓ୍ୱାଲଟେୟାର ଏହିପରି ରାଜନୀତି ସମ୍ବନ୍ଧରେ ଲେଖିଥିଲେ, "ଯେଉଁମାନେ ଜମି ଚାଷ କରି ଅନ୍ୟମାନଙ୍କୁ ଜୀବନ ଦିଅନ୍ତି, ସେହିମାନଙ୍କୁ ଭୋକରେ ମାରିବାର କୌଶଳ—ଏମାନେ ରାଜନୀତିରେ ସୁନ୍ଦରଭାବରେ ଆବିଷ୍କାର କରିଛନ୍ତି ।"

ତଥାପି ଅତୀତ ଯୁଗର ମଣିଷ ଉନ୍ନତି କଲା ଓ କ୍ରମେ ଅନିୟନ୍ତ୍ରିତ ପ୍ରକୃତିକୁ ଆୟତ୍ତ କଲା । ସେ ଜଙ୍ଗଲ କାଟିଲା, ଘର ତିଆରି କଲା ଏବଂ ଜମି ଚାଷ କଲା । ମଣିଷ କେତେକ ପରିମାଣରେ ପ୍ରକୃତିକୁ ଜୟ କରିପାରିଛି ବୋଲି ଧରାଯାଏ । ପ୍ରକୃତି ବିଜୟ କଥା ବି ଲୋକେ କହନ୍ତି । ଏହା ଅର୍ଥହୀନ କଥା ଏବଂ ଠିକ୍ ନୁହେଁ । ବରଂ ଏ କଥା କହିଲେ ସୁନ୍ଦର ହେବ ଯେ ମଣିଷ ପ୍ରକୃତିକୁ ବୁଝିବାକୁ ଆରମ୍ଭ କରିଛି ମାତ୍ର । ସେ ଯେତେ ଅଧିକ ବୁଝିପାରିଛି, ପ୍ରକୃତି ସହିତ ସେତେ ସହଯୋଗ କରିପାରିଛି ଏବଂ ନିଜ ଉଦ୍ଦେଶ୍ୟ ସାଧନ ଲାଗି ତାର ଉପଯୋଗ କରିପାରିଛି । ଆଗକାଳରେ ପ୍ରକୃତି ଓ ତାର ବିଚିତ୍ରତା ଦେଖି ମଣିଷ ଭୟ କରୁଥିଲା । ବୁଝିବାକୁ ଚେଷ୍ଟାକରିବା ପରିବର୍ତ୍ତେ ପ୍ରକୃତିପୂଜା କରି ଶାନ୍ତି ପାଇବାକୁ ଚେଷ୍ଟା କଲା—ଯେପରିକି ପ୍ରକୃତି ଗୋଟାଏ ବନ୍ୟଜନ୍ତୁ, ତାକୁ ଖୋସାମତ୍ କରି ସନ୍ତୁଷ୍ଟ କରିବାକୁ ହେବ । ଏହିପରି ଭାବରେ ବଜ୍ର, ବିଦ୍ୟୁତ୍ ଓ ସଂକ୍ରାମକ ରୋଗକୁ ସେମାନେ ଭୟ କରୁଥିଲେ ଏବଂ ସେମାନେ ଭାବୁଥିଲେ ଯେ କେବଳ ପୂଜାକରିବା ଦ୍ୱାରା ସେସବୁ ବନ୍ଦ ହୋଇପାରିବ । ସରଳ ଲୋକେ ବିଚାରନ୍ତି ଯେ ସୂର୍ଯ୍ୟୋପରାଗ, ଚନ୍ଦ୍ରଗ୍ରହଣ ଗୋଟାଏ ମହାବିପଦ । ଏହା ଯେ ଗୋଟିଏ ଅତି ସରଳ ପ୍ରାକୃତିକ ଘଟଣା, ତାହା ବୁଝିବାକୁ ଚେଷ୍ଟା ନ କରି ଲୋକେ ଅକାରଣ ବ୍ୟସ୍ତ ହୋଇପଡ଼ନ୍ତି ଏବଂ ସୂର୍ଯ୍ୟ ବା ଚନ୍ଦ୍ରକୁ ରକ୍ଷା କରିବା ନିମନ୍ତେ ସ୍ନାନ କରନ୍ତି ଓ ଉପବାସ କରନ୍ତି । ସୂର୍ଯ୍ୟ ଓ ଚନ୍ଦ୍ର ନିଜକୁ ରକ୍ଷାକରିବା ପାଇଁ ସମ୍ପୂର୍ଣ୍ଣ ସମର୍ଥ । ସେମାନଙ୍କ ପାଇଁ ଆମର ମୁଣ୍ଡ ଘୂରାଇବା ଦରକାର ନାହିଁ ।

ଆମେ ସଭ୍ୟତା ଓ ସଂସ୍କୃତିର ବୃଦ୍ଧି ବିଷୟରେ ଆଲୋଚନା କଲେ ଏବଂ ଏହାର ଆରମ୍ଭରେ ଲୋକେ କିପରି ଗ୍ରାମ ଓ ଛୋଟ ସହରରେ ବାସ କରିବାକୁ ଲାଗିଲେ, ତାହା ଆମେ ଦେଖିଛେ । ଅଧିକ ପରିମାଣରେ ଖାଦ୍ୟଦ୍ରବ୍ୟ ପାଇବାରୁ ଲୋକେ ଅଧିକ ଅବସର ପାଇଲେ ଏବଂ ସେମାନେ ଶିକାର ଓ ଖାଇବା ଛଡ଼ା ଅନ୍ୟ କଥା ବି ଚିନ୍ତା କଲେ । ଚିନ୍ତା ବୃଦ୍ଧି ସଙ୍ଗେ ସଙ୍ଗେ ସାଧାରଣତଃ ଶିଳ୍ପକାରିଗରି ଓ ସଂସ୍କୃତି ବି ଉନ୍ନତି ଲାଭ

କଲା । ଲୋକସଂଖ୍ୟା ବଢ଼ିବା ସଙ୍ଗେ ସଙ୍ଗେ ଲୋକେ ପାଖାପାଖି ବସବାସ କରିବାକୁ ଲାଗିଲେ । ବାରମ୍ବାର ପରସ୍ପର ସହିତ ଦେଖାସାକ୍ଷାତ୍ ହେଲା ଏବଂ ନିଜ ଭିତରେ ଅବଶ୍ୟ ମିଳିମିଶି ଚଳିଲେ । ସାଥୀ ବା ପଡ଼ୋଶୀଙ୍କର କ୍ଷତି କଲାପରି କୌଣସି କାର୍ଯ୍ୟ ସେମାନେ ଅବଶ୍ୟ କରିବେ ନାହିଁ, ନଚେତ୍ କୌଣସି ସାମାଜିକ ଜୀବନ ସମ୍ଭବ ହୁଅନ୍ତା ନାହିଁ । ଉଦାହରଣ ସ୍ୱରୂପ ଗୋଟିଏ ପରିବାର କଥା ଦେଖ । ପରିବାର ସମାଜର ଏକ ଶ୍ରେଷ୍ଠ ଅଙ୍ଗ—ପରିବାରର ଲୋକେ ଯଦି ପରସ୍ପର ପ୍ରତି ଟିକିଏ ସହନଶୀଳ ହୁଅନ୍ତି, ତେବେ ପରିବାର ଆନନ୍ଦରେ ଦିନ କାଟିବ । କୌଣସି ପରିବାର ପକ୍ଷରେ ଏହା ବିଶେଷ କଷ୍ଟକର ନୁହେଁ; କାରଣ କୁଟୁମ୍ବର ଲୋକଙ୍କ ଭିତରେ ପରସ୍ପର ସହିତ ଗୋଟାଏ ସ୍ନେହର ବନ୍ଧନ ଥାଏ । ଏହା ସତ୍ତ୍ୱେ ବି ଆମେ ସମସ୍ତେ ସମୟରେ ସହନଶୀଳ ହେଉ ନା—ତାହାଦ୍ୱାରା ଆମେ ଯେ ସଭ୍ୟ ଓ ଭଦ୍ର ନୋହୁ, ଏହା ବୁଝାଯାଏ । ପରିବାର ଅପେକ୍ଷା ଆଉ ଟିକିଏ ବଡ଼ ଗୋଷ୍ଠୀ, ଯଥା—ଆମର ପଡ଼ୋଶୀ ସହରର ଲୋକ, ଗ୍ରାମର ଲୋକ କିମ୍ବା ଏପରିକି ଅନ୍ୟ ଦେଶର ଲୋକଙ୍କ ବେଳକୁ ବି ଠିକ୍ ସେହି କଥା । ତେଣୁ ଲୋକସଂଖ୍ୟା ବଢ଼ିବା ସଙ୍ଗେ ସଙ୍ଗେ ଲୋକଙ୍କର ଅଧିକ ସାମାଜିକ ଜୀବନ ବଢ଼ିଲା ଓ ଲୋକେ ଅଧିକ ଧୈର୍ଯ୍ୟ ଓ ବିଚାରବନ୍ତ ହେଲେ । ସଂସ୍କୃତି ଓ ସଭ୍ୟତାର ଅର୍ଥ ବୁଝାଇବା କଷ୍ଟକର । ମୁଁ ତତେ ବୁଝାଇବାକୁ ଚେଷ୍ଟା କରିବି ନାହିଁ । ଅନ୍ୟ ବିଷୟ ଭିତରେ ସଂସ୍କୃତି ବୋଇଲେ, ସଂଯତ ଓ ଅନ୍ୟ ପ୍ରତି ବିଚାରବନ୍ତ ହେବା ବି ବୁଝାଏ । ଯଦି କୌଣସି ଲୋକର ଆତ୍ମ-ସଂଯମ ନ ଥାଏ ଓ ସେ ଅନ୍ୟ ପ୍ରତି ବିଚାରଶୀଳ ନ ହୁଏ, ତେବେ ସେ ଅଭଦ୍ର ବୋଲି ନିଶ୍ଚିତରୂପେ କୁହାଯାଇପାରେ ।

## ୧୪ । ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀ ଓ ଧର୍ମ

ଜାନୁଆରି ୨୦, ୧୯୩୧

ଚାଲ ଇତିହାସର ଦୀର୍ଘ ରାସ୍ତାରେ ଚାଲିବା । ଆମେ ପ୍ରାୟ ୨୫ ବର୍ଷ ପୂର୍ବେ ପହଞ୍ଚିଛେ କିମ୍ବା ଅନ୍ୟଭାବରେ କହିଲେ ଖ୍ରୀଷ୍ଟଜନ୍ମର ୬୦୦ ବର୍ଷ ପୂର୍ବ ସମୟରେ ପହଞ୍ଚିଛେ । ଏଇଟା ଠିକ୍ ତାରିଖ ବୋଲି ଭାବିବୁ ନାହିଁ । ମୁଁ ତତେ ଖାଲି ଗୋଟାଏ ମୋଟାମୋଟି ସମୟ ଜଣାଉଛି । ପ୍ରାୟ ଏହି ସମୟରେ ଚୀନ୍‌ଠାରୁ ଆରମ୍ଭ କରି ଭାରତ, ଇରାନ୍ ଓ ଗ୍ରୀସ୍ ଆଦି ବିଭିନ୍ନ ଦେଶରେ ଅନେକ ବଡ଼ଲୋକ, ଭାବୁକ ଓ ଧର୍ମସଂସ୍ଥାପକ ବାହାରିଥିଲେ । ସେମାନେ ଏକ ସମୟରେ ଜନ୍ମ ହୋଇ ନ ଥିଲେ; କିନ୍ତୁ ଜନ୍ମକାଳ ଦୃଷ୍ଟିରୁ ଦେଖିଲେ ସେମାନେ ପରସ୍ପରର ଏତେ ନିକଟବର୍ତ୍ତୀ ଥିଲେ ଯେ ଖ୍ରୀଷ୍ଟପୂର୍ବ ଷଷ୍ଠ

ଶତାବ୍ଦୀ ବେଶ୍ ଆମୋଦଦାୟକ ବୋଧହୁଏ । ପୃଥିବୀରେ ନିଶ୍ଚୟ ଗୋଟାଏ ଚିନ୍ତାର ଝଞ୍ଜା ବହି ଯାଇଥିବ—ପ୍ରଚଳିତ ଅବସ୍ଥା ବିଷୟରେ ଅସନ୍ତୋଷ ଜାଗି ଉଠିଥିବ ଏବଂ ଉନ୍ନତ ବ୍ୟବସ୍ଥା ଲାଗି ଆଶା ଓ ଆକାଙ୍କ୍ଷା ଜାଗ୍ରତ ହୋଇଥିବ । କାରଣ ଏ କଥା ସ୍ମରଣ ରଖିବା ଦରକାର ଯେ ବଡ଼ ବଡ଼ ଧର୍ମସଂସ୍ଥାପକମାନେ ସର୍ବଦା ଭଲ ଅବସ୍ଥା ଆଣିବାକୁ ଚେଷ୍ଟା କରୁଥିଲେ ଏବଂ ସେମାନଙ୍କ ଲୋକଙ୍କୁ ବଦଳାଇ ଉନ୍ନତ କରି ତାଙ୍କ ଦୁଃଖ ଦୂର କରିବାକୁ ଚେଷ୍ଟା କରୁଥିଲେ । ସେମାନେ ବିପ୍ଳବୀ; ତେଣୁ ପ୍ରଚଳିତ ଦୋଷତ୍ରୁଟି ବିରୁଦ୍ଧରେ ଆକ୍ରମଣ କରିବାକୁ ଭୟ କରୁ ନ ଥିଲେ । ଯେଉଁଠି ପୂର୍ବପରମ୍ପରା ଭୁଲ ବାଟରେ ଯାଉଥିଲା କିମ୍ବା ଭବିଷ୍ୟତର ବିକାଶରେ ବାଧା ଦେଉଥିଲା, ସେମାନେ ତାକୁ ଆକ୍ରମଣ କରୁଥିଲେ ଏବଂ ନିର୍ଭୟରେ ଏହାକୁ ଦୂର କରୁଥିଲେ । ସର୍ବୋପରି ସେମାନେ ଉଚ୍ଚ ଜୀବନଯାପନ ଦୃଷ୍ଟାନ୍ତ ରଖି ଯାଇଥିଲେ ଏବଂ ତାହା ବଂଶାନୁକ୍ରମେ ଅସଂଖ୍ୟ ନରନାରୀଙ୍କର ଆଦର୍ଶ ରୂପେ ରହିଲା ଓ ପ୍ରେରଣା ଦାନ କଲା ।

ସେହି ଖ୍ରୀଷ୍ଟପୂର୍ବ ଶତାବ୍ଦୀରେ ଭାରତରେ ବୁଦ୍ଧ ଓ ମହାବୀର, ଚୀନ୍‌ରେ କନ୍‌ଫୁସିୟସ୍ ଓ ଲାଓଜି, ଇରାନ୍‌ରେ ଜରଥୁଷ୍ଟ୍ର * ବା ଜୋରାଷ୍ଟର ଏବଂ ଗ୍ରୀକ୍ ସାମୋସ୍ ଦ୍ୱୀପରେ ପିଥାଗୋରାସ୍ ଥିଲେ । ଆଉ ଅନ୍ୟ ବିଷୟ ସମ୍ବନ୍ଧରେ ତୁ ହୁଏତ ଏହି ନାମସବୁ ଶୁଣିଥିବୁ । ସାଧାରଣ ବାଳକ ବା ବାଳିକା ପିଥାଗୋରାସ୍ ଜ୍ୟାମିତିର ସଙ୍କଟ ପ୍ରମାଣ କରିଥିଲେ ବୋଲି ଜାଣନ୍ତି । ସେମାନଙ୍କୁ ଏହା ଶିଖିବାକୁ ପଡ଼େ । ସମକୋଣବିଶିଷ୍ଟ ତ୍ରିଭୁଜର ବାହୁ ଉପରେ ଥିବା ଚତୁର୍ଭୁଜ ବିଷୟରେ ଏହି ସଂଜ୍ଞା ଲେଖା ଏବଂ ଇଉକ୍ଲିଡ୍ କିମ୍ବା ଅନ୍ୟ ଯେ କୌଣସି ଜ୍ୟାମିତିରେ ତାହା ମିଳିବ । ମାତ୍ର ଜ୍ୟାମିତିର ଆବିଷ୍କାର ଛଡ଼ା ପିଥାଗୋରାସ୍ ଜଣେ ବଡ଼ ଚିନ୍ତାଶୀଳ ଲୋକ ବୋଲି ବିଦିତ । ଆମେ ତାଙ୍କ ବିଷୟରେ ବେଶି କିଛି ଜାଣୁନା । ବାସ୍ତବିକ ସେହି ନାମରେ କୌଣସି ଲୋକ ଥିଲେ କି ନାହିଁ, ଏ ବିଷୟରେ ଅନେକେ ସନ୍ଦେହ ପ୍ରକାଶ କରନ୍ତି ।

ଇରାନ୍‌ରେ ଜୋରାଷ୍ଟର ପାର୍ସୀ ଧର୍ମ ସ୍ଥାପନ କରିଥିଲେ ବୋଲି କହନ୍ତି, କିନ୍ତୁ ତାଙ୍କୁ ସଂସ୍ଥାପକ ବୋଲି କୁହାଯିବ କି ନାହିଁ, ସେ ସମ୍ବନ୍ଧରେ ମୁଁ ନିଶ୍ଚିତ ନୁହେଁ । ଏ କଥା କହିଲେ ବୋଧହୁଏ ଭଲ ହେବ ଯେ, ସେ ଇରାନ୍‌ର ପୁରୁଣା ଚିନ୍ତା ଓ ଧର୍ମକୁ ଗୋଟାଏ ନୂତନ ରୂପ ଦେଲେ ଓ ନୂଆ ଢଙ୍ଗରେ ଚଳାଇଲେ । ଅନେକ କାଳ ପର୍ଯ୍ୟନ୍ତ ଇରାନ୍‌ରେ ଏହି ଧର୍ମର ଅସ୍ତିତ୍ୱ ପ୍ରାୟ ଲୋପ ହୋଇ ଯାଇଥିଲା । ଅନେକ ଦିନୁ ପାର୍ସୀମାନେ ଇରାନ୍‌ରୁ ଭାରତକୁ ଆସିଲେଣି—ସେମାନେ ଏହି ଧର୍ମ ଭାରତକୁ ଆଣିଲେ ଏବଂ ସେହି ଦିନଠାରୁ ଜନେ ମଧ୍ୟ ଏହା ପାଳନ କରନ୍ତି ।

---

* ଜରଥୁଷ୍ଟ୍ର ସମ୍ଭବତଃ ଖ୍ରୀଷ୍ଟପୂର୍ବ ଅଷ୍ଟମ ଶତାବ୍ଦୀରେ ବାସ କରୁଥିଲେ ।

ଏହି ସମୟରେ କନ୍‌ଫୁସିୟୁସ୍ ଓ ଲାଓଜ ଏହି ଦୁଇଟି ମହାପୁରୁଷ ଚୀନ୍‌ରେ ବାସ କରୁଥିଲେ । କନ୍‌ଫୁସିୟୁସ୍‌ଙ୍କ ଠିକ୍ ନାମ ହେଉଛି କଙ୍ଗ-ଫୁ-ଜ୍‌ସେ । ଧର୍ମ ସଂସ୍ଥାପନ କରିବା ସାଧାରଣତଃ ଯାହା ବୁଝାଏ, ଏମାନେ ତାହା କରି ନ ଥିଲେ । ମଣିଷର କଅଣ କରିବା ଉଚିତ୍ ଓ କଅଣ ନ କରିବା ଉଚିତ୍, ଏ ସମ୍ବନ୍ଧରେ ସେମାନେ କେତେକ ନୀତିବାକ୍ୟ ଓ ସାମାଜିକ ଆଚାର ବ୍ୟବହାରର ପ୍ରଚଳନ କରିଥିଲେ । ମାତ୍ର ସେମାନଙ୍କ ମୃତ୍ୟୁ ପରେ ଚୀନ୍‌ରେ ତାଙ୍କର ସ୍ମୃତିଚିହ୍ନ ରୂପେ ଅସଂଖ୍ୟ ମନ୍ଦିର ଗଢ଼ାହେଲା ଏବଂ ହିନ୍ଦୁମାନେ ଯେପରି ବେଦ କିମ୍ବା ଖ୍ରୀଷ୍ଟିୟାନମାନେ ଯେପରି ବାଇବେଲକୁ ମାନନ୍ତି, ସେମାନଙ୍କ ବହିସବୁ ଚୀନ୍‌ରେ ସେହିପରି ଆଦୃତ ହେବାକୁ ଲାଗିଲା । କନ୍‌ଫୁସିୟୁସ୍‌ଙ୍କ ପ୍ରଭାବର ଫଳ ସ୍ୱରୂପ ଚୀନ୍‌ର ଲୋକେ ପୃଥିବୀରେ ଖୁବ୍ ସୁଶୀଳ, ସଦାଚାରୀ ଓ ଶିକ୍ଷିତ ହୋଇଛନ୍ତି ।

ଭାରତରେ ମହାବୀର ଓ ବୁଦ୍ଧ ଥିଲେ । ଆଜିକାଲି ଯେଉଁ ଜୈନଧର୍ମ ଅଛି; ତାହା ମହାବୀର ଆରମ୍ଭ କରିଥିଲେ । ତାଙ୍କର ପ୍ରକୃତ ନାମ ହେଉଛି ବର୍ଦ୍ଧମାନ । ଖୁବ୍ ବଡ଼ ଲୋକ ଥିବାରୁ ତାଙ୍କୁ ମହାବୀର ନାମ ଦିଆଗଲା । ପଶ୍ଚିମ ଭାରତ ଓ କାଥିଆବାଡ଼ରେ ଅନେକ ଜୈନ ଅଛନ୍ତି ଏବଂ ଆଜିକାଲି ସେମାନଙ୍କୁ ପ୍ରାୟ ହିନ୍ଦୁ ବୋଲି ଧରାଯାଏ । କାଥିଆବାଡ଼ ଓ ରାଜପୁତାନାର ମାଉଣ୍ଟ ଆବୁରେ ସେମାନଙ୍କର ଖୁବ୍ ସୁନ୍ଦର ମନ୍ଦିରସବୁ ଅଛି । ସେମାନେ ଅହିଂସାରେ ଖୁବ୍ ବିଶ୍ୱାସ କରନ୍ତି ଏବଂ କୌଣସି ଜୀବିତ ପ୍ରାଣୀକୁ କିଛି ଆଘାତ କରିବାର ପୂର୍ଣ୍ଣ ବିରୋଧ କରନ୍ତି । ଏହି ସନ୍ଦର୍ଭରେ ତୁ ଜାଣି ଖୁସିହେବୁ ଯେ ପିଥାଗୋରାସ୍ ନିରାମିଷାଶୀ ଥିଲେ ଏବଂ ତାଙ୍କର ସମସ୍ତ ଶିଷ୍ୟ ଓ ଚେଲାମାନଙ୍କୁ ନିରାମିଷାଶୀ ହେବାଲାଗି ଜୋର ଦେଉଥିଲେ ।

ଆମେ ବର୍ତ୍ତମାନ ଗୌତମ ବୁଦ୍ଧଙ୍କ ବିଷୟ ଆଲୋଚନା କରିବା । ତୁ ଜାଣୁ ସେ ତ କ୍ଷତ୍ରିୟ ଥିଲେ; ଏକ ରାଜବଂଶର ଯୁବରାଜ ଏବଂ ନାମ ସିଦ୍ଧାର୍ଥ । ତାଙ୍କ ମାଆ ଥିଲେ ରାଣୀ ମାୟା । ପୁରୁଣା ଶାସ୍ତ୍ରରେ ଲେଖାଅଛି ଯେ ବାଲଚନ୍ଦ୍ରଙ୍କ ପରି ତାଙ୍କୁ ସମସ୍ତେ ସମ୍ମାନ କରୁଥିଲେ । ପୃଥିବୀ ପରି ସେ ନିସ୍ତବ୍ଧ ଥିଲେ ଓ ପଦ୍ମପରି ତାଙ୍କର ହୃଦୟ ନିର୍ମଳ ଥିଲା ।

ତାଙ୍କର ବାପ ମାଆ ତାଙ୍କୁ ବିଳାସ ଓ ଅଯତ୍ନରେ ବଢ଼ାଇ ଆଣିଲେ ଏବଂ କୌଣସି ଦୁଃଖ ବା ନିର୍ଯ୍ୟାତନାରୁ ତାଙ୍କୁ ଦୂରରେ ରଖିବା ପାଇଁ ଚେଷ୍ଟା କଲେ । କିନ୍ତୁ ଏହା ସମ୍ଭବ ହେଲା ନାହିଁ । ପରମ୍ପରାରୁ ଜଣାପଡ଼େ ଯେ ସେ ଦାରିଦ୍ର୍ୟ, ଦୁଃଖ ଓ ମୃତ୍ୟୁ ଦୃଶ୍ୟ ଦେଖିଲେ ଏବଂ ଏହା ତାଙ୍କ ହୃଦୟକୁ ସ୍ପର୍ଶ କଲା । ରାଜପ୍ରାସାଦ କିମ୍ବା ତାର ସମସ୍ତ ବିଳାସ ଭୋଗକରି ମଧ୍ୟ ସେ ଶାନ୍ତି ପାଇଲେ ନାହିଁ ଏବଂ ଏପରିକି ତାଙ୍କର ସୁନ୍ଦରୀ ସ୍ତ୍ରୀ, ଯାହାଙ୍କୁ ସେ ଅତି ଭଲ ପାଉଥିଲେ, ସେ ମଧ୍ୟ ତାଙ୍କୁ ପ୍ରପୀଡ଼ିତ ମାନବସମାଜର ଚିନ୍ତାରୁ

ଅଲଗା କରି ରଖିପାରିଲା ନାହିଁ । କ୍ରମେ ସେ ଅଧିକ ଚିନ୍ତା କରିବାକୁ ଲାଗିଲେ ଓ ଏହି ଦୁଃଖ ଦୂରକରିବାର ଉପାୟ ଭାବିବାକୁ ଲାଗିଲେ । ତାଙ୍କ ପକ୍ଷରେ ଏହା ଅସହ୍ୟ ବୋଧହେଲା । ଏକ ନିର୍ଜନ ରାତିରେ ସେ ରାଜପ୍ରାସାଦ ଓ ତାଙ୍କର ପ୍ରିୟ ଲୋକଙ୍କୁ ତ୍ୟାଗ କଲେ ଏବଂ ଯେଉଁସବୁ ସମସ୍ୟା ତାଙ୍କ ମନକୁ ଅସ୍ଥିର କରୁଥିଲା, ତାହାର ସମାଧାନ ଉପାୟ ପାଇବା ସକାଶେ ଯାତ୍ରାକଲେ । ଏହି ଅନ୍ୱେଷଣରେ ଅନେକଦିନ ଲାଗିଲା ଓ ସେ ଅନେକ କଷ୍ଟ ଭୋଗିଲେ । କହନ୍ତି ଯେ ଅବଶେଷରେ ଅନେକ ଦିନ ପରେ ସେ ଗୟାର ଗୋଟିଏ ଅଶ୍ୱତ୍ଥ ଗଛତଳେ ବସିଥିଲାବେଳେ ତାଙ୍କର ଜ୍ଞାନ ଉଦୟ ହେଲା ଏବଂ ସେ ବୁଦ୍ଧ ହେଲେ । ସେ ଯେଉଁ ଗଛମୂଳେ ବସିଥିଲେ, ତାକୁ ବୋଧିଦ୍ରୁମ ବୋଲି କହନ୍ତି । ପୁରୁଣା କାଶୀରେ ଥିବା ସାରନାଥର 'ଡିଅର ପାର୍କ', ଯାହାକୁ ସେତେବେଳେ ଇସିପତନ କହୁଥିଲେ, ସେଠି ବୁଦ୍ଧ ତାଙ୍କର ଶିକ୍ଷା ପ୍ରଚାର କଲେ । ସେ 'ଭଲକରି ବଞ୍ଚିବାର ଉପାୟ' ଦେଖାଇଦେଲେ । ଦେବତାଙ୍କ ପାଖରେ ଦିଆଯାଉଥିବା ବଳିପ୍ରଥାକୁ ସେ ନିନ୍ଦା କଲେ ଏବଂ କହିଲେ ଯେ ତାହା ବଦଳରେ କ୍ରୋଧ, ଘୃଣା, ଈର୍ଷା ଓ ମନ୍ଦଚିନ୍ତା ବଳିଦେବା ଦରକାର ।

ବୁଦ୍ଧଙ୍କ ଜନ୍ମବେଳେ ଭାରତରେ ବୈଦିକ ଧର୍ମ ଚଳୁଥିଲା । କିନ୍ତୁ କ୍ରମେ ଏହା ବଦଳିଯାଇ ତାର ଉଚ୍ଚ ସ୍ଥାନରୁ ଖସି ପଡୁଥିଲା । ବ୍ରାହ୍ମଣ ପୁରୋହିତ ଏଥିରେ ନାନା ପ୍ରକାର ରୀତି, ପୂଜା ଓ କୁସଂସ୍କାର ଆଦି ଭର୍ତ୍ତି କରିଛନ୍ତି । କାରଣ ଯେତେ ପୂଜା ବଢ଼ିବ, ବ୍ରାହ୍ମଣଙ୍କର ତେତେ ଲାଭ । ଜାତିପ୍ରଥା ବି କଠିନ ହୋଇଥିଲା ଏବଂ ସାଧାରଣ ଲୋକ ମନ୍ତ୍ରତନ୍ତ୍ର ଆଦିକୁ ଭୟ କରୁଥିଲେ । ପୁରୋହିତମାନେ ଏହି ଉପାୟରେ ଲୋକମାନଙ୍କୁ ତାଙ୍କ ଆୟତ୍ତକୁ ଆଣି ପାରୁଥିଲେ ଏବଂ କ୍ଷତ୍ରିୟ ଶାସକଙ୍କ କ୍ଷମତାକୁ ମଧ୍ୟ ଭ୍ରୂକ୍ଷେପ କରୁ ନ ଥିଲେ । ଏହିପରି ଭାବରେ କ୍ଷତ୍ରିୟ ଓ ବ୍ରାହ୍ମଣଙ୍କ ଭିତରେ ବିରୋଧ ହେଲା । ବୁଦ୍ଧ ଜଣେ ଲୋକପ୍ରିୟ ସଂସ୍କାରକ ରୂପେ ବାହାରିଲେ ଏବଂ ବୈଦିକ ଧର୍ମରେ ପ୍ରବେଶ କରିଥିବା ଦୋଷ ଓ ଏହି ପୁରୋହିତଙ୍କ ଦୌରାତ୍ମ୍ୟକୁ ସେ ଆକ୍ରମଣ କଲେ । ସେ ଶୁଦ୍ଧ ଜୀବନଯାପନ ଓ ଭଲ କାମ କରିବା ଲାଗି ଏବଂ ପୂଜା ଓ ସେହିପରି ଅନ୍ୟ କାର୍ଯ୍ୟ ନ କରିବାକୁ ପରାମର୍ଶ ଦେଲେ । ସେ ସନ୍ନ୍ୟାସୀମାନଙ୍କର ସମିତି ସ୍ଥାପନ କଲେ; ତାକୁ ବୁଦ୍ଧସଙ୍ଘ କହୁଥିଲେ । ଏମାନେ ତାଙ୍କ ଦୀକ୍ଷା ଗ୍ରହଣ କଲେ ।

କିଛିଦିନ ପର୍ଯ୍ୟନ୍ତ ବୌଦ୍ଧଧର୍ମ ଧର୍ମ ହିସାବରେ ଭାରତରେ ବିସ୍ତାର ଲାଭ କରିପାରି ନ ଥିଲା । ଏହା କିପରି କ୍ରମେ ପ୍ରସାରଲାଭ କଲା ଏବଂ ପୁଣି ଭାରତରେ ପୃଥକ୍ ଧର୍ମ ହିସାବରେ ତାହାର ଅସ୍ତିତ୍ୱ କିପରି ଲୋପପାଇଲା, ସେ ସମ୍ପର୍କରେ ପରେ ରୁ ପଢ଼ିବୁ । ବୌଦ୍ଧଧର୍ମ ଜନ୍ମହେଲା ଭାରତରେ; ମାତ୍ର ସିଲୋନ୍‌ଠାରୁ ଆରମ୍ଭ କରି ଚୀନ୍ ପର୍ଯ୍ୟନ୍ତ ଦେଶ ବିଦେଶରେ ଏହା ବିସ୍ତାରଲାଭ କଲେ ସୁଦ୍ଧା ଭାରତରେ ବୌଦ୍ଧଧର୍ମ ବ୍ରାହ୍ମଣଧର୍ମ ବା ହିନ୍ଦୁ-ଧର୍ମରେ ମିଶିଗଲା । କିନ୍ତୁ ବ୍ରାହ୍ମଣଧର୍ମରେ ଏହା ଏକ ଖୁବ୍ ପ୍ରଭାବ ପକାଇଥିଲା । ତା ଫଳରେ ଏଥିରୁ ଅନେକ କୁସଂସ୍କାର ଓ ଅନ୍ଧବିଶ୍ୱାସ ଦୂର ହୋଇଗଲା ।

ବର୍ତ୍ତମାନ ପୃଥିବୀରେ ସବୁଠାରୁ ବେଶୀ ଲୋକଙ୍କର ଧର୍ମ ହେଉଛି ବୌଦ୍ଧଧର୍ମ । ସବୁଠୁ ବେଶୀ ଲୋକେ ଗ୍ରହଣ କରିଥିବା ଅନ୍ୟ ଧର୍ମ ହେଉଛି ଖ୍ରୀଷ୍ଟିୟାନ୍, ଇସଲାମ୍ ଓ ହିନ୍ଦୁ ଧର୍ମ । ଏହାଛଡ଼ା ଇହୁଦୀ, ଶିଖ୍, ପାର୍ସୀ ଓ ଅନ୍ୟମାନଙ୍କର ଧର୍ମ ବି ଅଛି । ଜଗତର ଇତିହାସରେ ଧର୍ମ ଓ ଧର୍ମ-ସଂସ୍ଥାପକମାନେ ବଡ଼ ଭାଗ ନେଇଛନ୍ତି ଏବଂ ଇତିହାସ ଆଲୋଚନା କଲାବେଳେ ଆମେ ତାକୁ ବାଦ୍ ଦେଇପାରିବା ନାହିଁ । ମାତ୍ର ସେସବୁ ବିଷୟରେ ଲେଖିବା ମୋ ପକ୍ଷରେ କିଛି କଷ୍ଟକର । ଏଥିରେ କୌଣସି ସନ୍ଦେହ ନାହିଁ ଯେ ବଡ଼ ବଡ଼ ଧର୍ମସ୍ଥାପକମାନେ ହିଁ ପୃଥିବୀରେ ମହତ୍ତ୍ୱ ଓ ବଡ଼ଲୋକ । କିନ୍ତୁ ସେମାନଙ୍କର ଶିଷ୍ୟ ଓ ଅନୁଗାମୀ ଅନେକ ସମୟରେ ମହତ୍ତ୍ୱ ବା ଭଲ ହେବାର ବହୁ ଦୂରରେ ଥିଲେ । ଆମେ ଇତିହାସରେ ଦେଖୁଁ ଯେ ଯେଉଁ ଧର୍ମ ଆମକୁ ଉନ୍ନତ ଓ ମହତ୍ କରିବା ଲାଗି କରାଯାଇଥିଲା ତାହା ଅନେକ ସମୟରେ ଆମକୁ ପଶୁ ପରି କରି ରଖିଛି; ଆମକୁ ଜ୍ଞାନ ଦେବା ପରିବର୍ତ୍ତେ ଅନ୍ଧାରରେ ରଖିଛି; ଆମର ମନକୁ ଉଦାର କରିବା ପରିବର୍ତ୍ତେ ଏହା ଆମକୁ ନୀଚମନା କରୁଛି ଓ ଅନ୍ୟ ପ୍ରତି ସହନଶୀଳତା ଶିଖାଉ ନାହିଁ । ଧର୍ମ ନାମରେ ଅନେକ ମହତ୍ତ୍ୱ ଓ ସୁନ୍ଦର କାର୍ଯ୍ୟସବୁ ହୋଇଛି । ଧର୍ମ ନାମରେ ମଧ୍ୟ ହଜାର ହଜାର ଓ ଲକ୍ଷ ଲକ୍ଷ ଲୋକ ମରିଛନ୍ତି ଏବଂ ଅନେକ ଅନର୍ଥ ଘଟିଯାଇଛି ।

ତାହାହେଲେ ଧର୍ମର କାମ କ'ଣ ? କେତେକ ଲୋକଙ୍କ ପକ୍ଷରେ ଧର୍ମ ବୋଇଲେ ଅନ୍ୟ ସଂସାର, ଅର୍ଥାତ୍ ସ୍ୱର୍ଗ କିମ୍ବା ଏହିପରି ଏକ ଜିନିଷ । ସ୍ୱର୍ଗ ଯିବା ଆଶାରେ ସେମାନେ ଧାର୍ମିକ ହୁଅନ୍ତି କିମ୍ବା କେତେକ କାର୍ଯ୍ୟ କରନ୍ତି । ଏକଥା ଦେଖି ପିଲା ଯେପରି ଜିଲେପି (ମିଠାଇ) ପାଇବା ଲୋଭରେ ଭଲ ଆଚରଣ କରେ, ସେହି କଥା ମନେପଡ଼ୁଛି । ଯଦି ପିଲା ସବଦା ଜିଲେପି ପାଇବା ଲାଗି ଭାବୁଥାଏ, ତେବେ ସେ ଠିକ୍‌ରୂପେ ଶିକ୍ଷା ପାଇଛି ବୋଲି ତୁ କହିବୁ ନାହିଁ । କହିବୁ କି ? କେବଳ ଜିଲେପି ପାଇବା ନିମନ୍ତେ ଯେଉଁ ବାଳକ ବା ବାଳିକା ପ୍ରତ୍ୟେକ କାର୍ଯ୍ୟ କରେ, ତାକୁ ତୁ ପସନ୍ଦ କରିବୁ ନାହିଁ । କିନ୍ତୁ ଯେଉଁ ବୟସ୍କ ଲୋକସବୁ ଏହିପରି କାମ କରନ୍ତି, ତାଙ୍କୁ ଆମେ କ'ଣ କହିବା ? କାରଣ ବାସ୍ତବିକ ଜିଲେପି ଓ ସ୍ୱର୍ଗର ଧାରଣା ଭିତରେ ବିଶେଷ କିଛି ପ୍ରଭେଦ ନାହିଁ । ଆମେ ସମସ୍ତେ ଊଣା ଅଧିକେ ସ୍ୱାର୍ଥପର, ମାତ୍ର ଆମ ପିଲାଏ ଯେପରି ଯଥାସମ୍ଭବ ନିଃସ୍ୱାର୍ଥପର ହେବେ, ସେମାନଙ୍କୁ ସେପରି ଶିକ୍ଷାଦେବା ନିମନ୍ତେ ଆମେ ଚେଷ୍ଟା କରିବା ଉଚିତ୍ । ଯାହାହେଉ ସମ୍ପୂର୍ଣ୍ଣ ନିଃସ୍ୱାର୍ଥପରତା ଆମର ଆଦର୍ଶ ହେବା ଉଚିତ୍ ଏବଂ ତାହା ପାଳନ କରିବା ପାଇଁ ଆମେ ସବଦା ଚେଷ୍ଟା କରିବା ।

ଆମେ ସମସ୍ତେ ଆମ କାର୍ଯ୍ୟର ଫଳ ଦେଖିବାକୁ ଓ ଭୋଗ କରିବାକୁ ଚାହୁଁ । ଏହା ସ୍ୱାଭାବିକ । କିନ୍ତୁ ଆମର ଲକ୍ଷ୍ୟ କ'ଣ ? ଆମେ କେବଳ ନିଜ ପାଇଁ ନା ସମସ୍ତଙ୍କର ମଙ୍ଗଳ, ଯଥା—ସମାଜର ମଙ୍ଗଳ, ଆମ ଦେଶ ଓ ସମଗ୍ର ମାନବଜାତିର ମଙ୍ଗଳ

ବ୍ତିଥାଇଁ ? ସମସ୍ତଙ୍କର ମଙ୍ଗଳରେ ନିଶ୍ଚୟ ଆମର ମଙ୍ଗଳ ହେବ । ମୋର ମନେହେଉଛି କିଛି ଦିନ ପୂର୍ବେ ମୁଁ ତତେ ଗୋଟିଏ ସଂସ୍କୃତ ଶ୍ଳୋକ ଲେଖିଥିଲି । ସେଥିରେ ଥିଲା—ବ୍ୟକ୍ତିବିଶେଷ କୁଟୁମ୍ବ ପାଇଁ ତ୍ୟାଗ କରିବ, ପରିବାର ଜାତି ଲାଗି ତ୍ୟାଗ କରିବ ଏବଂ ଜାତି ଦେଶ ଲାଗି ତ୍ୟାଗ କରିବ । ସଂସ୍କୃତ ଶ୍ଳୋକରୁ ତତେ ଆଉ ଗୋଟିଏ ଅନୁବାଦ ଦେଉଛି । ଏହା ଭାଗବତରେ ଅଛି । ଏହା ହେଉଛି—"ମୁଁ ସଚ୍ଚିଦାନନ୍ଦ ପ୍ରାପ୍ତି ଚାହେଁ ନାହିଁ । କିମ୍ବା ଜନ୍ମାନ୍ତରରୁ ମୁକ୍ତି ଚାହେଁ ନାହିଁ । ମୋର ତ ଇଚ୍ଛା ଯେ, ମୁଁ ସମସ୍ତ ଦୁଃଖୀ ଲୋକଙ୍କ କଷ୍ଟ ବରଣ କରେ ଓ ସେମାନଙ୍କ ଦୁଃଖ ମୋ ପାଖକୁ ଆସୁ । ତାହାହେଲେ ସେମାନେ ସମସ୍ତ ଦୁଃଖରୁ ମୁକ୍ତି ଲଭିବେ ।"

ଜଣେ ଧର୍ମବାଲା ଗୋଟାଏ ପ୍ରକାର କହିଲେ ଅନ୍ୟ ଜଣେ ଅନ୍ୟପ୍ରକାର କହେ ଏବଂ ଅନେକ ସମୟରେ ଜଣେ ଅନ୍ୟ ଜଣକୁ ବୋକା ବା ନିର୍ବୋଧ ବୋଲି ମନେକରେ । ଠିକ୍ କିଏ ? ସେମାନେ ଯେଉଁସବୁ ବିଷୟ କହନ୍ତି, ତାହା ଯେତେବେଳେ ଦେଖାଯାଇ ପାରିବ ନାହିଁ କିମ୍ବା ପ୍ରମାଣ କରାଯାଇ ପାରିବ ନାହିଁ, ସେତେବେଳେ ଏ ବିବାଦର ନିଷ୍ପତ୍ତି କରିବା କଷ୍ଟକର । ମାତ୍ର ଏସବୁ ବିଷୟରେ ନିଶ୍ଚିତ ବୋଲି ମନେକରି ପ୍ରତ୍ୟେକ ପ୍ରତ୍ୟେକକୁ ଗାଳିଦେବା ବା ମାଡ଼ ମାରିବା ଏକ ଅଦ୍ଭୁତ କଥା ପରି ଜଣାପଡ଼େ । ଆମ ଭିତରୁ ଅନେକେ ବଡ଼ ନୀଚମନା ଏବଂ ବୁଦ୍ଧିହୀନ । ଆମେ ନିଜେ ଯାହା ଜାଣୁ, ତାହା ସତ୍ୟ ବୋଲି ଭାବି କେବେ ପଡ଼ୋଶୀଙ୍କ ମୁଣ୍ଡରେ ତାହା ଲଦି ଦେଇପାରିବୁ କି ? ହୁଏତ ଆମେ ଠିକ୍ ହୋଇପାରିଥାଉଁ; ଆମର ପଡ଼ୋଶୀ ବି ଠିକ୍ ହୋଇପାରିଥାନ୍ତି । ତୁ ଯଦି ଗଛରେ ଫୁଲ ଦେଖୁ, ତେବେ ଫୁଲକୁ ଗଛ ବୋଲି ତ କହିବୁ ନାହିଁ ! ଯଦି କେହି ଖାଲି ପତ୍ର ଦେଖେ, କେହି ବି ଗଣ୍ଡିଟା ଦେଖେ, ତେବେ ସେ ସମସ୍ତେ ଗଛର ଗୋଟାଏ ଅଂଶମାତ୍ର ଯେ ଦେଖନ୍ତି, ଏଥିରେ ସନ୍ଦେହ ନାହିଁ । କିନ୍ତୁ ପ୍ରତ୍ୟେକ ଲୋକ ଯଦି ଗଛଟାକୁ କେବଳ ଫୁଲ ବା ପତ୍ର ବା ଗଣ୍ଡି ବୋଲି କହି ତାହା ପେଇଁ କଳିଆ ଲଗାନ୍ତି, ତେବେ ଏହା କିପରି ନିର୍ବୋଧତା !

ପରଲୋକ କଥା ପ୍ରତି ମୋର ଆଗ୍ରହ ନାହିଁ । ମୁଁ ଏହି ଜଗତରେ କଅଣ କରିବି, ସେ ବିଷୟରେ ମୋ ମନ ଭରିରହିଛି ଏବଂ ଏଥିରେ ଯଦି ମୁଁ ମୋର ପଥ ପରିଷ୍କାର ରୂପେ ପାଇପାରେ, ତେବେ ମୁଁ ସନ୍ତୁଷ୍ଟ ହେବି । ମୋର କର୍ତ୍ତବ୍ୟ ପରିଷ୍କାର ହୋଇଥିଲେ ମୁଁ ପରଲୋକ ବିଷୟରେ ମୁଣ୍ଡ ଘୂରାଏ ନାହିଁ ।

ତୁ ବଡ଼ ହେଲେ ନାନା କିସମର ଲୋକଙ୍କ ସଙ୍ଗେ ମିଶିବୁ । ଧାର୍ମିକ, ଅଧାର୍ମିକ ଏବଂ ଧର୍ମାଧର୍ମକୁ ଖାତିର କରୁ ନ ଥିବା ଲୋକଙ୍କ ସହି ବି ସଂପର୍କ ହେବ । ବହୁତ ବଡ଼ ବଡ଼ ଗୀର୍ଜା ଓ ଧର୍ମସଂସ୍ଥାସବୁ ଅଛି; ସେମାନଙ୍କର ପ୍ରଚୁର ସଂପଦ ଓ କ୍ଷମତା ଅଛି ।

ସେଗୁଡ଼ିକ ବେଳେ ବେଳେ ଭଲ ଓ ବେଳେ ବେଳେ ମନ୍ଦ କାର୍ଯ୍ୟରେ ବ୍ୟବହୃତ ହେଉଛି । ତୁ ଖୁବ୍ ସୁନ୍ଦର ଧାର୍ମିକ ଲୋକ ଦେଖିବୁ, ଆହୁରି ମଧ୍ୟ ଧର୍ମର ଆବରଣରେ ଅନ୍ୟମାନଙ୍କୁ ଲୁଟ୍ କରୁଥିବା ଓ ଠକାଉଥିବା ବଦମାସ୍ ଲୋକଙ୍କୁ ବି ଦେଖିବୁ । ଏହିସବୁ ବିଷୟରେ ଭାବିଚିନ୍ତି ତୋତେ ଠିକ୍ କରିବାକୁ ପଡ଼ିବ । ଜଣେ ଅନ୍ୟଠାରୁ ଅନେକ କଥା ଶିଖିପାରେ, ମାତ୍ର ତା ଭିତରୁ ଭଲ କଅଣ, ତାହା ନିଜେ ବାହାର କରିବ କିମ୍ବା ଅଭିଜ୍ଞତାରୁ ଜାଣିବ । ଅନେକ ପ୍ରଶ୍ନ ଅଛି, ଯେଉଁ ବିଷୟରେ ପ୍ରତ୍ୟେକ ଲୋକକୁ ନିଜର ଉତ୍ତର ବାହାର କରିବାକୁ ପଡ଼ିବ ।

କୌଣସି ବିଷୟ ତରବର ହୋଇ ନିଷ୍ପତ୍ତି କରିବୁ ନାହିଁ । କୌଣସି ବଡ଼ ବା ଗୁରୁତର ବିଷୟ ସମ୍ବନ୍ଧରେ ନିର୍ଦ୍ଦିଷ୍ଟ ଧାରଣା କରିବା ପୂର୍ବରୁ ସେ ବିଷୟରେ ପ୍ରଥମେ ନିଜେ ଭଲକରି ବୁଝିବୁ ଓ ସିଦ୍ଧାନ୍ତରେ ପହଞ୍ଚିବା ଭଳି ବିଦ୍ୟା ଅର୍ଜନ କରିବୁ । ଲୋକେ ନିଜେ ଭାବି ନିଷ୍ପତ୍ତି କରିବା ଠିକ୍ । ମାତ୍ର ତାହା କରିବା ଲାଗି ସମର୍ଥ ହୋଇଥିବା ଦରକାର । ଏପରି ଅନେକ ଲୋକ ଅଛନ୍ତି, ସେମାନେ ବୟସରେ ବଡ଼ ହେଲେ ସୁଦ୍ଧା ସେମାନଙ୍କର ମାନସିକ ବିକାଶ ଠିକ୍ ଶ୍ରେଣୀଶିଶୁ ପରି ।

ଅନ୍ୟ ଦିନ ଅପେକ୍ଷା ଆଜି ଏକ ଲମ୍ବା ଚିଠି ଲେଖିଲି ଏବଂ ତୋତେ ଏହା ଶୁଷ୍କ ଲାଗିପାରେ । କିନ୍ତୁ ଏହି ବିଷୟ ଉପରେ ମୋର କ୍ଷୁଦ୍ର ମତ ଜଣାଇଦେବାକୁ ଚାହୁଁଥିଲି । ତୁ ବର୍ତ୍ତମାନ ସବୁ ବୁଝି ନ ପାରିଲେ କିଛି ଯାଏ ଆସେ ନାହିଁ । ଅଳ୍ପଦିନ ପରେ ତୁ ଅନେକ କଥା ବୁଝିପାରିବୁ ।

## ୧୫ । ଇରାନ୍ ଓ ଗ୍ରୀସ୍

ଜାନୁୟାରି ୨୧, ୧୯୩୧

ତୋ ଚିଠି ଆଜି ପାଇଲି । ତୁ ଓ ମମୀ ଭଲ ଅଛ ଶୁଣି ଆନନ୍ଦ ହେଲା । ମୋର ଆଶା, ଦାଦୁଙ୍କର ଜର ଓ ଦେହର ଅସୁସ୍ଥତା ଶୀଘ୍ର ଭଲ ହୋଇଯିବ । ସେ ତାଙ୍କ ଜୀବନରେ ଏତେ କଠିନ ପରିଶ୍ରମ କରିଛନ୍ତି, ତଥାପି ଆଜିସୁଦ୍ଧା ସେ ଶାନ୍ତି ବା ଅବସର ପାଇପାରୁ ନାହାନ୍ତି ।

ତୁ ଲାଇବ୍ରେରୀରୁ ଅନେକ ବହି ଆଣି ପଢ଼ୁଛୁ ଓ ଆଉ କେତେ ବହିର ନାମ ମୋତେ ଲେଖିବାକୁ କହୁଛୁ । କିନ୍ତୁ ତୁ କ କ ବହି ପଢ଼ିଛୁ, ମୋତେ ଲେଖିଲୁ ନାହିଁ ତ !

ବହି ପଢ଼ିବା ଖୁବ୍ ଭଲ; ମାତ୍ର ଯେଉଁମାନେ ଖୁବ୍ ଶୀଘ୍ର ଗୁଡ଼ାଏ ବହି ପଢ଼ିଯାଆନ୍ତି, ସେମାନଙ୍କ ମୋର ଘୋର ସନ୍ଦେହ ଯେ ସେମାନେ ଠିକଣା ରୂପେ ବହି ପଢ଼ନ୍ତି ନାହିଁ—କେବଳ କୌଣସି ପ୍ରକାରେ ପୃଷ୍ଠା ଓଲଟାଇ ଯାଆନ୍ତି ଓ ପଢ଼ିସାରିଲା ପରଦିନ ସବୁ ଭୁଲିଯାଆନ୍ତି । କୌଣସି ପୁସ୍ତକ ପଢ଼ିବାଯୋଗ୍ୟ ବୋଲି ବିଚାରିଲେ ତାକୁ ଯତ୍ନ ସହକାରେ ଓ ଚିନ୍ତନ୍ କରି ପଢ଼ିବା ଉଚିତ୍ । ତା ଛଡ଼ା ଅନେକ ବହି ଅଛି, ଯାହା ଆଦୌ ପଢ଼ିବା-ଯୋଗ୍ୟ ନୁହେଁ ଓ ଭଲ ଭଲ ବହିସବୁ ବାଛିବା ଓ ସଂଗ୍ରହ କରିବା ମଧ୍ୟ ସହଜ ନୁହେଁ । ତୁ କହିପାରୁ ଯେ ତୁ ଯେତେବେଳେ ଆମ ଲାଇବ୍ରେରୀରୁ ବହି ସବୁ ନେଇ ପଢ଼ୁଛୁ, ତାହା ନିଶ୍ଚୟ ଭଲ ବହି ହୋଇଥିବ । ନଚେତ୍ ଲାଇବ୍ରେରୀରେ ଏଗୁଡ଼ିକ ରହନ୍ତା କାହିଁକି ? ଆଚ୍ଛା, ତୁ ପଢ଼ୁଥା । ମୋ ପକ୍ଷରେ ଏହି ଜେଲ୍‌ରୁ ତୋତେ ଯେପରି ସାହାଯ୍ୟ ଦେବା ସମ୍ଭବ, ମୁଁ ଦେବି । ତୁ ଯେପରି ଶୀଘ୍ର ବଢ଼ୁଛୁ ଓ ତୋର ଚିନ୍ତାର ମଧ୍ୟ ଯେପରି ଶୀଘ୍ର ବିକାଶ ହେଉଛି, ସେ କଥା ମୁଁ ଅନେକ ସମୟରେ ଭାବେ—ମୁଁ ତୋ ପାଖରେ ଥାଆନ୍ତି କି ! ବୋଧହୁଏ ଏ ଚିଠିଗୁଡ଼ିକ ତୋ ପାଖରେ ପହଞ୍ଚିଲା ବେଳକୁ ଏହା ତୋତେ ଅତି ପିଲାଳିଆ ବୋଧ ହୋଇପାରେ । ମୋର ମନେ ହେଉଛି ଚନ୍ଦ*ର ଏହା ପଢ଼ିଲା ଭଳି ବୟସ ହୋଇଥିବ । ସୁତରାଂ ଜଣେ ତ ହେଲେ ଏହାକୁ ପସନ୍ଦ କରିବ !

କିଛିକ୍ଷଣ ପାଇଁ ଚାଲ ଆମେ ପୁରାତନ ଗ୍ରୀସ୍ ଓ ଇରାନ୍‌କୁ ଫେରିଯିବା ଏବଂ ଦୁଇ ଦେଶ ଭିତରେ ଯେଉଁ ଯୁଦ୍ଧ ଲାଗୁଥିଲା, ସେ କଥା ବିଚାର କରିବା । ଗ୍ରୀକ୍ ନଗରତନ୍ତ୍ର ଓ ଡାରିୟୁସ୍ ଅଧୀନରେ ହୋଇଥିବା ବିଶାଳ ଗ୍ରୀକ୍ ସାମ୍ରାଜ୍ୟ ସମ୍ବନ୍ଧରେ ଆମେ ଗୋଟିଏ ଚିଠିରେ ଆଲୋଚନା କରିଥିଲେ । ଡାରିୟୁସ୍‌ଙ୍କର ସାମ୍ରାଜ୍ୟ ଖାଲି ଯେ ଆକୃତିରେ ବଡ଼ ଥିଲା ତାହା ନୁହେଁ, ଏହା ଖୁବ୍ ଦୃଢ଼ଭାବରେ ସଂଗଠିତ ହୋଇଥିଲା । ଏହା ଏସିଆ ମାଇନରରୁ ସିନ୍ଧୁ ନଦୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଇଜିପ୍ଟ ଓ ଏସିଆ ମାଇନରର କେତେକ ଗ୍ରୀକ୍ ସହର ଏହାର ଅନ୍ତର୍ଭୁକ୍ତ ଥିଲା । ଏହି ସାମ୍ରାଜ୍ୟ ଭିତରେ ଭଲ ଭଲ ରାସ୍ତା ଥିଲା ଏବଂ ସେଥିରେ ସାମ୍ରାଜ୍ୟର ସଙ୍କେତ ଦେଉଥିବା ପଥରସ୍ତମ୍ଭ ପୋତା ଯାଉଥିଲା । କୌଣସି କାରଣରୁ ଡାରିୟୁସ୍ ଗ୍ରୀକ୍ ନଗରତନ୍ତ୍ରସବୁ ଜୟ କରିବାକୁ ସ୍ଥିର କଲେ ଏବଂ ଏହି ସମୟରେ କେତେକ ପ୍ରସିଦ୍ଧ ଯୁଦ୍ଧ ହୋଇଥିଲା ।

ଏହିସବୁ ଘଟଣା ଘଟିବାର କିଛିଦିନ ପରେ ହେରୋଡୋଟସ୍ ବୋଲି ଜଣେ ଗ୍ରୀକ୍ ଐତିହାସିକ ଥିଲେ ଏବଂ ସେ ଏ ସମ୍ବନ୍ଧରେ ଲେଖି ଯାଇଛନ୍ତି । ଅବଶ୍ୟ ସେ ଟିକିଏ ଗ୍ରୀକ୍‌ମାନଙ୍କ ପ୍ରତି ପକ୍ଷପାତ ଦେଖାଇଛନ୍ତି, ତଥାପି ତାଙ୍କ ଲେଖାଗୁଡ଼ିକ ବଡ଼ ଆଗ୍ରହପ୍ରଦ ଏବଂ ମୁଁ ସେଥିରୁ କେତେକ ଅଂଶ ଉଦ୍ଧାର କରିବ ।

---

* ଚନ୍ଦ ହେଉଛନ୍ତି ଇନ୍ଦିରାର ପିଉସୀ ଝିଅ ଭଉଣୀ ଶ୍ରୀମତୀ ଚନ୍ଦ୍ରଲେଖା ପଣ୍ଡିତ ।

ଗ୍ରିସ୍ ଉପରେ ଇରାନ୍‌ର ପ୍ରଥମ ଆକ୍ରମଣ ବିଫଳ ହେଲା; କାରଣ ଇରାନ୍‌ସୈନ୍ୟ ଗ୍ରିସ୍ ଯାଉଥିଲାବେଳେ ରୋଗ ଓ ଖାଦ୍ୟ ଅଭାବରୁ ହୀଇରାଣ ହେଲେ । ସେମାନେ ଗ୍ରିସ୍‌ରେ ପହଞ୍ଚିପାରିଲେ ନାହିଁ ଏବଂ ସେମାନଙ୍କୁ ଫେରିଆସିବାକୁ ପଡ଼ିଲା । ତା ପରେ ଖ୍ରୀଷ୍ଟପୂର୍ବ ୪୯୦ ଖ୍ରୀଷ୍ଟାବ୍ଦରେ ୨ୟ ଥର ଆକ୍ରମଣ ହେଲା । ଏଥରକ ଇରାନ୍‌ସୈନ୍ୟ ସ୍ଥଳପଥ ଛାଡ଼ି ସମୁଦ୍ର ପଥରେ ଆସିଲେ ଏବଂ ଏଥେନ୍‌ସ ସହର ନିକଟରେ ଥିବା ମାରାଥନ୍ ନାମକ ସ୍ଥାନରେ ପହଞ୍ଚିଲେ । ଇରାନ୍ ସାମ୍ରାଜ୍ୟର ଖୁବ୍ ପ୍ରସିଦ୍ଧି ଆଗରୁ ଥିଲା; ତେଣୁ ଏମାନଙ୍କୁ ଦେଖି ଏଥେନ୍‌ସର ଲୋକେ ବଡ଼ ଭୟ କଲେ । ଏହି ଭୟ ଯୋଗୁଁ ଏଥେନ୍‌ସବାସୀ ସେମାନଙ୍କର ପୁରୁଣା ଶତ୍ରୁ ସ୍ପାର୍ଟାନ୍‌ମାନଙ୍କ ସହିତ ମିଳାମିଶା କରିବାକୁ ଚେଷ୍ଟାକଲେ ଓ ସାଧାରଣ ଶତ୍ରୁ ବିରୋଧରେ ସାହାଯ୍ୟ କରିବାକୁ ସେମାନଙ୍କୁ ଅନୁରୋଧ କଲେ । ମାତ୍ର ସ୍ପାର୍ଟାନ୍‌ମାନେ ପହଞ୍ଚିବା ପୂର୍ବରୁ ଏଥେନ୍‌ସର ଲୋକେ ଇରାନସୈନ୍ୟଙ୍କୁ ହରାଇ ପାରିଥିଲେ । ଏହାକୁ ମାରାଥନ୍‌ର ପ୍ରସିଦ୍ଧ ଯୁଦ୍ଧ କହନ୍ତି । ଖ୍ରୀଷ୍ଟପୂର୍ବ ୪୯୦ରେ ଏହା ହୋଇଥିଲା ।

ଗ୍ରେଟ ଗ୍ରୀକ୍ ନଗରତନ୍ତ୍ରଟିଏ ଏତେବଡ଼ ସାମ୍ରାଜ୍ୟର ସୈନ୍ୟଙ୍କୁ ପରାସ୍ତ କରିବା ଦେଖି ଆଶ୍ଚର୍ଯ୍ୟ ବୋଧ ହୋଇପାରେ । କିନ୍ତୁ ଏଥିରେ ଆଶ୍ଚର୍ଯ୍ୟ ହେବାର ସେପରି କିଛି କାରଣ ନାହିଁ । ଗ୍ରୀକ୍‌ମାନେ ନିଜ ଦେଶଲାଗି ଘର ପାଖରେ ଯୁଦ୍ଧ କରୁଥିଲେ; ମାତ୍ର ଇରାନ୍‌ସୈନ୍ୟ ନିଜ ଦେଶରୁ ବହୁ ଦୂରରେ ଥିଲେ । ଇରାନ୍ ସାମ୍ରାଜ୍ୟର ସବୁ ଅଞ୍ଚଳର ସୈନ୍ୟ ଏଥିରେ ଯୋଗ ଦେଇଥିଲେ । ସେମାନେ ପଇସା ପାଇବାକୁ ଯୁଦ୍ଧ କରୁଥିଲେ । ସେମାନଙ୍କର ଗ୍ରିସ୍ ବିଜୟରେ ବିଶେଷ ମନ ନ ଥିଲା । କିନ୍ତୁ ଏଥେନ୍‌ସର ଲୋକେ ସେମାନଙ୍କ ସ୍ୱାଧୀନତା ରକ୍ଷା ଲାଗି ଲଢ଼ୁଥିଲେ । ସେମାନେ ନିଜର ସ୍ୱାଧୀନତା ହରାଇବା ଅପେକ୍ଷା ମୃତ୍ୟୁକୁ ଅଧିକ ପସନ୍ଦ କରୁଥିଲେ । ଯେଉଁମାନେ କୌଣସି ଏକ ଉଦ୍ଦେଶ୍ୟ ଲାଗି ମରିବାକୁ ପ୍ରସ୍ତୁତ ହୋଇଯାଆନ୍ତି, ସେମାନେ କେବେହେଁ ପରାସ୍ତ ହୁଅନ୍ତି ନାହିଁ ।

ତେଣୁ ଡାରାୟସ୍ ମାରାଥନ୍‌ରେ ପରାସ୍ତ ହେଲେ । ପରେ ସେ ଇରାନ୍‌ରେ ପହଞ୍ଚି ସେଠାରେ ମଲେ ଏବଂ ତାପରେ ଜେରେକ୍‌ସିଜ୍ ରାଜା ହେଲେ । ଜେରେକ୍‌ସିଜ୍‌ଙ୍କର ମଧ ଗ୍ରିସ୍ ଜୟ କରିବାର ଇଚ୍ଛା ଥିଲା ଏବଂ ସେ ସେଥିଲାଗି ଏକଦଳ ସୈନ୍ୟ ବି ତିଆରି କଲେ । ଏଇଠି ହେରୋଡ଼ୋଟସ୍ ଲେଖିଥିବା ଗୋଟାଏ ମଜାର କଥା ତୋତେ ମୁଁ କହିବି । ଆର୍ଟାବାନ୍‌ସ ବୋଲି ଜଣେ ଲୋକ ଜେରେକ୍‌ସିଜ୍‌ଙ୍କର ଖୁଡ଼ୁତା ଥିଲେ । ସେ ଭାବିଲେ, ଇରାନ୍‌ସୈନ୍ୟ ଗ୍ରିସ୍ ଯିବାରେ ବିପଦ ଅଛି ଓ ଗ୍ରିସ୍ ବିରୁଦ୍ଧରେ ଯୁଦ୍ଧ ନ କରିବାକୁ ସେ ଜେରେକ୍‌ସିଜ୍‌ଙ୍କୁ ପ୍ରବର୍ତ୍ତାଇବାକୁ ଚେଷ୍ଟାକଲେ । ଜେରେକ୍‌ସିଜ୍ ତାଙ୍କୁ ଏହି ଉତ୍ତର ପଠାଇଥିଲେ ବୋଲି ହେରୋଡ଼ୋଟସ୍ ଲେଖିଛନ୍ତି—

"ଆପଣ ଯାହା କହୁଛନ୍ତି, ସେଥିରେ ଯଥାର୍ଥତା ଅଛି; କିନ୍ତୁ ପ୍ରତ୍ୟେକ କଥାରେ ବିପଦ ଆଶଙ୍କା କରିବା ଠିକ୍ ନୁହେଁ । ଯଦି ପ୍ରତ୍ୟେକ କଥାରେ ବିପଦ ଅଛି କି ନାହିଁ, ତୁମେ ସମାନ ଭାବରେ ମାପିବସିବ, ତେବେ କୌଣସି କାର୍ଯ୍ୟ କରିହେବ ନାହିଁ । ସବଦା ଭବିଷ୍ୟତ ଅନ୍ଧକାରପୂର୍ଣ୍ଣ ବୋଲି ବିଚାର ଆଦୌ କଷ୍ଟ ନ ପାଇବା ଅପେକ୍ଷା ଆଶାବାଦୀ ହୋଇ ଅଧା କଷ୍ଟ ଭୋଗ କରିବା ଭଲ । ତୁମେ ଯଦି ଠିକ୍ ଉପାୟ ନ ବତାଇ ଖାଲି ପ୍ରତ୍ୟେକ ପ୍ରସ୍ତାବର ବିରୋଧ କର, ତେବେ ଯେଉଁମାନଙ୍କର ବିରୋଧ କରୁଛ, ସେମାନେ ଯେପରି ଦୁଃଖ ପାଇବେ, ତୁମେ ବି ତଦ୍ରୂପ ଦୁଃଖ ଲଭିବ । ନିକିତିର ଦୁଇ ପାଖ ସମାନ ଥାଏ । କେଉଁ ଆଡ଼କୁ ସେଇଟା ବେଶି ଓହଳିବ, ସେ କଥା ମଣିଷ କିପରି ଆଗରୁ ଜାଣିପାରିବ ? ସେ କଦାପି ଜାଣିପାରେ ନାହିଁ । ମାତ୍ର ଯେଉଁମାନେ କାର୍ଯ୍ୟ କରିବାକୁ ସାହସ ବାନ୍ଧନ୍ତି, ସେମାନେ ହିଁ ସାଧାରଣତଃ ସଫଳ ହୁଅନ୍ତି । ଯେଉଁମାନେ ଭୀରୁ ଓ ପ୍ରତ୍ୟେକ କଥା ତଉଲ କିଏ କରନ୍ତି, ସେମାନେ କେବେହେଁ ସଫଳତା ପାଆନ୍ତି ନାହିଁ । ଇରାନ୍ କେତେବଡ଼ ଶକ୍ତି ହୋଇଥିଲା ଥରେ ଦେଖ । ଯଦି ମୋର ପୂର୍ବପୁରୁଷମାନଙ୍କର ମତ ତୁମପରି ହୋଇଥାଆନ୍ତା କିମ୍ବା ସେପରି ମତ ତାଙ୍କର ନ ଥିଲେ ସୁଦ୍ଧା ତୁମ ପରି ପରାମର୍ଶଦାତା ଥାଆନ୍ତେ, ତେବେ ଆମ ରାଜ୍ୟ କଦାପି ଏତେ ବଡ଼ ହୋଇ ନ ଥାନ୍ତା । ସେମାନେ ବିପଦ ବରଣ କରିବାର ସାହସ କରିବାରୁ ଆମକୁ ବଡ଼ କରିପାରିଲେ । ବଡ଼ ବିପଦ ବରଣଦ୍ୱାରା ବଡ଼ ଜିନିଷ ଲଭିହୁଏ ।"

ମୁଁ ଏତକ ଉଦ୍ଧାର କରିବାର କାରଣ ହେଉଛି, ଏହି ଲେଖାରୁ ଇରାନ୍ ରାଜାଙ୍କର ଯେପରି ଚରିତ୍ରଚିତ୍ରଣ ମିଳେ, ଅନ୍ୟ କୌଣସିଥିରୁ ସେପରି ମିଳେ ନାହିଁ । ଶେଷରେ ଆର୍ଟାବାନ୍‌ସଙ୍କ କଥା ହିଁ ସତ୍ୟ ହେଲା ଓ ଇରାନ୍‌ସୈନ୍ୟ ଗ୍ରୀସ୍‌ରେ ପରାସ୍ତ ହେଲେ । ଜେରେକ୍‌ସିଜ୍ ହାରିଲେ, କିନ୍ତୁ ତାଙ୍କ କଥା ଆଜିସୁଦ୍ଧା ସତ୍ୟ ରୂପେ ରହିଛି ଓ ଆମ ପ୍ରତି ଏହା ଏକ ଉପଦେଶ । ଆମେ ଆଜି ବଡ଼ ଜିନିଷ ପାଇବା ଲାଗି ଚେଷ୍ଟା କରୁଥିଲାବେଳେ ଲକ୍ଷ୍ୟରେ ପହଞ୍ଚିବା ପୂର୍ବରୁ ଆମକୁ ଯେ ବହୁ ବିପଦ ମଧ୍ୟଦେଇ ଯିବାକୁ ହେବ, ଏକଥା ଆମର ମନେରଖିବା ଦରକାର ।

ରାଜାଧିରାଜ ଜେରେକ୍‌ସିଜ୍ ଏସିଆ ମାଇନର ଦେଇ ତାଙ୍କ ସୈନ୍ୟ ଚାଳନା କଲେ ଏବଂ ଡାର୍ଡାନେଲସ୍ ବାଟେ ଇଉରୋପ ଅତିକ୍ରମ କଲେ । ସେ କାଳରେ ଡାର୍ଡାନେଲସ୍‌କୁ ହେଲେସ୍‌ପଣ୍ଟ ବୋଲି କହୁଥିଲେ । ଟ୍ରୟ ସହରରେ ହେଲେନ୍ ଲାଗି ପୁରାତନ ଗ୍ରୀକ୍ ବୀରମାନେ ଲଢ଼ାଇ କରିଥିଲେ ଏବଂ ଗଲାବେଳେ ବାଟରେ ଜେରକସିଜ୍ ସେହି ଧ୍ୱସ୍ତ ସହର ଦେଖି ଗଲେ । ସୈନ୍ୟ ପାରହୋଇ ଯିବା ନିମନ୍ତେ ହେଲେସ୍‌ପଣ୍ଟଠାରେ ଗୋଟାଏ ବଡ଼ ପୋଲ ତିଆରି ହୋଇଥିଲା । ଇରାନ୍‌ର ସୈନ୍ୟ ପୋଲ ପାରହୋଇ ଗଲା ପରେ ଜେରେକ୍‌ସିଜ୍ ନିକଟରେ ଥିବା ଗୋଟିଏ ପାହାଡ଼ରେ ମଖମଲ ପଥର ଉପରେ ବସି ପୋଲକୁ ନିରୀକ୍ଷଣ

କଲେ । ହିରୋଡ଼ୋଟସ୍ ଲେଖିଛନ୍ତି—"ହେଲେସ୍‌ପଣ୍ଟ ଜାହାଜରେ ଭର୍ତ୍ତି ଏବଂ ଆବିଡ଼ୋସ୍‌ର କୂଳ ଓ ସମତଳ ଭୂମିରେ ଲୋକମାନଙ୍କର ଦେଖି ଜେରେକ୍‌ସିଜ୍ ନିଜକୁ ଖୁବ୍ ଭାଗ୍ୟବାନ ବୋଲି ମନେକଲେ ଏବଂ ପରେ କାନ୍ଦି ପକାଇଲେ । ତାଙ୍କର ଖୁଡ଼ୁତା ଆର୍ଟାବାନସ୍ ଗ୍ରୀସ୍ ବିରୁଦ୍ଧରେ ଲଢ଼ାଇ ନ କରିବା ନିମନ୍ତେ ସାହସର ସହିତ ପ୍ରଥମେ ତାଙ୍କୁ ପରାମର୍ଶ ଦେଇଥିଲେ; କିନ୍ତୁ ଏଠାରେ ସେହି ଜେରେକ୍‌ସିଜ୍ କାନ୍ଦୁଥିବା ଦେଖି କହିଲେ—"ହେ ରାଜା ! ତୁମର ବର୍ତ୍ତମାନର କାର୍ଯ୍ୟ ଓ କିଛିକ୍ଷଣ ପୂର୍ବରୁ କରିଥିବା କାର୍ଯ୍ୟ ଭିତରେ କି ପ୍ରଭେଦ ! ନିଜେ ଜଣେ ସୁଖୀ ଲୋକ ବୋଲି ଘୋଷଣା କରି ପୁଣି ବସି କାନ୍ଦୁଛ ?" ସେ କହିଲେ—"ହଁ, ତୁମେ ଯାହା କହୁଛ ଠିକ୍; କାରଣ ଯେତେବେଳେ ମୁଁ ଦେଖିଲି ଯେ ପ୍ରାୟ ହଜାର ବର୍ଷ ପରେ ଏଠାରେ ଥିବା ଅସଂଖ୍ୟ ଲୋକଙ୍କ ଭିତରୁ ଜଣେହେଲେ ନ ଥିବେ, ସେତେବେଳେ ମଣିଷ ଜୀବନଟା କେଡ଼େ ଛୋଟ, ଏହି କଥା ଭାବି ମୋର ମନ ଦୁଃଖ ଓ ଦୟାରେ ପୂରିଗଲା ।"

ଏପରି ଭାବରେ ସେ ବିରାଟ ସୈନ୍ୟବାହିନୀ ସ୍ଥଳପଥରେ ଗତି କରୁଥାନ୍ତି ଓ ସେମାନଙ୍କ ସହିତ ଅସଂଖ୍ୟ ଜାହାଜ ସମୁଦ୍ରରେ ଯାଉଥାଏ । ମାତ୍ର ସମୁଦ୍ର ସତେ କି ଗ୍ରୀକ୍‌ମାନଙ୍କ ପକ୍ଷ ନେଲା ଓ ଗୋଟାଏ ବଡ଼ ଝଡ଼ ଫଳରେ ଅନେକ ଜାହାଜ ଧ୍ୱଂସ ହୋଇଗଲା । ହେଲେନିକ୍ ବା ଗ୍ରୀକ୍‌ମାନେ ଏତେବଡ଼ ସୈନ୍ୟବାହିନୀ ଦେଖି ଭୟଭୀତ ହୋଇଗଲେ ଏବଂ ସମସ୍ତ ପଛ କଳିଆକୁ ଭୁଲିଯାଇ ଆକ୍ରମଣକାରୀ ବିରୁଦ୍ଧରେ ମିଶିଗଲେ । ସେମାନେ ପଛକୁ ଘୁଞ୍ଚିଆସି ଥର୍ମୋପଲି ନାମକ ସ୍ଥାନରେ ଇରାନୀମାନଙ୍କୁ ରୋକିଲେ । ଏହି ସ୍ଥାନର ଗୋଟିଏ ପାଖରେ ସମୁଦ୍ର ଓ ଅନ୍ୟ ପାଖରେ ପାହାଡ଼ ଥାଏ—ମଝିରେ ଗୋଟିଏ ଅଣଓସାରିଆ ରାସ୍ତା ପଡ଼ିଥାଏ । ସୁତରାଂ ଅଳ୍ପ କେତେକ ଲୋକ ଖୁବ୍ ବଡ଼ ସୈନ୍ୟବାହିନୀ ସହିତ ମଧ୍ୟ ଲଢ଼ାଇ କରିପାରିବାର ସୁବିଧା ଥିଲା । ଲିଓନିଡ଼ସ୍ ନାମକ ଜଣେ ଲୋକଙ୍କୁ ମରିବା ପର୍ଯ୍ୟନ୍ତ ଏଠି ଲଢ଼ିବା ପାଇଁ ୩୦୦ ସ୍ପାର୍ଟାନଙ୍କ ସହ ରଖାଗଲା । ଠିକ୍ ମାରାଥନ୍ ଘଟଣାର ୧୦ ବର୍ଷ ପରେ ଏହି ଆକ୍ରମଣ ହୋଇଥିଲା ଏବଂ ଏହି ସାହସୀ ଲୋକେ ସେଦିନ ନିଜ ଦେଶର ଉପଯୁକ୍ତ ସେବା କରିଥିଲେ । ସେମାନେ ଇରାନ୍‌ସୈନ୍ୟଙ୍କୁ ଅଟକାଇ ରଖିଲେ ଓ ଗ୍ରୀକ୍‌ମାନେ ପଛରେ ରହିଲେ । ଜଣକ ପରେ ଜଣେ ସେହି ରାସ୍ତାରେ ମରୁଥାନ୍ତି ଏବଂ ସଙ୍ଗେ ସଙ୍ଗେ ଆଉ ଲୋକ ତାଙ୍କ ସ୍ଥାନ ପୂରଣ କରୁଥାନ୍ତି । ଏହିପରି ଭାବରେ ଇରାନ୍‌ସୈନ୍ୟ ଆଉ ଆଗକୁ ଯାଇପାରିଲେ ନାହିଁ । ଇରାନ୍ ସୈନ୍ୟମାନେ ଅଗ୍ରସର ହେବା ଦେଖି ଲିଓନିଡ଼ସ୍ ଓ ତାହାଙ୍କର ୩୦୦ ସାଥୀ ନିଜ ଜୀବନ ଦେଇ ଥର୍ମୋପଲିରେ ବିରୋଧ କଲେ । ଏହା ଖ୍ରୀଷ୍ଟପୂର୍ବ ୪୮୦ର ଘଟଣା—ଆଜିକି ୨୪୧୦ ବର୍ଷ ତଳର କଥା । ଆଜିସୁଦ୍ଧା ଏହି ଅଜେୟ ସାହସ ଦେଖି ମଣିଷର ଦେହରେ ରୋମାଞ୍ଚ ଜାତ ହୁଏ । ଆଜି ବି ଥର୍ମୋପଲି ଗଲେ

ସେଠାରେ ଲିଓନିଡ଼ସ ଓ ତାଙ୍କ ସାଥୀମାନଙ୍କର ବାଣୀ ପଥରରେ ଖୋଳାହୋଇ ଲେଖା ହୋଇଥିବା ଦେଖି ଲୋକ କାନ୍ଦ ପକାଉଛ । ସେଥିରେ ଲେଖାଅଛି—

"ହେ ପଥିକ ! ସମ୍ରାଟ୍‌ଙ୍କର ଆଦେଶ ମାନି ଆମେ ଏଠାରେ ମରିଛୁ ବୋଲି ତାଙ୍କୁ ଏ ଖବର ଦେଇଦେବ ।" ଅଦ୍ଭୁତ ଏ ସାହସ, ଯାହା ମରଣକୁ ଜିଣିପାରିଲା ! ଲିଓନିଡ଼ସ ଓ ଥର୍ମୋପଲି ଅମର ହୋଇ ରହିଲେ ଏବଂ ଏହି ସୁଦୂର ଭାରତରେ ରହି ସୁଦ୍ଧା ଆମେ ଏ କଥା ଭାବିଲେ ରୋମାଞ୍ଚ ହେଉଛି । ଆମ ନିଜ ଦେଶର ଲୋକେ, ହିନ୍ଦୁସ୍ଥାନର ନରନାରୀ ଯେଉଁମାନେ ଯୁଗ ଯୁଗ ଧରି ହସି ହସି ମୃତ୍ୟୁ ବରଣ କରିଛନ୍ତି, ଦାସତ୍ୱ ବା ଅପମାନ ଅପେକ୍ଷା ମରଣକୁ ଶ୍ରେୟସ୍କର ମଣିଛନ୍ତି ଓ ଅତ୍ୟାଚାରର ଆଗରେ ମୁଣ୍ଡ ନ ନୁଆଁଇ ସର୍ବସ୍ୱ ନଷ୍ଟ କରିଛନ୍ତି, ସେମାନଙ୍କ କଥା ଭାବିଲେ ଆମେ କପରି ଅନୁଭବ କରିବା ? ଚିତୋର ଓ ତାର ଉଜ୍ଜ୍ୱଳ ଇତିହାସ, ରାଜପୁତ ନରନାରୀଙ୍କ ବିରତ୍ୱ କଥା ଭାବିଲୁ ! ବର୍ତ୍ତମାନ କଥା ବି ଚିନ୍ତାକର । ଆଜି ଆମରି ପରି ରକ୍ତ ମାଂସ ଶରୀର ଧରି ଆମର ସାଥୀମାନେ ଭାରତର ସ୍ୱାଧୀନତା ଲାଗି ମୃତ୍ୟୁ ବରଣ କରିବା ନିମନ୍ତେ ପଛଉ ନାହାନ୍ତି ।

ଇରାନ୍‌ସୈନ୍ୟମାନେ କିଛି ସମୟ ପାଇଁ ଥର୍ମୋପଲିରେ ରହିଗଲେ । କିନ୍ତୁ ବେଶୀ ସମୟ ନୁହେଁ । ତାହା ପୂର୍ବରୁ ଗ୍ରୀକ୍‌ମାନେ ପଳାଇ ଆସିଥିଲେ ଓ କେତେକ ଗ୍ରୀକ୍ ସହର ମଧ୍ୟ ଆତ୍ମସମର୍ପଣ କରିଥିଲା । ଏଥେନ୍‌ସର ଲୋକେ ସେମାନଙ୍କ ପ୍ରିୟ ସହରକୁ ଶତ୍ରୁହାତରେ ସମର୍ପଣ କରିବା ଅପେକ୍ଷା ଧ୍ୱଂସ କରିବା ଶ୍ରେୟ ମନେ କରିଥିଲେ ଏବଂ ପ୍ରାୟ ସମସ୍ତ ଲୋକ ଜାହାଜରେ ପଳାଇ ଯାଇଥିଲେ । ଇରାନ୍‌ସୈନ୍ୟ ସେହି ସହରକୁ ଗଲାବେଳକୁ ତାହା ଖାଲି ପଡ଼ିଥିଲା । ସେମାନେ ଏହାକୁ ପୋଡ଼ିଦେଲେ । ଏଥେନ୍‌ସର ନୌ-ସେନା ପରାସ୍ତ ହୋଇ ନ ଥିଲେ ଏବଂ ସାଲମିସ୍ * ପାଖରେ ଗୋଟିଏ ବଡ଼ ଯୁଦ୍ଧ ହେଲା । ଇରାନ୍ ଜାହାଜ ସବୁ ଧ୍ୱଂସ ହେଲା ଏବଂ ଜେରେକ୍‌ସିଜ୍ ଏହି ପରାଜୟରେ ହତୋତ୍ସାହ ହୋଇ ଇରାନ୍‌କୁ ଫେରିଗଲେ ।

ଇରାନ ଅନେକ ଦିନ ପର୍ଯ୍ୟନ୍ତ ବଡ଼ ସାମ୍ରାଜ୍ୟ ହୋଇ ଥିଲା; ମାତ୍ର ମାରାଥନ୍ ଓ ସାଲମିସ୍ ପାଖରୁ ତାର ପତନ ଆରମ୍ଭ ହେଲା । ଏହାର କପରି ପତନ ହେଲା ଆମେ ପରେ ଦେଖିବା । ଏହି ବିରାଟ ସାମ୍ରାଜ୍ୟର ପତନ ଦେଖି ସେକାଳର ଲୋକେ ନିଶ୍ଚୟ ତାଟକା ହୋଇଥିବେ । ହେରୋଡ଼ୋଟସ୍ ଏ ସମ୍ବନ୍ଧରେ ଲେଖିଛନ୍ତି—"ଏଦେଶର ଇତିହାସ ତିନୋଟି ଅବସ୍ଥା ଦେଇ ଗତିକରେ—(୧) ବିଜୟ, (୨) ତାପରେ ବିଜୟ ଫଳରେ ଦୁର୍ଦ୍ଦାନ୍ତ ଭାବ ଓ ଅନ୍ୟାୟ (୩) ଏହା ଫଳରେ ପତନ ।"

* ଗ୍ରୀସ୍‌ର ପ୍ରସିଦ୍ଧ ଦ୍ୱୀପ ।

## ୧୭ । ଗ୍ରୀକ୍‌ମାନଙ୍କ ଗୌରବ

ଜାନୁଆରି ୨୩, ୧୯୩୧

ହେଲେନ୍‌ସ ବା ଗ୍ରୀକ୍‌ମାନଙ୍କର ଇରାନ୍ ବିଜୟର ଦୁଇଟି ପରିଣାମ ହେଲା । ଇରାନ୍ ସାମ୍ରାଜ୍ୟର ଧୀରେ ଧୀରେ ପତନ ହେଲା ଓ ତାହା ଦୁର୍ବଳ ହୋଇପଡ଼ିଲା ଏବଂ ଗ୍ରୀକ୍‌ମାନଙ୍କର ଇତିହାସର ଗୌରବଯୁଗ ଆରମ୍ଭ ହେଲା । ଗୋଟିଏ ଜାତିର ଜୀବନ ତୁଳନାରେ ଏହି ଯୁଗ କ୍ଷଣସ୍ଥାୟୀ । ସର୍ବମୋଟ ଏହା ୨୦୦ ବର୍ଷରୁ ବେଶି କାଳ ପର୍ଯ୍ୟନ୍ତ ନ ଥିଲା । ଇରାନ୍ କିମ୍ବା ତାହା ପୂର୍ବରୁ ଆଉ ଯେଉଁ ବିଶାଳ ସାମ୍ରାଜ୍ୟର ପତନ ହୋଇଥିଲା, ସେଗୁଡ଼ିକର ଗୌରବ ପରି ଏହାର ଗୌରବ ନ ଥିଲା । କିଛିଦିନ ପରେ ଆଲେକ୍‌ଜାଣ୍ଡରଙ୍କ ଆବିର୍ଭାବ ହେଲା ଏବଂ ସେ ତାଙ୍କ ବିଜୟରେ କିଛିକ୍ଷଣ ପାଇଁ ଜଗତକୁ ଚମତ୍କୃତ କରିଥିଲେ । ମାତ୍ର ଆମେ ବର୍ତ୍ତମାନ ତାଙ୍କ ବିଷୟ ଆଲୋଚନା କରୁ ନ ଥାଉଁ । ଆମେ ଇରାନ୍ ଯୁଦ୍ଧ ଓ ଆଲେକ୍‌ଜାଣ୍ଡରଙ୍କ ଆଗମନର ମଧ୍ୟବର୍ତ୍ତୀ ବେଳର କଥା ଆଲୋଚନା କରୁଥାଉଁ—ଏହା ଥର୍ମୋପଲି ଓ ସାଲାମିସ୍‌ଠାରୁ ପ୍ରାୟ ୧୫୦ ବର୍ଷ ପୂର୍ବର କଥା । ଇରାନ୍‌ଠାରୁ ବିପଦ ଆଶଙ୍କା ହେତୁ ଗ୍ରୀକ୍‌ମାନେ ଏକଜୁଟ ହୋଇପାରିଥିଲେ । ଏ ବିପଦ ଦୂରହେବା ସଙ୍ଗେ ସଙ୍ଗେ ସେମାନଙ୍କ ମଧ୍ୟରେ ଦ୍ୱନ୍ଦ୍ୱ ଜାତହେଲା ଏବଂ ପରସ୍ପର ଭିତରେ ବିବାଦ ହେଲା । ବିଶେଷରେ ଏଥେନ୍‌ସର ନଗରତନ୍ତ୍ର ଓ ସ୍ପାର୍ଟା ମଧ୍ୟରେ ଘୋର ପ୍ରତିଦ୍ୱନ୍ଦ୍ୱିତା ଥିଲା । ମାତ୍ର ଆମେ ସେମାନଙ୍କ କଳହ ଆଲୋଚନାର ଝଞ୍ଜଟରେ ପଡ଼ିବା ନାହିଁ । ଏହାର କିଛି ମହତ୍ତ୍ୱ ନାହିଁ—କେବଳ ସେ କାଳରେ ଅନ୍ୟ ବିଷୟରେ ଗ୍ରୀସ୍‌ର ମହତ୍ତ୍ୱ ଯୋଗୁଁ ଆମେ ଏଗୁଡ଼ିକ ମନେରଖୁଁ ।

ସେକାଳର ଗ୍ରୀସ୍ ସମ୍ବନ୍ଧରେ ଆମେ ଖୁବ୍ ଅଳ୍ପ ବହି, କିଛି ମୂର୍ତ୍ତି ଓ ଧ୍ୱଂସାବଶେଷ ଦେଖିବାକୁ ପାଉଁ । ମାତ୍ର ଏହି କେତୋଟି ଏପରି ଯେ, ଏହାକୁ ଦେଖିଲେ ଆମ ମନ ଆନନ୍ଦରେ ପୂରିଯାଏ ଏବଂ ହେଲାସ୍ ବା ଗ୍ରୀକ୍ ଲୋକଙ୍କର ନାନା କ୍ଷେତ୍ରରେ ମହତ୍ତ୍ୱ ଦେଖି ଆମେ ଆଶ୍ଚର୍ଯ୍ୟ ହେଉଁ । ଏପରି ସୁନ୍ଦର ମୂର୍ତ୍ତି ଓ କୋଠାବାଡ଼ି ତିଆରି କରିବା ଲୋକଙ୍କର ଚିନ୍ତା କେତେ ଉନ୍ନତ ଓ ହାତ କିପରି ନିପୁଣ ହୋଇ ନ ଥିବ ? ଫିଡ଼ିଆସ୍ ସେ କାଳରେ ଜଣେ ପ୍ରସିଦ୍ଧ ମୂର୍ତ୍ତି-କାରିଗର ଥିଲେ । ଆହୁରି ଅନେକ ବିଖ୍ୟାତ ଲୋକ ବି ଥିଲେ । ସେମାନଙ୍କର ଆମୋଦ ଓ ବିଷାଦପୂର୍ଣ୍ଣ ନାଟକରୁ ଯାହା ଆଜିସୁଦ୍ଧା ରହିଛି, ତାହା ସେକାଳର ନାଟକଗୁଡ଼ିକ ମଧ୍ୟରେ ସର୍ବୋତ୍କୃଷ୍ଟ । ସୋଫୋକ୍ଲିଜ୍, ଏସ୍‌କାଇଲସ୍, ଇଉରିପିଡ଼ିଜ୍, ଏରିଷ୍ଟୋଫେନିଜ୍, ପିଣ୍ଡାର, ମେଣ୍ଡର, ସାଫୋ ଓ ଅନ୍ୟମାନେ ତୋତେ ଖାଲି କେତେଗୁଡ଼ିଏ ନାମ ହୋଇପାରେ; ମାତ୍ର ମୁଁ ଆଶାକରେ, ତୁ ବଡ଼ ହେଲେ

ସେମାନଙ୍କର ଲେଖା ପଢ଼ିବୁ ଏବଂ ଗ୍ରୀସ୍ କିପରି ଗୌରବପୂର୍ଣ୍ଣ ଥିଲା, ତାହା ଅନୁମାନ କରିପାରିବୁ ।

କୌଣସି ଦେଶର ଇତିହାସ କିପରି ପଢ଼ିବାକୁ ହେବ, ଏହା ଗ୍ରୀସ୍ ଇତିହାସର ଏହି ଯୁଗରୁ ଆମେ ବୁଝିପାରୁ । ଆମେ ଯଦି କେବଳ ଏ କାଳର ଶ୍ରେଷ୍ଠ ଶ୍ରେଷ୍ଠ ଯୁଦ୍ଧ ଏବଂ ଅନ୍ୟ ଶ୍ରେଷ୍ଠ ଶ୍ରେଷ୍ଠ କଥା ପ୍ରତି ଦୃଷ୍ଟି ଦେଇଥାନ୍ତେ, ତେବେ କଅଣ ବା ଜାଣିପାରନ୍ତେ ! ତାହା ବୁଝିବାକୁ ହେଲେ ଆମକୁ ତାଙ୍କର ଚିନ୍ତାସ୍ତରରେ ପ୍ରବେଶ କରିବାକୁ ହେବ ଏବଂ ସେମାନେ କଅଣ ଅନୁଭବ କରୁଥିଲେ ଓ କାର୍ଯ୍ୟ କରୁଥିଲେ ଜାଣିବାକୁ ହେବ । ଭିତର ଇତିହାସର ହିଁ ପ୍ରକୃତ ମୂଲ୍ୟ ଅଛି ଏବଂ ଏହି ଇତିହାସ ଯୋଗୁଁ ହିଁ ଆଧୁନିକ ଇଉରୋପ ଅନେକ ପ୍ରକାରେ ଅତୀତ ଗ୍ରୀକ୍ ସଭ୍ୟତାର ସନ୍ତାନ ବୋଲି କୁହାଯାଇପାରେ ।

ଦେଶର ଜୀବନରେ ଏପରି ଗୌରବମୟ ଯୁଗ କିପରି ଆସେ ଓ ଯାଏ, ତାହା ଚିନ୍ତାକଲେ ବାସ୍ତବିକ ଆଶ୍ଚର୍ଯ୍ୟ ଓ ରହସ୍ୟପୂର୍ଣ୍ଣ ମନେହୁଏ । କିଛିକ୍ଷଣ ନିମନ୍ତେ ଏହା ପ୍ରତ୍ୟେକ ଜିନିଷକୁ ଚମତ୍କୃତ କରିଦିଏ ଏବଂ ସେ ସମୟ ଭିତରେ ଦେଶର ନରନାରୀ ଅନେକ ସୁନ୍ଦର ଜିନିଷ ସୃଷ୍ଟି କରିପାରନ୍ତି । ଲୋକେ ଉତ୍ସାହିତ ହୋଇଯାନ୍ତି । ଆମ ଦେଶରେ ବି ସେପରି ଯୁଗ ଥିଲା । ଆମ ଜାତିରେ ବେଦ ଓ ଉପନିଷଦ ଯେଉଁ ସମୟରେ ଲେଖା ହୋଇଥିଲା, ତାହା ଆମ ଦେଶର ସବୁଠାରୁ ପୁରୁଣାବେଳର କଥା । ଦୁର୍ଭାଗ୍ୟ-ବଶତଃ ଏହି ଅତୀତକାଳର କୌଣସି ଲିଖିତ ଇତିହାସ ନାହିଁ । ଅନେକ ସୁନ୍ଦର ଓ ବଡ଼ ବଡ଼ ଲେଖାସବୁ ହୁଏତ ନଷ୍ଟ ହୋଇଯାଇଛି ଏବଂ କେତେକ ଅନୁସନ୍ଧାନ କଲେ ମିଳିପାରିବ । ମାତ୍ର ପୂର୍ବକାଳର ଭାରତୀୟମାନେ କିପରି ଉନ୍ନତ ଚିନ୍ତାଶୀଳ ଥିଲେ, ତାହା ଦର୍ଶାଇବା ଲାଗି ଆମ ନିକଟରେ ଯଥେଷ୍ଟ ଜିନିଷ ଅଛି । ପରବର୍ତ୍ତୀ ଭାରତ ଇତିହାସରେ ଅନେକ ଗୌରବମୟ ଯୁଗ ଅଛି ଏବଂ ଆମେ ଆଲୋଚନା କଲାବେଳେ ସେସବୁ କ୍ରମେ ଆସିପାରେ ।

ଏହି ଯୁଗରେ ଏଥେନ୍ସ ବିଶେଷ ଭାବରେ ଖ୍ୟାତି ଲଭିଥିଲା । ଜଣେ ମହାନ୍ ରାଜନୀତିଜ୍ଞ ଏହାର ନେତା ଥିଲେ । ତାଙ୍କ ନାମ ଥିଲା ପେରିକ୍ଲିଜ୍ ଏବଂ ସେ ୩୦ ବର୍ଷ ପର୍ଯ୍ୟନ୍ତ ଏଥେନସ୍ ଅଧିକାର କରିଥିଲେ । ଏହି ଯୁଗରେ ହିଁ ଏଥେନସ୍ ଗୋଟିଏ ବିଖ୍ୟାତ ସହର ହେଲା, ଅନେକ ସୁନ୍ଦର କୋଠା ତିଆରି ହେଲା । ବଡ଼ ବଡ଼ ଶିଳ୍ପୀ ଓ ଭାବୁକ ଏହି ସମୟରେ ଥିଲେ । ଆଜିସୁଦ୍ଧା ଏହାକୁ ପେରିକ୍ଲିଜ୍‌ଙ୍କ ଏଥେନସ୍ ବୋଲି କହନ୍ତି ଓ ଆମେ ପେରିକ୍ଲିଜ୍ ଯୁଗ ବୋଲି କହୁଁ ।

ଆମର ବନ୍ଧୁ ଐତିହାସିକ ହେରୋଡୋଟସ୍ ଏହି ଯୁଗରେ ଏଥେନସ୍‌ରେ ଥିଲେ । ସେ ଏଥେନ୍ସର ଉନ୍ନତି ସମ୍ବନ୍ଧରେ ଚିନ୍ତା କରି ଲେଖିଥିବୁ ସାରମର୍ମ ଯାହା ତାହାର

କରିଛନ୍ତି, ଲେଖିଛନ୍ତି । ତାଙ୍କ ଲେଖାରେ ଅଛି, "ଏଥେନ୍ସର କ୍ଷମତା ବଢ଼ିଲା; ଏଥିରୁ ପ୍ରମାଣ ମିଳୁଛି ଯେ ସ୍ୱାଧୀନତା ଗୋଟାଏ ଭଲ ଜିନିଷ । ପ୍ରତ୍ୟେକ କଥାରୁ ହିଁ ଏହାର ପ୍ରମାଣ ମିଳିବ । ଏଥେନ୍ସର ଲୋକେ ଏକଛତ୍ର ଶାସନ ଅଧୀନରେ ଥିବା ପର୍ଯ୍ୟନ୍ତ ପଡ଼ୋଶୀମାନଙ୍କଠାରୁ କୌଣସି ଗୁଣରେ ବଡ଼ ନ ଥିଲେ, ମାତ୍ର ମନୋମୁଖୀ ଶାସନ ଯିବା ସଙ୍ଗେ ସଙ୍ଗେ ସେମାନେ ତାଙ୍କୁ ଅତିକ୍ରମ କରିଗଲେ । ଏଥିରୁ ଦେଖାଯାଉଛି ଯେ ଅଧୀନରେ ଥିବାବେଳେ ସେମାନେ ଉଦ୍ୟୋଗୀ ନ ଥିଲେ; କେବଳ ନିଜ ପ୍ରଭୁ ସକାଶେ କାର୍ଯ୍ୟ କରୁଥିଲେ । ମାତ୍ର ସ୍ୱାଧୀନ ହେବାମାତ୍ରେ ପ୍ରତ୍ୟେକ ଲୋକ ନିଜେ ଭଲକାର୍ଯ୍ୟ କରିବା ନିମନ୍ତେ ତତ୍ପର ହେଲେ ।"

ସେ କାଳର କେତେକ ବଡ଼ଲୋକଙ୍କର ନାମ ମୁଁ ଆଗରୁ ଲେଖିଛି । ସେ କାଳର ବା ସେ ସମସ୍ତ ଯୁଗର ଜଣେ ସବୁଠୁଁ ବଡ଼ ଲୋକର ନାମ ମୁଁ ଏପର୍ଯ୍ୟନ୍ତ ଉଲ୍ଲେଖ କରିନାହିଁ—ତାଙ୍କ ନାମ ହେଉଛି ସକ୍ରେଟିସ୍ । ସେ ଜଣେ ଦାର୍ଶନିକ ଓ ସର୍ବଦା ସତ୍ୟର ଅନୁସନ୍ଧାନ କରୁଥିଲେ । ପ୍ରକୃତ ଜ୍ଞାନଅର୍ଜନ ହିଁ ଦୁନିଆରେ ମୂଲ୍ୟବାନ ବସ୍ତୁ ବୋଲି ସେ ବିଚାରୁଥିଲେ ଏବଂ ଆଲୋଚନାରେ ସତ୍ୟ ପ୍ରକାଶ ପାଇବ ବୋଲି ସେ ଅନେକ ସମୟରେ ତାଙ୍କର ବନ୍ଧୁ ଓ ପରିଚିତ ଲୋକଙ୍କ ସହିତ ଦୁରୁହ ପ୍ରଶ୍ନର ଚର୍ଚ୍ଚା କରୁଥିଲେ । ତାଙ୍କର ଅନେକ ଶିଷ୍ୟ ବା ଚେଲା ଥିଲେ । ସେମାନଙ୍କ ଭିତରେ ପ୍ଲେଟୋ ହେଉଛନ୍ତି ସବୁଠାରୁ ବଡ଼ । ପ୍ଲେଟୋ ଅନେକ ବହି ଲେଖିଛନ୍ତି । ଆମେ ତାଙ୍କର ଅନେକ ଲେଖା ପାଉଁ ଏବଂ ତାଙ୍କର ବହିଗୁଡ଼ିକରୁ ତାଙ୍କ ଗୁରୁ ସକ୍ରେଟିସ୍‌ଙ୍କ ବିଷୟରେ ଆମେ ଅନେକ କଥା ଜାଣିପାରୁଁ । ଯେଉଁ ଲୋକେ କୌଣସି ନୂଆ ଜିନିଷ ବାହାର କରିବାକୁ ଚେଷ୍ଟା କରନ୍ତି, ତାଙ୍କୁ ସରକାର ସବୁ ପସନ୍ଦ କରନ୍ତି ନାହିଁ – ସତ୍ୟ ଅନୁସନ୍ଧାନ ସରକାର ଆଦୌ ପସନ୍ଦ କରେ ନାହିଁ । ପେରିକ୍ଲିଜ୍‌ଙ୍କ ପରେ ଏଥେନ୍ସରେ ଯେଉଁ ସରକାର ଥିଲା, ତାହା ସକ୍ରେଟିସ୍‌ଙ୍କ କାର୍ଯ୍ୟକୁ ପସନ୍ଦ କଲା ନାହିଁ । ବିଚାର ହୋଇ ସକ୍ରେଟିସ୍‌ଙ୍କୁ ପ୍ରାଣଦଣ୍ଡ ହେଲା । ସରକାର କହିଲା ଯେ, ସେ ଯଦି ଲୋକଙ୍କ ସହିତ ଆଲୋଚନା ବନ୍ଦ କରିବେ ଏବଂ ଯେଉଁ ବାଟ ଧରିଛନ୍ତି ତାହା ଛାଡ଼ିବେ, ତେବେ ତାଙ୍କୁ ଖଲାସ କରି ଦିଆଯିବ । ମାତ୍ର ସେ ତାହା କରିବାକୁ ଅସ୍ୱୀକାର କଲେ । ନିଜେ ଯାହାକୁ କର୍ତ୍ତବ୍ୟ ବୋଲି ବିଚାରୁଥିଲେ, ତାକୁ ଛାଡ଼ିଦେବା ଅପେକ୍ଷା ବିଷପାନ ସେ ପସନ୍ଦ କଲେ ଏବଂ ସେଥିରେ ତାଙ୍କର ମୃତ୍ୟୁ ଘଟିଲା । ମୃତ୍ୟୁ ସମୟରେ ସୁଦ୍ଧା ସେ ବିଚାରପତି ଓ ଏଥେନ୍ସବାସୀଙ୍କୁ ସମ୍ବୋଧନ କରି କହିଥିଲେ—

"ମୁଁ ମୋର ସତ୍ୟ ଅନୁସନ୍ଧାନ ତ୍ୟାଗ କରିବି—ଏହି ସର୍ତ୍ତରେ ତୁମେ ଯଦି ମୋତେ ଖଲାସ କର, ତେବେ ମୁଁ କହିବି—ହେ ଏଥେନ୍ସବାସୀ ! ଧନ୍ୟବାଦ ।

ମାତ୍ର ମୁଁ ଭଗବାନଙ୍କୁ ମାନିବି । ମୋର ବିଶ୍ୱାସ, ସେ ମୋତେ ଏହି କାର୍ଯ୍ୟରେ ନିଯୁକ୍ତ କରିଛନ୍ତି । ମୋର ନିଃଶ୍ୱାସ ବହୁଥିବା ପର୍ଯ୍ୟନ୍ତ ଓ ଦେହରେ ଶକ୍ତି ଥିବା ପର୍ଯ୍ୟନ୍ତ ମୁଁ ମୋର ଦର୍ଶନକୁ ଛାଡ଼ିବି ନାହିଁ । ମୋର ଯାହା ସହିତ ଦେଖାହେବ ତାହା ସହିତ ଆଲୋଚନା ମୁଁ କରୁଥିବି ଏବଂ ତାକୁ କହିବି, "ଜ୍ଞାନ, ସତ୍ୟ ଏବଂ ତମର ଆତ୍ମାକୁ ଉନ୍ନତ ନ କରି ପାରୁଥିବା ବେଳେ ତମ ପାଖରେ ଯେ ଧନ ଓ ସମ୍ମାନ ଅଛି, ସେଥିଲାଗି ତମେ ଲଜ୍ଜିତ ହେଉ ନାହିଁ ? ମୃତ୍ୟୁ କ'ଣ ମୁଁ ଜାଣେ ନାହିଁ—ଏହା ଗୋଟିଏ ଭଲ ଜିନିଷ ହୋଇପାରେ । ମୁଁ ଏହାକୁ ଭୟ କରେ ନାହିଁ । ମାତ୍ର ନିଜ କର୍ତ୍ତବ୍ୟ ଛାଡ଼ିବା ଯେ ଗୋଟିଏ ଖରାପ କଥା, ଏହା ମୁଁ ଜାଣେ ଏବଂ ମୁଁ ଯାହା ଖରାପ ବୋଲି ଜାଣେ, ତାକୁ କରିବା ଅପେକ୍ଷା ଅନ୍ୟ ଯାହା କରିବି ତାହା ଭଲ ହୋଇପାରେ ଏବଂ ଏହା ମୋର ଶ୍ରେୟ ।"

ସକ୍ରେଟିସ୍ ତାଙ୍କ ଜୀବିତାବସ୍ଥାରେ ସତ୍ୟ ଓ ଜ୍ଞାନର ଠିକ୍ ସେବା କରିଥିଲେ । ତାଙ୍କର ମୃତ୍ୟୁଦ୍ୱାରା ସେ ତା'ର ଅଧିକ ସେବା କଲେ ।

ଆଜିକାଲି ସାମ୍ୟବାଦ, ପୁଞ୍ଜିବାଦ ଏବଂ ଆହୁରି ଅନେକ ସମସ୍ୟା ସମ୍ବନ୍ଧରେ ତୁ ପଢ଼ୁଥିବୁ ଏବଂ ଆଲୋଚନା ଓ ଯୁକ୍ତିସବୁ ମଧ୍ୟ ଶୁଣୁଥିବୁ । ଦୁନିଆରେ ବହୁତ ଅନ୍ୟାୟ ଏବଂ ଦୁଃଖ କଷ୍ଟ ରହିଛି । ଅନେକ ଲୋକ ଏଥିରେ ଘୋର ଅସନ୍ତୁଷ୍ଟ ଓ ସେମାନେ ଏହା ପରିବର୍ତ୍ତନ କରିବାକୁ ଚାହାନ୍ତି । ପ୍ଲେଟୋ ମଧ୍ୟ ସରକାରର ସମସ୍ୟା ବିଷୟରେ ଚିନ୍ତା କରିଥିଲେ ଓ ସେ ସମ୍ବନ୍ଧରେ ବହି ବି ଲେଖିଛନ୍ତି । ସୁତରାଂ ସେ କାଳରେ ସୁଦ୍ଧା ସବୁପ୍ରକାରେ ସେପରି ଲୋକେ ବେଶି ସୁଖରେ ରହନ୍ତି, ଏଥିଲାଗି କିପରି ସରକାର ଗଠନ କରିବାକୁ ହେବ, ସେ ସମ୍ବନ୍ଧରେ ଲୋକେ ଚିନ୍ତା କରୁଥିଲେ ।

ପ୍ଲେଟୋ ବୁଢ଼ା ହେଲା ବେଳକୁ ଆଉ ଜଣେ ଗ୍ରୀକ୍ ପ୍ରସିଦ୍ଧି ଲାଭ କଲେ ଏବଂ ତାଙ୍କ ଖ୍ୟାତି ଚାରିଆଡ଼େ ବ୍ୟାପିଲା । ତାଙ୍କ ନାମ ହେଉଛି ଆରିଷ୍ଟୋଟଲ । ସେ ଆଲେକ୍‌ଜାଣ୍ଡରଙ୍କ ଘରୋଇ ଶିକ୍ଷକ ଥିଲେ । ତେଣୁ ତାଙ୍କୁ ଆଲେକ୍‌ଜାଣ୍ଡର ଖୁବ୍ ସାହାଯ୍ୟ କରିଥିଲେ । ସକ୍ରେଟିସ୍ ଓ ପ୍ଲେଟୋଙ୍କ ପରି ଆରିଷ୍ଟୋଟଲ ଦର୍ଶନ ସମସ୍ୟା ବିଷୟରେ ମୁଣ୍ଡ ଘୂରାଇ ନ ଥିଲେ । ସେ ପ୍ରକୃତିକୁ ନିରୀକ୍ଷଣ କରିବା ଏବଂ ପ୍ରକୃତି ସମ୍ବନ୍ଧରେ ଜାଣିବା ନିମନ୍ତେ ବେଶି ଆଗ୍ରହୀ ଥିଲେ । ଏହାକୁ ପ୍ରାକୃତିକ ଦର୍ଶନ କହନ୍ତି । ଆଜିକାଲି ଏହାକୁ ବିଜ୍ଞାନ (Science) କହନ୍ତି । ସୁତରା ଆରିଷ୍ଟୋଟଲ ପୁରାକାଳର ଜଣେ ବୈଜ୍ଞାନିକ ଥିଲେ ।

ଆମେ ବର୍ତ୍ତମାନ ଆରିଷ୍ଟୋଟଲଙ୍କ ଶିଷ୍ୟ ଆଲେକ୍‌ଜାଣ୍ଡରଙ୍କ ପାଖକୁ ଯିବା ଏବଂ ତାଙ୍କ କାର୍ଯ୍ୟ ଆଲୋଚନା କରିବା । କିନ୍ତୁ ଆଜି ନୁହେଁ, କାଲିକି ଏହା ହେବ । ଆଜି ମୁଁ କ୍ଲାନ୍ତ ଲେଖିଲିଣି ।

ଆଜି ବସନ୍ତ ପଞ୍ଚମୀ—ବସନ୍ତର ଆଗମନ । ଗ୍ରୀଷ୍ମ ଶୀତଦିନଟି ଯାଉଛି—ପବନ ଆଉ ଥଣ୍ଡା ନୁହେଁ । ବେଶି ବେଶି ପକ୍ଷୀ ଦେଖାଯାଉଛନ୍ତି ଓ ତାଙ୍କ ସ୍ୱରରେ ବନଟି ଭରିଉଠୁଛି । ଆଜିର ଠିକ୍ ୧୫ ବର୍ଷ ତଳେ ତୋର ମମୀ ଓ ମୁଁ ଦୁହେଁ ଦିଲ୍ଲୀ ସହରରେ ବାହା ହୋଇଥିଲୁଁ ।

## ୧୭ । ଜଣେ ପ୍ରସିଦ୍ଧ ବିଜୟୀ, ମାତ୍ର ଅହଙ୍କାରୀ ଯୁବକ

ଜାନୁଆରୀ ୨୪, ୧୯୩୧

ମୋର ଗତ ଚିଠିରେ ଏବଂ ତା ପୂର୍ବରୁ ମୁଁ ଆଲେକ୍‌ଜାଣ୍ଡରଙ୍କ କଥା ଲେଖିଛି । ସେ ଜଣେ ଗ୍ରୀକ୍ ଥିଲେ ବୋଲି ମୁଁ ତତେ କହିଛି । ଏହା କହିବା ବୋଧହୁଏ ସମ୍ପୂର୍ଣ୍ଣ ଠିକ୍ ହେବ ନାହିଁ; କାରଣ ସେ ପ୍ରକୃତରେ ଗ୍ରୀସ୍‌ର ଉତ୍ତରରେ ଥିବା ମାସିଡୋନିଆ ବୋଲି ଗୋଟିଏ ଦେଶର ଲୋକ । ମାସିଡୋନିୟାନମାନେ ଅନେକାଂଶରେ ଗ୍ରୀକ୍‌ମାନଙ୍କ ପରି । ସେମାନଙ୍କୁ ଗ୍ରୀକ୍‌ଙ୍କ ଜ୍ଞାତିଭାଇ ବୋଲି କୁହାଯାଇପାରେ । ଆଲେକ୍‌ଜାଣ୍ଡରଙ୍କ ପିତା ଫିଲିପ୍ ମାସିଡୋନିଆର ରାଜା ଥିଲେ । ସେ ଜଣେ ଖୁବ୍ ସମର୍ଥ ରାଜା ଥିଲେ । ସେ ତାଙ୍କର କ୍ଷୁଦ୍ର ଦେଶଟିକୁ ଶକ୍ତିଶାଳୀ କଲେ ଏବଂ ଏକ ଖୁବ୍ ଦକ୍ଷଶାଳୀ ସେନା ଗଢ଼ିଥିଲେ । ଆଲେକ୍‌ଜାଣ୍ଡରଙ୍କୁ 'ଦି ଗ୍ରେଟ୍' ବା ମହାନ୍ କୁହାଯାଏ । ଇତିହାସରେ ସେ ଖୁବ୍ ପ୍ରସିଦ୍ଧ । ମାତ୍ର ସେ ଯେଉଁସବୁ କାର୍ଯ୍ୟ କଲେ ତାହା ତାଙ୍କ ପିତା ଫିଲିପ୍ ଆଗରୁ ଯେଉଁସବୁ କାର୍ଯ୍ୟ କରିଯାଇଥିଲେ, ସେଥିଲାଗି ସମ୍ଭବ ହୋଇପାରିଥିଲା । ବାସ୍ତବିକ ଆଲେକ୍‌ଜାଣ୍ଡର ଜଣେ ବଡ଼ଲୋକ ଥିଲେ କି ନାହିଁ, ଏହା ଏକ ସନ୍ଦେହର ବିଷୟ । ସେ ତ ମୋ ଦୃଷ୍ଟିରେ କେବେହେଁ ବୀର ନୁହନ୍ତି । ମାତ୍ର ଅଳ୍ପ ସମୟ ଭିତରେ ଦୁଇଟି ମହାଦେଶରେ ସେ ନିଜର ପ୍ରାଧାନ୍ୟ ବିସ୍ତାର କଲେ ଏବଂ ବିଶ୍ୱବିଜୟୀଙ୍କ ଭିତରେ ସେ ପ୍ରଥମ ବୋଲି ଇତିହାସରେ ଗଣ୍ୟ । ମଧ୍ୟ-ଏସିଆରେ ତାଙ୍କୁ ସିକନ୍ଦର ବୋଲି କହନ୍ତି । ପ୍ରକୃତିରେ ସେ ଯାହା ହୁଅନ୍ତୁ ପଛକେ, ଇତିହାସରେ ତାଙ୍କ ନାମର ଗୋଟାଏ ମର୍ଯ୍ୟାଦା ଅଛି । ତାଙ୍କ ନାମାନୁସାରେ ଅନେକ ସହରର ନାମକରଣ କରାଯାଇଛି ଏବଂ କେତେକ ଆଜିସୁଦ୍ଧା ରହିଛି । ତାହା ଭିତରୁ ଇଜିପ୍ଟର ଆଲେକ୍‌ଜାଣ୍ଡ୍ରିୟା ସହର ସବୁଠାରୁ ବଡ଼ ।

ଆଲେକ୍‌ଜାଣ୍ଡର ରାଜା ହେଲ ବେଳକୁ ତାଙ୍କର ବୟସ କୋଡ଼ିଏ ବର୍ଷ ହୋଇଥିଲା । ବଡ଼ ହେବା ନିମନ୍ତେ ତାଙ୍କର ଭୀଷଣ ଆକାଂକ୍ଷା ଥିଲା । ତାଙ୍କର ପିତା ଯେଉଁ ସୁନ୍ଦର ସୈନ୍ୟଦଳ ଗଢ଼ିଥିଲେ, ତାକୁ ସେନେ ପୁରୁଣା ଶତ୍ରୁ ଇରାନ୍ ଆଡ଼କୁ ନିବାଲାଗି ସେ ବ୍ୟଗ୍ର ଥିଲେ । ଗ୍ରୀକ୍‌ମାନେ ଫିଲିପ୍ ବା ଆଲେକ୍‌ଜାଣ୍ଡର କାହାକୁ ଭଲ ପାଉ ନ ଥିଲେ; ସେମାନଙ୍କ ଶକ୍ତି ସାମନାରେ ସେମାନେ ଟିକିଏ ଦବି ଯାଇଥିଲେ । ସେହିହେତୁ ସେମାନେ ଇରାନ୍ ବିରୁଦ୍ଧରେ ଯେଉଁ ଗ୍ରୀକ୍ ସୈନ୍ୟବାହିନୀ ଯାତ୍ରା କରୁଥିଲା, ତାହାର ନାୟକ ଭାବରେ ଜଣକ ପରେ ଅନ୍ୟକୁ ସ୍ୱୀକାର କରିଥିଲେ । ସେହିପରି ଏହି ନୂତନ ଶକ୍ତି ସାମନାରେ ସେମାନେ ମୁଣ୍ଡ ନୁଆଁଇଲେ । ଥିବସ୍ ବୋଲି ଗୋଟିଏ ସହର ତାଙ୍କ ବିରୁଦ୍ଧରେ ଉଠିଥିଲା ଏବଂ ସେ ଖୁବ୍ ନିଷ୍ଠୁର ଓ ନିର୍ମମ ଭାବରେ ତାକୁ ଆକ୍ରମଣ କରିଥିଲେ । ଆଲେକ୍‌ଜାଣ୍ଡର ଏହି ବିଖ୍ୟାତ ସହରଟି ଧ୍ୱଂସ କରିଦେଲେ, କୋଠାବାଡ଼ି ଭାଙ୍ଗି ପକାଇଲେ, ଅନେକ ଲୋକଙ୍କୁ ନିହତ କଲେ ଏବଂ ହଜାର ହଜାର ଲୋକଙ୍କୁ ଦାସଭାବରେ ବିକ୍ରୀ କରିଦେଲେ । ଏହି ବର୍ବର ବ୍ୟବହାର ଯୋଗୁଁ ସେ ଗ୍ରୀସ୍‌କୁ ଭୟଭୀତ କରି ପକାଇଥିଲେ । କିନ୍ତୁ ତାଙ୍କର ଏହିପରି ବର୍ବର କାର୍ଯ୍ୟ ଯୋଗୁଁ ଆମେ ତାଙ୍କୁ ଭକ୍ତି କରିପାରୁ ନାହିଁ - ବରଂ ଘୃଣା ଓ ବିରକ୍ତି ଲାଗେ ।

ଜୈରେକ୍‌ସିଜ୍‌ଙ୍କ ପରେ ତୃତୀୟ ଡାରିୟସ୍ ଇରାନ୍‌ର ରାଜା ହେଲେ । ତାଙ୍କୁ ଆଲେକ୍‌ଜାଣ୍ଡର ଆଗରୁ ପରାସ୍ତ କରିଥିଲେ । ଇଜିପ୍ଟ ଇରାନ୍ ରାଜାଙ୍କ ଅଧୀନରେ ଥିବାରୁ ସହଜରେ ଆଲେକ୍‌ଜାଣ୍ଡରଙ୍କ ଅଧୀନକୁ ଆସିଲା । ପୁଣି ଥରେ ଆଲେକ୍‌ଜାଣ୍ଡର ଇରାନ୍ ଯାଇ ଡାରିୟସ୍‌ଙ୍କୁ ପରାସ୍ତ କରିଥିଲେ । 'ରାଜାଧିରାଜ' ଡାରିୟସ୍‌ଙ୍କ ପ୍ରାସାଦକୁ ଆଲେକ୍‌ଜାଣ୍ଡର ଧ୍ୱଂସ କରିଥିଲେ ଏବଂ ପ୍ରତିହିଂସା ନେବାଲାଗି ଏଥେନ୍ସ ପୋଡ଼ିଦେବା ପାଇଁ ମଧ୍ୟ ସେ କହିଥିଲେ ।

କବି ଫିର୍ଦୁସୀଙ୍କର ପ୍ରାୟ ଏକ ହଜାର ବର୍ଷ ତଳର ପାର୍ସୀ ଭାଷାରେ ଲେଖା ଗୋଟିଏ ପୁରୁଣା ବହି ଅଛି । ଏହାକୁ 'ସାହନମା' କହନ୍ତି । ଏଥିରେ ଇରାନ୍ ରାଜା-ମାନଙ୍କର ନାମ ଲେଖାଅଛି । ଆଲେକ୍‌ଜାଣ୍ଡର ଓ ଡାରିୟସ୍‌ଙ୍କ ଯୁଦ୍ଧର ଅତି କାଳ୍ପନିକ ବର୍ଣ୍ଣନାସବୁ ଏଥିରେ ଅଛି । ଏଥିରେ ଲେଖା ଅଛି—ପରାସ୍ତ ହେଲା ପରେ ଡାରିୟସ୍ ଭାରତର ସାହାଯ୍ୟ ମାଗିଥିଲେ । "ପବନଗତିରେ ଗୋଟିଏ ଓଟକୁ" ଭାରତର ଉତ୍ତର-ପଶ୍ଚିମରେ ଥିବା ଜଣେ ରାଜା ଫୁର୍ ବା ପୁରୁଙ୍କ ପାଖକୁ ସେ ପଠାଇଥିଲେ । ପୁରୁ ତାଙ୍କୁ ଆଦୌ ସାହାଯ୍ୟ କରିପାରି ନ ଥିଲେ । କିଛିଦିନ ପରେ ପୁରୁଙ୍କୁ ଆଲେକ୍‌ଜାଣ୍ଡରଙ୍କ ଆକ୍ରମଣର ସମ୍ମୁଖୀନ ହେବାକୁ ପଡ଼ିଥିଲା । ଇରାନ୍‌ର ରାଜା ଓ ସାମନ୍ତମାନେ ବହୁ ଭାରତୀୟ ଖଡ୍ଗ ଓ ଛୁରୀ ବ୍ୟବହାର କରୁଥିବା କଥା ଫିର୍ଦୁସୀଙ୍କର ଏହି ସାହାନମା ବହିରେ

ଲେଖାଅଛି ! ଏଥିରୁ ଜଣାପଡ଼େ ଯେ ଆଲେକ୍‌ଜାଣ୍ଡରଙ୍କ ଯୁଗରେ ସୁଦ୍ଧା ଭାରତରେ ସରସା ଇସ୍ପାତରେ ଖଣ୍ଡା ତିଆରି ହେଉଥିଲା ଏବଂ ତାହା ବିଦେଶରେ ଆଦୃତ ହେଉଥିଲା ।

ଆଲେକ୍‌ଜାଣ୍ଡର ଇରାନ୍‌ରୁ ପୁଣି ଆଗକୁ ଯାତ୍ରା କଲେ । ଆଜିକାଲି ଯେଉଁଠି ହେରାତ୍, କାବୁଲ ଓ ସମରକନ୍ଦ ଦେଶ ଅଛି, ତାକୁ ଅତିକ୍ରମ କରି ସେ ସିନ୍ଧୁନଦୀର ଉତ୍ତର ସମତଳ ଭୂମିରେ ଆସି ପହଞ୍ଚିଲେ । ଏଠି ଯେଉଁ ପ୍ରଥମ ଭାରତୀୟ ଶାସକଙ୍କ ସହିତ ତାଙ୍କର ଭେଟହେଲା, ସେ ତାଙ୍କର ବିରୋଧ କଲେ । ଗ୍ରୀକ୍ ଭାଷାରେ ଗ୍ରୀକ୍ ଐତିହାସିକମାନେ ତାଙ୍କୁ ପୁରୁ ବୋଲି କହିଛନ୍ତି । ଏହିଭଳି ତାଙ୍କର ପ୍ରକୃତ ନାମ କିଛି ହୋଇଥିବ; ମାତ୍ର ତାହା ଆମକୁ ଜଣା ନାହିଁ । ଲେଖାଅଛି – ପୁରୁ ଖୁବ୍ ସାହସର ସହିତ ଲଢ଼ିଥିଲେ ଏବଂ ତାଙ୍କୁ ଜୟ କରିବା ଆଲେକ୍‌ଜାଣ୍ଡରଙ୍କ ପକ୍ଷରେ ସହଜ ନ ଥିଲା । ପୁରୁ ଖୁବ୍ ଡେଙ୍ଗା ଓ ଯୋଦ୍ଧା ଥିଲେ ଏବଂ ଆଲେକ୍‌ଜାଣ୍ଡର ତାଙ୍କ ବୀରତ୍ୱ ଓ ସାହସରେ ଏପରି ମୁଗ୍ଧ ହୋଇଥିଲେ ଯେ ପରାଜୟ କଲାପରେ ସୁଦ୍ଧା ପୁରୁଙ୍କୁ ତାଙ୍କ ରାଜ୍ୟ ଛାଡ଼ି ଦେଇଥିଲେ । ମାତ୍ର ରାଜା ହେବା ପରିବର୍ତ୍ତେ ପୁରୁ ଗ୍ରୀକ୍‌ମାନଙ୍କର 'ସତ୍ରାପ' ବା ଗଭର୍ଣ୍ଣର ହେଲେ ।

ରାଓଲପିଣ୍ଡିର ନିକଟ ଉତ୍ତରକୁ ଥିବା ତକ୍ଷଶୀଳା ଦେଇ ଉତ୍ତର ପଶ୍ଚିମରେ ଖାଇବାର ଗିରିପଥ ଅତିକ୍ରମ କରି ଆଲେକ୍‌ଜାଣ୍ଡର ଭାରତରେ ପ୍ରବେଶ କଲେ । ଏହି ପୁରାତନ ସହରର ଧ୍ୱଂସାବଶେଷ ତୁ ଆଜି ବି ଦେଖିପାରିବୁ । ପୁରୁଙ୍କୁ ପରାସ୍ତ କଲାପରେ ଆଲେକ୍‌ଜାଣ୍ଡର ଦକ୍ଷିଣରେ ଗଙ୍ଗାନଦୀ ଆଡ଼କୁ ଆସିବା ଲାଗି ବିଚାର କରୁଥିବାର ଜଣାପଡ଼େ । ମାତ୍ର ସେ ତାହା କଲେ ନାହିଁ । ସିନ୍ଧୁ ଉପକୂଳରୁ ସେ ଫେରିଗଲେ । ବାସ୍ତବିକ ଆଲେକ୍‌ଜାଣ୍ଡର ଯଦି ହିନ୍ଦୁସ୍ଥାନ ଭିତରକୁ ଆସିଥାନ୍ତେ, ତେବେ କ'ଣ ହୋଇଥାନ୍ତା ଭାବିଲେ ମନରେ ନାନା ଭାବ ଆସେ । ସେ କ'ଣ ଏଠିବି ସେପରି ଜୟଲାଭ କରୁଥାନ୍ତେ ? ନା, ଭାରତୀୟ ସୈନ୍ୟ ତାଙ୍କୁ ପରାସ୍ତ କରିଥାନ୍ତେ ? ସୀମାନ୍ତ ରାଜା ପୁରୁ ତାଙ୍କୁ ଯଥେଷ୍ଟ ହଇରାଣ କରିଥିଲେ ଏବଂ ମଧ୍ୟଭାରତର ବଡ଼ ବଡ଼ ରାଜ୍ୟସବୁ ତାଙ୍କୁ ପରାସ୍ତ କରିପାରିବାର ଯଥେଷ୍ଟ ସମ୍ଭାବନା ଥିଲା । ମାତ୍ର ଆଲେକ୍‌ଜାଣ୍ଡରଙ୍କ ମନରେ ଯାହା ଥାଉ ପଛକେ, ତାଙ୍କର ସୈନ୍ୟମାନଙ୍କ ଯୋଗୁଁ ତାଙ୍କୁ ଫେରିଯିବାକୁ ହେଲା । ସେମାନେ କ୍ଲାନ୍ତ ହୋଇ ପଡ଼ିଥିଲେ ଏବଂ ଦୀର୍ଘକାଳ ଯାତ୍ରା ପରେ ଅବସନ୍ନ ହୋଇଥିଲେ । ବୋଧହୁଏ ଭାରତୀୟ ସୈନ୍ୟଙ୍କର ଯୁଦ୍ଧକୌଶଳରେ ସେମାନେ ମୁଗ୍ଧ ହୋଇଥିଲେ; ଆଉ ଅଗ୍ରସର ହୋଇ ପରାସ୍ତ ହେବାଲାଗି ସାହସ କରୁ ନ ଥିଲେ । ଯାହା ହୋଇଥାଉ ପଛକେ, ସୈନ୍ୟମାନେ ଫେରିଯିବା ନିମନ୍ତେ ଜିଦ୍ ଧରିଲେ ଏବଂ ଆଲେକ୍‌ଜାଣ୍ଡରଙ୍କୁ ସେଥିରେ ସମ୍ମତ ହେବାକୁ ପଡ଼ିଲା । ଏହି ବାହୁଡ଼ା ଯାତ୍ରା ବଡ଼ ଦୁଃଖଦାୟକ ହୋଇଥିଲା ଏବଂ ଖାଦ୍ୟ ଓ ଜଳ ଅଭାବରେ ସୈନ୍ୟମାନେ କଷ୍ଟ ଭୋଗିଥିଲେ । କେତେଦିନ ପରେ ଖ୍ରୀଷ୍ଟପୂର୍ବ

୩୨୩ରେ ବେବିଲନ୍‌ରେ ଆଲେକ୍‌ଜାଣ୍ଡରଙ୍କର ମୃତ୍ୟୁ ହେଲା । ସେ ଇରାନ୍ ଆକ୍ରମଣକୁ ଆସିବା ଦିନଠାରୁ ଆଉ ତାଙ୍କର ମାତୃଭୂମି ମାସିଡୋନିଆ ଦେଖିପାରି ନ ଥିଲେ ।

୩୩ ବର୍ଷ ବୟସରେ ଆଲେକ୍‌ଜାଣ୍ଡରଙ୍କ ମୃତ୍ୟୁ ହେଲା । ଏହି କେତେ ବର୍ଷ ଭିତରେ ଏହି 'ବଡ଼' ଲୋକଟି କଅଣ କରିଥିଲେ ? ସେ କେତେ ଯୁଦ୍ଧରେ ଜୟଲାଭ କରିଥିଲେ । ସେ ଜଣେ ବଡ଼ ସେନାପତି ସେ ଥିଲେ, ଏଥିରେ ସନ୍ଦେହ ନାହିଁ । ମାତ୍ର ସେ ବଡ଼ ଅହଙ୍କାରୀ ଓ ବୃଥାଗର୍ବୀ ଥିଲେ ଏବଂ ସମସ୍ତ ସମୟରେ ଖୁବ୍ ନିଷ୍ଠୁର ଓ ହିଂସାପରାୟଣ ହେଉଥିଲେ । ସେ ନିଜକୁ ଜଣେ ଦେବତା ପରି ପ୍ରାୟ ମନେ କରୁଥିଲେ । କ୍ଷଣିକ ରାଗ ବା ଜିଦ୍‌ରେ ସେ ତାଙ୍କର ଭଲ ବନ୍ଧୁ କେତେଜଣଙ୍କୁ ହତ୍ୟା କରିଥିଲେ ଏବଂ କେତେକ ବଡ଼ ସହର ଓ ଅଧିବାସୀଙ୍କୁ ଧ୍ୱଂସ କରି ପକାଇଥିଲେ । ସେ ତାଙ୍କ ସାମ୍ରାଜ୍ୟରେ କିଛି ରଖି ନ ଥିଲେ—ଏପରି କି ସେ ଯେଉଁସବୁ ରାସ୍ତା ତିଆରି କରିଥିଲେ, ତା ବି ନ ଥିଲା । ଆକାଶରେ ବିଜୁଳିପରି ସେ ଆସି ଚାଲିଗଲେ ଏବଂ ଗୋଟାଏ ସ୍ମୃତି ଛଡ଼ା ସେ ଆଉ କିଛି ରଖି ଯାଇ ନାହାନ୍ତି । ତାଙ୍କ ପରିବାରର ଲୋକେ ତାଙ୍କ ପରେ ପ୍ରତ୍ୟେକ ପରସ୍ପରକୁ ହତ୍ୟା କଲେ ଏବଂ ତାଙ୍କର ବିରାଟ ସାମ୍ରାଜ୍ୟ ଖଣ୍ଡ ବିଖଣ୍ଡ ହୋଇପଡ଼ିଲା । ତାଙ୍କୁ ଜଣେ ଜଗତ୍‌ବିଜୟୀ ବୋଲି କହନ୍ତି ଏବଂ ଏହା ମଧ୍ୟ କୁହାଯାଏ ଯେ ଆଉ କିଛି ଜୟ କରିବାକୁ ନାହିଁ ବୋଲି ଭାବି ସେ ଥରେ ବସି କାନ୍ଦିବାକୁ ଲାଗିଥିଲେ । ମାତ୍ର କେବଳ ଉତ୍ତର-ପଶ୍ଚିମର କେତେକ ସ୍ଥାନଛଡ଼ା ସେ ଭାରତ ଜୟ କରିପାରି ନ ଥିଲେ । ଚୀନ୍ ସେତେବେଳେ ଗୋଟିଏ ବଡ଼ ରାଜ୍ୟ ଥିଲା ଏବଂ ଆଲେକ୍‌ଜାଣ୍ଡର ଚୀନ୍ ପାଖ ପର୍ଯ୍ୟନ୍ତ ମାଡ଼ି ନାହାନ୍ତି ।

ତାଙ୍କର ମୃତ୍ୟୁ ପରେ ତାଙ୍କର ସେନାପତିମାନେ ତାଙ୍କ ସାମ୍ରାଜ୍ୟକୁ ବାଣ୍ଟି ନେଇଥିଲେ । ଟଲେମି*ଙ୍କ ଭାଗରେ ଇଜିପ୍ଟ ପଡ଼ିଲା । ସେ ସେଠାରେ ଖୁବ୍ ଶକ୍ତିଶାଳୀ ସରକାର ସ୍ଥାପନ କଲେ ଓ ଏକ ରାଜବଂଶ ସୃଷ୍ଟି କଲେ । ଏହି ସରକାର ଅଧୀନରେ ଇଜିପ୍ଟ ଖୁବ୍ ପ୍ରଭାବଶାଳୀ ଦେଶ ହୋଇଉଠିଲା ଏବଂ ଆଲେକ୍‌ଜାଣ୍ଡ୍ରିୟା ସହର ବିଜ୍ଞାନ, ଦର୍ଶନ ଓ ଜ୍ଞାନ ନିମନ୍ତେ ବିଖ୍ୟାତ ହୋଇଥିଲା ।

ଇରାନ୍, ଇରାକ୍ ଏବଂ ଏସିଆ ମାଇନରର କେତେକାଂଶ ସେଲ୍ୟୁକସ୍ ନାମକ ଆଉ ଏକ ସେନାପତିଙ୍କ ଭାଗରେ ପଡ଼ିଥିଲା । ଉତ୍ତର-ପଶ୍ଚିମ ଭାରତର ଯେଉଁ ଅଂଶ ଆଲେକଜାଣ୍ଡର ଜୟ କରିଥିଲେ, ତାହା ମଧ୍ୟ ଏହାଙ୍କ ଭାଗରେ ପଡ଼ିଥିଲା । କିନ୍ତୁ ସେ ଭାରତର କୌଣସି ଅଂଶ ରଖିବାକୁ ଅସମର୍ଥ ହେଲେ ଏବଂ ଆଲେକ୍‌ଜାଣ୍ଡରଙ୍କ ମୃତ୍ୟୁ ପରେ ଗ୍ରୀକ୍ ସୈନ୍ୟମାନଙ୍କୁ ତଡ଼ି ଦିଆଗଲା ।

---

* ଏ ଜଣେ ଗ୍ରୀକ୍ ସମ୍ରାଟ୍ । ଆଲେକ୍‌ଜାଣ୍ଡରଙ୍କର ସେନାପତି ଥିଲେ ।

ଖ୍ରୀଷ୍ଟପୂର୍ବ ୩୨୬ ରେ ଆଲେକ୍‌ଜାଣ୍ଡର ଭାରତକୁ ଆସିଥିଲେ । ତାଙ୍କର ଆଗମନକୁ ଗୋଟାଏ ଚଢ଼ାଉ କୁହାଯାଇପାରେ । ସେଥିରେ ଭାରତର କୌଣସି ପରିବର୍ତ୍ତନ ହୋଇ ନ ଥିଲା ।

କେତେକ ଲୋକ କହନ୍ତି ଯେ ଏହି ଚଢ଼ାଉ ଯୋଗୁଁ ଭାରତୀୟ ଓ ଗ୍ରୀକ୍‌ଙ୍କ ଭିତରେ କାରବାର ଆରମ୍ଭ ହୋଇଥିଲା । କିନ୍ତୁ ପ୍ରକୃତରେ ଆଲେକ୍‌ଜାଣ୍ଡରଙ୍କ ପୂର୍ବରୁ ପୂର୍ବ ଓ ପଶ୍ଚିମ ଭିତରେ ଗୋଟାଏ ରାଜପଥ ଥିଲା ଏବଂ ଇରାନ୍ ଓ ଏପରିକି ଗ୍ରୀସ୍ ସହିତ ସମ୍ପର୍କ ଥିଲା । ଏହି ସମ୍ବନ୍ଧ ଅବଶ୍ୟ ଆଲେକ୍‌ଜାଣ୍ଡରଙ୍କ ଆସିବା ପରେ ବଢ଼ିଥିବ ଏବଂ ଭାରତୀୟ ଓ ଗ୍ରୀକ୍ ସଂସ୍କୃତି ଅନେକ ପରିମାଣରେ ମିଶିଯାଇଥିବ ।

ଆଲେକଜାଣ୍ଡରଙ୍କ ଆକ୍ରମଣ ଓ ମୃତ୍ୟୁ ଭାରତରେ ବିରାଟ ମୌର୍ଯ୍ୟ ସାମ୍ରାଜ୍ୟ ସ୍ଥାପନ କରିପାରିଥିଲା । ଭାରତ ଇତିହାସରେ ଏହା ଏକ ମହାନ୍ ସମୟ । ଏହାର ଆଲୋଚନା ପାଇଁ ଆମକୁ ଅଧିକ ସମୟ ଦେବାକୁ ହେବ ।

## ୧୮ । ଚନ୍ଦ୍ରଗୁପ୍ତ ମୌର୍ଯ୍ୟ ଓ ଅର୍ଥଶାସ୍ତ୍ର

ଜାନୁୟାରି ୨୫, ୧୯୩୧

ମୁଁ ଗୋଟିଏ ଚିଠିରେ ମଗଧ କଥା ଲେଖିଥିଲି । ଏହା ଗୋଟିଏ ପୁରୁଣା ରାଜ୍ୟ । ବର୍ତ୍ତମାନ ଯେଉଁ ବିହାର ପ୍ରଦେଶ ଅଛି, ସେଠାରେ ଏହା ଥିଲା । ଏହାର ରାଜଧାନୀ ଥିଲା ପାଟଳୀପୁତ୍ର, ଆଜିକାଲି ତାକୁ ପାଟନା କହନ୍ତି । ଆମେ ଯେଉଁ ସମୟ କଥା ଆଲୋଚନା କରୁଛେ, ସେତେବେଳେ ନନ୍ଦବଂଶ ମଗଧରେ ରାଜୁତି କରୁଥିଲେ । ଆଲେକ୍‌ଜାଣ୍ଡର ଉତ୍ତର-ପଶ୍ଚିମ ଭାରତ ଆକ୍ରମଣ କରିବାକୁ ଆସିଲାବେଳେ ଜଣେ ନନ୍ଦରାଜା ପାଟଳୀପୁତ୍ରରେ ରାଜୁତି କରୁଥିଲେ । ଖୁବ୍ ସମ୍ଭବତଃ ଏହାଙ୍କ କୁଟୁମ୍ବରେ ଚନ୍ଦ୍ରଗୁପ୍ତ ନାମରେ ଜଣେ ଯୁବକ ଥିଲେ । ଚନ୍ଦ୍ରଗୁପ୍ତ ଜଣେ ଭାରି ଚତୁର, ଶକ୍ତିଶାଳୀ ଓ ଉଚ୍ଚାଭିଳାଷୀ ଲୋକ ଥିଲେ ପରି ମନେହୁଏ ଏବଂ ନନ୍ଦରାଜା ତାଙ୍କୁ ଅତି ଚତୁର ବୋଲି ବିଗୁରି କିମ୍ବା ତାଙ୍କର କୌଣସି କାର୍ଯ୍ୟକୁ ନାପସନ୍ଦ କରି ତାଙ୍କୁ ଦେଶରୁ ନିର୍ବାସନ କଲେ । ବୋଧହୁଏ ଆଲେକ୍‌ଜାଣ୍ଡର ଓ ଗ୍ରୀକ୍‌ଙ୍କର ଗଳ୍ପଦ୍ୱାରା ଆକୃଷ୍ଟ ହୋଇ ଚନ୍ଦ୍ରଗୁପ୍ତ ତକ୍ଷଶୀଳାର ଉତ୍ତରକୁ ଗଲେ । ତାଙ୍କ ସହିତ ବିଷ୍ଣୁଗୁପ୍ତ ନାମରେ ଜଣେ ଦକ୍ଷ ଲୋକ ଥିଲେ । ତାଙ୍କୁ ଚାଣକ୍ୟ ବି କହନ୍ତି । ଚନ୍ଦ୍ରଗୁପ୍ତ ଓ ଚାଣକ୍ୟ ଦୁହେଁଯାକ ଅତି ଶାନ୍ତଶିଷ୍ଟ ଲୋକ ନ

ଥିଲେ । ସେମାନେ ଭାଗ୍ୟକୁ ଆଦଶ ପଡ଼ି ରହୁ ନ ଥିଲେ କିମ୍ବା ଯାହା ଘଟିବାର ଥିବ ଘଟିବ ଭାବି ଚୁପ୍ ରହୁ ନ ଥିଲେ । ସେମାନେ ଖୁବ୍ ବଡ଼ ବଡ଼ ଯୋଜନା କରିଥିଲେ ଏବଂ ଅଗ୍ରସର ହୋଇ କୃତିତ୍ୱ ଲାଭ କରିବା ନିମନ୍ତେ ବ୍ୟଗ୍ର ହେଉଥିଲେ । ଚନ୍ଦ୍ରଗୁପ୍ତ ବୋଧହୁଏ ଆଲେକ୍‌ଜାଣ୍ଡରଙ୍କ ଗୌରବରେ ଆକୃଷ୍ଟ ହୋଇଥିଲେ ଏବଂ ତାଙ୍କୁ ଅନୁସରଣ କରିବା ଇଚ୍ଛା କରିଥିଲେ । ଏହି ଉଦ୍ଦେଶ୍ୟସିଦ୍ଧି ଲାଗି ଚାଣକ୍ୟଙ୍କୁ ଜଣେ ଆଦର୍ଶ ବନ୍ଧୁ ଓ ପରାମର୍ଶଦାତା ରୂପେ ସେ ପାଇଥିଲେ । ଦୁହେଁ ମନ ଖୋଲି ଚାହିଁ ତକ୍ଷଶୀଳାରେ କ'ଣ ଘଟୁଛି, ତାହା ସାବଧାନତାର ସହିତ ଲକ୍ଷ୍ୟ କରୁଥିଲେ ଓ ସୁଯୋଗ ଉଣ୍ଡୁଥିଲେ ।

ସୁଯୋଗ ଶୀଘ୍ର ଆସି ପହଞ୍ଚିଲା । ଆଲେକ୍‌ଜାଣ୍ଡରଙ୍କ ମୃତ୍ୟୁ ଖବର ପହଞ୍ଚିବା ମାତ୍ରେ କାର୍ଯ୍ୟ ଆରମ୍ଭର ଉପଯୁକ୍ତ ସମୟ ଆସି ପହଞ୍ଚିଲା ବୋଲି ଚନ୍ଦ୍ରଗୁପ୍ତ ଜାଣିପାରିଲେ । ତାଙ୍କ ଚତୁଃପାର୍ଶ୍ୱରେ ଥିବା ଲୋକଙ୍କୁ ସେ ଜାଗ୍ରତ କରାଇଲେ ଏବଂ ସେମାନଙ୍କ ସାହାଯ୍ୟରେ ଆଲେକ୍‌ଜାଣ୍ଡର ଯେଉଁ ଗ୍ରୀକ୍ ସୈନ୍ୟବାହିନୀଙ୍କୁ ଛାଡ଼ିଯାଇଥିଲେ, ତାଙ୍କୁ ତଡ଼ିଦେଲେ । ତକ୍ଷଶୀଳା ଅଧିକାର କରି ଚନ୍ଦ୍ରଗୁପ୍ତ ଏବଂ ତାଙ୍କର ମିତ୍ରମାନେ ପାଟଳିପୁତ୍ରର ଦକ୍ଷିଣକୁ ଯାତ୍ରା କଲେ ଏବଂ ନନ୍ଦରାଜାଙ୍କୁ ପରାସ୍ତ କଲେ । ଏହା ଆଲେକ୍‌ଜାଣ୍ଡାରଙ୍କ ମୃତ୍ୟୁର ଠିକ୍ ପାଞ୍ଚ ବର୍ଷ ପରେ ଖ୍ରୀଷ୍ଟପୂର୍ବ ୩୨୧ରେ ଘଟିଥିଲା । ଏହି ଦିନଠାରୁ ମୌର୍ଯ୍ୟବଂଶ ଆରମ୍ଭ ହେଲା । ଚନ୍ଦ୍ରଗୁପ୍ତଙ୍କୁ କାହିଁକି ମୌର୍ଯ୍ୟ ବୋଲି କୁହାଗଲା, ତାହା ପରିଷ୍କାର ରୂପେ ଜଣା ନାହିଁ । କେତେକ ଲୋକ କହନ୍ତି, ତାଙ୍କ ମାତାଙ୍କ ନାମ ମୁରା ଥିବାରୁ ଏପରି ହୋଇଥିଲା । ଆଉ କେହି କେହି କହନ୍ତି ଯେ ତାଙ୍କ ଅଜା (ମାତାଙ୍କ ପିତା) ରାଜାଙ୍କ ମୟୂରରକ୍ଷକ ଥିଲେ । ସଂସ୍କୃତରେ ମଧ୍ୟ ମୟୂର କହନ୍ତି । ଏହି ଶବ୍ଦ ଯେଉଁଠାରୁ ଆସିଥାଉ ପଛକେ, ସେ ଚନ୍ଦ୍ରଗୁପ୍ତ ମୌର୍ଯ୍ୟ ବୋଲି ପରିଚିତ ହୋଇଥିଲେ । ଅନେକ ବର୍ଷ ପରେ ଚନ୍ଦ୍ରଗୁପ୍ତ ନାମରେ ଭାରତରେ ଆଉ ଜଣେ ଯେ ପ୍ରସିଦ୍ଧ ଶାସକ ଥିଲେ, ତାଙ୍କଠାରୁ ଏହି ଭାବରେ ପୃଥକ ଲୋକ ବୋଲି ପରିଚୟ ମିଳେ ।

ମହାଭାରତ ଏବଂ ଅନ୍ୟ ପୁରୁଣା ବହି ଓ ଗଳ୍ପମାନଙ୍କରୁ ଆମେ ଚକ୍ରବର୍ତ୍ତୀ ରାଜାଙ୍କ କଥା ଶୁଣୁ । ସେମାନେ ସମଗ୍ର ଭାରତରେ ରାଜତ୍ୱ କରୁଥିଲେ । ସେ ଯୁଗ ସମ୍ବନ୍ଧରେ ଆମର ସ୍ପଷ୍ଟ ଜ୍ଞାନ ନାହିଁ । ତେଣୁ ସେତେବେଳେ ଭାରତ ବା ଭାରତବର୍ଷ କେତେ ଦୂର ବ୍ୟାପିଥିଲା, କହିପାରିବା ନାହିଁ । ପୁରାତନ ଶାସକମାନଙ୍କ ସମ୍ବନ୍ଧରେ ଆମେ ଯାହା ଗପ ଶୁଣୁ, ତାହା ଅତିରଞ୍ଜିତ ହୋଇପାରିଥାଏ । ସେ ଯାହାହେଉ ପଛକେ, ଚନ୍ଦ୍ରଗୁପ୍ତ ମୌର୍ଯ୍ୟଙ୍କ ସାମ୍ରାଜ୍ୟ ହିଁ ଭାରତର ଏକ ବିସ୍ତୃତ ଓ ଶକ୍ତିଶାଳୀ ସାମ୍ରାଜ୍ୟ ଥିଲା ବୋଲି ଆମେ ଇତିହାସରେ ଦେଖିପାରୁ । ଆମେ କ୍ରମେ ଦେଖିପାରିବା ଯେ ଏହା ଖୁବ୍ ଉନ୍ନତ ଓ ଶକ୍ତିଶାଳୀ ସରକାର ଥିଲା । ଏକଥା ମଧ୍ୟ ପରିଷ୍କାର ଜଣାପଡ଼ୁଛି ଯେ

ଏପରି ଏକ ସରକାର ଏବଂ ରାଜ୍ୟ ହଠାତ୍ ହୋଇଯାଇ ନ ଥିବ । ଅନେକ ଦିନ ପର୍ଯ୍ୟନ୍ତ କେତେ ଘଟଣା ଘଟିଥିବ, ଛୋଟ ଛୋଟ ରାଜ୍ୟସବୁ ଏକାଠି କରାଯାଇଥିବ ଏବଂ ଶାସନ ପରିଚାଳନାର କୌଶଳରେ ବି ଉନ୍ନତି କରାଯାଇଥିବ ।

ଚନ୍ଦ୍ରଗୁପ୍ତଙ୍କ ରାଜତ୍ୱବେଳେ ଆଲେକ୍‌ଜାଣ୍ଡରଙ୍କ ସେନାପତି ସେଲ୍ୟୁକସ୍ ଏସିଆ ମାଇନରଠାରୁ ଭାରତ ପର୍ଯ୍ୟନ୍ତ ଦେଶ ତାଙ୍କଠାରୁ ପାଇଥିଲେ । ସେଲ୍ୟୁକସ୍ ଦଳେ ସୈନ୍ୟ ନେଇ ସିନ୍ଧୁନଦୀ ଅତିକ୍ରମ କଲେ ଏବଂ ଭାରତ ଆକ୍ରମଣ କଲେ । ଏପରି ହଠାତ୍ ଆସିଥିବା ହେତୁରୁ ସେ ପରେ ଅନୁତାପ କରିଥିଲେ । ଚନ୍ଦ୍ରଗୁପ୍ତ ତାଙ୍କୁ ଖୁବ୍ ଭଲ ଭାବରେ ପରାସ୍ତ କଲେ ଏବଂ ସେଲ୍ୟୁକସ୍ ଯେଉଁ ବାଟରେ ଆସିଥିଲେ, ସେହି ବାଟରେ ଫେରିଗଲେ । କିଛି ଲାଭ କରିବା ପରିବର୍ତ୍ତେ ସେ ଗାନ୍ଧାର ବା ଆଫଗାନିସ୍ଥାନଠାରୁ କାବୁଲ ଓ ହେରାଟ୍ ପର୍ଯ୍ୟନ୍ତ ଚନ୍ଦ୍ରଗୁପ୍ତଙ୍କୁ ଛାଡ଼ିଦେଲେ । ଚନ୍ଦ୍ରଗୁପ୍ତ ମଧ୍ୟ ସେଲ୍ୟୁକସ୍‌ଙ୍କ ଝିଅକୁ ବିବାହ କଲେ । ଚନ୍ଦ୍ରଗୁପ୍ତଙ୍କ ସାମ୍ରାଜ୍ୟ ସମଗ୍ର ଉତ୍ତର ଭାରତ ଓ ଆଫଗାନି-ସ୍ଥାନର କେତେକାଂଶ—କାବୁଲଠାରୁ ବଙ୍ଗଳା ଦେଶ ଏବଂ ଆରବସାଗରରୁ ବଙ୍ଗୋପସାଗର ପର୍ଯ୍ୟନ୍ତ ବ୍ୟାପିଥିଲା । କେବଳ ଦକ୍ଷିଣ-ଭାରତ ତାଙ୍କ ଅଧୀନରେ ନ ଥିଲା । ଏହି ବିଶାଳ ସାମ୍ରାଜ୍ୟର ରାଜଧାନୀ ଥିଲା ପାଟଳୀପୁତ୍ର ।

ମେଗାସ୍ଥିନିସ୍ ନାମକ ଜଣେ ଲୋକଙ୍କୁ ସେଲ୍ୟୁକସ୍ ଦୂତ ରୂପେ ଚନ୍ଦ୍ରଗୁପ୍ତଙ୍କ ଦରବାରରେ ରଖିଥିଲେ । ମେଗାସ୍ଥିନିସ୍ ଏହି କାଳ ସମ୍ବନ୍ଧରେ ବେଶ ମଜାର ଲେଖାସବୁ ଲେଖିଯାଇଛନ୍ତି । ଆଉ ଗୋଟିଏ ବହି ଅଛି, ଯେଉଁଥିରେ ଚନ୍ଦ୍ରଗୁପ୍ତଙ୍କ ଶାସନ ସମ୍ବନ୍ଧରେ ପୂର୍ଣ୍ଣ ବିବରଣୀ ଦିଆଯାଇଛି । ଏହା ହେଉଛି କୌଟିଲ୍ୟଙ୍କ 'ଅର୍ଥଶାସ୍ତ୍ର' । କୌଟିଲ୍ୟ ଆଉ କେହି ନୁହନ୍ତି - ସେ ହେଉଛନ୍ତି ଆମର ପୁରୁଣା ବନ୍ଧୁ ଚାଣକ୍ୟ ବା ବିଷ୍ଣୁଗୁପ୍ତ ଏବଂ 'ଅର୍ଥଶାସ୍ତ୍ର' ଅର୍ଥ ହେଉଛି 'ଧନବିଜ୍ଞାନ' ।

ଏହି ଅର୍ଥଶାସ୍ତ୍ରରେ ଯେତେ ବିଷୟ ଲେଖାଅଛି ଏବଂ ଯେତେପ୍ରକାର ବିଷୟ ଆଲୋଚିତ ହୋଇଛି, ସେ ସମ୍ବନ୍ଧରେ ବେଶି କିଛି କହିବା ମୋ ପକ୍ଷରେ ସମ୍ଭବ ନୁହେଁ । ଏଥିରେ ରାଜାଙ୍କ କର୍ତ୍ତବ୍ୟ, ମନ୍ତ୍ରୀ ଓ ପରାମର୍ଶଦାତା, କାଉନ୍‌ସିଲ ବୈଠକ, ସରକାରୀ ବିଭାଗ, ବ୍ୟବସାୟ ଓ ବାଣିଜ୍ୟ, ସହର ଓ ଗ୍ରାମଶାସନ, ଆଇନ ଓ କଚେରି, ସାମାଜିକ ରୀତିନୀତି, ନାରୀର ଅଧିକାର, ବୃଦ୍ଧ ଓ ଅସହାୟଙ୍କ ଲାଳନପାଳନ, ବିବାହ ଓ ତ୍ୟାଗପତ୍ର, କରପ୍ରଥା, ସୈନ୍ୟ ଓ ନୌବିଭାଗ, ଯୁଦ୍ଧ ଓ ଶାନ୍ତି, କୂଟନୀତି, କୃଷି, ସୂତାକଟା ଓ ଲୁଗା-ବୁଣା, ଶିଳ୍ପୀ, ଅନୁମତିପତ୍ର ଏବଂ ଏପରି କି ଜେଲ ବିଷୟ ମଧ୍ୟ ଲେଖାଅଛି । ଏହିପରି ତାଲିକା ବଢ଼ାଇ ଦିଆଯାଇପାରେ; ମାତ୍ର କୌଟିଲ୍ୟଙ୍କ ବହିରେ ଥିବା ପ୍ରତ୍ୟେକ ଅଧ୍ୟାୟର ଶିରୋନାମା ଲେଖି ମୁଁ ଏ ଚିଠିଟି ପୂର୍ଣ୍ଣ କରିଦେବାକୁ ଚାହେଁ ନାହିଁ ।

ରାଜା ଅଭିଷେକ ସମୟରେ ଲୋକଙ୍କଠାରୁ ରାଜ୍ୟାଧିକାର ପାଇଲାବେଳେ ଲୋକଙ୍କର ସେବକ ବୋଲି ଏକ ଶପଥ ନେଉଥିଲେ । ରାଜାଙ୍କୁ କହିବାକୁ ହେଉଥିଲା— "ମୁଁ ଯଦି ତୁମ୍ଭମାନଙ୍କ ପ୍ରତି ଅତ୍ୟାଚାର କରେ, ତେବେ ମୁଁ ସ୍ୱର୍ଗ ପାଇବି ନାହିଁ, ମୋର ଜୀବନ ଶେଷ ହେବ ଏବଂ କୌଣସି ବଂଶଧର ରହିବେ ନାହିଁ ।" ରାଜାଙ୍କର ଦୈନନ୍ଦିନ କାର୍ଯ୍ୟ ଓ କାର୍ଯ୍ୟନିର୍ଘଣ୍ଟ ମଧ୍ୟ ଦିଆଯାଇଛି । କୌଣସି ଜରୁରୀ କାର୍ଯ୍ୟ ନିମନ୍ତେ ତାଙ୍କୁ ସବୁବେଳେ ପ୍ରସ୍ତୁତ ରହିବାକୁ ପଡୁଥିଲା; କାରଣ ରାଜାର ଇଚ୍ଛାନୁସାରେ ସାଧାରଣ କାର୍ଯ୍ୟ ଅପେକ୍ଷା କରିପାରିବ ନାହିଁ କି ବାଧା ପାଇବ ନାହିଁ । "ରାଜା ଶକ୍ତିଶାଳୀ ହେଲେ ତାହାର ପ୍ରଜା ବି ସେହିପରି ବଳବାନ୍ ହେବେ ।" "ପ୍ରଜାଙ୍କ ସୁଖରେ ହିଁ ତାର ସୁଖ, ତାଙ୍କର ମଙ୍ଗଳରେ ହିଁ ତାହାର ମଙ୍ଗଳ, ତାହାର ମନଇଚ୍ଛା ଯାହା ଭଲ ତାହା ହୋଇ ନ ପାରେ; ମାତ୍ର ପ୍ରଜା ଯାହା ଭଲ ବୋଲି ବିଚାରିବେ, ତାହାକୁ ସେ ଭଲ ବୋଲି କହିବ ।" ଆମର ଏହି ଦୁନିଆରୁ ରାଜାସବୁ ଲୋପ ହୋଇ ଯାଉଛନ୍ତି । ଆଉ ଅଳ୍ପ ଅଛନ୍ତି ଏବଂ ସେମାନେ ମଧ୍ୟ ଶୀଘ୍ର ଚାଲିଯିବେ । ଅବଶ୍ୟ ଏ କଥା ସ୍ମରଣ ରଖିବାର ବିଷୟ ଯେ ପୁରାତନ ଭାରତରେ ରାଜାର ଅର୍ଥ ଥିଲା – ଲୋକଙ୍କର ସେବକ । ରାଜାମାନଙ୍କର କୌଣସି ଦୈବୀ କ୍ଷମତା ନ ଥିଲା, କିଛି ଏକଛତ୍ର କ୍ଷମତା ନ ଥିଲା । ରାଜା କିଛି ଖରାପ ବ୍ୟବହାର କଲେ ତାଙ୍କୁ ଦୂର କରିଦେଇ ତା ସ୍ଥାନରେ ଆଉଜଣେ ରାଜା ବସାଇ ପାରିବାର କ୍ଷମତା ଲୋକଙ୍କର ଥିଲା । ଏହାହିଁ ଆଦର୍ଶ ଓ ସିଦ୍ଧାନ୍ତ ଥିଲା । ଅବଶ୍ୟ ଅନେକ ରାଜା ଏହି ଆଦର୍ଶରୁ ଟଳେ ଖସି ପଡୁଥିଲେ ଏବଂ ନିଜର ନିର୍ବୋଧତା ଦ୍ୱାରା ନିଜ ଦେଶ ଓ ପ୍ରଜାଙ୍କୁ ବିପଦରେ ପକାଉଥିଲେ ।

ଅର୍ଥଶାସ୍ତ୍ରରେ ମଧ୍ୟ ଗୋଟିଏ ପୁରୁଣା ନୀତି ଲେଖାଅଛି —"ଆର୍ଯ୍ୟ କେବେହେଁ ଦାସତ୍ୱ ବନ୍ଧନରେ ରହିପାରେ ନାହିଁ ।" ବୋଧହୁଏ ବାହାର ଦେଶରୁ ଆନୀତ କିମ୍ବା ଏହି ଦେଶବାସୀ କେତେକ ଦାସ ଥିଲେ; ମାତ୍ର ଆର୍ଯ୍ୟମାନେ ଯେପରି ଦାସ ନ ହୁଅନ୍ତି, ସେଥିପ୍ରତି ଦୃଷ୍ଟି ଦିଆଯାଉଥିଲା ।

ମୌର୍ଯ୍ୟ ସାମ୍ରାଜ୍ୟର ରାଜଧାନୀ ଥିଲା ପାଟଳୀପୁତ୍ର । ଏହା ଗୋଟିଏ ଜାକଜମକ-ପୂର୍ଣ୍ଣ ସହର—ଗଙ୍ଗାନଦୀର କୂଳରେ ୯ ମାଇଲ ପର୍ଯ୍ୟନ୍ତ ଏହାର ବିସ୍ତୃତି । ସେଥିରେ ୭୪ଟି ପ୍ରଧାନ ଫାଟକ ଏବଂ ଶହ ଶହ ଗ୍ରେଟ ଫାଟକ ଥିଲା । ଘରସବୁ ପ୍ରଧାନତଃ କାଠରେ ତିଆରି ହୋଇଥିଲା ଏବଂ ଘରପୋଡ଼ି ଡର ଥିବାରୁ ତାକୁ ବନ୍ଦ କରିବା ଲାଗି ଆଗରୁ ଖୁବ୍ ସତର୍କ ବ୍ୟବସ୍ଥା କରାଯାଉଥିଲା । ପ୍ରଧାନ ଗଳିମାନଙ୍କରେ ହଜାର ହଜାର ପାତ୍ର ସବୁବେଳେ ଜଳପୂର୍ଣ୍ଣ ହୋଇ ରହୁଥିଲା । ପ୍ରତ୍ୟେକ ଗୃହସ୍ଥଙ୍କୁ ମଧ୍ୟ ନିଆଁ ଲାଗିଲେ ବ୍ୟବହାର କରିବା ନିମନ୍ତେ ଜଳପୂର୍ଣ୍ଣ ପାତ୍ର ଏବଂ ସିଡ଼ି, କଣ୍ଟା ଏବଂ ଅନ୍ୟ ଦରକାରୀ ଜିନିଷ ସବୁ ରଖିବାକୁ ପଡୁଥିଲା ।

କୌଟିଲ୍ୟ ସହର ସମ୍ବନ୍ଧରେ ଯେଉଁ ଆଇନ୍‌ସବୁ ଲେଖିଛନ୍ତି, ତୁ ଶୁଣିଲେ ଖୁସି ହେବୁ । କେହି ଯଦି ରାସ୍ତାରେ ମଇଳା ପକାଉଥିଲା, ତେବେ ତାକୁ ଜୋରିମାନା ଦଣ୍ଡ ହେଉଥିଲା । ଯଦି କୌଣସି ଲୋକ ରାସ୍ତାରେ କାଦୁଅ ବା ପାଣି ଜମାଉଥିଲା, ତେବେ ମଧ୍ୟ ଶାସ୍ତି ପାଉଥିଲା । ଏହି ଆଇନ୍‌ସବୁ ଯଦି ବାସ୍ତବିକ ଚାଲୁ ହେଉଥାଏ, ତେବେ ପାଟଳୀପୁତ୍ର ସହର ଯେ ଖୁବ୍ ସୁନ୍ଦର ଓ ପରିଷ୍କାର-ପରିଚ୍ଛନ୍ନ ଥିବ; ଏଥିରେ ସନ୍ଦେହ ନାହିଁ । ଆମ ମ୍ୟୁନିସିପାଲିଟିମାନଙ୍କରେ ଏହିପରି ଆଇନ୍‌ସବୁ କରାଯାଆନ୍ତା କି ?

ପାଟଳୀପୁତ୍ର ସହର ପରିଚାଳନା ଲାଗି ଗୋଟିଏ ସଭା ଥିଲା । ଏହା ଲୋକଙ୍କଦ୍ୱାରା ନିର୍ବାଚିତ ହେଉଥିଲା । ଏଥିରେ ୩୦ ଜଣ ସଭ୍ୟ ରହୁଥିଲେ ଏବଂ ପାଞ୍ଚ ଜଣ ଲେଖାଏଁ ସଭ୍ୟ ଥାଇ ଛଅଟି ସମିତି ଥିଲା । ଏହି ସମିତିଗୁଡ଼ିକ ସହରର ବ୍ୟବସାୟ ଓ ହସ୍ତଶିଳ୍ପ, ପଥିକ ଓ ଯାତ୍ରୀଙ୍କ ଲାଗି ବ୍ୟବସ୍ଥା, ଟିକସ ବଢ଼ାଇବା ଉଦ୍ଦେଶ୍ୟରେ ଜନ୍ମ ଓ ମୃତ୍ୟୁ, ଆମଦାନି ଓ ଅନ୍ୟ ବିଷୟସବୁ ଦେଖୁଥିଲେ । ମ୍ୟୁନିସିପାଲ୍ କାଉନ୍‌ସିଲ ପରିଷ୍କାର-ପରିଚ୍ଛନ୍ନତା, ଅର୍ଥସମସ୍ୟା, ଜଳ ଯୋଗାଇବା, ବଗିଚା ଓ ସାଧାରଣ କୋଠାବାଡ଼ି ବିଷୟ ଦେଖୁଥିଲା ।

ନ୍ୟାୟ ଓ ଅପିଲ ଶୁଣିବା ଲାଗି ପଞ୍ଚାୟତସବୁ ବି ରହୁଥିଲା । ଦୁର୍ଭିକ୍ଷ ସାହାଯ୍ୟ ନିମନ୍ତେ ବିଶେଷ ବ୍ୟବସ୍ଥା କରାହେଉଥିଲା ଏବଂ ଦୁର୍ଭିକ୍ଷ ସମୟ ଲାଗି ରାଜ୍ୟର ସବୁ ଗୋଲାଘର ରକ୍ଷିତ ହେଉଥିଲା ।

୨୨୦୦ ବର୍ଷ ପୂର୍ବେ ଚାଣକ୍ୟ ଓ ଚନ୍ଦ୍ରଗୁପ୍ତ ଯେଉଁ ମୌର୍ଯ୍ୟ ସାମ୍ରାଜ୍ୟ ସ୍ଥାପନ କରିଥିଲେ, ତାହାର ଅବସ୍ଥା ଏପରି ଥିଲା । କୌଟିଲ୍ୟ ଓ ମେଗାସ୍ଥିନିସ୍ ଯାହା ଲେଖିଛନ୍ତି, ସେଥିରୁ କେତେକ କଥା ମୁଁ ଲେଖିଲି । ଏଥିରୁ ବି ସେ କାଳର ଉତ୍ତର-ଭାରତ ସମ୍ବନ୍ଧରେ ତୋର ମୋଟାମୋଟି ଧାରଣା ହେବ । ରାଜଧାନୀଠାରୁ ଆରମ୍ଭ କରି ଅନ୍ୟ ବଡ଼ ବଡ଼ ସହର ଓ ସାମ୍ରାଜ୍ୟର ହଜାର ହଜାର ସହର ଓ ଗ୍ରାମ ପର୍ଯ୍ୟନ୍ତ ସାରା ଦେଶଟିରେ ଗୋଟିଏ ଜୀବନ ସଞ୍ଚାର ହେଉଥିଲା । ସାମ୍ରାଜ୍ୟର ଗୋଟିଏ ଭାଗରୁ ଅନ୍ୟ ଅଂଶ ପର୍ଯ୍ୟନ୍ତ ବଡ଼ ବଡ଼ ରାସ୍ତା ଥିଲା । ପ୍ରଧାନ ରାଜପଥ ପାଟଳୀପୁତ୍ର ଦେଇ ଉତ୍ତର-ପଶ୍ଚିମ ସୀମାନ୍ତ ପର୍ଯ୍ୟନ୍ତ ଯାଇଥିଲା । ଅନେକ କେନାଲ ଥିଲା ଏବଂ ତାକୁ ଚଳାଇବା ପାଇଁ ଗୋଟିଏ ବିଶେଷ ଜଳସେଚନ ବିଭାଗ ଥିଲା ଏବଂ ବୋଟ, ଜାହାଜ, ବନ୍ଦର, ନୌକା ଓ ପୋଲସବୁ ପ୍ରତି ଦୃଷ୍ଟି ଦେବା ନିମନ୍ତେ ଏକ ନୌବିଭାଗ ବି ଥିଲା । ଜାହାଜସବୁ ସମୁଦ୍ରରେ ବର୍ମା ଓ ଚୀନ୍ ଦେଶକୁ ଯାଉଥିଲା ।

ଚନ୍ଦ୍ରଗୁପ୍ତ ଏହି ସାମ୍ରାଜ୍ୟରେ ୨୪ ବର୍ଷ ପର୍ଯ୍ୟନ୍ତ ରାଜୁତି କରିଥିଲେ । ସେ ଖ୍ରୀଷ୍ଟପୂର୍ବ ୨୯୬ରେ ମଲେ । ଆମେ ଆଉ ଥରେ ପୁଣି ମୌର୍ଯ୍ୟ ସାମ୍ରାଜ୍ୟ ସମ୍ବନ୍ଧରେ ଆଲୋଚନା କରିବା ।

## ୧୯ । ତିନି ମାସ

ଏସ୍. ଏସ୍. "କାଣ୍ଟେ ରସ୍ସୋ"

ଏପ୍ରିଲ ୨୧, ୧୯୩୨

ମୁଁ ତୋ ପାଖକୁ ଅନେକ ଦିନ ତଳେ ଲେଖିଥିଲି । ପ୍ରାୟ ତିନି ମାସ ଗତ ହୋଇଯାଇଛି । ଏହି ତିନି ମାସ ଭିତରେ କେତେ ଦୁଃଖ, କେତେ କଷ୍ଟ ଓ କେତେ କ୍ଲାନ୍ତି ଘଟିଛି । ଭାରତରେ ଏହି ତିନି ମାସରେ କେତେ ପରିବର୍ତ୍ତନ ହୋଇଯାଇଛି ଏବଂ ଆମ ନିଜ କୁଟୁମ୍ବରେ ବି ପରିବର୍ତ୍ତନ ହୋଇଯାଇଛି । କିଛି ଦିନ ସକାଶେ ଭାରତରେ ସତ୍ୟାଗ୍ରହ ବା ଆଇନ-ଅମାନ୍ୟ ଆନ୍ଦୋଳନ ବନ୍ଦ ହୋଇଛି; କିନ୍ତୁ ଆମ ଆଗରେ ଯେ ସମସ୍ୟାମାନ ରହିଛି, ତାହାର ସମାଧାନ ହେବା ସହଜ ନୁହେଁ । ଆମ ପରିବାରର ମୁରବି ଗ୍ଲଲିଯାଇଛନ୍ତି । ସେ ଆମକୁ ଉତ୍ସାହ ଓ ବଳ ଦେଉଥିଲେ । ତାଙ୍କ ଲାଳନପାଳନରେ ଆମେ ବଢ଼ିଲେ ଏବଂ ଆମର ମାତା ଭାରତବର୍ଷ ପ୍ରତି ଆମର ଯଥାକର୍ତ୍ତବ୍ୟ କରିବାକୁ ଶିଖିଲେ ।

ନୈନି ଜେଲ୍‌ରେ ସେହିଦିନ କଥା ମୋର ଭଲରୂପେ ମନେ ଅଛି । ଜାନୁୟାରି ୨୬ ତାରିଖ ଦିନ ମୋର ପୂର୍ବ ଅଭ୍ୟାସ ଅନୁସାରେ ଅତୀତ ଇତିହାସ ସମ୍ବନ୍ଧରେ ତୋତେ ଲେଖିବା ପାଇଁ ବସିଥିଲି । ଠିକ୍ ଦିନକ ପୂର୍ବରୁ ମୁଁ ତୋତେ ଚନ୍ଦ୍ରଗୁପ୍ତ ଓ ସେ ଯେଉଁ ମୌର୍ଯ୍ୟ ସାମ୍ରାଜ୍ୟ ସ୍ଥାପନ କରିଥିଲେ, ସେ ସମ୍ବନ୍ଧରେ ଲେଖିଥିଲି । ମୁଁ ସେହି ସମ୍ବନ୍ଧରେ ତୋତେ ଲେଖିବି ବୋଲି କହିଥିଲି ଏବଂ ଚନ୍ଦ୍ରଗୁପ୍ତ ମୌର୍ଯ୍ୟଙ୍କ ପରେ ଯେଉଁସବୁ ରାଜା ହେଲେ, ତାଙ୍କ କଥା ଲେଖିବାକୁ କହିଥିଲି । ତାଙ୍କ ପରେ ଅଶୋକ ଭାରତ-ଆକାଶରେ ଗୋଟିଏ ଉଜ୍ଜ୍ୱଳ ତାରକା ରୂପେ ଦେଖାଦେଲେ ଏବଂ ଅମର ସ୍ମୃତି ରଖି ମରିଯାଇଥିଲେ । ମୁଁ ଅଶୋକଙ୍କ କଥା ଭାବିଲାବେଳକୁ ମୋ ମନ ବୁଲି ବୁଲି ଆସି ବର୍ତ୍ତମାନରେ ଅର୍ଥାତ୍ ଜାନୁୟାରି ୨୬ ତାରିଖରେ, ମୁଁ ଯେ କାଗଜ କଲମ ଧରି ତୋତେ ଲେଖିବାକୁ ବସିଥିଲି, ସେଠାରେ ପହଞ୍ଚିଲା । ଏହା

ଆମମାନଙ୍କ ପକ୍ଷରେ ଗୋଟିଏ ମହତ୍ତ୍ୱ ଦିବସ । ବର୍ଷକ ପୂର୍ବେ ଭାରତ ସାରା କି ଗ୍ରାମ, କି ସହରର ସବୁଠି ଆମେ ସ୍ୱାଧୀନତା ଦିବସ ବା ପୂର୍ଣ୍ଣ ସ୍ୱରାଜ ଦିବସ ପାଳନ କରିଥିଲେ ଏବଂ ଲକ୍ଷ ଲକ୍ଷ ଲୋକ ସ୍ୱାଧୀନତା ଶପଥ ଗ୍ରହଣ କରିଥିଲେ । ତାପରେ ଏକ ବର୍ଷ ବିତିଯାଇଛି—ସେ ବର୍ଷକ ଭିତରେ ସଂଗ୍ରାମ ହୋଇଛି, କଷ୍ଟ ହୋଇଛି ଓ ବିଜୟ ହୋଇଛି ଏବଂ ପୁଣି ଭାରତ ସେ ଦିନଟି ପାଳନ କରିବାକୁ ଯାଉଥିଲା । ମୁଁ ନୈନି ଜେଲ୍‌ର ୬ ନମ୍ବର ଘରେ ବସି ସେଦିନ ଦେଶସାରା ଯେଉଁସବୁ ସଭା, ଶୋଭାଯାତ୍ରା, ଲାଠିମାଡ଼ ଓ ଗିରଫଦାରି ହୋଇଥିବ, ସେ କଥା ଭାବୁଥିଲି । ମୁଁ ଅତି ଗର୍ବ, ଆନନ୍ଦ ଓ ଉତ୍ସାହ ସହକାରେ ଏ କଥା ଚିନ୍ତା କରୁଥିଲି, ଏପରି ସମୟରେ ହଠାତ୍ ମୋର ଚିନ୍ତାଧାରା ବନ୍ଦ ହୋଇଗଲା । ନୈନି ଜେଲ୍ ବାହାରୁ ମୋ ପାଖରେ ଆସି ଖବର ପହଞ୍ଚିଲା ଯେ ଦାଦୁ ଭୀଷଣ ବେମାର ଅଛନ୍ତି ଏବଂ ତାଙ୍କ ପାଖରେ ଶୀଘ୍ର ପହଞ୍ଚିବା ଲାଗି ମୋତେ ଖଲାସ କରି ଦିଆଯିବ । ମନରେ ଉଦ୍‌ବେଗ ଜାତ ହେଲା ଏବଂ ମୁଁ ଅନ୍ୟସବୁ ଚିନ୍ତା ଭୁଲିଗଲି । ତୋତେ ଯେଉଁ ଚିଠିଲେଖା ଆରମ୍ଭ କରିଥିଲି, ତାହା ବନ୍ଦ କଲି—ନୈନି ଜେଲ ଛାଡ଼ି ଆନନ୍ଦ ଭବନକୁ ଆସିଲି ।

ଦାଦୁ ଆମମାନଙ୍କୁ ଛାଡ଼ି ଚାଲିଯିବାର ଦଶ ଦିନ ପୂର୍ବରୁ ମୁଁ ତାଙ୍କ ପାଖରେ ଥିଲି । ଦଶ ଦିନ ଓ ଦଶ ରାତି ତାଙ୍କର ଦୁଃଖ ଓ ଯନ୍ତ୍ରଣା ଏବଂ ସେ ଯମଦୂତ ସାଙ୍ଗରେ ଯେଉଁ ଯୁଦ୍ଧ କରୁଥିଲେ, ତାହା ଜଗିବସି ଦେଖିଲି । ତାଙ୍କ ଜୀବନରେ ସେ ଅନେକ ଲଢ଼ାଇ କରିଛନ୍ତି ଏବଂ ଅନେକଥର ଜୟଲାଭ କରିଛନ୍ତି । ଆତ୍ମସମର୍ପଣ କଅଣ ସେ ଜାଣି ନ ଥିଲେ ଏବଂ ମୃତ୍ୟୁମୁହଁରେ ପଡ଼ି ସୁଦ୍ଧା ସେ ସହଜରେ ପଛକୁ ହଟି ନ ଥିଲେ । ତାଙ୍କର ଏ ଅନ୍ତିମ ସଂଗ୍ରାମ ଦେଖୁଥିଲାବେଳେ ମୁଁ ଯାହାଙ୍କୁ ଏତେ ଭଲ ପାଏ, ତାଙ୍କୁ ରକ୍ଷା କରିବାରେ ସମ୍ପୂର୍ଣ୍ଣ ଅସମର୍ଥ ଜାଣିପାରି ବଡ଼ ଉତ୍କଣ୍ଠାରେ ଥାଏ । ଅନେକ ବର୍ଷ ତଳେ ଏଡ଼୍‌ଗାର ଏଲାନ ପୋ ନାମକ ଜଣେ ଲେଖକଙ୍କର ଗୋଟିଏ ଲେଖା ମୁଁ ପଢ଼ିଥିଲି ଏବଂ ତହିଁର କେତୋଟି ଧାଡ଼ି ମୋର ମନେପଡ଼ିଲା—"ମଣିଷ ନିଜର ଦୁର୍ବଳ ମନର ଦୁର୍ବଳତା ଛଡ଼ା ଦେବତା ଏପରି କି ମୃତ୍ୟୁ ପରେ ସୁଦ୍ଧା ମୁଣ୍ଡ ନୁଆଁଏ ନାହିଁ ।"

ଫେବୃଆରୀ ୬ ତାରିଖ ଭୋର ସମୟରେ ସେ ଆମକୁ ଛାଡ଼ି ଚାଲିଗଲେ । ସେ ପତାକାକୁ ଖୁବ୍ ଭଲ ପାଉଥିବାରୁ ସେଥିରେ ତାଙ୍କ ଶରୀରକୁ ଘୋଡ଼ାଇ ଆମେ ଲକ୍ଷ୍ନୌରୁ ଆନନ୍ଦ ଭବନକୁ ଆଣିଲୁ । କେତେ ଘଣ୍ଟା ଭିତରେ ଏହା ପାଉଁଶରେ ପରିଣତ ହେଲା ଏବଂ ଗଙ୍ଗାନଦୀ ଏହି ଅମୂଲ୍ୟ ବିଭୂତିକୁ ସମୁଦ୍ରକୁ ଭସାଇନେଲା ।

ଲକ୍ଷ ଲକ୍ଷ ଲୋକ ତାଙ୍କଲାଗି ଶୋକ କରିଛନ୍ତି । ଆମ କଥା ତ ଛାଡ଼; ଆମେ ତ ତାଙ୍କର ସନ୍ତାନ ତାଙ୍କର ମାଂସହାଡ଼ରେ ଆମେ ଗଢ଼ା । ନୂଆ ଆନନ୍ଦଭବନ, ଯାହାକୁ

ସେ ଏତେ ଆନନ୍ଦ ଓ ଯତ୍ନରେ ତିଆରି କରିଥିଲେ, ତାହା ନିଃସଙ୍ଗ ହୋଇପଡ଼ିଛି ଏବଂ ସେଥିରେ ଜୀବନ ନ ଥିଲା ପରି ବୋଧ ହେଉଛି । ଆମେ ଏହାର ବାରଣ୍ଡାରେ ଆସ୍ତେ ଆସ୍ତେ ପାଦ ପକାଇଲାବେଳେ ଯେ ତିଆରି କରିଥିଲେ, ତାଙ୍କ କଥା ସବୁବେଳେ ମନେ ପକାଉ ।

ଆମେ ତାଙ୍କ ଲାଗି ଶୋକ କରୁ ଏବଂ ପ୍ରତ୍ୟେକ ପଦକ୍ଷେପରେ ତାଙ୍କୁ ହରାଇଥିବା କଥା ଅନୁଭବ କରୁ । ସମୟ ଗତହେବା ସଙ୍ଗେ ସଙ୍ଗେ ଦୁଃଖ ଉଣା ହେଲା ପରି କିମ୍ବା ତାଙ୍କ ଅନୁପସ୍ଥିତି ବେଶି ସହ୍ୟ ହେଲାପରି ମନେ ହେଉ ନାହିଁ । କିନ୍ତୁ ପରେ ମୁଁ ଭାବେ ଯେ ଆମର ଏପରି ହେବାଟା ସେ ପସନ୍ଦ କରୁ ନ ଥିବେ । ଆମେ ଦୁଃଖିତ ହେବାଟା ସେ ପସନ୍ଦ କରୁ ନ ଥିବେ, ବରଂ ସେ ଯେପରି ଏପରି ଅବସ୍ଥାର ସମ୍ମୁଖୀନ ହୋଇ ତାକୁ ଜୟ କରୁଥିଲେ, ସେହିପରି ଆମେ ସମ୍ମୁଖୀନ ହେଲେ ସେ ଖୁସିହେବେ । ସେ ଯେଉଁ କାମ ଅସମ୍ପୂର୍ଣ୍ଣ ରଖି ଯାଇଛନ୍ତି, ତାକୁ ଆମେ ଚଳାଉ, ଏହା ତାଙ୍କର ଇଚ୍ଛା ଥିବ । ଆମ ଆଗରେ କାର୍ଯ୍ୟ ପଡ଼ି ରହିଥିଲା ବେଳେ ଏବଂ ଭାରତର ସ୍ୱାଧୀନତା ଲାଗି ଆମର ସେବା ଦରକାର ଥିଲାବେଳେ ଆମେ କିପରି ବିଶ୍ରାମ ନେବା ବା ବୃଥା ଦୁଃଖରେ କାଳ କାଟି ପାରିବା ! ଭାରତର ସ୍ୱାଧୀନତା ଲାଗି ହିଁ ସେ ଜୀବନ ଦେଲେ । ସେହି ଉଦ୍ଦେଶ୍ୟ ଲାଗି ଆମେ ବଞ୍ଚିରହିବା, ଲଢ଼ିବା ଏବଂ ଦରକାର ପଡ଼ିଲେ ପ୍ରାଣ ଦେବା । ଯେତେହେଲେ ଆମେ ତ ତାଙ୍କର ସନ୍ତାନ ଏବଂ ତାଙ୍କର ତେଜ, ସାମର୍ଥ୍ୟ ଓ ଟାଣପଣ ତ ପୁଣି ଆମଠାରେ କିଛି ଅଛି !

ମୁଁ ତୋତେ ଏହି ଚିଠି ଲେଖୁଥିଲାବେଳେ ମୋ ଆଗରେ ଗମ୍ଭୀର ନୀଳବର୍ଣ୍ଣର ଆରବସାଗର ପଡ଼ିରହିଛି ଏବଂ ଅନ୍ୟ ପାଖରେ ଅନେକ ଦୂରରେ ଭାରତ ଉପକୂଳ ମୁଁ ଛାଡ଼ିଯାଉଛି । ଏହି ବିଶାଳ ଓ ଅପରିମେୟ ବିସ୍ତୃତ ସହ ନୈନୀ ଜେଲର ଛୋଟଘର, ବଡ଼ ପାଚେରୀ, ଯେଉଁଠି ବସି ମୁଁ ତୋତେ ଚିଠିସବୁ ଲେଖୁଥିଲି, ତାକୁ ତୁଳନା କରିବାରେ ଲାଗିଲି । ଦୂରରେ ଆକାଶ ସହିତ ସମୁଦ୍ର ମିଶିଗଲା ପରି ଦେଖାଯାଉଛି; କିନ୍ତୁ ଜେଲରେ ଯେଉଁ ପାଚେରୀ ଘେରକଡ଼ରେ ଯେସବୁ ହୋଇଥାଏ, ତାହା ହିଁ ବନ୍ଦୀର ଆକାଶ । ଆମ ଭିତରୁ ଜେଲରେ ଥିବା ଅନେକ ଲୋକ ବର୍ତ୍ତମାନ ଖଲାସ ହୋଇଗଲେଣି ଏବଂ ବାହାରର ମୁକ୍ତବାୟୁ ସେବନ କରୁଛନ୍ତି । ଆହୁରି ଅନେକ ସାଥୀ ଆଜିସୁଦ୍ଧା ସେହି ଛୋଟ ନିର୍ଜନ କୋଠରୀରେ ଆବଦ୍ଧ ଅଛନ୍ତି ଏବଂ ସମୁଦ୍ରର ଦୃଶ୍ୟ, ଭୂମି ଓ ଆକାଶ ଦେଖିବାରୁ ବଞ୍ଚିତ ହୋଇଛନ୍ତି । ଭାରତ ବର୍ତ୍ତମାନ ସୁଦ୍ଧା ଜେଲ୍‌ଖାନାରେ ଅଛି ଏବଂ ତାହାର ସ୍ୱାଧୀନତା ଏବେ ସୁଦ୍ଧା ଆସିନାହିଁ । ଭାରତ ସ୍ୱାଧୀନ ନ ହେଲେ ଆମର ସ୍ୱାଧୀନତାର ମୂଲ୍ୟ ବା କ'ଣ ?

# ୨୦ । ଆରବସାଗର

ଏମ୍. ଏସ୍. କାକୋଭିସ୍ମା,
ଏପ୍ରିଲ ୨୨, ୧୯୩୧

ବଡ଼ ଆଶ୍ଚର୍ଯ୍ୟର କଥା ଯେ ଆମେ ବମ୍ବେଠାରୁ କଲମ୍ବୋ ଏହି କାକୋଭିସ୍ମା ଜାହାଜରେ ଯାଉଥାଏଁ । ଗୃର ବର୍ଷ ପୂର୍ବେ ଭେନିସ୍‌ରେ ଏହି କାକୋଭିସ୍ମା ଜାହାଜ ପହଞ୍ଚିବା ବେଳକୁ ମୁଁ କିପରି ଅପେକ୍ଷା କରିଥିଲି, ଏବେସୁଦ୍ଧା ମନେଅଛି । ବାପୁ ଜାହାଜରେ ଥିଲେ ଏବଂ ମୁଁ ସୁଇଜରଲେଣ୍ଡର ବେକ୍‌ସଠାରେ ସ୍କୁଲରେ ତୋତେ ଛାଡ଼ି ବାପୁଙ୍କ ସହିତ ଦେଖାକରିବା ଲାଗି ଭେନିସ୍ ଯାଇଥିଲି । ପୁଣି ଥରେ କେତେକ ମାସ ପରେ ଏହି କାକୋଭିସ୍ମା ଜାହାଜରେ ବାପୁ ଇଉରୋପରୁ ଭାରତକୁ ଫେରିଲେ ଏବଂ ମୁଁ ବମ୍ବେରେ ଅପେକ୍ଷା କରିଥିଲି । ସେହି ଯାତ୍ରାବେଳେ ତାଙ୍କ ସହିତ ଥିବା କେତେକ ଯାତ୍ରୀ ବର୍ତ୍ତମାନ ଆମ ସାଙ୍ଗରେ ଅଛନ୍ତି ଓ ତାଙ୍କ ସମ୍ବନ୍ଧରେ କେତେ କଥା କହୁଛନ୍ତି ।

ମୁଁ କାଲି ଗତ ତିନି ମାସର ପରିବର୍ତ୍ତନ ସମ୍ବନ୍ଧରେ ତୋ ପାଖକୁ ଲେଖିଥିଲି । ଗତ କେତେ ସପ୍ତାହ ଭିତରେ ଘଟିଥିବା ଗୋଟିଏ ଘଟଣା ତୋର ମନେରଖିବା ଉଚିତ୍ । ଭାରତ ଏହି ଘଟଣାଟିକୁ ଅନେକଦିନ ପର୍ଯ୍ୟନ୍ତ ସ୍ମରଣ କରୁଥିବ । ଏକ ମାସ ପୂରିବାକୁ ପ୍ରାୟ କିଛିଦିନ ବାକି ଥିବ—କାନପୁର ସହରରେ ଭାରତର ଜଣେ ପ୍ରସିଦ୍ଧ ବୀର ଗଣେଶଶଙ୍କର ବିଦ୍ୟାର୍ଥୀ ମରିଯାଇଥିଲେ ଅନ୍ୟମାନଙ୍କୁ ରକ୍ଷା କରିବାକୁ ଗଲାବେଳେ ତାଙ୍କୁ ହତ୍ୟା କରାଗଲା । ଗଣେଶଜୀ ମୋର ଜଣେ ପ୍ରିୟବନ୍ଧୁ ଏବଂ ନିଃସ୍ୱାର୍ଥପର ସାଥୀ । ତାଙ୍କ ସହିତ କାର୍ଯ୍ୟ କରିବାର ସୁଯୋଗ ମୋର ଘଟିଥିଲା । ଗଲା ମାସରେ କାନପୁର ସହରରେ ଯେତେବେଳେ ପାଗଳାମି ଦେଖାଦେଲା ଏବଂ ଭାରତୀୟ ଭାରତୀୟଙ୍କୁ ମାରି ପକାଇଲେ, ସେତେବେଳେ ଗଣେଶଜୀ ନିଜେ ସେ ହଟ୍ଟଗୋଳ ଭିତରକୁ ଡେଇଁପଡ଼ିଲେ—ନିଜ ଦେଶ ଲୋକଙ୍କୁ ମାରିବା ଲାଗି ନୁହେଁ, ରକ୍ଷାକରିବା ନିମନ୍ତେ । ସେ ଶହ ଶହ ଲୋକଙ୍କୁ ରକ୍ଷାକଲେ; ନିଜକୁ ରକ୍ଷା କରିପାରିଲେ ନାହିଁ-- ସେ ନିଜକୁ ରକ୍ଷାକରିବା ଲାଗି ଚେଷ୍ଟା ବି କରି ନ ଥିଲେ । ଯେଉଁମାନଙ୍କୁ ରକ୍ଷାକରିବା ଲାଗି ସେ ଯାଇଥିଲେ, ସେହିମାନଙ୍କ ହାତରେ ହିଁ ତାଙ୍କର ମୃତ୍ୟୁ ଘଟିଲା । କାନପୁର ତଥା ଆମ ପ୍ରଦେଶ ଏକ ଉଜ୍ଜ୍ୱଳ ନକ୍ଷତ୍ର ହରାଇଛି ଏବଂ ଆମେସବୁ ଜଣେ ପ୍ରିୟ ଓ ଜ୍ଞାନୀ ବନ୍ଧୁଙ୍କୁ ହରାଇଛୁ; କିନ୍ତୁ ତାଙ୍କର କି ଗୌରବମୟ ମୃତ୍ୟୁ ! ଲୋକମାନଙ୍କର ପାଗଳାମିବେଳେ ଧୀର ଶାନ୍ତ ଭାବରେ ସେଠାରେ ପହଞ୍ଚିଲେ ଏବଂ ଏପରି କି ବିପଦ ଓ ମୃତ୍ୟୁ ଭୟବେଳେ ନିଜ କଥା ନ ଭାବି ସେ ଅନ୍ୟମାନଙ୍କ କଥା ଏବଂ କିପରି ସେମାନଙ୍କୁ ରକ୍ଷା କରିବେ, ସେହି କଥା ଭାବୁଥିଲେ ।

ତିନି ମାସର ପରିବର୍ତ୍ତନ ! ସମସ୍ତ ହେଉଛି ସମୁଦ୍ରର ଗୋଟିଏ ପାଣିଫୋପା କିମ୍ବା ଏକ ଜାତିର ଜୀବନରେ ଏକ ସେକେଣ୍ଡ ପରି ! ତିନି ସପ୍ତାହ ପୂର୍ବେ ସିନ୍ଧୁର ସିନ୍ଧୁନଦୀ ଉପକୂଳରେ ମହେଞ୍ଜୋଦାରୋର ଭଗ୍ନାବଶେଷ ଦେଖିବାକୁ ମୁଁ ଯାଇଥିଲି । ତୁ ସେତେବେଳେ ମୋ ସାଙ୍ଗରେ ନ ଥିଲୁ । ମୁଁ ଦେଖିଲି ସତେ କି ମାଟିତଳୁ ଏକ ବଡ଼ ସହର ବାହାରିଆସୁଛି । ଖୁବ୍ ଦମ୍ଭ ଇଟାରେ ଗଢ଼ା ଘର ଓ ଓସାରିଆ ରାସ୍ତାମାନ ତିଆରି ହୋଇଛି । ଏହା ୫୦୦୦ ବର୍ଷ ପୂର୍ବେ ହୋଇଥିଲା ବୋଲି କହନ୍ତି । ଏହି ପୁରୁଣା ସହର ଭିତରେ ସୁନ୍ଦର ଗହଣା ଓ ମାଟିବାସନ ଥିବାର ମୁଁ ଦେଖିଲି । ମୁଁ ଅନୁମାନ କରିଗଲି— କିପରି ଲୋକେ ପୋଷାକ ପିନ୍ଧି ଏହି ରାସ୍ତା, ଗଳିମାନଙ୍କରେ ବୁଲୁଥିବେ; ପିଲାମାନେ କିପରି ଖେଳୁଥିବେ; ବଜାରରେ ବ୍ୟବସାୟ ବାଣିଜ୍ୟ କିପରି ଚାଲୁଥିବ; ଲୋକେ ଦଳ ଦଳ ହୋଇ କିପରି ଖର୍ଦ୍ଦୀ ବିକ୍ରୀ କରୁଥିବେ ଏବଂ ମନ୍ଦିରଘଣ୍ଟା କିପରି ବାଜୁଥିବ, ଇତ୍ୟାଦି ।

ଏହି ୫୦୦୦ ବର୍ଷ ଧରି ଭାରତ ରହିଆସିଛି ଏବଂ ଏଥିଭିତରେ ଅନେକ ପରିବର୍ତ୍ତନ ଘଟିଛି । ଆମର ଏହି ମାତା ଏପରି ପୁରାତନ ହୋଇ ମଧ୍ୟ କିପରି ଯୁବତୀବ-ପୂର୍ଣ୍ଣା ଓ ସୁନ୍ଦରୀ ହୋଇ ରହିଛି, ଏହା ବେଳେବେଳେ ଭାବି ମୁଁ ଆଶ୍ଚର୍ଯ୍ୟ ହୁଏ । ସେ ତାର ସନ୍ତାନଙ୍କର ଅସ୍ଥିରତା, ତାଙ୍କର ଶ୍ରେଷ୍ଠ ଶ୍ରେଷ୍ଠ ଜଞ୍ଜାଳ, ସୁଖ ଓ ଦୁଃଖ—ଯାହା ଦିନେ ରହିଲେ ଅନ୍ୟ ଦିନକୁ ରହୁନାହିଁ—ତାକୁ ଦେଖି ହସୁ ନ ଥିବ କି !

## ୨୧ । ଅବକାଶ ଏବଂ ସ୍ୱପ୍ନଯାତ୍ରା

ମାର୍ଚ୍ଚ ୨୬, ୧୯୩୨

ନୈନି ଜେଲ୍‌ରୁ ତୋ ପାଖକୁ ଅତୀତ ଇତିହାସ କଥାଦେଇ ଅଳ୍ପକେ ୧୪ ମାସ ତଳେ ଲେଖିଥିଲି । ତାର ତିନିମାସ ପରେ ମୁଁ ଆରବସାଗରରୁ ତୋ ନିକଟକୁ ଦୁଇଟି ଶ୍ରେଷ୍ଠ ଚିଠି ଲେଖିଥିଲି । ଆମେ ସେତେବେଳେ ଫାକୋଭିସ୍ୱା ଜାହାଜରେ ଚଢ଼ି ଲଙ୍କା ଯାଇଥିଲୁ । ତେବେ ତ ମୁଁ ଲେଖୁଥାଏ— ମୋ ସାମନାରେ ବିରାଟ ସାଗର ବ୍ୟାପିଥାଏ ଏବଂ ମୋ କ୍ଷୁଧିତ ଚକ୍ଷୁ ସେଥିପ୍ରତି ଦୃଷ୍ଟି ପକାଉଥାଏ; ତଥାପି ସନ୍ତୋଷ ପାଉ ନ ଥାଏ । ତାପରେ ଆମେ ଲଙ୍କାରେ ପହଞ୍ଚିଲୁ । ସେଠାରେ ଏକ ମାସ ଖୁବ୍ ଆନନ୍ଦରେ କଟାଇଲୁ ଓ ଆମର କଷ୍ଟ ଏବଂ ଜଞ୍ଜାଳ ଭୁଲିଯିବାକୁ ଚେଷ୍ଟାକଲୁ । ଏହି ସୁନ୍ଦର ଦ୍ୱୀପର ଚାରିଆଡ଼େ ଆମେ ଖୁବ୍ ବୁଲିଲୁ । ଏହାର ପ୍ରାକୃତିକ ସୌନ୍ଦର୍ଯ୍ୟ ଓ କମନୀୟତା ଦେଖି ବିସ୍ମିତ ହୋଇଥିଲୁ । କାଣ୍ଡି, ନୁଆରା, ଏଲିୟା ଓ ପ୍ରାଚୀନ ଗୌରବର ଭଗ୍ନାବଶେଷ ଓ ଚହ୍ଲରେ

ଭରି ଅନୁରାଧାପୁର ପ୍ରଭୃତି ଯେଉଁସବୁ ସ୍ଥାନ ଦେଖିଥିଲୁ ସେ ବିଷୟରେ ଭାବିଲେ କି ଆନନ୍ଦ ହୁଏ ! କିନ୍ତୁ ମୋର ସବୁଠାରୁ ଆନନ୍ଦ ହୁଏ ସେହି ଅଣ୍ଡା ଓ ରଙ୍ଗରଙ୍ଗିଆ ଅରଣ୍ୟ କଥା ମନେପଡ଼ି । ଜୀବନର ପ୍ରାଚୁର୍ଯ୍ୟରେ ଭରି, ସହସ୍ର ଦୃଷ୍ଟିରେ ସତେ କି ଆମ ଆଡ଼କୁ ଅନାଇଥାଏ, ବରୁ ସଳଖ ଓ ସୁନ୍ଦର ଗୁଆଗଛ, ଅସଂଖ୍ୟ ନଡ଼ିଆଗଛ, ତାଳଗଛ ସୁସଜ୍ଜିତ ସମୁଦ୍ର ଉପକୂଳ ସେଠାରେ ଠିଆହେଲେ ଦୃଷ୍ଟିପଥକୁ ଆସେ ଦ୍ୱୀପର ମଣି ସଦୃଶ ଶୋଭା ପାଉଥିବା ଗାଢ଼ ନୀଳବର୍ଣ୍ଣର ସାଗର ଓ ଆକାଶର ମିଳନ – ସାଗରର ଜଳ ଝଲକି ଉଠୁଛି ଓ କୂଳରେ ଧକ୍କାଖାଇ ଖେଳୁଛି ଏବଂ ତାଳପତ୍ର ଭିତର ଦେଇ ପବନ ମର୍ମର ଶବ୍ଦ କରି ବାହାରି ଯାଉଛି ।

ତୋର ଏଠିକି ଆସିବା ପ୍ରଥମ ଏବଂ ମୋ ପକ୍ଷରେ ମଧ୍ୟ ଏହା ନୂତନ । ଅନେକ କାଳ ହୋଇଗଲାଣି, ଆମେ କିଛିଦିନ ପାଇଁ ସେଠାରେ ଥିଲେ । ତାହାର ସ୍ମୃତି ପ୍ରାୟ ଭୁଲିଗଲେଣି; ତଥାପି ଏହା ଆମ ପକ୍ଷରେ ଏକ ନୂଆ ଅଭିଜ୍ଞତା ହୋଇଥିଲା । ମୋତେ ଭଲ ଲାଗୁ ନ ଥିଲା; କାରଣ ମୁଁ ଗରମକୁ ଭୟ କରେ । ମାତ୍ର ସମୁଦ୍ର, ପର୍ବତ ଏବଂ ସର୍ବୋପରି ବରଫ ଓ ବରଫଖଣ୍ଡ ସବୁ ଦେଖି ମୁଁ ମୁଗ୍ଧ ହୁଏ । ସେହି କେତେଦିନ ସିଲୋନ୍ (ଲଙ୍କା)ରେ ଥିବାବେଳେ ମୁଁ ଗ୍ରୀଷ୍ମମଣ୍ଡଳର ମାଧୁରୀ ବେଶ୍ ଅନୁଭବ କରିଥିଲି ଏବଂ ଫେରିଲାବେଳେ ଆହୁରି ଅତୃପ୍ତ ବାସନା ରହିଗଲା – ପୁଣି ସେଠାକୁ ଥରେ ଯିବା ନିମନ୍ତେ ଇଚ୍ଛା କରୁଥିଲି ।

ସିଲୋନ୍‌ରେ ଛୁଟି ଏକମାତ୍ର ଅତିଶୀଘ୍ର ସରିଲେ । ଦକ୍ଷିଣ-ଭାରତ ଯାତ୍ରା ନିମନ୍ତେ ଆମେ ସାଗର ପାରିହେଲେ । ଆମେ କନ୍ୟାକୁମାରୀ ଦେଖିବାକୁ ଯାଇଥିଲେ, ତୋର ମନେ ଅଛି ନା ! ଏଠାରେ ଏକ କୁମାରୀଦେବୀ ବାସକରନ୍ତି ଓ ଜଗିଥାଆନ୍ତି ବୋଲି କୁହାଯାଏ; କିନ୍ତୁ ପାଶ୍ଚାତ୍ୟ ଦେଶର ଲୋକେ ଆମ ଦେଶର ନାମସବୁ କଦର୍ଯ୍ୟ କଲାପରି ଏହାକୁ କେପ୍ କାମୋରିନ୍ ନାମ ଦେଲେ । ସେତେବେଳେ ଆମେ ଠିକ୍ ଭାରତମାତାର ପାଦତଳେ ବସିଥିଲେ – ଆରବସାଗର କିପରି ବଙ୍ଗୋପସାଗରରେ ମିଶୁଛି ତାହା ଦେଖିଥିଲେ । ଏ ସମସ୍ତେ ଭାରତକୁ ଭକ୍ତି ଅର୍ପଣ କରୁଛନ୍ତି କଳ୍ପନା କରି ଆମେ ଖୁସି ହୋଇଥିଲେ ସେଠାରେ ଅଦ୍ଭୁତ ପ୍ରକାର ଶାନ୍ତି ବିରାଜୁଥିଲା ଏବଂ ଭାରତର ଅନ୍ୟ ସୀମାନ୍ତରେ ହଜାର ହଜାର ମାଇଲ ଦୂରରେ ହିମାଳୟରେ ମୁକୁଟ ପରି ବରଫ ରହି ସେଠାରେ ମଧ୍ୟ ସେ ଶାନ୍ତି ଅଛି, ତହିଁକି ମୋ ମନ ଦୌଡ଼ିଥିଲା । ମାତ୍ର ଉଭୟର ମଧ୍ୟବର୍ତ୍ତୀ ଦେଶରେ ଅନେକ ବିବାଦ ଘଟୁଛି; ଦାରିଦ୍ର୍ୟ ପୂରିରହିଛି ।

ଆମେ କେପ୍ ଗ୍ଲୁଡ଼ ଉତ୍ତର ଆଡ଼କୁ ଯାତ୍ରାକଲେ; ତ୍ରାଭାଙ୍କୋର ଓ କୋଚିନ ଦେଇ ଆସିଲେ । ମାଲବାର ଉପକୂଳର ଉଜାଣି ସ୍ରୋତରେ ଜହ୍ନ ଆଲୁଅରେ ଜଙ୍ଗଲିଆ

ଅଞ୍ଚଳ ଅତିକ୍ରମ କରି ଆମ ଜାହାଜ ଆସୁଥିଲାବେଳେ କି ସୁନ୍ଦର ଦେଖାଯାଉଥାଏ ! ସେସବୁ ଭାବିଲାବେଳକୁ ମୁଁ ସତେ ସ୍ୱପ୍ନ ଦେଖିଲା ଭଳି ମନେକରୁଛି ! ତାପରେ ଆମେ ମସ୍କୁରି, ହାଇଦ୍ରାବାଦ ଓ ବମ୍ବେ ଗଲେ ଏବଂ ଶେଷରେ ଏଲାହାବାଦ ଆସିଲେ । ଆଜିକି ନଅମାସ ତଳେ ଜୁନ୍ ମାସର ଏହି ଘଟଣା ।

କିନ୍ତୁ ଶୀଘ୍ର ହେଉ ବା ବିଳମ୍ବରେ ହେଉ, ବର୍ତ୍ତମାନ ଭାରତରେ ସମସ୍ତ ପଥ ଗୋଟିଏ ଲକ୍ଷ୍ୟ ଆଡ଼କୁ ପଡ଼ୁଛି; ସ୍ୱପ୍ନ ହେଉ ବା ବାସ୍ତବ ହେଉ ଗନ୍ତବ୍ୟ ପଥ ଜେଲ୍‌ରେ ହିଁ ଶେଷ ହେଉଛି । ତେଣୁ ମୁଁ ପୁଣି ମୋର ସେହି ପରିଚିତ ପାଚେରି ଭିତରକୁ ଫେରିଆସିଛି ଏବଂ ଏ ଚିଠି ତୋ ପାଖରେ ନ ପହଞ୍ଚୁ ପଛକେ, ତୋ ସମ୍ବନ୍ଧରେ ଭାବିବା ବା ତୋ ପାଖକୁ ଲେଖିବା ଲାଗି ଏଠାରେ ଯଥେଷ୍ଟ ସମୟ ପାଉଛି । ପୁଣି ଥରେ ସଂଗ୍ରାମ ଆରମ୍ଭ ହୋଇଯାଇଛି ଏବଂ ସ୍ତ୍ରୀ, ପୁରୁଷ, ବାଳକ, ବାଳିକା ସମସ୍ତେ ସ୍ୱାଧୀନତା-ଯୁଦ୍ଧରେ ଯୋଗଦେଇ ଆମ ଦେଶକୁ ଦାରିଦ୍ର୍ୟ ରୂପୀ ଅଭିଶାପରୁ ମୁକ୍ତ କରିବା ନିମନ୍ତେ ଲାଗିପଡ଼ିଛନ୍ତି । କିନ୍ତୁ ସ୍ୱାଧୀନତା-ଦେବୀଙ୍କୁ ପାଇବା ବଡ଼ କଠିନ; ପୁରାଣ ଯୁଗ ପରି ସେ ଦେବୀ ତାଙ୍କ ଭକ୍ତମାନଙ୍କଠାରୁ ନରବଳୀ ଚାହାନ୍ତି ।

ଆଜି ଜେଲ୍‌ରେ ମୋର ତିନିମାସ ପୂରିଲା । ତିନିମାସ ତଳେ ଆଜି—ଡିସେମ୍ବର ୨୬ ତାରିଖରେ—ଷଷ୍ଠ ଥର ପାଇଁ ମୁଁ ଗିରଫ ହୋଇଥିଲି । ଏହି ଚିଠି ଲେଖା ପୁଣି ଆରମ୍ଭ କରିବା ନିମନ୍ତେ ମୁଁ ଖୁବ୍ ଡେରି କରିଛି; ମାତ୍ର ତୁ ତ ଜାଣୁ, ମନ ଯେତେବେଳେ ବର୍ତ୍ତମାନର ସ୍ରୋତରେ ମଜ୍ଜି ଯାଏ, ସେତେବେଳେ ସୁଦୂର ଅତୀତ କଥା ଭାବିବା କେଡ଼େ କଷ୍ଟକର । ବାହାର ଘଟଣା ସମ୍ବନ୍ଧରେ ମୁଣ୍ଡ ନ ପୂରାଇ ଜେଲ ଭିତରେ ଠିକ୍ ରହିବା ପାଇଁ କିଛି ସମୟ ଲୋଡ଼ା । ମୁଁ ନିୟମିତ ରୂପେ ତୋ ପାଖକୁ ଲେଖିବା ନିମନ୍ତେ ଚେଷ୍ଟା କରିବି । ମାତ୍ର ମୁଁ ବର୍ତ୍ତମାନ ଭିନ୍ନ ଏକ ଜେଲ୍‌ରେ ଅଛି । ଏ ବଦଳିକୁ ମୁଁ ପସନ୍ଦ କରୁ ନାହିଁ ଓ ଏହା ମୋ କାର୍ଯ୍ୟରେ ଟିକିଏ ବିଘ୍ନ ପହଞ୍ଚାଉଛି । ଏଠି ଯେଉଁ ପାଚେରି ଅଛି, ତାହା ଖୁବ୍ ଉଚ୍ଚ । ଏ ପାଚେରି ଅନ୍ତତଃ ଉଚ୍ଚତାରେ ଚୀନ୍‌ର 'ବିରାଟ ପ୍ରାଚୀର' (Great wall) ପରି ବୋଧହେବ । ଏହା ପ୍ରାୟ ୨୫ ଫୁଟ ଉଚ୍ଚ । ପ୍ରତିଦିନ ସକାଳେ ଏହାକୁ ଅତିକ୍ରମ କରି ସୂର୍ଯ୍ୟ ଆମ ଦୃଷ୍ଟିକୁ ଆସିବା ପାଇଁ ପ୍ରାୟ ଦେଢ଼ ଘଣ୍ଟାରୁ ଅଧିକ ସମୟ ଲାଗିଯାଏ ।

କିଛିଦିନ ପାଇଁ ଆମର ଆକାଶ ସୀମାବଦ୍ଧ ହୋଇଥାଇପାରେ । ମାତ୍ର ଦଶ ମାସ ତଳେ ତୁ, ମୁଁ ଓ ମମୀ ଯେଉଁ ସ୍ୱପ୍ନଯାତ୍ରା କରିଥିଲେ ( ଅବଶ୍ୟ ବର୍ତ୍ତମାନ ତାହା ପ୍ରକୃତ ବୋଲି ଜଣାପଡ଼େ ନାହିଁ ), ସେହି ନୀଳ ସାଗର, ପର୍ବତ ଓ ମରୁଭୂମି କଥା ଭାବିଲେ ଖୁବ୍ ଭଲ ଲାଗେ ।

# ୨୨ । ଜୀବିକା ଲାଗି ମଣିଷର ଲଢ଼େଇ

ମାର୍ଚ୍ଚ ୨୮, ୧୯୩୨

ଗୁଲ ପୁଣି ଥରେ ପୃଥିବୀ-ଇତିହାସର ସୂତ୍ର ଧରି ଅତୀତର ଦର୍ଶନ ଲଭ କରିବା । ଏହା ଏକ କଟିମିଟିଆ ବୁଡ଼ିଆଣୀ ଜାଲ—ଏହାର ତଥ୍ୟ ବାହାର କରିବା ଏପରିକି ସମଗ୍ରଟା ଦେଖିବା ମଧ୍ୟ କଷ୍ଟକର । ଆମେ ଏହାର କୌଣସି ଗୋଟିଏ ବିଶେଷ ଅଂଶରେ ମଜ୍ଜି ଯାଇ ନିଜକୁ ଭୁଲିଯାଉ ଏବଂ ତାହାକୁ ହିଁ ଅତ୍ୟନ୍ତ ଗୁରୁତ୍ୱ ଦେଉ । ଆମ ନିଜ ଦେଶର ଇତିହାସ ଯାହା ହେଉ ପଛକେ, ଆମେ ସମସ୍ତେ ପ୍ରାୟ ଅନ୍ୟ ଦେଶର ଇତିହାସ ଅପେକ୍ଷା ତାକୁ ଗୌରବମୟ ବୋଲି କହୁ ଓ ପାଠଯୋଗ୍ୟ ବୋଲି କରୁଛୁ । ଏ ସମ୍ବନ୍ଧରେ ମୁଁ ଥରେ ତତେ ସତର୍କ କରାଇ ଦେଇଥିଲି ଏବଂ ପୁଣି ଥରେ ସାବଧାନ କରାଇ ଦେଉଛି । ଏହି ଜାଲରେ ପଡ଼ିଯିବା ଖୁବ୍ ସହଜ । ବାସ୍ତବିକ ଏହି ମନୋଭାବ ଯେପରି ତୋର ନ ହେଉ, ସେଥିଲାଗି ମୁଁ ଏ ଚିଠିଲେଖା ଆରମ୍ଭ କରିଥିଲି; ତଥାପି ବେଳେ ବେଳେ ମୁଁ ସେହି ଭୁଲ କରି ପକାଉଛି ବୋଲି ଅନୁଭବ କରୁଛି । ଏହା ମୋର ଶିକ୍ଷାର ଦୋଷ ଓ ମୁଁ ଯେଉଁ ଇତିହାସ ପଢ଼ିଥିଲି, ସେ ଏତେ ବିପର୍ଯ୍ୟସ୍ତ ହୋଇଥିବା ବେଳେ ମୋର ଦୋଷ ବା କଅଣ ? ଜେଲଖାନାରେ ଆବଦ୍ଧ ରହି ପୁଣି ପଢ଼ାପଢ଼ି କରି ମୁଁ ଏହାର ସଂଶୋଧନ ଲାଗି ଚେଷ୍ଟା କରିଛି ଏବଂ ବୋଧହୁଏ ସେଥିରେ ଅନେକ ପରିମାଣରେ ସଫଳ ହୋଇଛି । କିନ୍ତୁ ପିଲାବେଳରୁ ଓ ଯୁବାକାଳରୁ ଯେଉଁସବୁ ଲୋକ ଓ ଘଟଣାବଳୀର ଚିତ୍ର ମୋ ମନରେ ଅଙ୍କା ହୋଇଛି, ତାକୁ ଦୂର କରି ପାରୁ ନାହିଁ । ଏହି ଚିତ୍ରସବୁ ମୋର ଇତିହାସ ସମ୍ବନ୍ଧୀୟ ଦୃଷ୍ଟିକୋଣକୁ ଆଚ୍ଛନ୍ନ କରୁଛି । ଏତେ ଅସମ୍ପୂର୍ଣ୍ଣ ଜ୍ଞାନରେ ପୁଣି ଇତିହାସ ଲେଖୁଛି । ସୁତରାଂ ମୁଁ ଯାହା ଲେଖିବି ସେଥିରେ ଭୁଲ ରହିବ; ଅନେକ ଶ୍ରେଷ୍ଠ ଘଟଣା ହୁଏତ ମୁଁ ଲେଖି ପକାଇବି ଏବଂ ଆଉ କେତେକ ଗୁରୁତର ବିଷୟ ଲେଖିବାକୁ ଭୁଲିଯିବି; ମାତ୍ର ଏକ ଇତିହାସ ପୁସ୍ତକର ସ୍ଥାନ ନେବା ଲାଗି ଏହିସବୁ ଚିଠି ଲେଖାଯାଉ ନାହିଁ । ଏକ ହଜାର ମାଇଲ ଦୂରରେ ଆମେ ଯଦି ନ ଥାନ୍ତେ ଏବଂ କେତେକ ମଜଭୁତ କାନ୍ଥ ଯଦି ଆମକୁ ଅଲଗା ରଖି ନ ଥାନ୍ତା, ତେବେ ଆମର ଏଣ୍ଡୁ ତେଣ୍ଡୁ ଗପସପ ଯେପରି ହୁଅନ୍ତା, ଏଗୁଡ଼ିକ ସେଇଆ—ଅନ୍ତତଃ ଏଗୁଡ଼ିକ ସେଇଆ ବୋଲି ଭାବି ମୁଁ ଖୁସି ହେଉଛି ।

ଯେଉଁ ପ୍ରସିଦ୍ଧ ଲୋକସବୁ ଇତିହାସର ପୃଷ୍ଠା ପୂର୍ଣ୍ଣ କରିଛନ୍ତି, ସେମାନଙ୍କ ସମ୍ବନ୍ଧରେ ତୋ ପାଖକୁ କିଛି ନ ଲେଖି ରହିପାରୁନାହିଁ । ସେମାନେ ସେମାନଙ୍କ ଦୃଷ୍ଟିରୁ ବେଶ୍ ମଜାର ଲୋକଥିଲେ ଏବଂ ସେମାନେ ଯେଉଁ ଯୁଗରେ ବାସ କରୁଥିଲେ ତାହା କି

ପ୍ରକାର ଥିଲ, ସେମାନଙ୍କ ବିବରଣୀରୁ ଆମେ ଜାଣିପାରୁ । କିନ୍ତୁ ଇତିହାସ କେବଳ ବଡ଼ ବଡ଼ ଲୋକ, ରାଜା, ସମ୍ରାଟ ବା ସେହିପରି ଲୋକଙ୍କ କାର୍ଯ୍ୟର ବିବରଣୀରେ ପୂର୍ଣ୍ଣ ହୋଇ ନ ଥାଏ । ଏହା ହୋଇଥିଲେ ଆଜି ଇତିହାସର ଦରକାର ନ ଥାନ୍ତା; କାରଣ ରାଜା ଏବଂ ସମ୍ରାଟଗଣ ପ୍ରାୟ ପୃଥିବୀ-ରଙ୍ଗମଞ୍ଚରେ ଆଉ ସେପରି କ୍ରୀଡ଼ା କରୁଥିବାର ଦେଖାଯାଉ ନାହିଁ । କିନ୍ତୁ ଯେଉଁ ସ୍ତ୍ରୀ-ପୁରୁଷ ପ୍ରକୃତରେ ମହାନ୍, ସେମାନଙ୍କର ବିଶେଷତ୍ୱ ପ୍ରକଟ କରିବା ନିମନ୍ତେ ସିଂହାସନ, ମୁକୁଟ, ମଣି ବା ଉପାଧି ଦରକାର ହୁଏ ନାହିଁ । କେବଳ ରାଜା ଓ ରାଜବଂଶରେ ଲୋକେ ଯେଉଁମାନଙ୍କର ରାଜଗାଦି ଏବଂ ରାଜକୀୟ ମର୍ଯ୍ୟାଦା ଛଡ଼ା ଆଉ କିଛି ନ ଥାଏ, ନିଜର ନଗ୍ନତାକୁ ଲୁଚାଇବା ନିମନ୍ତେ କେବଳ ସେହିମାନଙ୍କର ଏପରି ପରିଚ୍ଛଦ ଓ ରାଜପୋଷାକ ପିନ୍ଧିବା ଦରକାର ହୁଏ । ଦୁର୍ଭାଗ୍ୟବଶତଃ ଆମ ଭିତରୁ ଅନେକ ଲୋକ ସେଥିରେ ପଡ଼ିଯାନ୍ତି ଓ ଏହି ବାହାର ଫୁଟାଣିରେ ଭୁଲିଯାନ୍ତି ଏବଂ ମସ୍ତକ ଉପରେ ମୁକୁଟମାତ୍ର ରଖିଥିବା ରାଜାକୁ ରାଜା ବୋଲି ବୁଝି ଭୁଲ କରନ୍ତି ।

ପ୍ରକୃତ ଇତିହାସ ଯାହା ସେଥିରେ କେବଳ ଏଠୁ ସେଠୁ କେତେକ ବ୍ୟକ୍ତିବିଶେଷଙ୍କର କଥାଥିଲେ ହେବ ନାହିଁ । ସେଥିରେ ଯେଉଁ ଲୋକ ରାଷ୍ଟ୍ର ଗଢ଼ୁଛନ୍ତି, ଯେ ଶ୍ରମ କରନ୍ତି ଏବଂ ତାଙ୍କ ଶ୍ରମରେ ଜୀବନର ଭୋଗ-ବିଳାସ ଓ ଆବଶ୍ୟକୀୟ ପଦାର୍ଥ ଉତ୍ପନ୍ନ କରନ୍ତି ଏବଂ ଯେଉଁମାନେ ହଜାର ହଜାର ଉପାୟରେ ଜଣେ ଅନ୍ୟ ଉପରେ ପ୍ରଭାବ ବିସ୍ତାର କରୁଛନ୍ତି, ସେହିମାନଙ୍କ କଥା ଲେଖାଥାଏ । ମଣିଷର ଏହି ଇତିହାସ ହିଁ ପ୍ରକୃତରେ ମନୋମୁଗ୍ଧକର ହେବ । ମଣିଷ ଯୁଗ ଯୁଗ ଧରି ପ୍ରକୃତି ବିରୁଦ୍ଧରେ ଯେ ଲଢ଼େଇ କରିଆସିଛି, ବନ୍ୟ ପଶୁ ଓ ଜଙ୍ଗଲ ବିରୁଦ୍ଧରେ ଯାହା କରିଛି ଏବଂ ଶେଷରେ ନିଜ ଜାତିର ଲୋକ, ଯେଉଁମାନେ କି ନିଜର ସୁବିଧା ସକାଶେ ମଣିଷକୁ ଲୁଟ କରିଛନ୍ତି ଓ ତଳେ ପକାଇ ରଖିଛନ୍ତି, ସେମାନଙ୍କ ବିରୁଦ୍ଧରେ ଯେ ଲଢ଼େଇ କରିଛି, ତାହା ସବୁଠାରୁ କଷ୍ଟଦାୟକ । ଇତିହାସ ହେଉଛି ଜୀବିକା ଲାଗି ମଣିଷର ଲଢ଼େଇ କାହାଣୀ । ଏହି ଉପରେ ହିଁ ସେପରି ଇତିହାସ ପୂର୍ଣ୍ଣ ହେବ । ଶୀତ ଜଳବାୟୁରେ ବଞ୍ଚିବାଲାଗି କେତେକ ଜିନିଷ, ଯଥା—ଖାଦ୍ୟ, ପୋଷାକ ଓ ଆଶ୍ରୟ ଏକାନ୍ତ ଲୋଡ଼ା; ତେଣୁ ଯେଉଁମାନେ ଏହାକୁ ହାତ କରିପାରୁଥିଲେ, ସେମାନେ ମଣିଷ ଉପରେ ପ୍ରଭୁତ୍ୱ କରି ଆସିଛନ୍ତି । ବଞ୍ଚିବା ଲାଗି ଆବଶ୍ୟକ ହେଉଥିବା କେତେକ ଜିନିଷ ଉପରେ ରାଜା ଓ ମାଲିକମାନଙ୍କର କିଛି ଅଧିକାର ଥିବାରୁ ସେମାନେ କ୍ଷମତା ବିସ୍ତାର କରୁଥିଲେ ଏବଂ ଏହି ଅଧିକାର ବଳରେ ସେମାନେ ଲୋକଙ୍କୁ ଭୋକରେ ମାରି ବଧ କରୁଥିଲେ । ସୁତରାଂ ବିରାଟ ଜନତାକୁ ମୁଷ୍ଟିମେୟ ଲୋକ ଶୋଷୁଥିବାର ଆଶ୍ଚର୍ଯ୍ୟ ଘଟଣା ଆମେ ଦେଖିବାକୁ ପାଉଁ । ଅନେକ ଲୋକ ଆଦୌ କାର୍ଯ୍ୟ ନ କରି ପଇସା ପାଉଛନ୍ତି ଏବଂ ତାଠାରୁ ଅଧିକ ଲୋକ କାର୍ଯ୍ୟ ବହୁତ କରନ୍ତି, ଅଥଚ, ବହୁତ କମ୍ ପାଆନ୍ତି ।

ବର୍ବର ଥିଲାବେଳେ ଲୋକେ ଏକାକୀ ଶିକାର କରୁଥିଲେ ଏବଂ କ୍ରମେ ପରିବାର ଗଢ଼ି ଉଠିଲା । ଗୃହସ୍ଥ ଲୋକେ ନିଜପାଇଁ ଓ ଅନ୍ୟମାନଙ୍କ ଲାଗି ମିଳାମିଶି କାର୍ଯ୍ୟ କଲେ । କେତେକ ଗୃହ ମିଶି ଗ୍ରାମ ହୁଏ ଏବଂ ବିଭିନ୍ନ ଗ୍ରାମର ଶ୍ରମିକ, ବଣିକ ଓ ଶିଳ୍ପୀ ଏକତ୍ର ମିଶି କାରିଗରସଂଘ ଗଢ଼ିଲେ । କ୍ରମେ ସାମାଜିକ 'ଇଉନିଟ' ବା ଏକକ (unit) ※ ବଢ଼ିଉଠିଲା । ବାସ୍ତବରେ ପ୍ରଥମେ ବ୍ୟକ୍ତିବିଶେଷହିଁ ବର୍ବର ଥିଲେ । ସେତେବେଳେ କୌଣସି ପ୍ରକାର ସମାଜ ନଥିଲା । ପରିବାର ଗୋଟିଏ ଇଉନିଟ୍ ଥିଲା । ତା' ପରେ ଗ୍ରାମ ଓ ଗ୍ରାମସମୂହ ହେଲା । ଏହି ସାମାଜିକତା କାହିଁକି ବଢ଼ିଲା ? ଜୀବିକାନିର୍ବାହ ଲାଗି ଲଢ଼େଇ କରିବା ନିମନ୍ତେ ଉନ୍ନତି ଓ ସହଯୋଗିତା ବଢ଼ିଲା । କାରଣ ସାଧାରଣ ଶତ୍ରୁର ଆକ୍ରମଣରୁ ରକ୍ଷାପାଇବା ନିମନ୍ତେ ଏକାକୀ ଲଢ଼ିବା ଅପେକ୍ଷା ମିଳାମିଶି କାର୍ଯ୍ୟ କରିବା ବେଶୀ ଫଳପ୍ରଦ ହୁଏ । କାର୍ଯ୍ୟରେ ସହଯୋଗ ଅଧିକ ଲାଭପ୍ରଦ ହୁଏ । ଏକାକୀ କାର୍ଯ୍ୟ କରିବା ଅପେକ୍ଷା ମିଳାମିଶି କାର୍ଯ୍ୟକରିବା ଫଳରେ ଖାଦ୍ୟ ଓ ଅନ୍ୟାନ୍ୟ ଆବଶ୍ୟକୀୟ ଜିନିଷ ବେଶୀ ଉତ୍ପନ୍ନ କରାଯାଇପାରେ । କାର୍ଯ୍ୟରେ ଏହି ସହଯୋଗ ଫଳରେ ଗୋଟାଏ ପ୍ରକାର ଆର୍ଥିକ ଇଉନିଟ୍ ବି ଗଢ଼ିଉଠିଲା । ବ୍ୟକ୍ତିଗତ ଭାବରେ ଯେଉଁ ଆଦିମ ଲୋକେ ନିଜେ ନିଜେ ଶିକାର କରି ବୁଲୁଥିଲେ, ତାହା କ୍ରମେ ବଡ଼ ବଡ଼ ଗୋଷ୍ଠୀ ହୋଇ ଉଠିଲା । ପ୍ରକୃତରେ ମଣିଷ ନିଜର ଜୀବିକା ଅର୍ଜନ କରିବା ନିମନ୍ତେ କରୁଥିବା ସଂଗ୍ରାମ ଫଳରେ ଯେଉଁ ଆର୍ଥିକ ଇଉନିଟ୍ ଗଢ଼ି ଉଠିଲା, ବୋଧହୁଏ ତାହା ଫଳରେ ସମାଜ ସୃଷ୍ଟି ହେଲା ଓ ସାମାଜିକ ଏକତା ଦେଖାଦେଲା । ଇତିହାସର ଏହି ଦୀର୍ଘ ବିସ୍ତୃତ ଭିତରେ ହିଁ ଅପରନ୍ତୁ ବିବାଦ ଓ ଦୁର୍ଗତି ଦେଖିବାକୁ ମିଳେ ଏବଂ ସମସ୍ତ ସମୟରେ ଅଧିକ ଖରାପ ଅବସ୍ଥା ଦେଖାଯାଏ । ମାତ୍ର ଏହି ବୃଦ୍ଧି ଘଟିଥିବା ଯୋଗୁଁ ପୃଥିବୀ ଖୁବ୍ ଉନ୍ନତ ହୋଇଯାଇଛି କିମ୍ବା ପୂର୍ବାପେକ୍ଷା ଅଧିକ ସୁଖପ୍ରଦ ହୋଇଛି ବୋଲି ତୁ ଅନୁମାନ କରିବୁ ନାହିଁ । ସମ୍ଭବତଃ ପୂର୍ବାପେକ୍ଷା ଏହା ଭଲ ଅବସ୍ଥାରେ ଅଛି; ମାତ୍ର ଏହା ପୂର୍ଣ୍ଣତାର ବହୁ ଦୂରରେ ଏବଂ ତ୍ରୁଟି ଦୁଃଖ ପୂରିରହିଛି ।

ସାମାଜିକ ଓ ଅର୍ଥନୈତିକ ଏକତା ବୃଦ୍ଧି ସଙ୍ଗେ ସଙ୍ଗେ ମଣିଷ-ଜୀବନ କ୍ରମେ ଜଟିଳ ହୋଇଯାଉଛି । ବାଣିଜ୍ୟ ଓ ବ୍ୟବସାୟ ବଢ଼ିଛି । ଦାନ ପରିବର୍ତ୍ତେ ବିନିମୟ, ତାପରେ ମୁଦ୍ରାର ପ୍ରଚଳନ ହୋଇ ବହୁପ୍ରକାର ବ୍ୟବହାରରେ ଗୋଟାଏ ଅଦ୍ଭୁତ ପରିବର୍ତ୍ତନ ଘଟାଇଛି । ସଙ୍ଗେ ସଙ୍ଗେ ବାଣିଜ୍ୟ ଅତ୍ୟଧିକ ଲାଭ କରିଛି; କାରଣ ସୁନା ବା ରୂପା ମୁଦ୍ରାର ପ୍ରଚଳନ ଅତ୍ୟନ୍ତ ସହଜ । ଏପରିକି ମୁଦ୍ରା ବି ସର୍ବଦା ଚଳୁ ନ ଥିଲା ଏବଂ ଲୋକେ ପ୍ରତିକସବୁ ବ୍ୟବହାର କରୁଥିଲେ । ଖଣ୍ଡେ କାଗଜରେ ଦେବା ଲାଗି ପ୍ରତିଶ୍ରୁତି

※ unit ବା ଏକକର ଅର୍ଥ ହେଉଛି ସବୁଠାରୁ ଶ୍ରେଷ୍ଠ ଅଥଚ ଏକ ବସ୍ତୁର ପୂର୍ଣ୍ଣ ଅଂଶ ।

ଥିଲେ ତାହା ଯଥେଷ୍ଟ ବୋଲି ଧରି ନିଆଯାଉଥିଲା । ଏହିପରି ଭାବରେ ବ୍ୟାଙ୍କ୍ ନୋଟ ଏବଂ ଚେକ୍ ପ୍ରଭୃତିର ବ୍ୟବହାର ହେଲା । ଏହାର ଅର୍ଥ ଧାରସୂତ୍ରେ ବ୍ୟବସାୟ ଚଳିଲା । ଧାର ପ୍ରଥା ଚଳିବା ଫଳରେ ବାଣିଜ୍ୟ ଓ ବ୍ୟବସାୟ ଅନେକ ପରିମାଣରେ ବୃଦ୍ଧି ଲଭିବାରେ ସାହାଯ୍ୟ ପାଇଲା । ତୁ ତ ଜାଣୁ, ଆଜି କାଲି ଚେକ୍ ଓ ବ୍ୟାଙ୍କ ନୋଟ୍ ଖୁବ୍ ଚଳୁଛି ଏବଂ ବୁଦ୍ଧି ଥିବା ଲୋକେ ଆଉ ନିଜ ସାଙ୍ଗରେ ସୁନା ଓ ରୂପା ଥଳି ବୋହି ନେଇ ନାହାନ୍ତି ।

ଏହିପରି ଭାବରେ ଆମେ ଦେଖିବାକୁ ପାଉଁ ଯେ ଇତିହାସ କ୍ରମେ ଅତୀତର ଅନ୍ଧକାରରୁ ଉନ୍ନତି ଲଭିବା ସଙ୍ଗେ ସଙ୍ଗେ ଲୋକେ ଅଧିକ ଉତ୍ପନ୍ନ କରିବାକୁ ଲାଗିଲେ; ବିଭିନ୍ନ ବ୍ୟବସାୟରେ ବିଶେଷ ଦକ୍ଷତା ଲାଭକଲେ; ନିଜ ନିଜ ଭିତରେ ସେମାନଙ୍କର ଜିନିଷ ବଦଳ କରିପାରିଲେ ଏବଂ ଏହିପରି ଭାବରେ ବାଣିଜ୍ୟ ବୃଦ୍ଧି ପାଇଲା । ଆମେ ମଧ୍ୟ ଦେଖିବାକୁ ପାଉଁ ଯେ ବାଷ୍ପକଳ ବାହାରିବା ପରେ ବିଶେଷତଃ ଗତ ଶହେବର୍ଷ ଭିତରେ ଯାତାୟାତର ନୂଆ ଓ ଭଲ ଉପାୟ ବାହାରିଲା । ଉତ୍ପତ୍ତି ବଢ଼ିବା ସଙ୍ଗେ ସଙ୍ଗେ ପୃଥିବୀର ସମ୍ପଦ ବଢ଼ିଲା ଏବଂ ଶେଷରେ କେତେକ ଲୋକ ଅବସର ପାଇଲେ । ଏହିପରି ଭାବରେ ଆମେ ଯାହାକୁ ସଭ୍ୟତା ବୋଲି କହୁଁ, ତାହା ଗଢ଼ିଉଠିଲା ।

ଏହିସବୁ ଘଟଣା ଘଟୁଛି । ଆମର ଉଜ୍ଜ୍ୱଳ ଓ ଉନ୍ନତ ଯୁଗ, ଆଧୁନିକ ସଭ୍ୟତାର ଆଶ୍ଚର୍ଯ୍ୟ ପ୍ରଗତି ଏବଂ ଆମର ବିରାଟ ସଂସ୍କୃତି ଓ ବିଜ୍ଞାନ ଆଦି କଥା କହି ଲୋକେ ଗର୍ବ କରନ୍ତି । ତଥାପି ଅନେକ ଗରିବ ଅଧିକ ଗରିବ ଓ ଦୁଃଖୀ ହୋଇ ପଡ଼ିଛନ୍ତି; ବଡ଼ ବଡ଼ ଦେଶ ସବୁ ନିଜ ନିଜ ଭିତରେ ଲଢ଼େଇ କରି ଲକ୍ଷ ଲକ୍ଷ ଲୋକଙ୍କୁ ହତ୍ୟା କରୁଛନ୍ତି ଏବଂ ଆମ ଦେଶ ପରି ବିରାଟ ଦେଶସବୁ ବିଦେଶୀ ଲୋକଙ୍କ ଦ୍ୱାରା ଶାସିତ ହେଉଛି । ଯଦି ଆମ ନିଜ ଘରେ ଆମର ସ୍ୱାଧୀନତା ନ ଥାଏ, ତେବେ ସେ ସଭ୍ୟତାରେ ଆମର ଲାଭ କଅଣ ? କିନ୍ତୁ ଆଜି ଆମେ ସେଥିଲାଗି ଖୁବ୍ ଜାଗ୍ରତ ହୋଇ ଅଗ୍ରସର ହୋଇଆଉଁ ।

ଏହି ଗତିଶୀଳ ଯୁଗରେ ଆମେ ବାସକରିବା ବାସ୍ତବିକ ଭାଗ୍ୟର କଥା । ଆମେ ଏହି ଦୁଃସାହସିକତାରେ ଭାଗ ନେଇପାରୁଛେ ଏବଂ ଖାଲି ଭାରତ ନୁହେଁ, ସାରା ଦୁନିଆ ଯେ ଏକ ପରିବର୍ତ୍ତନ ମଧ୍ୟଦେଇ ଯାଉଛି, ତାହା ଦେଖିପାରୁଛେ । ତୁ ଜଣେ ସୌଭାଗ୍ୟବତୀ ବାଳିକା । ଯେଉଁ ବିରାଟ ବିପ୍ଳବ ରୁଷରେ ଏକ ନୂତନ ଯୁଗ ସୃଷ୍ଟି କଲା, ତାହା ଯେଉଁ ବର୍ଷ ଘଟିଥିଲା, ତୋର ଜନ୍ମ ସେହି ବର୍ଷ ଓ ସେହି ମାସରେ । ଆଜି ମଧ୍ୟ ତୁ ନିଜ ଦେଶରେ ଏକ ବିପ୍ଳବ ଦେଖିପାରୁଛୁ ଏବଂ ତୁ ଏଥିରେ ନିଜେ ଜଣେ ଖେଳାଳୀ ଶୀଘ୍ର ହୋଇପାରୁ । ଦୁନିଆର ଚାରିଆଡ଼େ ଗୋଳମାଳ ଘଟୁଛି ଓ ପରିବର୍ତ୍ତନ ହେଉଛି । ସୁଦୂର ପ୍ରାଚ୍ୟରେ

ଜାପାନ ଚୀନ୍‌ର ଗଳା ଧରିଛି । ପାଶ୍ଚାତ୍ୟ ଖଣ୍ଡରେ ବାସ୍ତବିକ ସାରା ପୃଥିବୀରେ ପୁରୁଣା ପ୍ରଥା ଦୋହଲି ପଡ଼ୁଛି ବା ଉପରେ । ଦେଶମାନେ ନିରସ୍ତ୍ରୀକରଣ କଥା କହୁଛନ୍ତି, ଅଥଚ ପ୍ରତ୍ୟେକଙ୍କୁ ସନ୍ଦେହଚକ୍ଷୁରେ ଦେଖୁଛନ୍ତି ଏବଂ ଶେଷ ପର୍ଯ୍ୟନ୍ତ ଅସ୍ତ୍ରଶସ୍ତ୍ର ସଜାଇ ରଖୁଛନ୍ତି । ଏହା ହେଉଛି ପୁଞ୍ଜିବାଦର ଲକ୍ଷଣ—ଏହା ହିଁ ଆଜିପର୍ଯ୍ୟନ୍ତ ପୃଥିବୀ ଉପରେ ପ୍ରଭୁତ୍ୱ ବିସ୍ତାର କରିଛି । ଏହା ତ ନିଶ୍ଚୟ ଦିନେ ଲୋପ ହେବ – ଯେଉଁଦିନ ଯିବ, ତାହା ହୁଏତ ଅନେକ ଖରାପ ଜିନିଷ ସାଙ୍ଗରେ ନେଇଯିବ ।

## ୨୩ । ସିଂହାବଲୋକନ

ମାର୍ଚ୍ଚ ୨୯, ୧୯୩୨

ଆମେ ଆମର ଏହି ଯୁଗଯାତ୍ରାରେ କେତେଦୂର ଯାଇଛେ । ଆମେ ଇଜିପ୍ଟ, ଭାରତ, ଚୀନ୍ ଓ ନୋସାସ୍‌ର ପୁରୁଣା କାହାଣୀ ସବୁ ଟିକିଏ ଆଲୋଚନା କରିଛେ । ଇଜିପ୍ଟର ଅଜ୍ଞାତ ଓ ଅଦ୍ଭୁତ ସଭ୍ୟତା କିପରି ପିରାମିଡ଼ ସୃଷ୍ଟି କଲା, କ୍ରମେ ଧ୍ୱଂସପଥରେ ଗଡ଼ିକଲା, ତାହାର ଶକ୍ତି ହରାଇଲା ଏବଂ ଏକ ଶୂନ୍ୟ ଗ୍ରନ୍ଥାଗାରୂପରେ ରହିଲା, କେବଳ ଆକୃତି ଓ ଚିହ୍ନ ଛଡ଼ା ଏଥିରେ ପ୍ରକୃତ ଜୀବନ ରହିଲା ନାହିଁ, ଏହା ଆମେ ଦେଖିଲେ । ଗ୍ରୀସ୍‌ର ପଡ଼ୋଶୀ ଜାତି ଆସି କିପରି ନୋସାସ୍‌କୁ ଧ୍ୱଂସକଲେ, ଆମେ ଦେଖିଛେ । ଭାରତ ଓ ଚୀନ୍‌ର ଅସ୍ପଷ୍ଟ ପ୍ରାରମ୍ଭ କାଳ ଉପରେ ଆମେ ନଜର ପକାଇଛେ । ଅବଶ୍ୟ ଆମ ନିକଟରେ ଯଥେଷ୍ଟ ବିବରଣୀ ନ ଥିବାରୁ ଏ ସମ୍ବନ୍ଧରେ ବିଶେଷ କିଛି ଜାଣିପାରି ନାହୁଁ ; ସେ କାଳରେ ସଭ୍ୟତା ଯେ ଖୁବ୍ ଉନ୍ନତ ଥିଲା, ଏଥିରେ ସନ୍ଦେହ ନାହିଁ । ଯେଉଁ ଅତୁଟ ସମ୍ବନ୍ଧ ଅନେକ ହଜାର ବର୍ଷ ପୂର୍ବରୁ ଚୀନ୍ ଓ ଭାରତକୁ ସଂସ୍କୃତି ଭାବରେ ଏକତ୍ର କରି ରଖିଛି, ତାହା ଦେଖି ଆଶ୍ଚର୍ଯ୍ୟ ହୋଇଛେ । ଇରାକ୍‌ରେ ସାମ୍ରାଜ୍ୟ ପରେ ସାମ୍ରାଜ୍ୟ କ୍ଷଣକାଳ ପାଇଁ କିପରି ଖୁବ୍ ପ୍ରଶସ୍ତି ଲଭିଛି ଓ ପୁଣି ଶେଷରେ ସବୁ ସାମ୍ରାଜ୍ୟର ଯାହା ଦଶା ଘଟେ ସେପରି ହୋଇଛି, ଆମେ ତାହା ବି ଦେଖିଲେ ।

ଖ୍ରୀଷ୍ଟ ଜନ୍ମର ପ୍ରାୟ ୬୦୦।୭୦୦ ବର୍ଷ ପୂର୍ବେ ବିଭିନ୍ନ ଦେଶରେ ଯେଉଁ ସବୁ ବଡ଼ ବଡ଼ ଭାବୁକ ଥିଲେ, ସେମାନଙ୍କ ସମ୍ବନ୍ଧରେ ଆମେ କିଛିତ ଆଲୋଚନା କରିଛେ । ଭାରତରେ ବୁଦ୍ଧ ଓ ମହାବୀର, ଚୀନ୍‌ରେ କନ୍‌ଫୁସିୟସ୍ ଓ ଲାଓଜି, ଇରାନ୍‌ରେ ଜୋରୋଷ୍ଟର ଏବଂ ଗ୍ରୀସ୍‌ରେ ପିଥାଗୋରସ୍‌ଙ୍କ କଥା ଆମେ ଜାଣିଛେ । ଆମେ ଦେଖିଛେ ଯେ ବୁଦ୍ଧ ପୁରୋହିତ ପ୍ରଥା ଏବଂ ଭାରତର ପ୍ରଚଳିତ ପୁରାତନ ବୈଦିକ ଧର୍ମ ଉପରେ ଆକ୍ରମଣ କରିଥିଲେ;

କାରଣ ସେ ଦେଖିପାରିଲେ ଯେ ସମସ୍ତ ପ୍ରକାର କୁସଂସ୍କାର ଓ ପୂଜା ଜୋର ଜବରଦସ୍ତି ଲୋକଙ୍କ ଉପରେ ଲଦା ହେଉଛି ଏବଂ ପ୍ରତାରଣା କରାଯାଉଛି । ସେ ଜାତିପ୍ରଥାର ବିରୋଧ କରିଥିଲେ ଏବଂ ସାମ୍ୟଭାବ ପ୍ରଚାର କରିଥିଲେ ।

ତା ପରେ ପାଶ୍ଚାତ୍ୟ ଦେଶର କଥା । ସେଠାରେ କିପରି ଏସିଆ ଓ ଇଉରୋପ ଉଭୟ ଏକତ୍ର ହେଲେ ଏବଂ ଇରାନ୍ ଓ ଗ୍ରୀସ୍‌ର ସୌଭାଗ୍ୟ ଫେରାଇ ଆଣିବାକୁ ଚେଷ୍ଟା କଲେ, କିପରି ଇରାନ୍‌ରେ ଗୋଟିଏ ବଡ଼ ସାମ୍ରାଜ୍ୟ ଗଢ଼ି ଉଠିଲା ଏବଂ ରାଜାଧିରାଜ ଡାରୟୁସ୍‌ଙ୍କ ସାମ୍ରାଜ୍ୟ ଭାରତରେ ସିନ୍ଧୁ ପର୍ଯ୍ୟନ୍ତ ବିସ୍ତୃତ ଲଭିଥିଲା, ଏହି ସାମ୍ରାଜ୍ୟ କିପରି ଗ୍ରୀସ୍‌କୁ ଗିଳି ପକାଇବା ଚେଷ୍ଟା କରିଥିଲା; ମାତ୍ର ଆଶ୍ଚର୍ଯ୍ୟର କଥା ଯେ ଏହି ଛୋଟ ଦେଶଟି ଯୁଦ୍ଧକରି ନିଜକୁ ରକ୍ଷାକଲା । ତାପରେ ଗ୍ରୀସ୍‌ର ଗୌରବମୟ ଇତିହାସ କାହାଣୀ ସମ୍ବନ୍ଧରେ ମୁଁ ତତେ କିଛି କହିଛି । ସେତେବେଳେ କିପରି କେତେକ ବିଦ୍ୱାନ୍ ଓ ମହାନ୍ ଲୋକ ଗ୍ରୀସ୍‌ରେ ବାସ କରୁଥିଲେ ଏବଂ ସେମାନେ ସାହିତ୍ୟ ଓ ଅନୁପମ ସୌନ୍ଦର୍ଯ୍ୟର କଳାସବୁ ସୃଷ୍ଟି କଲେ, ଆମେ ଦେଖିଛେ ।

ଗ୍ରୀସ୍‌ର ଏହି ସୁବର୍ଣ୍ଣଯୁଗ ବେଶି ଦିନ ରହି ନ ଥିଲା । ମାସିଡୋନିଆର ଆଲେକ୍‌ଜାଣ୍ଡର ତାଙ୍କର ବିଜୟ ଦ୍ୱାରା ଚାରିଆଡ଼େ ଗ୍ରୀସ୍‌ର ଯଶ ପ୍ରଚାର କରିଥିଲେ; ମାତ୍ର ତାଙ୍କ ଆଗମନ ସଙ୍ଗେ ସଙ୍ଗେ ଗ୍ରୀସ୍‌ର ବିରାଟ ସଂସ୍କୃତି ମଉଳିଗଲା । ଆଲେକ୍‌ଜାଣ୍ଡର ଇରାନ୍ ସାମ୍ରାଜ୍ୟକୁ ଧ୍ୱଂସ କଲେ ଏବଂ ଏପରିକି ଏକ ବିଜୟୀ ରୂପେ ଭାରତର ସୀମାନ୍ତ ବି ଅତିକ୍ରମ କରିଥିଲେ । ସେ ଯେ ଜଣେ ବଡ଼ ସେନାପତି ଥିଲେ, ଏଥିରେ ସନ୍ଦେହ ନାହିଁ । ତାଙ୍କ ନାମରେ ଅସଂଖ୍ୟ କାହାଣୀ ସବୁ ରହିଛି ଏବଂ ସେ ଯେଉଁ ଯଶ ଅର୍ଜିଥିଲେ, ତାହା ପାଇବାର ଯୋଗ୍ୟ ସେ ନ ଥିଲେ । କେବଳ ବେଶି ପଢ଼ିଥିବା ଲୋକେ ହିଁ ସକ୍ରେଟିସ୍, ପ୍ଲେଟୋ, ଫିଡ଼ିଆସ୍, ସୋଫୋକ୍ଲିସ୍ ଏବଂ ଗ୍ରୀସ୍‌ର ଅନ୍ୟ ମହାନ୍ ଲୋକଙ୍କ ସମ୍ବନ୍ଧରେ କିଛି କିଛି ଜାଣିଥିଲେ । ମାତ୍ର ଆଲେକ୍‌ଜାଣ୍ଡରଙ୍କ ନାମ କିଏ ନ ଶୁଣିଛି ?

ଅନ୍ୟମାନଙ୍କ ତୁଳନାରେ ଆଲେକ୍‌ଜାଣ୍ଡର ବିଶେଷ କିଛି କରି ନ ଥିଲେ । ଇରାନ୍ ସାମ୍ରାଜ୍ୟ ପୁରୁଣା ହୋଇଥିଲା ଓ ଦୋହଲୁଥିଲା । ଏଣୁ ବେଶିଦିନ ବଞ୍ଚିରହିବା ପ୍ରାୟ ସମ୍ଭବ ହୋଇ ନାହିଁ । ଭାରତରେ ଆଲେକ୍‌ଜାଣ୍ଡରଙ୍କ ଆଗମନ ଗୋଟାଏ ଆକ୍ରମଣ ପରି ଥିଲା ଏବଂ ଏଠାରେ ତାର କୌଣସି ମହତ୍ତ୍ୱ ନାହିଁ । ବୋଧହୁଏ ଆଲେକ୍‌ଜାଣ୍ଡର ଆଉ କିଛି ଦିନ ବଞ୍ଚିଥିଲେ କିଛି ଭଲ କରିପାରିଥାନ୍ତେ । ମାତ୍ର ତାଙ୍କର ସାମ୍ରାଜ୍ୟ ରହି ନ ଥିଲେ ସୁଦ୍ଧା ତାଙ୍କ ନାମ ଆଜିସୁଦ୍ଧା ରହିଛି । *

---

* ଫିଡ଼ିଆସ୍ ଗ୍ରୀସ୍‌ର ଜଣେ ପ୍ରସିଦ୍ଧ ଶିଳ୍ପୀ । ଖ୍ରୀ. ପୂ. ୫୦୦ ବର୍ଷରେ ଥିଲେ । ଓଲିମ୍ପିଆରେ ତାଙ୍କର ମୂର୍ତ୍ତି ରହିଛି । ପୃଥିବୀର ସାତଟି ଆଶ୍ଚର୍ଯ୍ୟରୁ ଏହା ଗୋଟିଏ ।

ଆଲେକ୍‌ଜାଣ୍ଡରଙ୍କର ପ୍ରାଚ୍ୟ ଆକ୍ରମଣ ଫଳରେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଭିତରେ ନୂତନ ସମ୍ପର୍କ କାଏମ ହେଲା । ଗ୍ରୀକ୍‌ମାନେ ବହୁସଂଖ୍ୟାରେ ପ୍ରାଚ୍ୟକୁ ଗଲେ ଏବଂ ପୁରୁଣା ସହରରେ ଅଥବା ନିଜେ ବସାଇଥିବା ନୂତନ ଉପନିବେଶରେ ବସବାସ କଲେ । ଆଲେକ୍‌ଜାଣ୍ଡରଙ୍କ ପୂର୍ବରୁ ମଧ୍ୟ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଭିତରେ ସମ୍ପର୍କ ରହିଥିଲା ଏବଂ ବେପାର ଚାଲୁଥିଲା । କିନ୍ତୁ ତାଙ୍କ ପରେ ଏହା ବହୁପରିମାଣରେ ବଢ଼ିଯାଇଥିଲା ।

ଆଲେକ୍‌ଜାଣ୍ଡରଙ୍କ ଆକ୍ରମଣ ଗ୍ରୀକ୍‌ମାନଙ୍କ ପକ୍ଷରେ ବଡ଼ ଦୁର୍ଭାଗ୍ୟରୂପେ ଆସିଥିଲା । କେତେକ ଲୋକ କହନ୍ତି ଯେ ତାଙ୍କ ସୈନ୍ୟମାନେ ଇରାକ୍‌ରୁ ମେଲେରିଆ ଜୀବାଣୁ ଗ୍ରୀସ୍‌ର ଜନ୍ମଭୂମିକୁ ନେଇ ଯାଇଥିଲେ । ଏହି ମେଲେରିଆ ବ୍ୟାପିଯାଇ ଗ୍ରୀକ୍ ଜାତିକୁ ଦୁର୍ବଳ କରି ପକାଇଲା । ମାତ୍ର ଏହା ଏକ କହିବା କଥା ଏବଂ ଏଥିରେ କେତେ-ଦୂର ସତ୍ୟତା ଅଛି କେହି ଜାଣନ୍ତି ନାହିଁ ।

ଆଲେକ୍‌ଜାଣ୍ଡରଙ୍କ କ୍ଷଣସ୍ଥାୟୀ ସାମ୍ରାଜ୍ୟର ପତନ ହେଲା; ମାତ୍ର ଏହା ସ୍ଥାନରେ କେତେକ ଶ୍ରେଷ୍ଠ ସାମ୍ରାଜ୍ୟ ସୃଷ୍ଟି ହେଲା । ଇଜିପ୍ଟରେ ଟଲେମି ଓ ପଶ୍ଚିମ-ଏସିଆରେ ସେଲ୍ୟୁକସ୍ ଥିଲେ । ଟଲେମି ଓ ସେଲ୍ୟୁକସ୍ ଦୁହେଁ ଆଲେକ୍‌ଜାଣ୍ଡରଙ୍କ ସେନାପତି । ସେଲ୍ୟୁକସ୍ ଭାରତ ଉପରେ ହାତ ପକାଇବାକୁ ଚେଷ୍ଟା କରିଥିଲେ । ମାତ୍ର ତାଙ୍କ ଫଳାଫଳକୁ ଭାରତ ସାହସର ସହିତ ତାଙ୍କର ବିରୋଧ କଲା । ଚନ୍ଦ୍ରଗୁପ୍ତ ମୌର୍ଯ୍ୟ ଉତ୍ତର ଓ ମଧ୍ୟ-ଭାରତରେ ଏକ ଶକ୍ତିଶାଳୀ ସାମ୍ରାଜ୍ୟ ସ୍ଥାପନ କଲେ । ଚନ୍ଦ୍ରଗୁପ୍ତ, ତାଙ୍କର ବ୍ରାହ୍ମଣ ଶିକ୍ଷକ ଚାଣକ୍ୟ; ତାଙ୍କ ଲିଖିତ ବହି ଅର୍ଥଶାସ୍ତ୍ର—ଏସବୁ ସମ୍ବନ୍ଧରେ ମୁଁ ମୋର ପୂର୍ବ ଚିଠିରେ ତତେ କିଛି କିଛି ଲେଖିଛି । ଆମର ସୌଭାଗ୍ୟ ଯେ ପ୍ରାୟ ୨୨୦୦ ବର୍ଷ ପୂର୍ବରୁ ଭାରତ ସମ୍ବନ୍ଧରେ ଏଥିରେ ଅନେକ ଭଲ କଥା ଲେଖାଅଛି ।

ଆମେ ପଛ କଥା ସବୁ ଆଲୋଚନା ଶେଷ କରିଛେ ଏବଂ ଆଗାମୀ ଚିଠିରେ ମୌର୍ଯ୍ୟ ସାମ୍ରାଜ୍ୟ ଓ ଅଶୋକଙ୍କ ସମ୍ବନ୍ଧରେ ଲେଖା ଆରମ୍ଭ ହେବ । ବାସ୍ତବିକ ପ୍ରାୟ ୧୪ ମାସ ତଳେ ନୈନି ଜେଲ୍‌ରେ ୧୯୩୧ ମସିହା ଜାନୁୟାରି ମାସ ୨୫ ତାରିଖରେ ଏହା ଲେଖିବି ବୋଲି ମୁଁ ତତେ କଥା ଦେଇଥିଲି । ସେ ପ୍ରତିଶ୍ରୁତି ରକ୍ଷାକରିବାକୁ ହେଲେ ମୋତେ ଲେଖିବାକୁ ପଡ଼ିବ ।

## ୨୪ । ଦେବପ୍ରିୟ ଅଶୋକ

ମାର୍ଚ୍ଚ ୩୦, ୧୯୩୨

ମୋର ଆଶଙ୍କା ଯେ ମୁଁ ଟିକିଏ ରାଜା ଓ ଯୁବରାଜମାନଙ୍କୁ ଶ୍ରେଷ୍ଠ କରି ଦେଖିବାରେ ଖୁବ୍ ପ୍ରିୟ । ସେମାନଙ୍କ ପ୍ରଶଂସା ବା ଭକ୍ତି କରିବା ଭଳି ତାଙ୍କର କିଛି ଗୁଣ

ମୁଁ ଦେଖେ ନାହିଁ । କିନ୍ତୁ ଆମେ ବର୍ତ୍ତମାନ ଯେଉଁ ଲୋକ କଥା ଆଲୋଚନା କରିବାକୁ ଯାଉଛେ, ସେ ରାଜା ଓ ସମ୍ରାଟ୍ ହୋଇଥିଲେ ସୁଦ୍ଧା ଜଣେ ମହାନ୍ ଓ ପ୍ରଶଂସାଯୋଗ୍ୟ ଲୋକ ଥିଲେ । ସେ ହେଉଛନ୍ତି ଚନ୍ଦ୍ରଗୁପ୍ତ ମୌର୍ଯ୍ୟଙ୍କ ନାତି ଅଶୋକ । ଏଚ୍. ଜି. ୱେଲ୍‌ସ * (ଯାହାଙ୍କ ସମ୍ବନ୍ଧରେ ତୁ କିଛିସୁ ପଢ଼ିଥିବୁ), ତାଙ୍କ ବହି 'ଆଉଟ୍‌ଲାଇନ ଅଫ୍ ହିଷ୍ଟ୍ରି' ( Outline of History ) ରେ ଅଶୋକଙ୍କ ସମ୍ବନ୍ଧରେ ଲେଖିଛନ୍ତି—"ଇତିହାସରେ ମହାରାଜାଧିରାଜ ସମ୍ରାଟ ଇତ୍ୟାଦି ନାନା ନାମରେ ଯେଉଁ ହଜାର ହଜାର ରାଜା ଆଦିଙ୍କ ନାମ ପୂର୍ଣ୍ଣ ହୋଇଛି, ସେଥିଭିତରେ ଏକା ଅଶୋକଙ୍କ ନାମ ଗୋଟିଏ ନକ୍ଷତ୍ର ପରି ଉଜ୍ଜ୍ୱଳ ଦେଖାଯାଏ । ଭଲଗା ଠାରୁ ଜାପାନ ପର୍ଯ୍ୟନ୍ତ ତାଙ୍କ ନାମ ଏବେ ସୁଦ୍ଧା ପୂଜାପାଏ । ଚୀନ, ତିବ୍ଦତ ଏବଂ ଭାରତରେ (ଭାରତ ତାଙ୍କର ସିଦ୍ଧାନ୍ତ ଛାଡ଼ିଦେଇଥିଲେ ସୁଦ୍ଧା) ତାଙ୍କର ମହାନତାର ଚିହ୍ନ ଏବେ ସୁଦ୍ଧା ରହିଛନ୍ତି । କନ୍‌ଷ୍ଟାଣ୍ଟାଇନ୍ ବା ସାର୍ଲମେନ୍ * ଙ୍କ ନାମ ଯେତେ ଲୋକ ଶୁଣିଛନ୍ତି, ତାହା ଅପେକ୍ଷା ଆହୁରି ଅନେକ ଲୋକ ଏବେ ସୁଦ୍ଧା ତାଙ୍କ ସ୍ମୃତିକୁ ଝୁରନ୍ତି ।"

ଏହା ବାସ୍ତବିକ ଅତି ପ୍ରଶଂସା । କିନ୍ତୁ ଅଶୋକ ଏହା ପାଇବା ଯୋଗ୍ୟ । ବିଶେଷତଃ ଏହି ସମୟର ଭାରତୀୟ ଇତିହାସ କଥା ସ୍ମରଣ କରିବା ଜଣେ ଭାରତୀୟ ପକ୍ଷରେ ଆହୁରି ଆନନ୍ଦଦାୟକ ।

ଖ୍ରୀଷ୍ଟୀୟାନ ଯୁଗ ଆରମ୍ଭର ପ୍ରାୟ ୩୦୦ ବର୍ଷ ପୂର୍ବରୁ ଚନ୍ଦ୍ରଗୁପ୍ତ ମରିଥିଲେ । ତାଙ୍କ ପରେ ତାଙ୍କ ପୁଅ ବିନ୍ଦୁସାର ରାଜାହେଲେ । ୨୫ ବର୍ଷ ପର୍ଯ୍ୟନ୍ତ ସେ ଶାନ୍ତିପୂର୍ଣ୍ଣ ଭାବରେ ରାଜତ୍ୱ କରିଥିଲେ । ସେ ଗ୍ରୀକ୍‌ମାନଙ୍କ ସହିତ ସମ୍ବନ୍ଧ ରଖିଥିଲେ ଏବଂ ତାଙ୍କ କଚେରୀକୁ ଇଜିପ୍ଟର ଟଲେମି ଓ ପଶ୍ଚିମ ଭାରତର ସେଲ୍ୟୁକସ୍‌ଙ୍କ ପୁଅ ଆଣ୍ଟିଓକ୍‌ଙ୍କ ପାଖରୁ ଦୂତ ଆସି ରହିଥିଲେ । ବାହାର ଜଗତ ସହିତ ବେପାର ଚାଲୁଥିଲା ଏବଂ କଥିତ ଅଛି ଯେ ଭାରତର ନୀଳ ନେଇ ଇଜିପ୍ଟର ଲୋକେ ତାଙ୍କ ଲୁଗା ରଙ୍ଗ କରୁଥିଲେ । ଆହୁରି ମଧ୍ୟ କହନ୍ତି ଯେ ତାଙ୍କ ମମି ବା ମୃତ ଶବଗୁଡ଼ିକୁ ଭାରତୀୟ ଲୁଗାରେ (ମସଲିନ୍) ଘୋଡ଼ାଉଥିଲେ । ବିହାରର କେତେକ ପୁରାତନ ସ୍ମୃତିରୁ ଜଣାପଡ଼େ ଯେ ମୌର୍ଯ୍ୟ ବଂଶ ଆରମ୍ଭ ପୂର୍ବରୁ ସେଠାରେ ଏକପ୍ରକାର କାଚ ତିଆରି ହେଉଥିଲା ।

---

* ଇଂରାଜୀରେ ପୃଥିବୀ ଇତିହାସ ଲେଖିଛନ୍ତି ।

* ସାର୍ଲମେନ୍—ଏ ଜଣେ ପବିତ୍ର ରୋମାନ୍ ସମ୍ରାଟ । ସମଗ୍ର ପଶ୍ଚିମ ଇଉରୋପ ଏହାଙ୍କ ସାମ୍ରାଜ୍ୟ ଅନ୍ତର୍ଭୁକ୍ତ ଥିଲା ।

ଶୁଣି ଖୁସି ହେବ ଯେ ଚନ୍ଦ୍ରଗୁପ୍ତଙ୍କ କୋର୍ଟରେ ଯେଉଁ ଗ୍ରୀକ୍‌ଦୂତ ମେଗାସ୍ଥିନିସ୍ ଥିଲେ, ସେ ଲେଖିଛନ୍ତି—ସେ ସମୟରେ ଭାରତୀୟମାନେ ଶୃଙ୍ଗାରପ୍ରିୟ ଓ ସୌନ୍ଦର୍ଯ୍ୟପ୍ରେମୀ ଥିଲେ ଏବଂ ବିଶେଷତଃ ନିଜର ଉଚ୍ଚତା ବଢ଼ାଇବା ପାଇଁ ଯୋତା ବ୍ୟବହାର କରୁଥିଲେ । ସୁତରାଂ ଉଚ୍ଚ ଯୋତା ( ଆଜିକାଲି ଯାହା ଇଂରେଜୀ ଶିକ୍ଷିତା ସ୍ତ୍ରୀଲୋକଙ୍କ ଭିତରେ ବେଶି ପ୍ରଚଳିତ ) ( High Heel ) କିଛି ଆଧୁନିକ ଆବିଷ୍କାର ନୁହେଁ ।

ସମଗ୍ର ଉତ୍ତର ଓ ମଧ୍ୟ ଭାରତ ବିନ୍ଦୁସାରଙ୍କ ସାମ୍ରାଜ୍ୟଭୁକ୍ତ ଥିଲା ଏବଂ ମଧ୍ୟ ଏସିଆ ପର୍ଯ୍ୟନ୍ତ ଏହାଁ ପ୍ରସାର ଲଭିଥିଲା । ଖ୍ରୀଷ୍ଟପୂର୍ବ ୨୬୮ରେ ବିନ୍ଦୁସାରଙ୍କ ପରେ ଅଶୋକ ଏହି ବିରାଟ ସାମ୍ରାଜ୍ୟର ଅଧିକାରୀ ହେଲେ । ବୋଧହୁଏ ଦକ୍ଷିଣ-ପୂର୍ବ ଓ ଦକ୍ଷିଣରେ ଥିବା ଅବଶିଷ୍ଟ ଅଞ୍ଚଳକୁ ନିଜ ସାମ୍ରାଜ୍ୟ ଭିତରେ ମିଶାଇବା ଉଦ୍ଦେଶ୍ୟରେ ସେ ତାଙ୍କ ରାଜତ୍ୱର ନବମ ବର୍ଷରେ କଳିଙ୍ଗ ବିଜୟ ଆରମ୍ଭ କଲେ । ଭାରତର ପୂର୍ବ ଉପକୂଳରେ ମହାନଦୀ, ଗୋଦାବରୀ ଓ କୃଷ୍ଣା ନଦୀ ମଧ୍ୟରେ କଳିଙ୍ଗ ରାଜ୍ୟ ଥିଲା । କଳିଙ୍ଗ ଲୋକେ ଖୁବ୍ ସାହସର ସହିତ ଲଢେଇ କରିଥିଲେ; ମାତ୍ର ଶେଷରେ ଭୀଷଣ ହତ୍ୟାପରେ ସେମାନେ ପରାସ୍ତ ହେଲେ । ଏହି ଯୁଦ୍ଧ ଓ ନରହତ୍ୟା ଅଶୋକଙ୍କ ମନକୁ ଏପରି ଗମ୍ଭୀର ଭାବରେ ସ୍ପର୍ଶ କଲା ଯେ ଯୁଦ୍ଧ ଓ ଯୁଦ୍ଧ ସମ୍ବନ୍ଧୀୟ ଅନ୍ୟ ସକଳ କାର୍ଯ୍ୟରେ ତାଙ୍କର ବିତୃଷ୍ଣା ଆସିଗଲା । ସେ ସେହିଦିନଠାରୁ ଆଉ ଯୁଦ୍ଧ କରି ନ ଥିଲେ । ଦକ୍ଷିଣରେ ଗୋଟିଏ ଛୋଟ ଅଂଶ ଛଡ଼ା ପ୍ରାୟ ସମଗ୍ର ଭାରତ ତାଙ୍କ ଅଧୀନରେ ଥିଲା ଏବଂ ଛୋଟ ଅଂଶଟିକୁ ଜୟ କରିବା ମଧ୍ୟ ତାଙ୍କ ପକ୍ଷରେ ଖୁବ୍ ସହଜ ଥିଲା । କିନ୍ତୁ ସେ ସେଥିରୁ ବିରତ ହେଲେ । ଏଚ୍. ଜି. ୱେଲ୍‌ସ କହନ୍ତି, ଯେତେ ସାମରିକ ସମ୍ରାଟ୍ ଥିଲେ ତାଙ୍କ ଭିତରେ ଅଶୋକ ହିଁ ଏକମାତ୍ର ଲୋକ ଯେ ଜୟଲାଭ କରି ସ୍ୱେଚ୍ଛା ଯୁଦ୍ଧ ବନ୍ଦ କରିଥିଲେ ।

ଆମର ସୌଭାଗ୍ୟ ଯେ ଅଶୋକ କଅଣ ଭାବୁଥିଲେ ଓ କଅଣ କରିଥିଲେ ଏସବୁ କଥା ତାଙ୍କ ନିଜ ଭାଷାରେ ଲେଖା ହୋଇ ରହିଛି । ପାହାଡ଼ ଓ ପଥର ଉପରେ ତାଙ୍କର ଯେଉଁ ଅସଂଖ୍ୟ ଉପଦେଶ ଖୋଳା ହୋଇ ରହିଛି, ସେଥିରେ ତାଙ୍କର ଲୋକ ଓ ଭବିଷ୍ୟତ ବଂଶଧରମାନଙ୍କ ସନ୍ଦେଶ ରହିଛି । ତୁ ଜାଣୁ, ଏଲାହାବାଦରେ ଥିବା ଦୁର୍ଗରେ ଏକ ଅଶୋକସ୍ତମ୍ଭ ଅଛି । ଆମ ଦେଶରେ ଆହୁରି ଅନେକ ସ୍ତମ୍ଭ ଅଛି ।

ଯୁଦ୍ଧ ଓ ବିଜୟରେ ହେଉଥିବା ହତ୍ୟାରେ ଅଶୋକଙ୍କର କିପରି ଘୃଣା ଓ ବିତୃଷ୍ଣା ଆସିଲା, ତାହା ଏହିସବୁ ଉପଦେଶରୁ ଦେଖିବାକୁ ମିଳେ । ସେ କହନ୍ତି, ନିଜକୁ ଜୟ କରିବା ଏବଂ ଧର୍ମଦ୍ୱାରା ମଣିଷ ହୃଦୟ ଜୟ କରିବା ହିଁ ପ୍ରକୃତ ବିଜୟ । ଏହି ଉପଦେଶରୁ

କେତେକ ମୁଁ ତଳେ ଉଦ୍ଧୃତ କରୁଛୁ । ସେଗୁଡ଼ିକ ଖୁବ୍ ମନୋମୁଗ୍ଧକର ଏବଂ ତାକୁ ପଢ଼ିଲେ ଅଶୋକଙ୍କୁ ତୁ ଆହୁରି ଭକ୍ତି କରିବୁ ।

ଗୋଟିଏ ଉପଦେଶରେ ଅଛି—"ଧାର୍ମିକ ଓ ଦୟାଳୁ ସମ୍ରାଟଙ୍କ ରାଜତ୍ୱ ଗ୍ରହଣର ଆଠ ବର୍ଷ ପରେ କଳିଙ୍ଗ ଜୟ ହୋଇଥିଲା । ୧, ୫୦,୦୦୦ ଲୋକଙ୍କୁ ବନ୍ଦୀ ଭାବରେ ନିଆ ଯାଇଥିଲା; ୧,୦୦,୦୦୦ ଲୋକଙ୍କୁ ହତ୍ୟା କରାଯାଇଥିଲା ଏବଂ ଏହି ସଂଖ୍ୟାରୁ ଆହୁରି ବହୁଗୁଣ ମରିଥିଲେ ।

"କଳିଙ୍ଗକୁ ନିଜ ସାମ୍ରାଜ୍ୟ ଅନ୍ତର୍ଭୁକ୍ତ କରିବା ସଙ୍ଗେ ସଙ୍ଗେ ହିଁ ସେ ଧର୍ମ ଆଇନ ମାନିବାକୁ ଲାଗିଲେ ଏବଂ ଧର୍ମ ପ୍ରଚାର କଲେ । ଏହିପରି ଭାବରେ କଳିଙ୍ଗ ଜୟ କରିଥିବା ହେତୁ ସମ୍ରାଟଙ୍କ ମନରେ ବିତୃଷ୍ଣା ଆସିଲା । କାରଣ ଆଗରୁ ଜୟ ହୋଇ ନ ଥିବା ଦେଶକୁ ଜୟ କରିବାକୁ ହେଲେ ନରହତ୍ୟା, ମୃତ୍ୟୁ ହେବ ଏବଂ ଅନେକଙ୍କୁ ବନ୍ଦୀ କରିବାକୁ ପଡ଼ିବ । ଏହା ସମ୍ରାଟଙ୍କ ପକ୍ଷରେ ଅତ୍ୟନ୍ତ ଦୁଃଖ ଓ ପଶ୍ଚାତାପର ବିଷୟ ଥିଲା ।"

ସେହି ଉପଦେଶରେ ଲେଖାଅଛି ଯେ କଳିଙ୍ଗରେ ଯେତେ ହତ୍ୟା ହୋଇଥିଲା ଓ ଯେତେ ବନ୍ଦୀ ହୋଇଥିଲେ, ସେହି ନରହତ୍ୟା ଓ ବନ୍ଦୀର ଶହେ ଭାଗ କିମ୍ବା ହଜାରେ ଭାଗରୁ ଏକଭାଗ ସୁଦ୍ଧା ଅଶୋକ ସହ୍ୟ କରିବେ ନାହିଁ ।

"ଆହୁରି ମଧ୍ୟ କେହି ଯଦି ତାଙ୍କ ପ୍ରତି ଅନ୍ୟାୟ କରୁଥିଲା, ତେବେ ସେ ଯେତେଦୂର ସମ୍ଭବ, ତାହା ସହ୍ୟ କରୁଥିଲେ । ଏପରିକି ତାଙ୍କ ରାଜ୍ୟ ଭିତରେ ଜଙ୍ଗଲୀ ଜାତି ରହୁଥିଲେ । ସେମାନଙ୍କ ପ୍ରତି ସମ୍ରାଟ ଦୟା କରୁଥିଲେ ଓ ସେମାନଙ୍କୁ ଠିକ କରିବା ନିମନ୍ତେ ଚେଷ୍ଟା କରୁଥିଲେ । ତାହା ନ କଲେ ତାଙ୍କ ମନରେ ଅନୁତାପ ଆସୁଥିଲା । କାରଣ ତାଙ୍କ ମତରେ ପ୍ରାଣୀମାତ୍ରକେ ଧୀର, ସଂଯମୀ, ପ୍ରଶାନ୍ତଚିତ୍ତ, ପ୍ରଫୁଲ୍ଲ ହେବା ଦରକାର ।"

ଅଶୋକ ଆହୁରି ବୁଝାଇଛନ୍ତି ଯେ କର୍ତ୍ତବ୍ୟ ବା ଧର୍ମର ଆଇନ ଦ୍ୱାରା ମଣିଷର ହୃଦୟକୁ ଜୟ କରିବା ହିଁ ପ୍ରକୃତ ବିଜୟ । ଏହା କଲେ ଲୋକ କେବଳ ନିଜ ରାଜ୍ୟ ନୁହେଁ, ଦୂର ରାଜ୍ୟ ସବୁରେ ମଧ୍ୟ ପ୍ରକୃତ ଜୟଲାଭ କରିଥାଏ ।

ଏହି ଉପଦେଶମାଳାରେ ଯେଉଁ ଆଇନ କଥା ବାରମ୍ବାର କୁହାହୋଇଛି, ତାହା ହେଉଛି ବୁଦ୍ଧଙ୍କ ଉପଦେଶ । ଅଶୋକ ଜଣେ ନୈଷ୍ଠିକ ବୁଦ୍ଧଭକ୍ତ ହେଲେ ଏବଂ ବୌଦ୍ଧଧର୍ମ ପ୍ରଚାର ଲାଗି ତାଙ୍କର ସାଧ୍ୟମତେ ଚେଷ୍ଟା କରିଥିଲେ । ମାତ୍ର ଏଥିଲାଗି କୌଣସି ଜୋର ଜବରଦସ୍ତି ବା ବାଧ୍ୟବାଧକତା କରାଯାଇ ନ ଥିଲା । କେବଳ ଲୋକଙ୍କ ହୃଦୟ ଜୟକରି

ଯେ ସେମାନଙ୍କୁ ବୌଦ୍ଧଧର୍ମାବଲମ୍ବୀ କରୁଥିଲେ । ଅଶୋକ ଯେପରି ସହନଶୀଳତା ଦେଖାଇଛନ୍ତି, ଧର୍ମପ୍ରଚାରକଙ୍କ ଭିତରେ ସେପରି ବିରଳ ଦେଖାଯାଏ । ନିଜ ମତରେ ଲୋକଙ୍କୁ ଦୀକ୍ଷିତ କରିବା ନିମନ୍ତେ ସେମାନେ ବଳ, ଆତଙ୍କ ଏବଂ ଧସ୍ପାବାଜୀ କରିବା ପାଇଁ ପ୍ରାୟ ପଶ୍ଚାତ୍‌ପଦ ନାହାନ୍ତି । ସମଗ୍ର ଇତିହାସ ହିଁ ଧର୍ମ ଲାଗି ଶାସ୍ତି ଓ ଧର୍ମଯୁଦ୍ଧରେ ପୂର୍ଣ୍ଣ ହୋଇଛି । ଧର୍ମ ଓ ଭଗବାନ ନାମରେ ଯେତେ ରକ୍ତ ବହିଛି, ବୋଧହୁଏ ଅନ୍ୟ କାହାରି ପାଇଁ ସେପରି ହୋଇ ନାହିଁ । ସୁତରାଂ ଭାରତର ଜଣେ ଯୋଗ୍ୟ ସନ୍ତାନ ଅତ୍ୟନ୍ତ ଧାର୍ମିକ ଓ ଗୋଟିଏ ଶକ୍ତିଶାଳୀ ସାମ୍ରାଜ୍ୟର ମାଲିକ ହୋଇ ସୁଦ୍ଧା ନିଜ ମତରେ ଲୋକଙ୍କୁ ଦୀକ୍ଷିତ କରିବା ନିମନ୍ତେ କି ଉପାୟ ଅବଲମ୍ବନ କରିଥିଲେ, ସ୍ମରଣ କରିବା ବଡ଼ ଭଲ । କୌଣସି ଲୋକକୁ ଖଣ୍ଡା ବା ବନ୍ଧୁକର ଭୟ ଦେଖାଇ ନିଜ ଧର୍ମ ଏବଂ ବିଶ୍ୱାସରେ ଦୀକ୍ଷିତ କରାଇବାକୁ ଚେଷ୍ଟାକରିବା ଅତ୍ୟନ୍ତ ନିର୍ବୋଧତା ।

ଅଶୋକଙ୍କୁ 'ଦେବାନାମ୍ ପ୍ରିୟ' କହୁଥିଲେ ବୋଲି ଏହି ଉପଦେଶମାଳାରେ ଲେଖାଅଛି । ଅଶୋକ ପଶ୍ଚିମ-ଏସିଆର-ରାଜ୍ୟ, ଇଉରୋପ ଓ ଆଫ୍ରିକାକୁ ଦୂତ ପଠାଇଥିଲେ । ତୋର ସ୍ମରଣ ଥିବ, ସିଲୋନ୍‌କୁ ସେ ତାଙ୍କର ନିଜ ଭାଇ ମହେନ୍ଦ୍ର ଓ ଭଉଣୀ ସଂଘମିତ୍ରାଙ୍କୁ ପଠାଇଥିଲେ ଏବଂ ଗୟାରେ ଥିବା ପବିତ୍ର ଅଶ୍ୱତ୍ଥ ଗଛର ଏକ ଶାଖା ସେମାନେ ସାଙ୍ଗରେ ନେଇ ଯାଇଥିଲେ ବୋଲି କୁହାଯାଏ । ଅନୁରୁଦ୍ଧପୁରରେ ଏକ ମନ୍ଦିରରେ ଆମେ ଯେଉଁ ଅଶ୍ୱତ୍ଥଗଛ ଦେଖିଥିଲେ, ତୋର ମନେ ଅଛି ତ ? ଆମକୁ ଲୋକେ କହିଥିଲେ ଯେ ସେହି ଯେଉଁ ପୁରୁଣା ଶାଖା ସେମାନେ ଆଣିଥିଲେ, ସେଥିରୁ ଏହି ଗଛ ହୋଇଥିଲା ।

ଭାରତରେ ବୌଦ୍ଧଧର୍ମ ଶୀଘ୍ର ପ୍ରସାର ଲଭିଥିଲା । ଧର୍ମ ବୋଇଲେ କେବଳ କେତେଗୁଡ଼ାଏ ଫମ୍ପା ପ୍ରାର୍ଥନା, ପୂଜା, ଉତ୍ସବ ବୋଲି ଅଶୋକ ବୁଝୁ ନ ଥିଲେ; ମାତ୍ର ଭଲକାର୍ଯ୍ୟ, ସାମାଜିକ ଉନ୍ନତି ହେବା ଆବଶ୍ୟକ ବୋଲି ବିଚାରୁଥିଲେ । ସେଥିଲାଗି ଦେଶସାରା ବଗିଚା, ଡାକ୍ତରଖାନା, କୂଅ ଓ ରାସ୍ତା ଆଦି ତିଆରି ହେବାକୁ ଲାଗିଲା । ସ୍ତ୍ରୀଲୋକଙ୍କ ଶିକ୍ଷା ପାଇଁ ବିଶେଷ ବ୍ୟବସ୍ଥା କରାହୋଇଥିଲା । ଉତ୍ତରରେ ପେଶୱାର ନିକଟରେ ତକ୍ଷଶୀଳା, ମଥୁରା (ଯାହାକୁ ଇଂରେଜମାନେ କଦର୍ଥ କରି ମୁଟ୍ରା ବୋଲି କହୁଛନ୍ତି), ମଧ୍ୟ ଭାରତରେ ଉଜ୍ଜୟିନୀ, ବିହାରରେ ପାଟନା ନିକଟରେ ନାଲନ୍ଦା—ଏହି ଗୁଡ଼ିକ ସହରରେ ବିଶ୍ୱବିଦ୍ୟାଳୟ ଥିଲା । ଏଠାକୁ ଖାଲି ଭାରତ ନୁହେଁ, ଚୀନଠାରୁ ଆରମ୍ଭ କରି ପଶ୍ଚିମ-ଏସିଆ ଆଦି ଦୂରଦେଶରୁ ଛାତ୍ର ଆସୁଥିଲେ । ଏହି ଛାତ୍ରମାନେ ଦେଶକୁ ଫେରିଲାବେଳେ ବୁଦ୍ଧଙ୍କ ଉପଦେଶ ନେଇ ଯାଉଥିଲେ । ଦେଶସାରା ବଡ଼ ବଡ଼ ଧର୍ମମନ୍ଦିରସବୁ ହୋଇଗଲେ ଏବଂ ସେଗୁଡ଼ିକୁ 'ବିହାର' ବୋଲି କହୁଥିଲେ । ପାଟନା ବା

ପାଟଳୀପୁତ୍ରର ଗୁରୁଆଡ଼େ ଏତେ ମନ୍ଦିର ହୋଇଥିଲା ଯେ ସାରା ପ୍ରଦେଶଟିକୁ ଭିହାର ବା ବିହାର ବୋଲି କହିବାକୁ ଲାଗିଲେ । ମାତ୍ର ସବୁ କଥାରେ ହେଲା ପରି ଏହିସବୁ ମନ୍ଦିରର ଶିକ୍ଷାକ୍ଷେତ୍ର ହୋଇ ରହିବାର ସ୍ୱତ କ୍ରମେ ଉଭେଇଗଲା ଏବଂ ଏହା କ୍ରମେ ଖାଲି କେତେକ କାର୍ଯ୍ୟକ୍ରମ ପାଳନ ଓ ପୂଜା କରିବାର ସ୍ଥାନ ହୋଇ ରହିଲା ।

ଅଶୋକ ପଶୁମାନଙ୍କ ଜୀବନ ରକ୍ଷା କରିବାକୁ ମଧ୍ୟ ଲାଗିଗଲେ । ବିଶେଷଭାବରେ ପଶୁମାନଙ୍କ ଚିକିତ୍ସା ଲାଗି ଡାକ୍ତରଖାନା ତିଆରି ହୋଇଥିଲା ଏବଂ ପଶୁବଳି ବାରଣ କରାହେଲା । ଏହି ଦୁଇଟି ବିଷୟରେ ଆମମାନଙ୍କ ଅପେକ୍ଷା ସେ ଆହୁରି ଅଗ୍ରଣୀ ଥିଲେ । ଦୁଃଖର କଥା ଯେ ଆଜି ସୁଦ୍ଧା କେତେ ପରିମାଣରେ ପଶୁବଳିପ୍ରଥା ରହିଛି ଏବଂ ଏହା ଧର୍ମର ଏକ ବିଶିଷ୍ଟ ଅଙ୍ଗ ରୂପେ ଗଣାଯାଉଛି । ପଶୁମାନଙ୍କ ଚିକିତ୍ସା ଲାଗି ବିଶେଷ କିଛି ବ୍ୟବସ୍ଥା ନାହିଁ ।

ଅଶୋକଙ୍କ ଉଦାହରଣ ଓ ବୌଦ୍ଧଧର୍ମ ପ୍ରଚାର ଫଳରେ ନିରାମିଷ ଭୋଜନର ଖୁବ୍ ପ୍ରଚଳନ ହେଲା । ସେପର୍ଯ୍ୟନ୍ତ ଭାରତରେ କ୍ଷତ୍ରିୟ ଓ ବ୍ରାହ୍ମଣମାନେ ସାଧାରଣତଃ ମାଂସ ଖାଉଥିଲେ ଏବଂ ମଦ ଓ ଅନ୍ୟ ନିଶା ସେବନ କରୁଥିଲେ । ମାଂସ ଖାଇବା ଓ ମଦ ପିଇବା ବହୁତ କମିଗଲା ।

ଏହିପରି ସାଧାରଣ ମଙ୍ଗଳ କରିବା ନିମନ୍ତେ ଯଥାସମ୍ଭବ ଚେଷ୍ଟାକରି ଅଶୋକ ୩୮ ବର୍ଷ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ସେ ସର୍ବଦା ସାଧାରଣ କାର୍ଯ୍ୟ ନିମନ୍ତେ ପ୍ରସ୍ତୁତ ଥିଲେ । "ସର୍ବଦା ସବୁ ସ୍ଥାନରେ ମୁଁ ଖାଉଥିଲାବେଳେ ବା ଅନ୍ତଃପୁରରେ ଥିଲାବେଳେ, ଶୋଇଥିଲାବେଳେ, ଗାଡ଼ିରେ ଯାଉଥିଲା ବେଳେ, ରାଜବଗିଚାରେ ଥିଲାବେଳେ ଯେତେବେଳେ ହେଉ, ଦରକାର ପଡ଼ିଲେ ରାଜକର୍ମଚାରୀମାନେ ଲୋକଙ୍କର କିଛି କାର୍ଯ୍ୟ ଥିଲେ ମୋତେ ଜଣାଇବେ ।" ଯଦି କୌଣସି ଅସୁବିଧା ଘଟେ, ତେବେ ସଙ୍ଗେ ସଙ୍ଗେ ତାଙ୍କ ନିକଟକୁ ଖବର ଯିବ –"ଯେ କୌଣସି ମୁହୂର୍ତ୍ତ ଓ ଯେ କୌଣସି ସ୍ଥାନ ହେଉ ପଛକେ"; କାରଣ ସେ କହନ୍ତି—"ସାଧାରଣଙ୍କ ହିତ ଲାଗି ମତେ ଅବଶ୍ୟ କାର୍ଯ୍ୟ କରିବାକୁ ପଡ଼ିବ ।"

ଅଶୋକ ଖ୍ରୀଷ୍ଟପୂର୍ବ ୨୨୬ରେ ମଲେ । ତାଙ୍କ ମୃତ୍ୟୁର କିଛି ଦିନ ପୂର୍ବରୁ ସେ ବୌଦ୍ଧସନ୍ନ୍ୟାସୀ ହୋଇଥିଲେ ।

ମୌର୍ଯ୍ୟକାଳର ଅଳ୍ପ କେତେକ ଅବଶିଷ୍ଟାଂଶ ରହିଛି । କିନ୍ତୁ ଯାହା ବା ଅଛି, ଏପର୍ଯ୍ୟନ୍ତ ଭାରତରେ ଅର୍ଯ୍ୟସଭ୍ୟତା ସମ୍ବନ୍ଧରେ ଯେତେ ଆବିଷ୍କାର ହୋଇଛି, ସେଥି-ଭିତରେ ପୁରାତନ—ଆମେ ବର୍ତ୍ତମାନ ମହେଞ୍ଜୋଦାରୋ କଥା ଆଲୋଚନା କରୁ ନାହିଁ ।

ବାରାଣସୀ ନିକଟରେ ଥିବା ସାରନାଥରେ ବି ସେହି ମନୋରମ ଅଶୋକସ୍ତମ୍ଭ ଉପରେ ସିଂହ ଥିବାର ଦେଖିଥିବୁ ।

ଅଶୋକଙ୍କ ରାଜଧାନୀ ପ୍ରସିଦ୍ଧ ପାଟଳୀପୁତ୍ରର ଆଉ କିଛି ନାହିଁ । ପ୍ରାୟ ୧୫୦୦ ବର୍ଷ ପୂର୍ବେ, ଅଶୋକଙ୍କ ମୃତ୍ୟୁର ୬୦୦ ବର୍ଷ ପରେ ଫା-ହିଏନ୍ ନାମକ ଜଣେ ଚୀନ ପରିବ୍ରାଜକ ଏଠାକୁ ଆସିଥିଲେ । ସେତେବେଳେ ବି ଏହି ସହରଟି ଖୁବ୍ ସଙ୍ଗୀତ, ଉନ୍ନତ ଓ ସମୃଦ୍ଧିଶାଳୀ ଥିଲା । ସେତେବେଳକୁ ଅଶୋକଙ୍କ ରାଜପ୍ରାସାଦ ପଥରର ଭଗ୍ନସ୍ତୂପ ହୋଇଥିଲା । ଏହି ଭଗ୍ନସ୍ତୂପ ଦେଖି ଫା-ହିଏନ୍ ମୁଗ୍ଧ ହୋଇ ତାଙ୍କ ପରିଭ୍ରମଣ ବୃତ୍ତାନ୍ତରେ ଲେଖିଛନ୍ତି, ଏହି କାର୍ଯ୍ୟଟିକୁ ମଣିଷ କରିଲା ପରି ମନେ ହେଉ ନ ଥିଲା ।

ବିରାଟ ପ୍ରସ୍ତରରେ ଗଢ଼ା ରାଜପ୍ରାସାଦ ଯାଇଛି, ତାହାର କୌଣସି ଚିହ୍ନ ସୁଦ୍ଧା ନାହିଁ; ମାତ୍ର ଅଶୋକଙ୍କ ସ୍ମୃତି ସମଗ୍ର ଏସିଆ ମହାଦେଶରେ ରହିଛି ଏବଂ ତାଙ୍କ ଉପଦେଶମାନ ଏପରି ଭାଷାରେ ଲେଖାଯାଇଛି, ଯାହା ଆମେ ବୁଝିପାରୁ ଓ ଗ୍ରହଣ କରିପାରୁ । ଏଥିରୁ ଆମର ବହୁତ ଶିଖିବାର ଅଛି । ଏହି ଚିଠିଟି ଲମ୍ବା ହୋଇଯାଇଛି । ତୋତେ ବ୍ୟସ୍ତ ଲାଗିପାରେ । ଅଶୋକଙ୍କ ଉପଦେଶରୁ ଗୋଟିଏ ଶ୍ରେଷ୍ଠ ଅଂଶ ଉଦ୍ଧୃତ କରି ମୁଁ ଏହା ଶେଷ କରିବି ।

"ଏକ ବା ଅନ୍ୟ କାରଣରୁ ସକଳ ସମ୍ପ୍ରଦାୟକୁ ଭକ୍ତି କରିବା ଉଚିତ । ଏହା କରିବାଦ୍ୱାରା ମଣିଷ ନିଜ ସମ୍ପ୍ରଦାୟର ଖ୍ୟାତି ବଢ଼ାଏ ଏବଂ ତାହା ସଙ୍ଗେ ସଙ୍ଗେ ଅନ୍ୟ ସମ୍ପ୍ରଦାୟ ଲୋକଙ୍କର ମଧ୍ୟ ସେବା କରେ ।"

## ୨୫ । ଅଶୋକଙ୍କ ବେଳର ଦୁନିଆ

ମାର୍ଚ୍ଚ ୩୧, ୧୯୩୨

ଆମେ ଜାଣୁ, ଅଶୋକ ଦୂର ଦେଶମାନଙ୍କୁ ରାଜଦୂତ ଓ ଅନ୍ୟମାନଙ୍କୁ ପ୍ରେରଣ କରୁଥିଲେ ଏବଂ ଭାରତ ଓ ଏହି ଦେଶମାନଙ୍କ ଭିତରେ ବରାବର ସମ୍ପର୍କ ଓ ବାଣିଜ୍ୟ ଲାଗିଥିଲା । ଅବଶ୍ୟ ଏ ବାଣିଜ୍ୟ ସମ୍ପର୍କ କଥା କହିଲାବେଳେ ବର୍ତ୍ତମାନ ଯେପ୍ରକାର ରହିଛି, ସେପରି ଆଦୌ ନୁହେଁ ବୋଲି ତୁ ସେପରି ମନେରଖୁ । ଆଜିକାଲି ରେଳଗାଡ଼ି, ଜାହାଜ, ଉଡ଼ାଜାହାଜ ଇତ୍ୟାଦିରେ ବେପାର କରିବାଲାଗି ଯିବା ଖୁବ୍ ସହଜ; କିନ୍ତୁ ସେହି ଅତୀତ

କାଳରେ ପ୍ରତ୍ୟେକ ଯାତ୍ରାରେ ବହୁତ କ୍ଷତି ହେଉଥିଲା ଏବଂ ଅନେକ ଦିନ ଲାଗୁଥିଲା । କେବଳ ଦୁଃସାହସୀ ଓ ଟାଣୁଆ ଲୋକେ ଏପରି ଯାତ୍ରା କରୁଥିଲେ । ସୁତରାଂ ସେକାଳ ସହିତ ଆଜିକାଲିର ବେପାରର ଆଦୌ ତୁଳନା ହୋଇପାରେନା ।

ଅଶୋକ ଏହି ଯେଉଁ "ଦୂରଦେଶ" କଥା କହିଛନ୍ତି, ସେଗୁଡ଼ିକ କଅଣ ? ଅଶୋକଙ୍କ ବେଳେ ଦୁନିଆ କିପରି ଥିଲା ? ଇଜିପ୍ଟ ଓ ଭୂମଧ୍ୟସାଗର ଉପକୂଳ ଛଡ଼ା ଆଫ୍ରିକା ସମ୍ବନ୍ଧରେ ଆମେ କିଛି ଜାଣୁନା । ସେ କାଳର ଉତ୍ତର, କେନ୍ଦ୍ର ଓ ପୂର୍ବ ଇଉରୋପ ଏବଂ ଉତ୍ତର ଓ ମଧ୍ୟଏସିଆ ସମ୍ବନ୍ଧରେ କିଛି ବର୍ଣ୍ଣନା ନାହିଁ । ଆମେରିକା ସମ୍ବନ୍ଧରେ ବି ଆମେ କିଛି ଜାଣୁନା । କିନ୍ତୁ ଅନେକ ଲୋକ ମନେକରନ୍ତି ଯେ ଆଦିମ କାଳରୁ ଆମେରିକା ମହାଦେଶରେ ଖୁବ ଉନ୍ନତ ସଭ୍ୟତା ରହିଆସିଛି । ଅନେକ ଦିନ ପରେ ୧୪୯୨ ଖ୍ରୀଷ୍ଟାବ୍ଦରେ କଲମ୍ବସ ଆମେରିକା 'ଆବିଷ୍କାର' କଲେ ବୋଲି କୁହାଯାଏ । ଆମେ ଜାଣୁ ସେତେବେଳେ ଦକ୍ଷିଣ ଆମେରିକାର ପେରୁ ଓ ତାର ଚତୁଃପାର୍ଶ୍ୱସ୍ଥ ଦେଶମାନଙ୍କରେ ଉଚ୍ଚ ଧରଣର ସଭ୍ୟତା ଥିଲା । ସୁତରାଂ ଏହା ଖୁବ୍ ସମ୍ଭବ ଯେ ଖ୍ରୀଷ୍ଟପୂର୍ବ ୩ୟ ଶତାବ୍ଦୀରେ ଯେତେବେଳେ ଅଶୋକ ଭାରତବର୍ଷରେ ଥିଲେ, ସେତେବେଳେ ଆମେରିକାରେ ଶିକ୍ଷିତ ଲୋକେ ବାସ କରୁଥିଲେ ଏବଂ ସୁସଂଗଠିତ ସମାଜ ଗଢ଼ିଥିଲେ । ମାତ୍ର ସେ ସମ୍ବନ୍ଧରେ ଆମ ନିକଟରେ କୌଣସି ପ୍ରମାଣ ନାହିଁ; ତେଣୁ ଖାଲି ଅନୁମାନ କରି କିଛି ଲାଭ ନାହିଁ । ମୁଁ ଏଗୁଡ଼ିକ ଉଲ୍ଲେଖ କଲି; କାରଣ ଆମେ ସବୁ ଭାବୁ ଯେ ଆମେ ଯେଉଁ ଦେଶର ନାମ ଶୁଣିଛେ ବା ପଢ଼ିଛେ କେବଳ ସେହିସବୁ ଦେଶରେ ସଭ୍ୟ ଲୋକେ ବାସ କରୁଥିଲେ । ଅନେକ କାଳ ପର୍ଯ୍ୟନ୍ତ ଇଉରୋପୀୟମାନେ ପ୍ରାଚୀନ ଇତିହାସ ବୋଇଲେ କେବଳ ଗ୍ରୀସ୍, ରୋମ ଏବଂ ଇହୁଦୀଙ୍କ ଇତିହାସ ବୋଲି ବୁଝୁଥିଲେ । ତାଙ୍କର ସେହି ପୂର୍ବ ଧାରଣାନୁସାରେ ପୃଥିବୀର ଅନ୍ୟ ଅଂଶସବୁ ସେ ସମୟରେ ବୋଧହୁଏ ଜଙ୍ଗଲ ଥିଲା । ଯେତେବେଳେ ତାଙ୍କ ଦେଶର ବିଦ୍ୱାନ୍ ଓ ପ୍ରତ୍ନତତ୍ତ୍ୱବିଦ୍‌ମାନେ ଚୀନ୍, ଭାରତ ଓ ଅନ୍ୟ ଦେଶ କଥା ପ୍ରକାଶ କଲେ, ସେତେବେଳେ ସେମାନଙ୍କର ଜ୍ଞାନ କିପରି ସୀମାବଦ୍ଧ, ତାହା ବୁଝିପାରିଲେ । ସୁତରାଂ ଆମକୁ ସତର୍କ ହେବାକୁ ହେବ । ଆମର ଭାବିବା ଉଚିତ ନୁହେଁ ଯେ ଦୁନିଆରେ ଯାହା ଯାହା ଘଟିଛି, ସବୁ କଥା ଆମକୁ ଜଣା ।

ଯାହାହେଉ, ବର୍ତ୍ତମାନ ଲାଗି ଆମେ ଧରିନେବା ଯେ ଅଶୋକଙ୍କ କାଳର ଅର୍ଥାତ୍ ଖ୍ରୀଷ୍ଟପୂର୍ବ ୩ୟ ଶତାବ୍ଦୀରେ ସଭ୍ୟ ଜଗତ ବୋଇଲେ ମୁଖ୍ୟଭାବରେ ଭୂମଧ୍ୟସାଗର ଉପକୂଳରେ ଥିବା ଇଉରୋପ ଓ ଆଫ୍ରିକାର ଦେଶସବୁ, ପଶ୍ଚିମ ଏସିଆ, ଚୀନ୍ ଓ ଭାରତକୁ ବୁଝାଉଥିଲା । ସେ କାଳରେ ବୋଧହୁଏ ପଶ୍ଚିମାଦେଶ ବା ଏପରିକି ପଶ୍ଚିମ-ଏସିଆରୁ ଚୀନ ସହିତ ପ୍ରତ୍ୟକ୍ଷ ସମ୍ପର୍କ ଅନେକ ପରିମାଣରେ ତ୍ରୁଟି ଯାଇଥିଲା ଏବଂ ଚୀନ୍ ବା କାଥେ ସମ୍ବନ୍ଧରେ ପଶ୍ଚିମ ଦେଶରେ ଅଦ୍ଭୁତ ଧାରଣା ସବୁ ଥିଲା ।

ଆମେ ଜାଣୁ ଯେ ଆଲେକ୍‌ଜାଣ୍ଡରଙ୍କ ମୃତ୍ୟୁ ପରେ ତାଙ୍କ ସେନାପତିଙ୍କ ମଧ୍ୟରେ ତାଙ୍କ ସାମ୍ରାଜ୍ୟ ବଣ୍ଟା ହୋଇ ଯାଇଥିଲା । ତାହାକୁ ମୁଖ୍ୟତଃ ତିନୋଟି ବିଭାଗ କରି ଯାଇଥିଲା । (୧) ପଶ୍ଚିମ-ଏସିଆ, ଇରାନ୍ ଏବଂ ଇରାକ୍—ଏହା ସେଲ୍ୟୁକସ୍‌ଙ୍କ ଅଧୀନରେ ଥିଲା । (୨) ଟଲେମିଙ୍କ ଅଧୀନରେ ଥିଲା ଇଜିପ୍ଟ । (୩) ଆଣ୍ଟିଗୋନସ୍‌ଙ୍କ ଅଧୀନରେ ମାସିଡୋନିଆ ଥିଲା । ପ୍ରଥମ ଦୁଇଟି ଅନେକ କାଳ ପର୍ଯ୍ୟନ୍ତ ରହିଥିଲା । ତୋର ମନେଥିବ, ସେଲ୍ୟୁକସ୍ ଭାରତର ପଡ଼ୋଶୀ ଥିଲେ ଏବଂ ଭାରତକୁ କେତେକାଂଶ ନିଜ ସାମ୍ରାଜ୍ୟରେ ମିଶାଇବା ଲାଗି ଲୋଭ କରିଥିଲେ । କିନ୍ତୁ ସେ ଚନ୍ଦ୍ରଗୁପ୍ତଙ୍କ ସମକକ୍ଷ ହୋଇପାରିଲେ ନାହିଁ । ଚନ୍ଦ୍ରଗୁପ୍ତ ତାଙ୍କୁ ହଟାଇଦେଲେ ଏବଂ ତାଙ୍କ ରାଜ୍ୟରୁ ଗୋଟିଏ ଅଂଶ ମାରି-ଆଣିଲେ । ସେ ଅଞ୍ଚଳକୁ ଆଫଗାନିସ୍ଥାନ କହନ୍ତି ।

ମାସିଡୋନିଆର ଭାଗ୍ୟ ଖରାପ । ଉତ୍ତରରୁ 'ଗଲ୍' ଓ ଅନ୍ୟ ଜାତିମାନେ ଆସି ଏହାକୁ ଆକ୍ରମଣ କରିଥିଲେ । କେବଳ ଏହି ରାଜ୍ୟର ଗୋଟିଏ ଅଂଶ ଆକ୍ରମଣ ବିରୁଦ୍ଧରେ ଛିଡ଼ା ହେବାକୁ ସମର୍ଥ ହୋଇ ସ୍ୱାଧୀନରୂପେ ରହିଥିଲା । ଏହା ହେଉଛି ଏସିଆ ମାଇନର ପର୍ଗାମମ୍ । ଆଜିକାଲି ଏହାକୁ ତୁର୍କୀ କହନ୍ତି । ଏହା ଗୋଟିଏ ଶ୍ରେଷ୍ଠ ଗ୍ରୀକ୍ ରାଜ୍ୟ; ମାତ୍ର ପ୍ରାୟ ୧୦୦ ବର୍ଷରୁ ଅଧିକ କାଳ ପର୍ଯ୍ୟନ୍ତ ଏହା ଗ୍ରୀକ୍ କଳା ଓ ସଂସ୍କୃତିର କେନ୍ଦ୍ର ହୋଇ ଥିଲା । ସୁନ୍ଦର କୋଠାବାଡ଼ି ଗଢ଼ି ଉଠିଥିଲା । ଗୋଟିଏ ପୁସ୍ତକାଗାର (ଲାଇବ୍ରେରୀ) ଏବଂ ଯାଦୁଘର ମଧ୍ୟ ଗଢ଼ି ଉଠିଲା । ଏହା କେତେ ପରିମାଣରେ ସମୁଦ୍ର ଆରପାରିରେ ଥିବା ଆଲେକ୍‌ଜାଣ୍ଡ୍ରିଆର ସମକକ୍ଷ ଥିଲା ।

ଇଜିପ୍ଟରେ ଆଲେକ୍‌ଜାଣ୍ଡ୍ରିଆ ଟଲେମିଙ୍କର ରାଜଧାନୀ ଥିଲା । ଏହା ଗୋଟିଏ ବଡ଼ ସହର ହୋଇଉଠିଲା ଏବଂ ଅତୀତ ଜଗତରେ ପ୍ରସିଦ୍ଧ ହୋଇଥିଲା । ଏଥେନ୍‌ସର ଗୌରବ ଅନେକ ପରିମାଣରେ କମି ଯାଇଥିଲା ଏବଂ ତାହା ପରିବର୍ତ୍ତେ କ୍ରମେ ଆଲେକ୍‌ଜାଣ୍ଡ୍ରିଆ ଗ୍ରୀକ୍ ସଂସ୍କୃତିର କେନ୍ଦ୍ରସ୍ଥାନ ଅଧିକାର କଲା । ବହୁ ଦୂରଦେଶମାନଙ୍କରୁ ଏଠାକାର ପୁସ୍ତକାଗାର ଓ ଯାଦୁଘର ପ୍ରତି ଆକୃଷ୍ଟ ହୋଇ ଅନେକ ସଂଖ୍ୟକ ଗ୍ରନ୍ଥ ଆସୁଥିଲେ । ସେମାନେ ଦର୍ଶନ, ଗଣିତ, ଧର୍ମ ଓ ଅତୀତ ଜଗତର ଅନ୍ୟ ସମସ୍ୟା ସମ୍ବନ୍ଧରେ ଆଲୋଚନା କରୁଥିଲେ । ତୁ ବା ଯେଉଁ ବାଳକ ବାଳିକା ସ୍କୁଲରେ ପଢ଼ିଛନ୍ତି, ସେ ନିଶ୍ଚୟ ଇଉକ୍ଲିଡ଼ଙ୍କ ନାମ ଶୁଣିଥିବେ । ଇଉକ୍ଲିଡ଼ ଏହି ଆଲେକ୍‌ଜାଣ୍ଡ୍ରିଆର ଲୋକ ଥିଲେ ଏବଂ ସେ ଅଶୋକଙ୍କର ସମସାମୟିକ ।

ତୁ ତ ଜାଣୁ ଟଲେମିମାନେ ମଧ୍ୟ ଗ୍ରୀକ୍; ମାତ୍ର ସେମାନେ ଇଜିପ୍ଟର ଚାଲିଚଳଣି ଓ ଆଚାର ବ୍ୟବହାର ଅନେକ ପରିମାଣରେ ଗ୍ରହଣ କରିନେଇଥିଲେ । ଏପରିକି ସେମାନେ ଇଜିପ୍ଟରେ କେତେକ ପୁରୁଣା ଦେବତାଙ୍କୁ ମଧ୍ୟ ମାନୁଥିଲେ । ହୋମରଙ୍କ ପୁରାଣରେ ଆମ

ମହାଭାରତର ଦେବଦେବୀଙ୍କ ପରି ଯେଉଁ ଗ୍ରୀକ୍ ଦେବତା ଯୁପିଟର, ଆପୋଲେ ପ୍ରଭୃତି ଥିଲେ, ସେ ନାମସବୁ ଲୁଚିଯାଇଛି; ପୁଣି ନୂଆ ନାମରେ ପ୍ରକାଶ ପାଇଛି । ଆଇସିସ୍ ଓ ସିରସ୍ ଏବଂ ହୋରସ୍ ପ୍ରଭୃତି ପୁରାତନ ଇଜିପ୍ଟର ଦେବଦେବୀ ଏବଂ ଗ୍ରୀସର ପୁରୁଣା ଦେବଦେବୀଙ୍କ ଭିତରେ ଗୋଟାଏ ମିଶ୍ରଣ ହେଲା ଏବଂ ଲୋକଙ୍କ ନିକଟରେ ନୂତନ ଦେବଦେବୀସବୁ ପୂଜା ପାଇଲେ । ଯେତେବେଳେ ଲୋକମାନେ ପୂଜା କରିବା ନିମନ୍ତେ ଯାଆନ୍ତି, ସେତେବେଳେ ସେମାନେ କାହା ନିକଟରେ ମୁଣ୍ଡ ନୁଆଁଇଲେ, କାହାକୁ ପୂଜା କଲେ କିମ୍ବା ସେ ଦେବତାର ନାମ ଜାଣିବାକୁ ଚେଷ୍ଟା କାହିଁ ? ଦେବତା ମିଳିଲେ ହେଲା ! ଏହି ନୂଆ ଦେବତାଙ୍କ ଭିତରେ ସେରେପସ୍ ନାମକ ଦେବତା ଖୁବ୍ ବିଖ୍ୟାତ ଥିଲେ ।

ଆଲେକ୍‌ଜାଣ୍ଡ୍ରିଆ ମଧ୍ୟ ଗୋଟିଏ ବଡ଼ ବାଣିଜ୍ୟକେନ୍ଦ୍ର ଥିଲା ଏବଂ ସଭ୍ୟ ଜଗତର ଅନ୍ୟ ଦେଶମାନଙ୍କରୁ ବ୍ୟବସାୟୀମାନେ ଏଠାକୁ ଆସୁଥିଲେ । ଆମେ ଶୁଣୁ ଯେ ଆଲେକ୍‌ଜାଣ୍ଡ୍ରିଆରେ ଭାରତୀୟ ବଣିକମାନଙ୍କର ଗୋଟିଏ ବସତି ଥିଲା । ଆମେ ମଧ୍ୟ ଜାଣୁ ଯେ ଦକ୍ଷିଣ-ଭାରତର ମାଲବାର ଉପକୂଳରେ ଆଲେକ୍‌ଜାଣ୍ଡ୍ରିଆର ବଣିକମାନଙ୍କର ବସତି ଥିଲା ।

ଭୂମଧ୍ୟସାଗରର ଆରପାରିରେ ରୋମ୍ ସହର । ଇଜିପ୍ଟରୁ କିଛି ବେଶୀ ଦୂରରେ ନୁହେଁ । ଏହା ଖୁବ୍ ବଡ଼ ହୋଇଥିଲା ଏବଂ କ୍ରମେ ଆହୁରି ବଡ଼ ଓ ଶକ୍ତିଶାଳୀ ହେଲା । ଏହାର ଠିକ୍ ଆର କଡ଼ରେ ଆଫ୍ରିକା ଉପକୂଳରେ କାର୍ଥେଜ୍ ସହର ଥିଲା । ଏହା ରୋମ୍‌ର ଶତ୍ରୁ ଓ ବିରୋଧୀ । ଅତୀତ ଜଗତ ସମ୍ବନ୍ଧରେ କିଛି ଧାରଣା କରିବା ପୂର୍ବରୁ ଏହି ଦୁଇଟି ସମ୍ବନ୍ଧରେ ଆମକୁ କିଛି ଆଲୋଚନା କରିବାକୁ ପଡ଼ିବ ।

ପଶ୍ଚିମରେ ରୋମ୍ ପରି ପୂର୍ବରେ ଚୀନ୍ ମଧ୍ୟ ଖୁବ୍ ବଡ଼ ହୋଇଥିଲା । ଅଶୋକଙ୍କ ବେଳର ଦୁନିଆ ସମ୍ବନ୍ଧରେ ଗୋଟିଏ ଠିକ୍ ଚିତ୍ର ଜାଣିବାକୁ ହେଲେ ଏ ସମ୍ବନ୍ଧରେ ଆଲୋଚନା କରିବାକୁ ହେବ ।

## ୧୭ । ଚୀନ୍ ଓ ହାନ୍ ବଂଶ

ଏପ୍ରିଲ ୩, ୧୯୩୨

ଗତବର୍ଷ ନୈନୀ ଜେଲରୁ ମୁଁ ତତେ ଯେଉଁସବୁ ସବୁ ଚିଠି ଲେଖିଥିଲି; ସେଥିରୁ କେତେକ ଚିଠିରେ ଚୀନର ଆଦିମ କାଳ, ହୋଆଙ୍ଗ୍-ହୋ ନଦୀ କୂଳରେ ଥିବା ବସତି,

ସିଙ୍ଗ୍, ମାଙ୍ଗ୍ ବା ସ୍ୱିନ୍ ଏବଂ ଶୃଓ ଆଦି ବଂଶଧର ଏବଂ କ୍ରମେ ଚୀନ ରାଜ୍ୟ କିପରି ଗଢ଼ି ଉଠିଲା ଏବଂ ଅନେକ ଦିନ ପରେ କିପରି କେନ୍ଦ୍ରୀଭୂତ ସରକାର ହେଲା ଇତ୍ୟାଦି ବିଷୟ ଲେଖିଥିଲି । ତାପରେ ଅନେକ ଦିନ ଗଲା—ନାମକୁ ମାତ୍ର ଶୃଓ ବଂଶ ଅଧୀନରେ ଚୀନ ରହିଲା । ଏତିକିବେଳେ କେନ୍ଦ୍ରୀଭୂତ ଶାସନ ଅଚଳ ହେଲା ଏବଂ ବିଶୃଙ୍ଖଳା ପଡ଼ିଗଲା । ଗୋଟିଏ ଗୋଟିଏ ଅଞ୍ଚଳର ଶ୍ରେଷ୍ଠ ଶ୍ରେଷ୍ଠ ରାଜ୍ୟପତିମାନେ ପ୍ରକୃତରେ ସ୍ୱାଧୀନ ହୋଇଗଲେ ଏବଂ ନିଜ ନିଜ ଭିତରେ କଳହ କଲେ । ଏପରି ଦୁଃଖଜନକ ପରିସ୍ଥିତି ପ୍ରାୟ କେତେ ଶହ ବର୍ଷ ପର୍ଯ୍ୟନ୍ତ ଚାଲିଲା । ଚୀନରେ ପ୍ରତ୍ୟେକ ଘଟଣା ପ୍ରାୟ ଶହ ଶହ ବା ହଜାର ବର୍ଷ ପର୍ଯ୍ୟନ୍ତ ରହିଛି । ତାପରେ ତ୍ସିନ୍ ଅଫ୍ ଚୀନ ବା ଚୀନ ସର୍ଦ୍ଦାର ବୋଲି ଗୋଟିଏ ଅଞ୍ଚଳର ଶାସକ ଉଠି ଏହି ପୁରୁଣା ଓ ଅକର୍ମଣ୍ୟ ଶୃଓ ବଂଶଧରଙ୍କୁ ତଡ଼ି ଦେଇଥିଲେ । ତାଙ୍କ ବଂଶଧରମାନଙ୍କୁ ଚୀନ ବଂଶ କହନ୍ତି ଏବଂ ଏହି ଚୀନ ବଂଶର ନାମାନୁସାରେ ଚୀନ ଦେଶର ନାମକରଣ ହୋଇଛି ।

ସୁତରାଂ ଖ୍ରୀଷ୍ଟପୂର୍ବ ୨୫୫ରେ ଚୀନମାନେ ଚୀନରେ ତାଙ୍କ ଶାସନ ଆରମ୍ଭ କଲେ । ଏହାର ୧୩ ବର୍ଷ ପୂର୍ବରୁ ଭାରତରେ ଅଶୋକଙ୍କ ରାଜତ୍ୱ ଆରମ୍ଭ ହୋଇ ଯାଇଥିଲା । ତେଣୁ ଆମେ ବର୍ତ୍ତମାନ ଅଶୋକଙ୍କ ସମସାମୟିକ ଚୀନ କଥା ଆଲୋଚନା କରୁଥାଉଁ । ଚୀନ ବଂଶର ପ୍ରଥମ ତିନି ଜଣ ସମ୍ରାଟ୍ ଅଳ୍ପକାଳ ରାଜୁତି କରିଥିଲେ । ତାପରେ ଖ୍ରୀଷ୍ଟପୂର୍ବ ୨୪୬ରେ ଚୀନ ବଂଶର ୪ର୍ଥ ସମ୍ରାଟ୍ ରାଜୁତି କଲେ । ସେ ଜଣେ ଖ୍ୟାତନାମା ଲୋକ ଥିଲେ । ତାଙ୍କ ନାମ ହେଉଛି ଓ୍ୱାଙ୍ଗ୍ ଚେଙ୍ଗ୍, ମାତ୍ର ପରେ ସେ ନିଜ ନାଁକୁ ସି-ହୁଆଙ୍ଗ୍-ଟି ବୋଲି ବଦଳାଇଲେ । ସେ ଏହି ଦ୍ୱିତୀୟ ନାମରେ ହିଁ ସାଧାରଣରେ ପରିଚିତ । ଏହାର ଅର୍ଥ ହେଉଛି—'ପ୍ରଥମ ସମ୍ରାଟ୍' । ସେ ବାସ୍ତବରେ ନିଜ ବେଳ ଓ ନିଜକୁ ଖୁବ୍ ବଡ଼ ବୋଲି ମନେ କରୁଥିଲେ ଏବଂ ଅତୀତ ପ୍ରତି ସମ୍ମାନ କରୁ ନ ଥିଲେ । ପ୍ରକୃତରେ ଅତୀତକୁ ଭୁଲିଯାଇ ତାଙ୍କ ଅମଳରୁ ଅର୍ଥାତ୍ ପ୍ରଥମ ସମ୍ରାଟ୍ଙ୍କ ବେଳରୁ ଇତିହାସ ଆରମ୍ଭ ହେଲା ବୋଲି ମନେକରିବା ଲାଗି ସେ ଲୋକଙ୍କୁ କହୁଥିଲେ । ପ୍ରାୟ ୨୦୦୦ ବର୍ଷ ପର୍ଯ୍ୟନ୍ତ ସେ ଜଣକ ପରେ ଜଣେ ସମ୍ରାଟ୍ ଚୀନରେ ଥିଲେ, ସେଥିରେ କିଛି ଯାଏ ଆସେ ନା । ସେମାନଙ୍କ ସ୍ମୃତି ମଧ୍ୟ ଦେଶରୁ ପୋଛିଦେବାକୁ ହେବ । ଖାଲି ପୁରୁଣା ସମ୍ରାଟ୍ ନୁହନ୍ତି, ପୂର୍ବକାଳରେ ଅନେକ ଖ୍ୟାତନାମା ଲୋକଙ୍କୁ ମଧ୍ୟ ଭୁଲିଯିବାକୁ ହେଲା । ସୁତରାଂ ହୁକୁମ ଦିଆଯାଇ ଯେଉଁ ବହିରେ ସବୁ ଅତୀତ ଘଟଣା ଲେଖାହୋଇଛି, ବିଶେଷତଃ ଇତିହାସ, କନ୍‌ଫୁସିୟସ୍‌ଙ୍କ ଲେଖାସବୁ ପୋଡ଼ା ହେଲା ଓ ସମ୍ପୂର୍ଣ୍ଣରୂପେ ତାକୁ ଧ୍ୱଂସକରି ଦିଆଗଲା । କେବଳ ଔଷଧ ଓ ବିଜ୍ଞାନ ସମ୍ବନ୍ଧରେ କେତେକ ପୁସ୍ତକ ହିଁ ରକ୍ଷା ପାଇଥିଲା । ତାଙ୍କର ଉପଦେଶରେ ଲେଖା ଅଛି:—

"ଯେଉଁମାନେ ଆଧୁନିକ କାଳକୁ ଶ୍ରେଷ୍ଠ କରିବା ପାଇଁ ପୁରାତନ ବ୍ୟବହାର କରିବେ, ସପରିବାର ସେମାନଙ୍କୁ ମାରି ଦିଆଯିବ ।"

ସେ ଯାହା କହିଥିଲେ, କଲେ । ଯେଉଁ ଶହ ଶହ ବିଦ୍ୱାନ୍ ଲୋକେ ବହି ଲୁଚାଇବାକୁ ଚେଷ୍ଟା କରୁଥିଲେ, ତାଙ୍କୁ ଜୀବନ୍ତ ସମାଧି ଦିଆ ହେଉଥିଲା । ଏହି ପ୍ରଥମ ସମ୍ରାଟ୍ ନିଶ୍ଚୟ ଜଣେ ସୁନ୍ଦର, ଦୟାଳୁ ଓ ଅମାୟିକ ଲୋକ ହୋଇଥିବେ ।

ମୁଁ ତାଙ୍କୁ ସବୁବେଳେ ମନେ ପକାଏ ଏବଂ ଯେତେବେଳେ ଭାରତର ଅତୀତ ସମ୍ବନ୍ଧରେ ଅତିଶୟ ପ୍ରଶଂସା ଶୁଣେ, ସେତେବେଳେ ତାଙ୍କ ପ୍ରତି ଟିକିଏ ସହାନୁଭୂତି ଯେ ନ ହୁଏ, ଏପରି ନୁହେଁ । ଆମର କେତେକ ଲୋକେ ସର୍ବଦା ଅତୀତ କଥା ଭାବନ୍ତି, ତାର ଗୌରବଗାଥା ଗାଆନ୍ତି ଏବଂ ସେଥିରୁ ପ୍ରେରଣା ପାଆନ୍ତି । ଅତୀତ ଯଦି ମହତ୍‌କାର୍ଯ୍ୟ କରିବା ନିମନ୍ତେ ପ୍ରେରଣା ଦିଏ, ତେବେ ଏଥିରୁ ପ୍ରେରଣା ପାଇବା ଉଚିତ୍ । କିନ୍ତୁ ମୋ ମତରେ କୌଣସି ଲୋକ ବା ଦେଶ ସବୁବେଳେ ଅତୀତକୁ ଅନାଇବା କିଛି ଭଲ ଚିହ୍ନ ନୁହେଁ । କେହି ଜଣେ କହିଲା ପରି, "ଯଦି ମଣିଷର ପଛକୁ ଯିବାର କଥା ବା ସର୍ବଦା ପଛକୁ ଅନାଇବାର କଥା, ତେବେ ମୁଣ୍ଡ ପଛଆଡ଼କୁ ଆଖି ଥାଆନ୍ତା ।" ଆମେ ସବୁପ୍ରକାର ଅତୀତ ଇତିହାସ ଅବଶ୍ୟ ପଢ଼ିବୁ । ଏଥିରେ ପ୍ରଶଂସାଯୋଗ୍ୟ ଯାହା ଥିବ, ତାକୁ ପ୍ରଶଂସା କରିବୁ; ମାତ୍ର ଆମର ଆଖି ସର୍ବଦା ଆଗକୁ ଥିବା ଦରକାର ଏବଂ ଆମର ପାଦ ଆଗକୁ ଅଗ୍ରସର ହେବା ଉଚିତ୍ ।

ଏ କଥା ନିଶ୍ଚିତ ଯେ ପୁରୁଣା ବହି ପୋଡ଼ିଦେଇ ଏବଂ ସେ ବହିପାଠକଙ୍କୁ ମାରିଦେବାଦ୍ୱାରା ସି-ହୁଆଙ୍ଗ୍-ଟି ବର୍ବର ଭାବରେ କାର୍ଯ୍ୟ କଲେ । ତା ଫଳରେ ତାଙ୍କ ପଛେ ପଛେ ତାଙ୍କର ପ୍ରାୟ ସମସ୍ତ କାର୍ଯ୍ୟ ଶେଷ ପାଇଲା । ସେ ଗର୍ବିତ ଥିଲେ ପ୍ରଥମ ସମ୍ରାଟ୍ ହେବାଲାଗି । ତାଙ୍କ ପରେ ଦ୍ୱିତୀୟ, ତୃତୀୟ, ଏହିପରି ଜଣକ ପରେ ଜଣେ ଲେଖା ହେଉଥିବେ—ଏହାହିଁ ତାଙ୍କର ମତଲବ୍ ଥିଲା । ଏହା ସତ୍ତ୍ୱେ ଚୀନ ବଂଶ ସର୍ବାପେକ୍ଷା ଅଳ୍ପକ୍ଷଣସ୍ଥାୟୀ ହେଲା । ମୁଁ ତତେ ତ କହିଛି ଅନେକ ବଂଶ ଶହ ଶହ ବର୍ଷ ପର୍ଯ୍ୟନ୍ତ ରହିଥିଲେ; ସେଥିମଧ୍ୟରୁ ଚୀନ୍ ବଂଶର ପୂର୍ବ ବଂଶଟି ୮୬୭ ବର୍ଷ ପର୍ଯ୍ୟନ୍ତ ରହିଥିଲା । କିନ୍ତୁ ଏହି ଚୀନ ବଂଶ ଆବିର୍ଭୂତ ହୋଇ ଅନେକ ଜୟ ଲାଭ କଲା; ଶକ୍ତିଶାଳୀ ସାମ୍ରାଜ୍ୟ ଗଢ଼ିଉଠିଲା; ମାତ୍ର ତାର ପତନ ହୋଇ ଶେଷ ପାଇଲା । ଏସବୁ ୫୦ ବର୍ଷ ଭିତରେ ଘଟିଗଲା । ଶକ୍ତିଶାଳୀ ସମ୍ରାଟ୍‌ଙ୍କ ଭିତରେ ସି-ହୁଆଙ୍ଗ୍-ଟି ନାମ ପ୍ରଥମେ ରଖିବା ଲାଗି ତାଙ୍କର ଇଚ୍ଛା ଥିଲା; ତଥାପି ତାଙ୍କ ମୃତ୍ୟୁର ୩ବର୍ଷ ପରେ ଖ୍ରୀଷ୍ଟପୂର୍ବ ୨୦୯ରେ ତାଙ୍କ ବଂଶ ଶେଷ ପାଇଗଲା । ଅତି ଶୀଘ୍ର କନ୍‌ଫୁସିୟସ୍‌ଙ୍କର ବହି ଓ ଲେଖାସବୁ ଖୋଲାହୋଇ ବାହାରିଲା ଏବଂ ପୂର୍ବପରି ତାର ଉଚ୍ଚସ୍ଥାନ ଅଧିକାର କଲା ।

ଶାସକ ହିସାବରେ ଚୀନର କ୍ଷମତାଶାଳୀ ସମ୍ରାଟ୍‌ଙ୍କ ଭିତରେ ସି-ହୁଆଙ୍ଗ୍-ଟି ଗଣ୍ୟ । ସ୍ଥାନୀୟ ଶାସକମାନଙ୍କର ନାନା ଛଳନାକୁ ସେ ଶେଷ କଲେ; ସାମନ୍ତ ପ୍ରଥା ଧ୍ୱଂସ କଲେ ଏବଂ ଗୋଟିଏ ଶକ୍ତିଶାଳୀ କେନ୍ଦ୍ରଶାସନ ସ୍ଥାପନ କଲେ । ସମଗ୍ର ଚୀନ୍ ଦେଶ ଏପରି କି ଅନାମ୍ ବି ସେ ଜୟ କଲେ । ସେହି ହିଁ ବିରାଟ ପ୍ରାଚୀର ତିଆରି ଆରମ୍ଭ କରିଥିଲେ । ଏହା ଗୋଟିଏ ବ୍ୟୟବହୁଳ କାର୍ଯ୍ୟ । କିନ୍ତୁ ଚୀନ୍ ଦେଶର ଲୋକେ ଆତ୍ମରକ୍ଷା ପାଇଁ ବହୁତ ସୈନ୍ୟ ରଖିବା ଅପେକ୍ଷା ବୋଧହୁଏ ଏହି ପ୍ରାଚୀର ନିର୍ମାଣରେ ଟଙ୍କା ଖରଚ କରିବା ପସନ୍ଦ କରିଥିଲେ । କାରଣ ଏତଦ୍ୱାରା ବିଦେଶୀ ଆକ୍ରମଣରୁ ରକ୍ଷା ମିଳିବ ବୋଲି ସେମାନେ ଭାବୁଥିଲେ । ଏକ ପ୍ରାଚୀରଦ୍ୱାରା ବଡ଼ ଆକ୍ରମଣକୁ ବାଧା ଦେବା ସମ୍ଭବ ନୁହେଁ । କେବଳ ଛୋଟ ଆକ୍ରମଣରୁ ଏହା ରକ୍ଷା କରୁଥିଲା । ଯାହାହେଉ ଏଥିରୁ ଦେଖାଯାଉଛି ଯେ ଚୀନର ଲୋକେ ଶାନ୍ତି ସ୍ପୃହୁଥିଲେ ଏବଂ ସେମାନଙ୍କର ଶକ୍ତି ଥିବା ସତ୍ତ୍ୱେ ବି ସାମରିକ ଗୌରବପ୍ରେମୀ ନ ଥିଲେ ।

ପ୍ରଥମ ସମ୍ରାଟ୍ ସି-ହୁଆଙ୍ଗ୍ ଟି ମଲେ ଏବଂ ତାଙ୍କ ପଛକୁ ବଂଶର କେହି ଜଣେ ହେଲେ ନ ଥିଲେ । ମାତ୍ର ସେହିଦିନଠାରୁ ଚୀନ ଏକତାର ଝେକ ରଖିଆସିଛି ।

ଏହା ପରେ ହାନ୍ ବଂଶ ଆସିଲେ । ଏହା ପ୍ରାୟ ୪୦୦ ବର୍ଷ ପର୍ଯ୍ୟନ୍ତ ରାଜୁତି କଲା ଏବଂ ପ୍ରଥମ ଶାସକଙ୍କ ଭିତରେ ଜଣେ ସ୍ତ୍ରୀଲୋକ ସାମ୍ରାଜ୍ଞୀ ହୋଇଥିଲେ । ଉ-ଟି ଏହି ବଂଶର ୬ଷ୍ଠ ରାଜା ଥିଲେ । ସେ ମଧ ଚୀନର ଖୁବ୍ ଶକ୍ତିଶାଳୀ ଓ ଖ୍ୟାତନାମା ଶାସକଙ୍କ ଭିତରୁ ଜଣେ । ସେ ପ୍ରାୟ ୫୦ ବର୍ଷରୁ ଅଧିକ କାଳ ପର୍ଯ୍ୟନ୍ତ ସମ୍ରାଟ୍ ଥିଲେ । ତାତାର-ମାନେ ସର୍ବଦା ଉତ୍ତର ଅଞ୍ଚଳ ଆକ୍ରମଣ କରୁଥିଲେ—ସେମାନଙ୍କୁ ସେ ପରାସ୍ତ କରିଥିଲେ । ପୂର୍ବରେ କୋରିଆଠାରୁ ପଶ୍ଚିମରେ କାସ୍ପିୟାନ ସାଗର ପର୍ଯ୍ୟନ୍ତ ଚୀନ ସମ୍ରାଟ୍ ସର୍ବେସର୍ବା ଥିଲେ ଏବଂ ମଧ୍ୟ-ଏସିଆର ସମସ୍ତ ଜାତି ପ୍ରଭୁରୂପେ ତାଙ୍କୁ ମାନୁଥିଲେ । ଏସିଆର ମାନଚିତ୍ର ଦେଖିଲେ ତାଙ୍କର ବ୍ୟାପକ ପ୍ରଭାବ ଏବଂ ଖ୍ରୀଷ୍ଟପୂର୍ବ ପ୍ରଥମ ଓ ଦ୍ୱିତୀୟ ଶତାବ୍ଦୀର ଚୀନର କି ଶକ୍ତି ଥିଲା, ସେ ସମ୍ବନ୍ଧରେ ତୋର କିଛି ଧାରଣା ହେବ । ଏହି ଯୁଗ ସମ୍ବନ୍ଧରେ ଆମେ ରୋମ୍‌ର ମହାନତା ବିଷୟରେ ଅନେକ କିଛି ପଢ଼ୁ । ରୋମ୍ ଦୁନିଆକୁ ଆଚ୍ଛାଦିଥିଲା ବୋଲି ଆମେ ଭାବିବା ସ୍ୱାଭାବିକ । ରୋମକୁ "ଜଗତର ରାଣୀ" ବୋଲି କହନ୍ତି । ସେ କାଳରେ ରୋମ୍ ଖୁବ୍ ବଡ଼ ଥିଲା ଏବଂ ବଡ଼ରୂପେ ଗଢ଼ିଉଠିଥିଲେ ସୁଦ୍ଧା ଚୀନ୍ ଗୋଟିଏ ବିଶାଳ ଏବଂ ଅଧିକତର ଶକ୍ତିଶାଳୀ ସାମ୍ରାଜ୍ୟ ଥିଲା ।

ସମ୍ଭବତଃ ଉ-ଟିଙ୍କ ସମୟରେ ଚୀନ୍ ଓ ରୋମ୍ ଭିତରେ ସମ୍ପର୍କ ସ୍ଥାପିତ ହେଲା । ପାରଥିଆନ୍‌ମାନଙ୍କ ଜରିଆରେ ଏହି ଦୁଇ ଦେଶ ଭିତରେ ବାଣିଜ୍ୟ ଚାଲିଲା । ଆଜିକାଲି

ଯେଉଁ ଅଞ୍ଚଳକୁ ଇରାନ୍ ଓ ଇରାକ୍ କହନ୍ତି, ସେଠାରେ ସେମାନେ ବାସ କରୁଥିଲେ । ପରେ ଯେତେବେଳେ ପାରଥିଆ ଓ ରୋମ୍ ଭିତରେ ଲଢ଼ାଇ ଲାଗିଲା, ସେତେବେଳେ ଏହି ବେପାର ବାଧା ପାଇଲା । ତାପରେ ସମୁଦ୍ରରେ ପ୍ରତ୍ୟକ୍ଷ ବାଣିଜ୍ୟ କରିବା ନିମନ୍ତେ ରୋମ୍ ଚେଷ୍ଟା କଲା ଏବଂ ପ୍ରକୃତରେ ରୋମ୍‌ର ଗୋଟିଏ ଜାହାଜ ଚୀନ୍‌କୁ ଆସିଥିଲା । ମାତ୍ର ଏହା ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀର ଘଟଣା । ଆମେ ବର୍ତ୍ତମାନ ସୁଦ୍ଧା ଖ୍ରୀଷ୍ଟପୂର୍ବ କାଳ ବିଷୟ ଆଲୋଚନା କରୁଆଉଁ ।

ହାନ୍ ବଂଶର ରାଜତ୍ୱ ସମୟରେ ଚୀନ୍‌ରେ ବୌଦ୍ଧଧର୍ମର ପ୍ରଚାର ହେଲା ଏପରିକି ଖ୍ରୀଷ୍ଟିୟାନ୍ ଯୁଗ ପୂର୍ବରୁ ଚୀନରେ ଏହାର ଚର୍ଚ୍ଚା ଥିଲା । ମାତ୍ର ଯେଉଁଦିନ ସେ କାଳର ସମ୍ରାଟ୍ ଗୋଟିଏ ୧୨ ଫୁଟ ଡେଙ୍ଗା ଓ ଲଣ୍ଡିତ ମସ୍ତକ ବିଶିଷ୍ଟ ଲୋକକୁ ସ୍ୱପ୍ନରେ ଦେଖିଲେ, ସେହିଦିନୁ ଏହି ଧର୍ମ ବିସ୍ତାରଲାଭ କଲା ବୋଲି କୁହାଯାଏ । ପଶ୍ଚିମରେ ଏହି ଦୃଶ୍ୟ ସେ ଦେଖିଥିବାରୁ ସେହି ଦିଗକୁ ଦୂତ ପଠାଇଲେ ଏବଂ ଦୂତମାନେ ବୁଦ୍ଧମୂର୍ତ୍ତି ଓ ବୁଦ୍ଧଙ୍କ ଲେଖାସବୁ ସାଙ୍ଗରେ ଘେନି ଫେରିଲେ । ବୌଦ୍ଧଧର୍ମ ସଙ୍ଗେ ସଙ୍ଗେ ଚୀନ୍‌ରେ ଭାରତୀୟ କଳାର ପ୍ରଭାବ ପଡ଼ିଲା । ଏହା ଚୀନରୁ କୋରିଆ ଏବଂ କୋରିଆଠାରୁ ଜାପାନ ଗଲା ।

ହାନ୍ ବଂଶର ରାଜୁତିବେଳେ ଆଉ ଦୁଇଟି ଉଲ୍ଲେଖଯୋଗ୍ୟ ଘଟଣା ଘଟିଥିଲା । କାଠ ବ୍ଲକ ତିଆରି କରି ଛପାଇବା କୌଶଳ ଆବିଷ୍କାର ହେଲା; କିନ୍ତୁ ପ୍ରାୟ ୧୦୦୦ ବର୍ଷ ପର୍ଯ୍ୟନ୍ତ ଏହାର ବିଶେଷ ପ୍ରଚଳନ ହୋଇ ନ ଥିଲା । ତାହା ହୋଇ ସୁଦ୍ଧା ଚୀନ୍ ଇଉରୋପ ଠାରୁ ୫୦୦ ବର୍ଷ ଆଗରେ ଥିଲା ।

ଦ୍ୱିତୀୟ ଘଟଣାଟି ହେଉଛି ସାଧାରଣ କର୍ମଚାରୀ (Public Servant) ନିଯୁକ୍ତିବେଳେ ପରୀକ୍ଷା ପ୍ରଥାର ପ୍ରଚଳନ । ଛାତ୍ର-ଛାତ୍ରୀ ସବୁ ପରୀକ୍ଷାକୁ ଭଲ ପାଆନ୍ତି ନାହିଁ । ମୁଁ ସେମାନଙ୍କୁ ସହାନୁଭୂତି ଦେଖାଏ । ମାତ୍ର ସେ କାଳରେ ଚୀନ୍‌ରେ ପରୀକ୍ଷା କରି ଏପରି ସାଧାରଣ କର୍ମଚାରୀ ନିଯୁକ୍ତି ଏକ ବିଶେଷ ଘଟଣା । ଆଜି ସୁଦ୍ଧା ଅନ୍ୟ ଦେଶମାନଙ୍କରେ ଅନୁଗ୍ରହ ଦେଖାଇ ବା କୌଣସି ବିଶେଷ ଶ୍ରେଣୀ ବା ଜାତିରୁ କର୍ମଚାରୀ ନିଯୁକ୍ତ ହେଉଛନ୍ତି । ଚୀନ୍‌ରେ ଯେ ପରୀକ୍ଷାରେ ପାସ୍ କଲା, ସେ ନିଯୁକ୍ତ ହୋଇ ଯାଉଥିଲା । ଏହା ଏକ ଆଦର୍ଶ ପ୍ରଥା ନୁହେଁ; କାରଣ କନ୍‌ଫୁସିୟସଙ୍କ କହିବାନୁସାରେ ହୁଏତ ଜଣେ ପରୀକ୍ଷାରେ ପାସ୍ କରିପାରେ, ତଥାପି ସେ ଜଣେ ଭଲ ସାଧାରଣ କର୍ମଚାରୀ ହୋଇ ନ ପାରେ; କିନ୍ତୁ ଅନୁଗ୍ରହ ଦେଖାଇବା ବା ସେହି ଧରଣର ନିଯୁକ୍ତି ଅପେକ୍ଷା ଏହା ଅତ୍ୟନ୍ତ ଉନ୍ନତ ପ୍ରଥା ଏବଂ ଚୀନ୍‌ରେ ୨୦୦୦ ବର୍ଷ ପର୍ଯ୍ୟନ୍ତ ଏହା ରହିଥିଲା । ଖୁବ୍ ନିକଟରେ ଏହାର ଲୋପ ହେଲା ।

# ୨୭ । ରୋମ୍ ଓ କାର୍ଥେଜର ବିରୋଧ

ଏପ୍ରିଲ ୫, ୧୯୩୨

ସୁଦୂର ପ୍ରାଚ୍ୟରୁ ଆମେ ବର୍ତ୍ତମାନ ପଶ୍ଚିମକୁ ଯିବା ଏବଂ ରୋମ୍ କିପରି ବୃଦ୍ଧି ପାଇଲା, ତାହା ଦେଖିବା । ଖ୍ରୀଷ୍ଟପୂର୍ବ ୮ମ ଶତାବ୍ଦୀରେ ରୋମ୍ ସ୍ଥାପିତ ହୋଇଥିଲା ବୋଲି କହନ୍ତି । ରୋମାନ୍‌ମାନେ ସମ୍ଭବତଃ ଆର୍ଯ୍ୟ ବଂଶଧର ଥିଲେ ଏବଂ ଟାଇବର ନଦୀ ନିକଟସ୍ଥ ସାତଟି ପାହାଡ଼ରେ ସେମାନଙ୍କର କେତେକ ବସତି ଥିଲା ଏବଂ ଏହି ବସତିଗୁଡ଼ିକ କ୍ରମେ ସହରରେ ପରିଣତ ହେଲା । ଏହି ନଗରତନ୍ତ୍ରସବୁ କ୍ରମେ ବୃଦ୍ଧି ପାଇ ଇଟାଲିରେ ପ୍ରସାରିତ ହୋଇ ଦକ୍ଷିଣରେ ସିସିଲି ସମ୍ମୁଖରେ ମେସିନା ପର୍ଯ୍ୟନ୍ତ ବ୍ୟାପିଲା ।

ତୁ ବୋଧହୁଏ ଗ୍ରୀସ୍‌ର ନଗରତନ୍ତ୍ରସବୁ କଥା ମନେ ରଖିଥିବୁ । ଗ୍ରୀକ୍‌ମାନେ ଯେଉଁଠାକୁ ଯାଇଥିଲେ, ସେଠାରେ ଏହି ନଗରତନ୍ତ୍ର ଭାବ ପ୍ରକଟ କରିଥିଲେ ଏବଂ ଭୂମଧ୍ୟସାଗର ଉପକୂଳର ସବୁଆଡ଼େ ଗ୍ରୀକ୍ ଉପନିବେଶ ଓ ନଗରତନ୍ତ୍ରସବୁ ବସାଇଥିଲେ । ମାତ୍ର ଆମେ ବର୍ତ୍ତମାନ ରୋମ୍‌ରେ ଯାହା ଆଲୋଚନା କରିବାକୁ ଯାଉଛେ, ତାହା ଟିକିଏ ପୃଥକ ବିଷୟ । ପ୍ରଥମେ ରୋମ୍ ବୋଧହୁଏ ଗ୍ରୀକ୍ ନଗରତନ୍ତ୍ର ପରି ନ ଥିଲା; ମାତ୍ର ଏହା ପଡ଼ୋଶୀମାନଙ୍କୁ ପରାସ୍ତ କରି ଶୀଘ୍ର ବିସ୍ତୃତ ହେଲା । ଏହିପରି କ୍ରମରେ ରୋମ୍ ରାଜ୍ୟର ପରିସର ଇଟାଲିର ବହୁ ଅଂଶକୁ ନେଇ ଗଠିତ ହେଲା । ଏପରି ଏକ ବୃହତ୍ ଅଞ୍ଚଳ ଏକ ନଗରତନ୍ତ୍ର ପରି ରହିବା ସମ୍ଭବ ନୁହେଁ । ଏହା ରୋମ୍‌ରୁ ଶାସିତ ହେଉଥିଲା ଏବଂ ରୋମ୍‌ରେ ଏକ ଅଦ୍ଭୁତ ପ୍ରକାର ଶାସନ ଥିଲା । ସେଠାରେ କୌଣସି ବଡ଼ ସମ୍ରାଟ୍ ବା ରାଜା ନ ଥିଲେ କିମ୍ବା ଆଧୁନିକ ଧରଣର ଲୋକତନ୍ତ୍ର ନ ଥିଲା । ତଥାପି ଏହାର ଶାସନ ଏକପ୍ରକାର ଲୋକତନ୍ତ୍ର ଥିଲା ଏବଂ ବହୁତ ଜମିମାଲିକ ଧନୀ ଲୋକଙ୍କର ସେଥିରେ ପ୍ରାଧାନ୍ୟ ଥିଲା । ସିନେଟ୍ ଶାସନ କରେ ବୋଲି ଧରାଯାଉଥିଲା ଏବଂ ଦୁଇଜଣ ନିର୍ବାଚିତ ଲୋକ ଯାହାଙ୍କୁ "କନ୍‌ସଲ" ବୋଲି କହୁଥିଲେ, ସେମାନେ ଏହାକୁ ମନୋନୀତ କରୁଥିଲେ । ଅନେକଦିନ ପର୍ଯ୍ୟନ୍ତ କେବଳ ଧନୀ ଲୋକେ ସିନେଟର ହୋଇ ପାରୁଥିଲେ । ରୋମାନ୍‌ମାନେ ଦୁଇ ଶ୍ରେଣୀରେ ବିଭକ୍ତ ହୋଇଥିଲେ :—ପାଟ୍ରିସିୟାନ୍ ବା ଅଭିଜାତ ଧନୀ ଲୋକେ, ବିଶେଷତଃ ଜମିମାଲିକମାନେ ଏବଂ ସାଧାରଣ ନାଗରିକ ଅର୍ଥାତ୍ ପ୍ଲେବିୟାନ୍‌ମାନେ । ଅନେକ ଶହ ବର୍ଷ ପର୍ଯ୍ୟନ୍ତ ରୋମ୍ ସରକାର ବା ଲୋକତନ୍ତ୍ରର ଇତିହାସ ଏହି ଦୁଇ ଶ୍ରେଣୀଙ୍କ ଲଢ଼ାଇ କାହାଣୀରେ ଭରା । ପାଟ୍ରିସିୟାନ୍‌ମାନଙ୍କ ନିକଟରେ ସମସ୍ତ କ୍ଷମତା ଥିଲା ଏବଂ କ୍ଷମତା ସହ ଧନ ବି ଥିଲା । ପ୍ଲେବିୟାନ୍ ବା ପ୍ଲେବମାନେ ସାଧାରଣ ଲୋକ; ସେମାନଙ୍କ ପାଖରେ ଧନ ବା କ୍ଷମତା କିଛି ନ ଥିଲା । ପ୍ଲେବିୟାନ୍‌ମାନେ କ୍ଷମତା ପାଇବା ଲାଗି ଲଢ଼ାଇ କରିବାକୁ ଲାଗିଲେ ଏବଂ ଆସ୍ତେ ଆସ୍ତେ ତାଙ୍କ ଭାଗ୍ୟରେ ଅଳ୍ପ କିଛି

ଅଂଶ ପଡ଼ୁଥିଲା । ଏଥିରେ ଦେଖିବାର କଥା ଯେ ପ୍ଲେବମାନଙ୍କର ଏହି ଦୀର୍ଘକାଳବ୍ୟାପୀ ସଂଗ୍ରାମରେ ଏକ ପ୍ରକାରର ଅସହଯୋଗ ଅସ୍ତ୍ର ବ୍ୟବହୃତ ହେଉଥିଲା । ସେମାନେ ଏକାଠି ରୋମ ଛାଡ଼ି ପଳାଇ ଯାଉଥିଲେ ଏବଂ ନୂଆ ସହରରେ ବସତି କରୁଥିଲେ । ଏଥିରେ ପାଟ୍ରିସିଆନ୍‌ମାନେ ଡରିଗଲେ; କାରଣ ପ୍ଲେବଙ୍କୁ ଛାଡ଼ି ସେମାନେ ଚଳିପାରିଲେ ନାହିଁ; ତେଣୁ ସେମାନେ ତାଙ୍କ ସହିତ ମିଳାମିଶା କରି ସେମାନଙ୍କୁ ସାମାନ୍ୟ କେତେକ ସୁବିଧା ଦେଲେ । କ୍ରମେ ପ୍ଲେବିୟାନ୍‌ଙ୍କ ପକ୍ଷରେ ଉଚ୍ଚ ପଦବୀ ପାଇବା ଏବଂ ଏପରି କି ସିନେଟ୍‌ର ସଭ୍ୟ ହେବା ସମ୍ଭବ ହେଲା ।

ଆମେ ପାଟ୍ରିସିଆନ୍ ଓ ପ୍ଲେବିୟାନ୍‌ଙ୍କ ଭିତରେ ହୋଇଥିବା ଯୁଦ୍ଧ କଥା ଆଲୋଚନା କରୁଥାଉଁ । ସେଠାରେ ଆଉ କୌଣସି ଦଳ ସେପରି ଉଲ୍ଲେଖଯୋଗ୍ୟ ନ ଥିଲା ବୋଲି ଆମେ ଭାବିପାରୁଁ । ମାତ୍ର ଏହି ଦୁଇଟି ଦଳ ଛଡ଼ା ରୋମାନ୍ ରାଜ୍ୟରେ ଅନେକ ସଂଖ୍ୟକ ଦାସ ଥିଲେ - ସେମାନଙ୍କର କୌଣସି ଅଧିକାର ନ ଥିଲା । ସେମାନେ ନାଗରିକ ହୋଇପାରୁ ନ ଥିଲେ । ସେମାନଙ୍କର ଭୋଟ କ୍ଷମତା ନ ଥିଲା । ସେମାନେ କୁକୁର ବା ଗୋରୁ ପରି ତାଙ୍କ ମୁନିବମାନଙ୍କର ବ୍ୟକ୍ତିଗତ ସମ୍ପତ୍ତି ଥିଲେ । ମୁନିବର ଇଚ୍ଛାନୁସାରେ ସେମାନେ ଶାସ୍ତି ପାଉଥିଲେ ବା ବିକ୍ରୀତ ହେଉଥିଲେ । କେତେକ ସର୍ତ୍ତରେ ସେମାନେ ମୁକ୍ତହୋଇ ପାରୁଥିଲେ ଏବଂ ମୁକ୍ତ ହେଲା ପରେ ସେମାନେ ସ୍ୱାଧୀନ ଲୋକ ନାମରେ ଗୋଟିଏ ବିଶେଷ ଶ୍ରେଣୀ ରୂପେ ପରିଚିତ ହେଉଥିଲେ । ଅତୀତକାଳରେ ପାଶ୍ଚାତ୍ୟ ଦେଶରେ ସବୁଦା ଦାସ ଖୁବ୍ ଖୋଜା ହେଉଥିଲେ ଏବଂ ଏହା ଯୋଗାଇବା ପାଇଁ ବଡ଼ ବଡ଼ ଦାସ-ବଜାର (ଦାସମାନଙ୍କୁ ବିକ୍ରୀ-ଖର୍ଦ୍ଦି କରିବା ନିମନ୍ତେ) ଖୋଲି ଯାଇଥିଲା । ପୁରୁଷ, ସ୍ତ୍ରୀ, ଏପରି କି ଛୋଟ ପିଲାମାନଙ୍କୁ ଧରିବା ଲାଗି ଦୂର ଦେଶକୁ ଦଳ ଦଳ ହୋଇ ବେପାରୀମାନେ ଯାଉଥିଲେ ଏବଂ ସେମାନଙ୍କୁ ଦାସରୂପେ ବିକ୍ରୀ କରୁଥିଲେ । ପୁରାକାଳର ଗ୍ରୀସ, ରୋମ୍ ଦେଶ ଇଜିପ୍ଟ ପରି ମଧ୍ୟ ଏହି ଦାସମାନଙ୍କ ଯୋଗୁଁ ଏପରି ଗୌରବ ଅର୍ଜନ କରିପାରିଥିଲା ।

ଭାରତରେ ସେତେବେଳେ ଏହିପରି ଦାସପ୍ରଥା ଚଳୁଥିଲା କି ? ଖୁବ୍ ସମ୍ଭବତଃ ନ ଥିଲା । ଚୀନରେ ମଧ୍ୟ ନ ଥିଲା । ଏହାର ଅର୍ଥ ଏହା ନୁହେଁ ଯେ ପୁରାକାଳର ଭାରତ ବା ଚୀନରେ ଦାସତ୍ୱ ପ୍ରଥା ନ ଥିଲା । ମାତ୍ର ଯାହା ବା ଥିଲା, ତାହା ଏକରକମ ଘରୋଇ ଧରଣର । ଘରର କେତେକ ଗୃହକର୍ମଙ୍କୁ ଦାସରୂପେ ଧରାଯାଉଥିଲା । ଦଳ ଦଳ ହୋଇ କ୍ଷେତ କମି ବା ଅନ୍ୟ ସ୍ଥାନରେ ଚୀନ ବା ଭାରତରେ ଦାସମାନେ ମଜୁରିଆରୂପେ କାମ କଲାପରି ମନେ ହୁଏ ନାହିଁ । ସୁତରାଂ ଏହି ଦୁଇ ଦେଶ ଦାସତ୍ୱର ଏପରି ହୀନ ଆଚରଣରୁ ମୁକ୍ତ ଥିଲେ ।

ରୋମ୍ ମଧ୍ୟ ସେହିପରି ବୃଦ୍ଧି ପାଇଥିଲା । ସେଥିରେ ପାଟ୍ରିସିଆନ୍‌ମାନେ ଲାଭବାନ୍ ହେଲେ ଏବଂ ଖୁବ୍ ଉନ୍ନତ ଓ ଧନୀ ହୋଇଥିଲେ । ସେତେବେଳେ ପ୍ଲେବିଆନ୍‌ମାନେ ଗରିବ ଥିଲେ ଏବଂ ପାଟ୍ରିସିଆନ୍‌ମାନେ ତାଙ୍କ ଉପରେ ପ୍ରଭୁତ୍ୱ ବିସ୍ତାର କରୁଥିଲେ । ପାଟ୍ରିସିଆନ୍ ଓ ପ୍ଲେବିୟାନ୍ ଦୁହେଁ ମିଳି ଗରିବ ଦାସମାନଙ୍କ ଉପରେ ପ୍ରଭୁତ୍ୱ କଲେ ।

ରୋମ୍ ବଢିଲା ସତ; ମାତ୍ର ତାହା କିପରି ଶାସିତ ହେଲା ? ମୁଁ କହିଛି ଯେ ସିନେଟ୍-ଦ୍ୱାରା ଶାସିତ ହେଉଥିଲା ଏବଂ ଦୁଇଜଣ ନିର୍ବାଚିତ କନ୍‌ସଲଙ୍କଦ୍ୱାରା ସିନେଟ୍ ମନୋନୀତ ହେଉଥିଲା । ଏହି କନ୍‌ସଲମାନଙ୍କୁ କିଏ ବାଛୁଥିଲେ ? ଯେଉଁ ନାଗରିକମାନେ ଭୋଟ-ଦେବା ଅଧିକାର ପାଇଥିଲେ, ସେମାନେ ହିଁ ଏହାଙ୍କୁ ନିର୍ବାଚନ କରୁଥିଲେ । ପ୍ରଥମେ ଯେତେବେଳେ ରୋମ୍ ଗୋଟିଏ ନଗରତନ୍ତ୍ର ରୂପେ ଥିଲା, ସେତେବେଳେ ସମସ୍ତ ନାଗରିକ ରୋମ ସହର କିମ୍ବା ତାର ନିକଟବର୍ତ୍ତୀ ସ୍ଥାନରେ ବାସ କରୁଥିଲେ । ସେହିଭୁ ଏକାଠି ହୋଇ ଭୋଟ ଦେବା ତାଙ୍କ ପକ୍ଷରେ କିଛି କଷ୍ଟକର ନ ଥିଲା । କିନ୍ତୁ ରୋମର ପ୍ରସାର ହେବାରୁ ଅନେକ ନାଗରିକ ରୋମଠାରୁ ଦୂରରେ ବାସକଲେ ଏବଂ ସେମାନଙ୍କ ପକ୍ଷରେ ଭୋଟଦେବା ସହଜ ନ ଥିଲା । ଆଜିକାଲି ଯେଉଁ "ପ୍ରତିନିଧିମୂଳକ ଶାସନ" କଥା କୁହାଯାଉଛି; ତାହାର ବିକାଶ ସେତେବେଳେ ହୋଇ ନ ଥିଲା କିମ୍ବା ପ୍ରଚଳନ ବି ନ ଥିଲା । ତୁମେ ଜାଣ, ଆଜିକାଲି ଗୋଟିଏ ଅଞ୍ଚଳ ବା ନିର୍ବାଚନମଣ୍ଡଳୀ ନିଜର ପରିଷଦ ବା ପାର୍ଲିଆମେଣ୍ଟ ବା କଂଗ୍ରେସକୁ ତାର ପ୍ରତିନିଧି ନିର୍ବାଚନ କରେ । ସୁତରାଂ ଏକପ୍ରକାର ଗୋଟିଏ ଛୋଟ ସଭାରେ ସାରା ଦେଶ ପ୍ରତିନିଧିତ୍ୱ କରେ । ଏକଥା ବୋଧହୁଏ ପୁରାକାଳର ରୋମାନ୍‌ମାନଙ୍କ ମନରେ ପ୍ରବେଶ କରି ନ ଥିଲା; ତେଣୁ ଦୂର ଭୋଟରମାନଙ୍କ ପକ୍ଷରେ ରୋମକୁ ଆସି ଭୋଟ ଦେବା ପ୍ରାୟ ଅସମ୍ଭବ ହୋଇପଡୁଥିଲେ ସୁଦ୍ଧା ସେମାନେ ସେହି ଭୋଟ ଚଳାଉଥିଲେ । ବାସ୍ତବିକ ଘଟଣା, ତାହା ଦୂର ଭୋଟରମାନେ ପ୍ରାୟ ଜାଣୁ ନ ଥିଲେ । ସେତେବେଳେ କୌଣସି ଖବର କାଗଜ, ପ୍ରଚାରପତ୍ର ବା ଛାପା ବହି ନ ଥିଲା ଏବଂ ଖୁବ୍ ଅଳ୍ପ ଲୋକ ଲେଖିପଢ଼ି ପାରୁଥିଲେ । ସୁତରାଂ ରୋମଠାରୁ ଦୂରରେ ରହୁଥିବା ଯେଉଁ ଲୋକଙ୍କୁ ଭୋଟ କ୍ଷମତା ଦିଆଯାଉଥିଲା, ସେମାନଙ୍କର ତାହା କୌଣସି କାମରେ ଆସୁ ନ ଥିଲା । ସେମାନଙ୍କର ମତ ଦେବାର ଅଧିକାର ଥିଲା । ମାତ୍ର ଦୂରତା ହେତୁ ସେମାନଙ୍କର ଭୋଟକ୍ଷମତା ନିଷ୍ଫଳ ହୋଇ ପଡ଼ୁଥିଲା ।

ତେଣୁ ତୁ ଦେଖିପାରିବୁ ଯେ ପ୍ରକୃତରେ ଯେଉଁ ଭୋଟରମାନେ ରୋମରେ ରହୁଥିଲେ, ସେହିମାନେ ହିଁ ନିର୍ବାଚନ ଏବଂ ଅନ୍ୟ ଗୁରୁତର ନିଷ୍ପତ୍ତିରେ ଭାଗ ନେଇ ପାରୁଥିଲେ । ଏକ ଆଖୁଆଳ ସ୍ଥାନକୁ ଯାଇ ସ୍ୱାଧୀନ ଭାବରେ ସେମାନେ ଭୋଟ ଦେଉଥିଲେ । ଏମାନଙ୍କ ଭିତରେ ଅନେକ ଗରିବ ପ୍ଲେବିୟାନ୍ ବି ଭୋଟର ଥିଲେ ।

ଉଚ୍ଚପଦବୀ ଓ କ୍ଷମତାଲାଳସୀ ଧନୀ ପାଟ୍ରିସିୟାନ୍‌ମାନେ ଏହି ଗରିବ ଲୋକଙ୍କୁ ଲାଞ୍ଚ ଦେଇ ସେମାନଙ୍କଠାରୁ ଭୋଟ୍ ନେଉଥିଲେ। ତେଣୁ ସମସ୍ତ ସମୟରେ ଆଧୁନିକ ନିର୍ବାଚନରେ ଯେପରି ସବୁ ଲାଞ୍ଚ ଓ ପେଞ୍ଚ ଦେଖାଯାଏ, ପୂର୍ବକାଳରେ ରୋମର ନିର୍ବାଚନପ୍ରଥାରେ ବି ସେହିପରି ଥିଲା। ଇଟାଲୀର ରୋମ୍ ପରି ଉତ୍ତର-ଆଫ୍ରିକାରେ କାର୍ଥେଜ୍ ସହର ବିଖ୍ୟାତଶାଳୀ ହୋଇଉଠୁଥିଲା। କାର୍ଥେଜ୍‌ବାସୀ ଫୋନିସିୟାନଙ୍କର ବଂଶଧର ଏବଂ ସେମାନେ ନୌ-ଯାତ୍ରା ଓ ବାଣିଜ୍ୟ କରୁଥିଲେ। ସେମାନଙ୍କର ମଧ୍ୟ ଗୋଟିଏ ଲୋକତନ୍ତ୍ର ଥିଲା। ମାତ୍ର ତାହା ରୋମ୍ ଅପେକ୍ଷା ଆହୁରି ବେଶି ଅର୍ଥାତ୍ ଧନୀ ଲୋକଙ୍କର ସରକାର ଥିଲା। ଏହା ଏକ ସହରର ଲୋକତନ୍ତ୍ର ଏବଂ ବହୁସଂଖ୍ୟକ ଦାସ ଏଥିରେ ବାସ କରୁଥିଲେ।

ପୂର୍ବକାଳରେ ରୋମ୍ ଓ କାର୍ଥେଜ ମଧ୍ୟରେ, ଦକ୍ଷିଣ ଇଟାଲୀ ଓ ସେସିଲୀରେ ଗ୍ରୀକ୍ ଉପନିବେଶସବୁ ଥିଲା। ମାତ୍ର ଗ୍ରୀକ୍‌ମାନଙ୍କୁ ତଡ଼ିବା ଲାଗି ରୋମ ଓ କାର୍ଥେଜ୍ ଏକାଠି ହେଉଥିଲେ ଏବଂ ଏଥିରେ ସଫଳ ହେଲା ପରେ କାର୍ଥେଜ୍ ସିସିଲି ନେଲା; ରୋମ୍ ଇଟାଲୀର ଶେଷ ପର୍ଯ୍ୟନ୍ତ ମାଡ଼ିଆସିଲା। ରୋମ୍ ଓ କାର୍ଥେଜ୍ ମଧ୍ୟରେ ବନ୍ଧୁତା ଓ ମିତ୍ରତା ବେଶିଦିନ ରହିଲା ନାହିଁ। ଅଳ୍ପଦିନ ପରେ ସେମାନଙ୍କ ଭିତରେ ସଂଘର୍ଷ ହେଲା ଓ ଘୋର ଶତ୍ରୁତା ଉପୁଜିଲା। ଅଣଓସାରିଆ ସମୁଦ୍ରର ଦୁଇ କଡ଼ରେ ରହିଥିବା ଦୁଇଟି ଶକ୍ତିଶାଳୀ ସହର ପକ୍ଷରେ ଭୂମଧ୍ୟସାଗର କିଛି ବଡ଼ ନ ଥିଲା। ଦୁଇଟିଯାକ ଦେଶ ହିଁ ଖୁବ୍ ଉଚ୍ଚାଭିଳାଷୀ ଥିଲେ। ରୋମ ବଢ଼ୁଥିଲା ଏବଂ ଯୁବକ ପରି ତା'ଠାରେ ଆତ୍ମବିଶ୍ୱାସ ଓ ଅଭିଳାଷ ଥିଲା। ପ୍ରଥମେ ବୋଧହୁଏ ନୂଆ ଉଠି ଆସୁଥିବା ରୋମକୁ କାର୍ଥେଜ୍ ଟିକିଏ ଶ୍ରେଷ୍ଠ ଜ୍ଞାନ କରୁଥିଲା ଏବଂ ସମୁଦ୍ର ଉପରେ ତାର ପୂରା ଦଖଲ ଅଛି ବୋଲି ପୂର୍ଣ୍ଣ ବିଶ୍ୱାସ ଥିଲା। ପ୍ରାୟ ୧୦୦ ବର୍ଷରୁ ଅଧିକକାଳ ପର୍ଯ୍ୟନ୍ତ ସେମାନେ ନିଜ ଭିତରେ ଲଢ଼ାଇ କରିଥିଲେ—କେବଳ ସମୟ ସମୟରେ ଯେ ସନ୍ଧି ହେଉଥିଲା, ସେହି ସମୟତକ ହିଁ ବାଦ ପଡ଼ୁଥିଲା। ସେମାନେ ହିଂସ୍ରଜନ୍ତୁ ପରି ଲଢ଼ୁଥିଲେ ଏବଂ ଫଳରେ ଲୋକମାନେ ଅତ୍ୟନ୍ତ କଷ୍ଟ ପାଉଥିଲେ। ସେମାନଙ୍କ ଭିତରେ ତିନୋଟି ଯୁଦ୍ଧ ହୋଇଥିଲା ଏବଂ ତାକୁ ପିଉନିକ୍ ଯୁଦ୍ଧ ବୋଲି କୁହାଯାଏ। ପ୍ରଥମ ପିଉନିକ୍ ଯୁଦ୍ଧ ଖ୍ରୀଷ୍ଟପୂର୍ବ ୨୬୪ରୁ ୨୪୧ ପର୍ଯ୍ୟନ୍ତ ୨୩ ବର୍ଷ ଲାଗିରହିଲା ଏବଂ ଶେଷରେ ରୋମ୍ ଜୟଲାଭ କଲା। ୨୨ ବର୍ଷ ପରେ ଦ୍ୱିତୀୟ ପିଉନିକ୍ ଯୁଦ୍ଧ ହେଲା ଏବଂ ଏହି ସମୟରେ ହାନିବାଲ ନାମରେ ଜଣେ ପ୍ରସିଦ୍ଧ ସେନାପତି କାର୍ଥେଜ୍‌ରୁ ଆସିଥିଲେ। ୧୫ ବର୍ଷ ପର୍ଯ୍ୟନ୍ତ ହାନିବାଲ ରୋମ୍‌କୁ ହଇରାଣ ଏବଂ ରୋମାନ୍‌ମାନଙ୍କୁ ଉତ୍ପୀଡ଼ିତ କଲେ। ସେ ପ୍ରଧାନତଃ ଖ୍ରୀଷ୍ଟପୂର୍ବ ୨୧୬ରେ କାନେଠାରେ ବହୁ ହତ୍ୟାକରି ସେମାନଙ୍କ ସୈନ୍ୟଙ୍କୁ ପରାସ୍ତ କଲେ। କାର୍ଥେଜ୍‌ରୁ ଖୁବ୍ କମ୍ ସାହାଯ୍ୟ ପାଇ ସୁଦ୍ଧା ସେ ଏହା କରିପାରିଥିଲେ; କାରଣ ରୋମାନ୍‌ମାନଙ୍କର ସମୁଦ୍ରରେ ପ୍ରାଧାନ୍ୟ ଥିବାରୁ କାର୍ଥେଜ୍‌ରୁ ସେ ବିଚ୍ଛିନ୍ନ ହୋଇପଡ଼ିଥିଲେ। ମାତ୍ର ପରାଜୟ

ଓ ନିସ୍ତଣା ସତ୍ତ୍ୱେ ଏବଂ ହାନିବାଲ ବାରମ୍ବାର କ୍ଷତ କରୁଥିଲେ ସୁଦ୍ଧା ରୋମାନ୍‌ମାନେ ମୁଣ୍ଡ ନୁଆଁଇଲେ ନାହିଁ ଏବଂ ସେମାନଙ୍କ ସୈନ୍ୟ ଶକ୍ତି ସହ ଲଢ଼ାଇ କଲେ । ପ୍ରକାଶ୍ୟ ଯୁଦ୍ଧରେ ସେମାନେ ହାନିବାଲଙ୍କୁ ଭୟ କରି ପ୍ରକାଶ୍ୟ ଯୁଦ୍ଧ ଛାଡ଼ିଲେ । କେବଳ ତାଙ୍କୁ ହଇରାଣ କରିବା ଏବଂ ତାଙ୍କର ଯାତାୟାତ ପଥ ବନ୍ଦ କରିଦେବାକୁ ଚେଷ୍ଟାକଲେ । ଫେବିୟସ୍ ନାମକ ଜଣେ ରୋମାନ୍ ସେନାପତି ଏପରି ଭାବରେ ଯୁଦ୍ଧ ନ କରିବା ଲାଗି ବିଶେଷ ଭାବରେ ପସନ୍ଦ କରୁଥିଲେ । ସେ ଜଣେ ଖୁବ୍ ବଡ଼ ଲୋକ ଏବଂ ତାଙ୍କର ନାମ ମନେରଖିବା ଉଚିତ ବୋଲି ଯେ ଏଠାରେ ମୁଁ ଲେଖିଲି, ତାହା ନୁହେଁ; ମାତ୍ର ତାଙ୍କ ନାମରୁ ଇଂରେଜୀ ଭାଷାରେ ଫେବିୟାନ୍ ବୋଲି ଗୋଟିଏ ଶବ୍ଦ ବାହାରିଛି । ଫେବିୟାନ୍ କୌଶଳ ହେଉଛି—ଏଥିରେ କୌଣସି ସମସ୍ୟାକୁ ବହୁତ ଦୂରକୁ ଉଠାନ୍ତି ନାହିଁ—ଯେପରି ଆପଣାଛାଏଁ ସମାଧାନ ହୋଇଯିବ । ଏହି ମତବାଦୀମାନେ ଲଢ଼ାଇ ବା ଏପରି କିଛି ସମସ୍ୟା ଉପୁଜାନ୍ତି ନାହିଁ ଯେଉଁଥିରେ ଏକଡ଼ ସେକଡ଼ ଗୋଟାଏ କିଛି କିଷ୍ପତ୍ତି ହେବ; ମାତ୍ର ବିରୋଧୀର ବିରୋଧକୁ ଧୀରେ ଧୀରେ ଦୂରକରି ଉଦ୍ଦେଶ୍ୟ ସାଧିତ ହେବ ବୋଲି ବିଶ୍ୱାସ କରନ୍ତି । ଇଂଲଣ୍ଡରେ ଗୋଟିଏ ଫେବିୟାନ ସୋସାଇଟି ଅଛି । ତାହା ସାମ୍ୟବାଦରେ ବିଶ୍ୱାସ କରେ; ମାତ୍ର ଶୀଘ୍ର ବା ହଠାତ୍ ପରିବର୍ତ୍ତନ ଚାହେଁ ନାହିଁ । ମୁଁ ଆଦୌ ଫେବିୟାନ୍ କୌଶଳକୁ ପସନ୍ଦ କରେ ନା ।

ହାନିବାଲ୍ ରୋମ୍‌ର ଏକ ବୃହତ୍ ଅଞ୍ଚଳକୁ ମରୁଭୂମିରେ ପରିଣତ କଲେ; ମାତ୍ର ଶେଷରେ ରୋମ୍‌ର ଦୃଢ଼ତା ଓ ନିରୁତ୍ସାହିତା ପରିରେ ହିଁ ଜୟ ହେଲା । ଖ୍ରୀଷ୍ଟପୂର୍ବ ୨୦୨ରେ ଯାମା ଯୁଦ୍ଧରେ ହାନିବାଲ ପରାସ୍ତ ହେଲେ । ରୋମ୍‌ର ଅତୃପ୍ତ ଘୃଣାରେ ଅଧୀର ହୋଇ ସେ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ପଳାଇବାକୁ ଲାଗିଲେ । ଶେଷରେ ସେ ନିଜେ ବିଷ ଖାଇଦେଲେ ।

ରୋମ୍ ଓ କାର୍ଥେଜ୍ ଭିତରେ ଅର୍ଦ୍ଧ ଶତାବ୍ଦୀ ପର୍ଯ୍ୟନ୍ତ ଶାନ୍ତି ସ୍ଥାପିତ ହୋଇଥିଲା । କାର୍ଥେଜ୍ ଯଥେଷ୍ଟ ପରିମାଣରେ ଅବନତ ହୋଇ ଯାଇଥିଲା ଏବଂ ରୋମ୍‌ର ପ୍ରତିଦ୍ୱନ୍ଦ୍ୱୀ ହେବାକୁ ପ୍ରାୟ ସାହସ କରୁ ନ ଥିଲା । ଏହା ସତ୍ତ୍ୱେ ରୋମ୍ ଶାନ୍ତ ରହିଲା ନାହିଁ ଏବଂ କାର୍ଥେଜ୍‌ବାସୀଙ୍କ ଉପରେ ପୁଣି ତୃତୀୟ ପିଉନିକ୍ ଯୁଦ୍ଧ ଆସି ପଡ଼ିଲା । ଏଥିରେ ବହୁତ ନରହତ୍ୟା ହେଲା ଏବଂ କାର୍ଥେଜ୍ ସହର ସମ୍ପୂର୍ଣ୍ଣରୂପେ ଧ୍ୱଂସ ପାଇଲା । ବାସ୍ତବିକ ସେନେ ଯେଉଁ କାର୍ଥେଜ୍ ନଗରୀ ଭୂମଧ୍ୟସାଗର ରୂପେ ରହିଥିଲା, ସେ ସହର ଶେଷକୁ ଗୋଚରଭୂମିରେ ପରିଣତ ହେଲା ।

## ୨୮ । ରୋମାନ୍ ଲୋକତନ୍ତ୍ର ଏକ ସାମ୍ରାଜ୍ୟରେ ପରିଣତ ହେଲା

ଏପ୍ରିଲ୍ ୯, ୧୯୩୨

କାର୍ଥେଜ୍‌ର ସମ୍ପୂର୍ଣ୍ଣ ପରାଜୟ ଓ ଧ୍ୱଂସ ପରେ ପାଶ୍ଚାତ୍ୟ ଜଗତରେ ରୋମ୍ ସର୍ବେସର୍ବା ହେଲା ଏବଂ ତାର ଆଉ କେହି ପ୍ରତିଦ୍ୱନ୍ଦୀ ନ ଥିଲେ । ଗ୍ରୀକ୍ ରାଜ୍ୟସବୁ ଏହା ଆଗରୁ ସେ ଜୟ କରି ସାରିଥିଲା – କାର୍ଥେଜ୍‌ର ଦେଶସବୁ ଏବେ ଦଖଲ କରିଗଲା । ଏହିପରି ଭାବରେ ଦ୍ୱିତୀୟ ପିଉନିକ୍ ଯୁଦ୍ଧ ପରେ ସ୍ପେନ୍ ରୋମ୍ ହାତକୁ ଚାଲିଆସିଲା । ତଥାପି, କେବଳ ଭୂମଧ୍ୟସାଗର ଦେଶଗୁଡ଼ିକ ସେନି ରୋମ୍ ଉପନିବେଶ ଗଠିତ ହୋଇଥିଲା । ସମଗ୍ର ଉତ୍ତର ଓ ମଧ୍ୟ-ଇଉରୋପ ରୋମ୍‌ଠାରୁ ସ୍ୱତନ୍ତ୍ର ଥିଲା ।

ବିଜୟ ଫଳରେ ରୋମ୍‌ରେ ଧନସମ୍ପଦ ଓ ବିଳାସ ବଢ଼ିଲା ଏବଂ ବିଜିତ ଦେଶମାନଙ୍କରୁ ଦାସସବୁ ବୁହା ହେବାକୁ ଲାଗିଲେ । ମାତ୍ର ସେମାନେ ଯାଉଥିଲେ କୁଆଡ଼େ ? ତତେ ମୁଁ ଆଗରୁ କହିଛି ସିନେଟ୍‌ହିଁ ରୋମ୍‌ର ଶାସନଭାର ନେଇଥିଲା ଏବଂ ଧନୀ ପରିବାରର ପ୍ରତିନିଧି ଏଥିରେ ସ୍ଥାନ ପାଉଥିଲେ । ଏହି ଧନୀ ସମ୍ପ୍ରଦାୟ ହିଁ ରୋମାନ୍ ଲୋକତନ୍ତ୍ର ଓ ତାର ସମସ୍ତ ବିଭାଗକୁ ନିୟନ୍ତ୍ରଣ କରୁଥିଲେ ଏବଂ ରୋମ୍‌ର ଶକ୍ତି ଓ ବିସ୍ତୃତି ସଙ୍ଗେ ସଙ୍ଗେ ସେମାନଙ୍କର ଧନସମ୍ପଦ ବଢ଼ିଲା । ସୁତରାଂ ଧନୀ ଆହୁରି ଧନୀ ହେବାକୁ ଲାଗିଲେ; ମାତ୍ର ଗରିବ ଗରିବ ହୋଇଗଲେ । ଦାସଙ୍କ ସଂଖ୍ୟା ବଢ଼ିଲା ଓ ବିଳାସ ବୃଦ୍ଧି ସଙ୍ଗେ ସଙ୍ଗେ ଦୁର୍ଦ୍ଦଶା ବି ବଢ଼ି ଚାଲିଲା । ଏପରି ଅବସ୍ଥା ଉପୁଜିଲେ ସାଧାରଣତଃ ଗୋଲମାଲ ହୁଏ । ମଣିଷ କେତେ ସହ୍ୟ କରିପାରେ ଭାବିଲେ ଆଶ୍ଚର୍ଯ୍ୟ ଲାଗେ; ମାତ୍ର ସହ୍ୟ କରିବାର ଗୋଟାଏ ସୀମା ଅଛି । ଏହି ସୀମା ଟପିଲେ ହଠାତ୍ ଅଶାନ୍ତି ଫୁଟି ବାହାରେ ।

ଧନୀ ଲୋକେ ଖେଳ ଓ ସର୍କସ ଲଢ଼ାଇ କରି ଗରିବ ଲୋକଙ୍କୁ ଶାନ୍ତ କରିବାକୁ ଚେଷ୍ଟା କରୁଥିଲେ । ସର୍କସରେ ମଲ୍ଲଯୁଦ୍ଧ (Gladiator*) ବାଧ୍ୟ କରି କରାଯାଉଥିଲା ଏବଂ ଦର୍ଶକମାନଙ୍କ ଆମୋଦ ନିମନ୍ତେ ଲୋକେ ପରସ୍ପରକୁ ହତ୍ୟା କରୁଥିଲେ । ଏପରି ଭାବରେ

---

* ଗ୍ଲାଡ଼ିଏଟର – ପ୍ରାଚୀନ ରୋମ୍‌ର ମଲ୍ଲଯୁଦ୍ଧ କରୁଥିବା ଲୋକଙ୍କ ନାମ । ଏମାନେ ଆଖଡ଼ାରେ ଅନ୍ୟ ଯୋଦ୍ଧା ବା ବନ୍ୟଜନ୍ତୁଙ୍କ ସହ ଲଢ଼ାଇ କରନ୍ତି ଓ ରୋମ୍‌ର ଲୋକେ ଏହା ଦେଖି ଆନନ୍ଦ ପାଆନ୍ତି । ରୋମ୍‌ବାସୀଙ୍କର ଏହା ଭାରି ପ୍ରିୟ ଖେଳ; ଦ୍ୱନ୍ଦ୍ୱଯୁଦ୍ଧରେ ଯେ ପରାସ୍ତ ହୁଏ, ରୋମବାସୀ ପରାଜିତ ଲୋକକୁ ବିଜୟୀ ଦ୍ୱାରା ହତ୍ୟା କରାନ୍ତି ।

ମୋର ମନୋହୃଏ ଖେଳ କୌତୁକ ଦେଖାଣେ ଅନେକ ସଂଖ୍ୟକ ଦାସ ଓ ଯୁଦ୍ଧବନ୍ଦୀ ମରୁଥିବେ ।

ମାତ୍ର ରୋମାନ୍ ରାଜ୍ୟରେ ଧୀରେ ଧୀରେ ବିଶୃଙ୍ଖଳା ବଢ଼ିବାକୁ ଲାଗିଲା । ନିର୍ବାଚନ ବେଳେ ବିଦ୍ରୋହ, ହତ୍ୟା, ଲାଞ୍ଚ ଓ ନାନା କୁକର୍ମ ହେବାକୁ ଲାଗିଲା । ସ୍ପାର୍ଟାକସ୍ ନାମରେ ଜଣେ ଗ୍ଲାଡ଼ିଏଟରଙ୍କ ନେତୃତ୍ୱରେ ଦରିଦ୍ର ଓ ପଦଦଳିତ ଦାସମାନେ ବିଦ୍ରୋହ କରି ଉଠିଲେ । କିନ୍ତୁ ସେମାନଙ୍କୁ ନିର୍ଦ୍ଦୟଭାବରେ ଦମନ କରାଗଲା ଏବଂ ସେମାନଙ୍କ ଭିତରୁ ୬୦୦୦ଙ୍କୁ ରୋମର ଏପିୟାନ୍‌ୱେ ନାମକ ସ୍ଥାନରେ ହତ୍ୟା କରାଯାଇଥିଲା ବୋଲି କଥିତ ଅଛି ।

କ୍ରମେ ଦୁଃସାହସିକ ବ୍ୟକ୍ତି ଓ ଯୁଦ୍ଧ ସେନାପତିଙ୍କ ପ୍ରାଧାନ୍ୟ ବଢ଼ିଲା ଏବଂ ସିନେଟ ଉପରେ ତାଙ୍କର ପ୍ରଭୁତ୍ୱ ସ୍ଥାପିତ ହେଲା । ଗୃହବିବାଦ ଓ ଧ୍ୱଂସଲୀଳା ଲାଗିଲା ଏବଂ ପ୍ରତିଦ୍ୱନ୍ଦ୍ୱୀ ସେନାପତିମାନେ ପରସ୍ପର ସହିତ ଲଢ଼ାଇ କରିବାକୁ ଲାଗିଲେ । ପୂର୍ବରେ ପାର୍ଥିଆରେ (ଇରାକ୍) ଖ୍ରୀଷ୍ଟପୂର୍ବ ୫୩ରେ ରୋମାନ୍ ସୈନ୍ୟ କୌରେ ଯୁଦ୍ଧରେ ଭୀଷଣ ଭାବରେ ପରାସ୍ତ ହେଲେ । ପାର୍ଥିଆନ୍‌ମାନଙ୍କ ବିରୁଦ୍ଧରେ ଯେଉଁ ରୋମାନ୍ ସୈନ୍ୟ ପ୍ରେରିତ ହୋଇଥିଲେ; ସେମାନଙ୍କୁ ପାର୍ଥିଆର ଲୋକେ ଧ୍ୱଂସ କରିଦେଲେ ।

ଏହି ରୋମାନ୍ ସେନାପତିମାନଙ୍କ ମଧ୍ୟରେ ଦୁଇଟି ନାମ ହିଁ ଉଲ୍ଲେଖଯୋଗ୍ୟ— ପମ୍ପି ଓ ଜୁଲିଅସ୍ ସିଜର । ଜୁ ଡ ଜାଣ୍ଟ ସିଜର ଫ୍ରାନ୍‌ସ ( ଗଲ୍ ବୋଲି ଯାହାକୁ କହୁଥିଲେ ) ଏବଂ ବ୍ରିଟେନକୁ ଜୟ କରିଥିଲେ । ପମ୍ପି ପୂର୍ବ ଆଡ଼କୁ ଗଲେ ଏବଂ ସେଠାରେ କିଛି କୃତିତ୍ୱ ହାସଲ କଲେ । ମାତ୍ର ଦୁହିଙ୍କ ଭିତରେ ଖୁବ୍ ବିରୋଧ ଥିଲା; ଦୁହେଁଯାକ ଉଚ୍ଚାଭିଳାଷୀ ଥିଲେ ଏବଂ ବିରୋଧିତା ସେମାନେ ସହ୍ୟ କରିପାରୁ ନ ଥିଲେ । ଦୁହେଁଯାକ ସିନେଟକୁ ମୁହଁରେ ଭକ୍ତି ଦେଖାଉଥିଲେ ସୁଦ୍ଧା ସିନେଟ୍‌ର ଗୁରୁତ୍ୱ କମିଗଲା । ସିଜର ପମ୍ପିଙ୍କୁ ପରାସ୍ତ କଲେ ଏବଂ ଏହିରୂପେ ସେ ରୋମାନ୍ ଜଗତରେ ଶ୍ରେଷ୍ଠ ଲୋକ ହେଲେ । ମାତ୍ର ରୋମ ଏକ ଲୋକତନ୍ତ୍ର ଥିବାରୁ ପ୍ରତ୍ୟେକ ବିଷୟରେ ସରକାରୀ ଭାବରେ ସେ କର୍ତ୍ତୃତ୍ୱ କରିପାରୁ ନ ଥିଲେ । ତେଣୁ ତାଙ୍କୁ ରାଜା ବା ସମ୍ରାଟ୍ କରିବା ନିମନ୍ତେ ଉଦ୍ୟମ ଚାଲିଲା । ତାଙ୍କର ଖୁବ୍ ଇଚ୍ଛା ଥିଲା; ମାତ୍ର ରୋମ୍‌ର ଦୀର୍ଘ ଲୋକତନ୍ତ୍ର ପରମ୍ପରା ହେତୁ ସେ ଇତସ୍ତତଃ ହେଲେ । ବାସ୍ତବିକ ଏହି ପରମ୍ପରା ଅତିକ୍ରମ କରିବା ତାଙ୍କ ପକ୍ଷେ କଠିନ ଥିଲା ଏବଂ ସିନେଟ ବୈଠକବେଳେ ଫାରେମ୍ ପାହାଚରେ ବ୍ରୁଟସ୍ ତାଙ୍କୁ ଛୁରିମାରି ହତ୍ୟା କରିଥିଲେ । ସେକ୍‌ସପିଅରଙ୍କର 'ଜୁଲିଅସ୍ ସିଜର' ନାମକ ନାଟକରେ ଏହି ଦୃଶ୍ୟର ବର୍ଣ୍ଣନା ଅଛି—ତୁ ନିଶ୍ଚୟ ପଢ଼ିଥିବୁ ।

ଖ୍ରୀଷ୍ଟପୂର୍ବ ୪୪ରେ ଜୁଲିଅସ୍ ସିଜରଙ୍କୁ ହତ୍ୟା କରାଗଲା; ମାତ୍ର ତାଙ୍କର ମୃତ୍ୟୁ ଲୋକତନ୍ତ୍ରକୁ ରକ୍ଷା କରିପାରି ନ ଥିଲା । ସିଜରଙ୍କ ପାଳିତ ପୁତ୍ର ଓ ଭଣଜା ଅକ୍ଟୋଭିଏନ୍ ଏବଂ ତାଙ୍କର ବନ୍ଧୁ ମାର୍କ ଆଣ୍ଟନି ସିଜରଙ୍କ ହତ୍ୟାର ପ୍ରତିଶୋଧ ନେଲେ । ତା ପରେ ରାଜଗାଦୀ ଫେରିଆସିଲା ଏବଂ ଅକ୍ଟୋଭିଏନ୍ ଷ୍ଟେଟର ପ୍ରଧାନ ବା ରାଜା ହେଲେ । ଲୋକତନ୍ତ୍ର ଲୋପ ହେଲା । ସିନେଟ୍ କାଏମ୍ ରହିଲା; କିନ୍ତୁ ଏହାର କୌଣସି ପ୍ରକୃତ କ୍ଷମତା ନ ଥିଲା ।

ଅକ୍ଟୋଭିଏନ୍ ପ୍ରଧାନ ହେଲା ପରେ ତାଙ୍କ ନାମ ହେଲା ଅଗଷ୍ଟସ୍ ସିଜର । ତାଙ୍କ ପରେ ତାଙ୍କ ଉତ୍ତରାଧିକାରୀମାନଙ୍କୁ ସିଜର ବୋଲି ଡକା ଯାଉଥିଲା । ବାସ୍ତବିକ ସିଜରର ଅର୍ଥ ସମ୍ରାଟ୍ ବୋଲି ବୁଝାଗଲା । ଏହି "ସିଜର" ଶବ୍ଦରୁ 'କାଇଜର' ଓ 'ଜାର' ନାମ ବାହାରିଲା । କାଇଜର ଶବ୍ଦ ଅନେକ ଦିନରୁ ହିନ୍ଦୁସ୍ଥାନୀ ଶବ୍ଦ ହୋଇଗଲାଣି; ଯଥା—କାଇଜରୀ ରମ୍, କାଇଜରୀ ହିନ୍ଦ୍ । ଇଂଲଣ୍ଡର ରାଜା ଜର୍ଜ ବର୍ତ୍ତମାନ କାଇଜରୀ ହିନ୍ଦ୍ ଉପାଧି ଭୋଗ କରୁଛନ୍ତି । ଜର୍ମାନୀର କାଇଜର, ଅଷ୍ଟ୍ରିଆର କାଇଜର, ତୁର୍କୀର କାଇଜର ଏବଂ ରୁଷର ଜାରସବୁ ଗଲେଣି । ଆହୁରି ମଜା ଓ ଅଦ୍ଭୁତ କଥା ଯେ ଜୁଲିଅସ୍ ସିଜର ରୋମ୍ ତରଫରୁ ବ୍ରିଟେନ୍ ଜୟ କରିଥିଲେ ସୁଦ୍ଧା ଇଂଲଣ୍ଡର ରାଜାଙ୍କୁ ଜୁଲିଅସ୍ ସିଜର ଉପାଧିରେ ଡକାଯାଏ ।

ତେଣୁ ଜୁଲିଅସ୍ ସିଜରଙ୍କ ନାମ ସାମ୍ରାଜ୍ୟର ଗୌରବ ସ୍ୱରୂପ ରହିଗଲା । ଗ୍ରୀସ୍‌ର ଫର୍ସାଲସଠାରେ ପମ୍ପି ଯଦି ତାଙ୍କୁ ପରାସ୍ତ କରିଥାନ୍ତେ, ତେବେ କଅଣ ହୋଇଥାନ୍ତା ? ସମ୍ଭବତଃ ତାହାହେଲେ ପମ୍ପି ରାଜା ବା ସମ୍ରାଟ୍ ହୋଇଥାନ୍ତେ ଏବଂ ପମ୍ପି ଶବ୍ଦର ଅର୍ଥ ସମ୍ରାଟ୍ ହୋଇଥାଆନ୍ତା । ତାହାହେଲେ ଜର୍ମାନୀର ଦ୍ୱିତୀୟ ଉଇଲିୟମଙ୍କୁ ଜର୍ମନ ପମ୍ପି କହୁଥାନ୍ତେ ଏବଂ ଏପରି କି ରାଜା ଜର୍ଜ ପମ୍ପି-ଇ-ହିନ୍ଦ୍ ରୂପେ ପରିଚିତ ହୋଇଥାଆନ୍ତେ ।

ରୋମାନ୍ ଷ୍ଟେଟର ଏହି ପରିବର୍ତ୍ତନ କାଳରେ ରୋମ୍ ଲୋକତନ୍ତ୍ର ଏକ ସାମ୍ରାଜ୍ୟରେ ପରିଣତ ହେଉଥିବା ବେଳେ ଇଜିପ୍ଟରେ ଜଣେ ନାରୀ ବାସ କରୁଥିଲେ । ତାଙ୍କର ସୌନ୍ଦର୍ଯ୍ୟ ଯୋଗୁଁ ସେ ଇତିହାସ-ପ୍ରସିଦ୍ଧ ହେଲେ । ତାଙ୍କ ନାମ ହେଉଛି କ୍ଲିଓପାଟ୍ରା । ତାଙ୍କର ସେପରି ସୁଖ୍ୟାତି ନ ଥିଲା; ମାତ୍ର ଯେଉଁ କେତୋଟି ନାରୀ ନିଜର ସୌନ୍ଦର୍ଯ୍ୟ ଯୋଗୁଁ ଇତିହାସ ପରିବର୍ତ୍ତନ କରିଛନ୍ତି ବୋଲି ଧରାଯାଏ, ସେମାନଙ୍କ ଭିତରୁ ସେ ଜଣେ । ଜୁଲିଅସ୍ ସିଜର ଇଜିପ୍ଟ ଗଲାବେଳକୁ ସେ ନିହାତି ପିଲାଟିଏ ଥିଲା । ପରେ ସେ ମାର୍କ ଆଣ୍ଟନିର ଖୁବ୍ ଘନିଷ୍ଠ ବନ୍ଧୁ ହେଲା ଏବଂ ତାର କିଛି ହିତ କରି ନ ଥିଲା । ଥରେ ଏକ ନୌଯୁଦ୍ଧ ଲାଗିଥିଲାବେଳେ ସେ ହଠାତ୍ ସବୁ ଜାହାଜ ସହ ତାଙ୍କୁ ଛାଡ଼ି

ବିଶ୍ୱାସଘାତକତା କରି ପଳାଇଥିଲେ । ପାସ୍କାଲ୍ ନାମକ ଜଣେ ଫରାସୀ ଲେଖକ ଅନେକ ଦିନ ଆଗରୁ ଲେଖିଥିଲେ—"କ୍ଲିଓପାଟ୍ରାର ନାକ ଟିକିଏ ଖ୍ରୋଟ ହୋଇଥିଲେ ସାରା ଦୁନିଆର ରଙ୍ଗ ବଦଳି ଯାଇଥାଆନ୍ତା"—ଏହା ଟିକିଏ ଅତିରଞ୍ଜିତ । କ୍ଲିଓପାଟ୍ରାଙ୍କ ନାକ ଯୋଗୁଁ ଦୁନିଆର ଖୁବ୍ ପରିବର୍ତ୍ତନ କେବେହେଁ ହୋଇ ନ ଥାନ୍ତା । ମାତ୍ର ସିଜର ଇଜିପ୍ଟ ଗଲା ପରେ ନିଜକୁ ଜଣେ ରାଜା ବା ସମ୍ରାଟ୍ ଏବଂ ଏକପ୍ରକାର ଦେବ ଶାସକ ବୋଲି ବିଶ୍ୱର କରିବାକୁ ଆରମ୍ଭ କଲେ । ଇଜିପ୍ଟରେ କୌଣସି ଲୋକତନ୍ତ୍ର ନ ଥିଲା; ମାତ୍ର ଏକ ରାଜତନ୍ତ୍ର ଥିଲା । ସେଠାରେ ଶାସକ ଯେ ଖାଲି ସର୍ବେସର୍ବା ଥିଲେ ତା ନୁହେଁ, ପ୍ରାୟ ଦେବତାରୂପେ ପୂଜା ପାଉଥିଲେ । ଏହା ଇଜିପ୍ଟର ଏକ ପ୍ରାଚୀନ ପ୍ରଥା ଏବଂ ଆଲେକ୍‌ଜାଣ୍ଡରଙ୍କ ମୃତ୍ୟୁ ପରେ ଇଜିପ୍ଟରେ ଯେଉଁ ଗ୍ରୀକ୍ ଟଲେମିମାନେ ରାଜୁତି କଲେ, ସେମାନେ ଇଜିପ୍ଟ-ବାସୀଙ୍କର ଅନେକ ରୀତିନୀତି ଓ ଭାବ ଗ୍ରହଣ କରିଥିଲେ । କ୍ଲିଓପାଟ୍ରା ଏହି ଟଲେମି ବଂଶର । ସେ ଜଣେ ଗ୍ରୀକ୍ । ବରଂ ମାସିଡୋନିୟାନ ରାଜକୁମାରୀ ବୋଲି କୁହା ଯାଇପାରେ ।

କ୍ଲିଓପାଟ୍ରାର ସାହାଯ୍ୟରେ ହୋଇଥିଲା କି ନାହିଁ କୁହାଯାଇ ପାରିବ ନାହିଁ; ମାତ୍ର ଇଜିପ୍ଟର ଦେବ-ଶାସକ ଧାରଣା ରୋମରେ ଆସି ପ୍ରଚଳିତ ହେଲା; ଏପରିକି ଜୁଲିଅସ୍ ସିଜରଙ୍କ ଜୀବିତାବସ୍ଥାରେ ଯେତେବେଳେ ଲୋକତନ୍ତ୍ରର ପ୍ରତିଷ୍ଠା ଥିଲା, ସେତେବେଳେ ବି ତାର ପ୍ରତିମୂର୍ତ୍ତି ରଖାଯାଇ ପୂଜା ହେଉଥିଲା । ଏହା କିପରି ରୋମ ସମ୍ରାଟ୍‌ମାନଙ୍କ ପକ୍ଷରେ ଗୋଟାଏ ରୀତିମତ ପ୍ରଥା ହୋଇ ରହିଲା, ଆମେ ପରେ ଦେଖିବା ।

ଆମେ ରୋମ ଇତିହାସର ଗୋଟିଏ ବିରାଟ ପରିବର୍ତ୍ତନ ଅର୍ଥାତ୍ ରୋମ ଲୋକତନ୍ତ୍ରର ଶେଷ ଅବସ୍ଥାରେ ପହଞ୍ଚିଥାଇଁ । ୨୭ ଖ୍ରୀଷ୍ଟାବ୍ଦରେ ଅଗଷ୍ଟସ୍ ସିଜର ଉପାଧି ନେଇ ଅକ୍ଟୋଭିୟାନ୍ ରାଜା ହେଲେ । ଆମେ ପରେ ରୋମ ଓ ତାର ସମ୍ରାଟ୍‌ଙ୍କ ବିଷୟରେ ଆଲୋଚନା କରିବା । ବର୍ତ୍ତମାନ ଲୋକତନ୍ତ୍ରର ଶେଷ ଅବସ୍ଥାରେ ରୋମ ଉପନିବେଶଗୁଡ଼ିକର ଅବସ୍ଥା କିପରି ଥିଲା ତାହା ଦେଖିବା ।

ରୋମ ଇଟାଲୀ ଉପରେ ତ ଶାସନ କରୁଥିଲା ଏବଂ ପଶ୍ଚିମରେ ସ୍ପେନ୍ ଓ ଗଲ୍ (ଫ୍ରାନ୍‌ସ) ବି ଶାସନ କଲା । ପୂର୍ବରେ ଗ୍ରୀସ୍ ଓ ଏସିଆ ମାଇନର ତାହା ଅଧୀନରେ ଥିଲା । ଏସିଆ ମାଇନରରେ ପର୍ଗାମମ୍‌ଙ୍କର ଗ୍ରୀକ୍ ରାଜା ଥିଲା ବୋଲି ତୋର ମନେଥିବ । ଉତ୍ତର-ଆଫ୍ରିକାରେ ଇଜିପ୍ଟ ଏକ ମିତ୍ର ଓ ସଂରକ୍ଷିତ ରାଜ୍ୟ ଧରାଯାଉଥିଲା । କାର୍ଥେଜ୍ ଓ ଭୂମଧ୍ୟସାଗର କୂଳସ୍ଥ ଦେଶର କେତେକ ଅଂଶ ମଧ୍ୟ ରୋମ ଅଧୀନରେ ଥିଲା । ଏହିରୂପେ ଉତ୍ତରରେ ରାଇନ୍ ନଦୀ କୂଳେ କୂଳେ ରୋମାନ ରାଜ୍ୟର ସୀମା ଥିଲା । ଜର୍ମାନୀ, ରୁଷ, ଉତ୍ତର ଓ ମଧ୍ୟ-ଇଉରୋପର ଦେଶସବୁ ରୋମାନ ସାମ୍ରାଜ୍ୟର ବାହାରେ ଥିଲା । ଇରାକର ପୂର୍ବ ଅଞ୍ଚଳ ଦେଶସବୁ ମଧ୍ୟ ସେହିପରି ଥିଲା ।

ସେ କାଳରେ ରୋମ ବଡ଼ ଥିଲା; ମାତ୍ର ଅନ୍ୟ ଦେଶର ଇତିହାସ ସମ୍ବନ୍ଧରେ ନ ଜାଣି ଇଉରୋପର ଅନେକ ଲୋକ ମନେକରନ୍ତି ଯେ ରୋମ ଇଉରୋପରେ ପ୍ରାଧାନ୍ୟ କରୁଥିଲା । ମାତ୍ର ପ୍ରକୃତ କଥା ଏହା ନୁହେଁ । ତୋର ସ୍ମରଣ ଥିବ, ଏହି ସମୟରେ ଚୀନରେ ବିଖ୍ୟାତ ହାନ୍ ବଂଶ ରାଜତ୍ୱ କରୁଥିଲେ ଏବଂ ଏହା ଏସିଆଠାରୁ କାସ୍ପିୟାନ ହ୍ରଦ ପର୍ଯ୍ୟନ୍ତ ସମଗ୍ର ଅଞ୍ଚଳରେ ପ୍ରାଧାନ୍ୟ ବିସ୍ତାର କରୁଥିଲା । ଇରାନର ଯେଉଁ କୈରେଠାରେ ହୋଇଥିବା ଯୁଦ୍ଧରେ ରୋମାନମାନେ ଅତି ଖରାପ ଭାବରେ ପରାସ୍ତ ହୋଇଥିଲେ, ସେଠାରେ ପାର୍ଥିଆର ଲୋକଙ୍କୁ ମଙ୍ଗୋଲିଆନମାନେ ସାହାଯ୍ୟ କରିଥିବା ସମ୍ଭବ ।

ମାତ୍ର ରୋମ ଇତିହାସ ବିଶେଷତଃ ରୋମାନ ଲୋକଙ୍କର ଇତିହାସ ଇଉରୋପୀୟମାନଙ୍କ ପକ୍ଷରେ ଖୁବ୍ ପ୍ରିୟ । କାରଣ ଇଉରୋପୀୟମାନେ ପୁରାତନ ରୋମାନ ଷ୍ଟେଟକୁ ଆଧୁନିକ ଇଉରୋପୀୟ ରାଜ୍ୟର ପୂର୍ବପୁରୁଷ ବୋଲି ବିଚାରନ୍ତି । ଅନେକ ଅଂଶରେ ଏହା ସତ୍ୟ । ତେଣୁ ଇଂଲଣ୍ଡର ସ୍କୁଲ ପିଲମାନେ ଆଧୁନିକ ଇତିହାସ ଜାଣନ୍ତୁ ବା ନ ଜାଣନ୍ତୁ, ସେମାନଙ୍କୁ ଗ୍ରିକ୍ ଓ ରୋମାନ୍ ଇତିହାସ ଶିକ୍ଷା ଦିଆଯାଏ । ଜୁଲିଅସ୍ ସିଜରଙ୍କ ଗଲ୍ (ଫ୍ରାନ୍ସ) ଆକ୍ରମଣର ବିବରଣୀ ମୁଁ ପିଲାବେଳେ ଲାଟିନ୍ ଭାଷାରେ ପଢ଼ିଥିବାର ମନେ ଅଛି । ସିଜର ଯେ ଖାଲି ଯୋଦ୍ଧା ଥିଲେ ଏପରି ନୁହେଁ, ସେ ଜଣେ ପ୍ରଭାବଶାଳୀ ଲେଖକ ବି ଥିଲେ ଏବଂ ତାଙ୍କ ରଚନା "ଡି ବେଲୋଗାଲି" ଆଜି ସୁଦ୍ଧା ଇଉରୋପର ହଜାର ହଜାର ସ୍କୁଲରେ ପଢ଼ାଯାଏ ।

କିଛିକ୍ଷଣ ପୂର୍ବେ ଆମେ ଅଶୋକଙ୍କ ସମୟର ଦୁନିଆ ପ୍ରତି ନଜର ପକାଇଥିଲେ । ଆମେ ସମସାମୟିକ ଚୀନ ଓ ଇଉରୋପର କଥା ଆଲୋଚନା କରିସାରି ଆହୁରି ପରକାଳ ଅବସ୍ଥାର ଆଲୋଚନା କରିଥାଇଁ । ଆମେ ଖ୍ରୀଷ୍ଟିୟାନ ଯୁଗର ଦ୍ୱାରରେ ପ୍ରାୟ ଆସି ପହଞ୍ଚିଲେଣି ଏବଂ ଭାରତର ଲୋକଙ୍କ ସମ୍ବନ୍ଧରେ ସେହି ସମୟ ପର୍ଯ୍ୟନ୍ତ ପୂର୍ବ ଜ୍ଞାନ ପାଇବା ଲାଗି ଆମେ ଭାରତ କଥା ଆଲୋଚନା କରିବା । କାରଣ ଅଶୋକଙ୍କ ମୃତ୍ୟୁ ପରେ ଭାରତରେ ବିରାଟ ପରିବର୍ତ୍ତନମାନ ହେଲା ଏବଂ ଉତ୍ତର ଓ ଦକ୍ଷିଣରେ ନୂତନ ସାମ୍ରାଜ୍ୟମାନ ଗଢ଼ିଉଠିଲା ।

ପୃଥିବୀ ଇତିହାସକୁ ଗୋଟିଏ ସମଷ୍ଟି ରୂପେ ତୁ ଯେପରି ବିଚାର କରୁ, ସେଥିଲାଗି ମୁଁ ଚେଷ୍ଟା କରିଛି । ମାତ୍ର ତୋର ମନେରଖିବା ଉଚିତ୍ ଯେ ସେ କାଳରେ ଦୂର ଦେଶମାନଙ୍କ ଭିତରେ ସମ୍ପର୍କ ଖୁବ୍ ସୀମାବଦ୍ଧ ଥିଲା । ସେ କାଳରେ ରୋମ ଖୁବ୍ ଉନ୍ନତ ଥିଲା; ମାତ୍ର ଭୂଗୋଳ ଓ ମାନଚିତ୍ର ଖୁବ୍ କମ ଜଣା ଥିଲା ଏବଂ ଶିକ୍ଷା ଦେବା ଲାଗି ରୋମ କିଛି ବିଶେଷ ଉଦ୍ୟମ କରି ନ ଥିଲା । ରୋମାନ୍ ସିନେଟର ଜ୍ଞାନୀ ଲୋକେ ଓ ସେନାପତିମାନେ ନିଜକୁ ଜଗତର ପ୍ରଭୁରୂପେ ବିଚାର କରୁଥିଲେ ସୁଦ୍ଧା ଆଜିକାଲି

ଯେକୌଣସି ସ୍କୁଲର ଛାତ୍ରଛାତ୍ରୀ ତାଙ୍କଠାରୁ ବେଶି ଭୂଗୋଳ ଜାଣନ୍ତି । ସେମାନେ ଯେପରି କେତେ ହଜାର ମାଇଲ ଦୂରରେ ନିଜକୁ ଜଗତର ପ୍ରଭୁ ରୂପେ ବିଗୃର କରୁଥିଲେ, ସେହିପରି ଏସିଆ ମହାଦେଶରେ ଚୀନ ମଧ୍ୟ ନିଜକୁ ଜଗତର ପ୍ରଭୁ ବୋଲି ମନେ କରୁଥିଲା ।

## ୨୯ । ଦକ୍ଷିଣ-ଭାରତ ଉତ୍ତରକୁ ଆଚ୍ଛନ୍ନ କଲା

ଏପ୍ରିଲ ୧୦, ୧୯୩୨

ଆମେ ପ୍ରାଚ୍ୟଖଣ୍ଡରେ ଚୀନ ଓ ପଶ୍ଚିମରେ ରୋମରେ ଯାତ୍ରା କରିସାରି ବର୍ତ୍ତମାନ ଭାରତକୁ ଆସିଲେ ।

ଅଶୋକଙ୍କ ମୃତ୍ୟୁ ପରେ ମୌର୍ଯ୍ୟସାମ୍ରାଜ୍ୟ ଅଧିକ କାଳ ତିଷ୍ଠି ରହି ନ ଥିଲା । କେତେକ ବର୍ଷ ଭିତରେ ଏହା ଲୋପ ପାଇଗଲା । ଉତ୍ତର ପ୍ରଦେଶଗୁଡ଼ିକର ପତନ ହେଲା ଏବଂ ଦକ୍ଷିଣରେ ଏକ ନୂତନ ଶକ୍ତି ଅର୍ଥାତ୍ ଅନ୍ଧ୍ର ଶକ୍ତି ତେଜିଉଠିଲା । ଏହି ପତନୋନ୍ମୁଖୀ ସାମ୍ରାଜ୍ୟରେ ଅଶୋକଙ୍କ ବଂଶଧରମାନେ ପ୍ରାୟ ୫୦ ବର୍ଷ ପର୍ଯ୍ୟନ୍ତ ରାଜୁତି କଲେ । ଶେଷରେ ସେନାନାୟକ ପୁଷ୍ୟମିତ୍ର ନାମକ ଜଣେ ବ୍ରାହ୍ମଣ ସେମାନଙ୍କୁ ଜବରଦସ୍ତ ତଡ଼ି ଦେଇଥିଲେ । ସେ ନିଜେ ରାଜା ହେଲେ ଏବଂ ତାଙ୍କ ସମୟରେ ବ୍ରାହ୍ମଣ୍ୟଧର୍ମ*ର ପୁନରୁଦ୍ଧାର ହେଲା ବୋଲି କୁହାଯାଏ । ବୌଦ୍ଧସନ୍ନ୍ୟାସୀମାନଙ୍କୁ ଅନେକ ପରିମାଣରେ ଶାସ୍ତି ଦିଆଯାଇଥିଲା । ମାତ୍ର ତୁ ଭାରତ ଇତିହାସ ପଢ଼ିଲେ ଦେଖିବୁ ଯେ ବ୍ରାହ୍ମଣ୍ୟଧର୍ମ ଖୁବ୍ ଚତୁରତା ସହକାରେ ବୌଦ୍ଧଧର୍ମ ଉପରେ ଆକ୍ରମଣ କରିଥିଲା । ବୌଦ୍ଧଧର୍ମାବଲମ୍ବୀମାନଙ୍କୁ ବିଶେଷ କଷ୍ଟ ଦେଲା ଭଳି କୌଣସି କାର୍ଯ୍ୟ କରାଯାଇ ନ ଥିଲା । କେତେକ ଲୋକଙ୍କୁ ଶାସ୍ତି ଦିଆଯାଇଥିଲା ସତ, ମାତ୍ର ତାହା ଧର୍ମ ପାଇଁ ନୁହେଁ—ରାଜନୀତି ହେତୁ । ବୌଦ୍ଧ ସଙ୍ଘଗୁଡ଼ିକ ଖୁବ୍ ଶକ୍ତିଶାଳୀ ଅନୁଷ୍ଠାନ ଥିଲା ଏବଂ ସେମାନଙ୍କର ରାଜନୀତିକ ଶକ୍ତି ପ୍ରତି ଅନେକ ଶାସକ ଭୟ କରୁଥିଲେ; ତେଣୁ ସେଗୁଡ଼ିକୁ ଦୁର୍ବଳ କରିବା ନିମନ୍ତେ ସେମାନଙ୍କର ଉଦ୍ୟମ ହୋଇଥିଲା । ଅବଶେଷରେ ବ୍ରାହ୍ମଣ୍ୟଧର୍ମ ବୌଦ୍ଧଧର୍ମକୁ ତାର ଜନ୍ମିତ ଦେଶରୁ ଲୋପ କରିଦେବାରେ ବହୁ ପରିମାଣରେ ସଫଳ ହେଲା; ଅନେକାଂଶରେ ବୌଦ୍ଧଧର୍ମ ବ୍ରାହ୍ମଣ୍ୟଧର୍ମ ଗ୍ରହଣ କରି-ନେଲା ଓ ନିଜ ଘରେ ତା ପାଇଁ ମଧ୍ୟ ସ୍ଥାନ ଦେଲା ।

---

* ଏଠି ବ୍ରାହ୍ମଣ୍ୟଧର୍ମ ବୋଇଲେ ହିନ୍ଦୁଧର୍ମ ବୁଝାଏ ।

ସୁତରାଂ ନୂତନ ବ୍ରାହ୍ମଣ୍ୟଧର୍ମ କେବଳ ପୁରୁଣା ଅବସ୍ଥାର ରୂପାନ୍ତର ନ ଥିଲା କିମ୍ବା ବୌଦ୍ଧଧର୍ମର ବିପରୀତ ବି ନ ଥିଲା । ବ୍ରାହ୍ମଣ୍ୟଧର୍ମର ପୁରୁଣା ନେତାମାନେ ଖୁବ୍ ଚତୁର ଥିଲେ ଏବଂ ସେହି କାଳରୁ ସେମାନେ ନୂତନ ଜିନିଷ ଗ୍ରହଣ କରି ଆପଣାର କରି ନେଉଥିଲେ । ଆର୍ଯ୍ୟମାନେ ଯେତେବେଳେ ପ୍ରଥମେ ଭାରତକୁ ଆସିଲେ, ସେତେବେଳେ ଦ୍ରାବିଡ଼ ସଂସ୍କୃତି ଓ ରୀତି ଅନେକ ଅଂଶରେ ଗ୍ରହଣ କଲେ ଏବଂ ଜ୍ଞାତସାରରେ ବା ଅଜ୍ଞାତସାରରେ ସେମାନେ ସେମିତ କାର୍ଯ୍ୟ କରି ଆସିଚନ୍ତି । ବୌଦ୍ଧଧର୍ମ ବେଳକୁ ମଧ୍ୟ ସେଇଆ ହେଲା – ସେମାନେ ବୁଦ୍ଧଙ୍କୁ ହିନ୍ଦୁ ଦେବତାମାନଙ୍କ ପରି ଏକ ଅବତାର ବା ଦେବତା କରିଦେଲେ । ବୁଦ୍ଧ ଅସଂଖ୍ୟ ଲୋକଙ୍କଦ୍ୱାରା ପୂଜା ପାଇଲେ; ମାତ୍ର ସେମାନେ ତାଙ୍କର ବାର୍ତ୍ତାକୁ ଭୁଲିଗଲେ । ବ୍ରାହ୍ମଣ୍ୟଧର୍ମ ବା ହିନ୍ଦୁଧର୍ମ ସାମାନ୍ୟ କେତେକ ପରିବର୍ତ୍ତନ ହୋଇ ଧୀର ମନ୍ଥର ଗତିରେ ଚାଲିବାକୁ ଲାଗିଲା । ମାତ୍ର ବୌଦ୍ଧଧର୍ମକୁ ଏପରି ବ୍ରାହ୍ମଣ୍ୟଧର୍ମ ଭିତରେ ପୂରାଇନେବା ଲାଗି ବୋଧହୁଏ ଅନେକ ଦିନ ଲାଗିଲା; କାରଣ ଅଶୋକଙ୍କ ମୃତ୍ୟୁ ପରେ ଭାରତରେ ବୌଦ୍ଧଧର୍ମ ଅନେକ ଦିନ ରହିଥିଲା ।

ମଗଧରେ ଯେଉଁସବୁ ରାଜା ବା ବଂଶ ରାଜୁତି କଲେ ସେ ସମ୍ବନ୍ଧରେ ଆମର ଜାଣିବା ଲାଗି ବ୍ୟସ୍ତ ହେବା ଦରକାର ନାହିଁ । ଅଶୋକଙ୍କ ମୃତ୍ୟୁ ପରେ ପ୍ରାୟ ୨୦୦ ବର୍ଷ ପର୍ଯ୍ୟନ୍ତ ମଗଧ ଭାରତର ପ୍ରଧାନ ଦେଶ ହୋଇ ରହି ନ ଥିଲା; ତଥାପି ଏହା ବୌଦ୍ଧ-ସଂସ୍କୃତିର ଏକ ପ୍ରଧାନ କେନ୍ଦ୍ର ଥିଲା ।

ଏହିଭିତରେ ଉତ୍ତର ଓ ଦକ୍ଷିଣରେ ଗୁରୁତ୍ୱପୂର୍ଣ୍ଣ ଘଟଣାମାନ ଘଟିଯାଇଥିଲା । ମଧ୍ୟ-ଏସିଆର ବାକ୍ଟ୍ରିଆନ୍, ଶକ, ସିଦିଆନ୍, ତୁର୍କୀ ଓ କୁଶନମାନେ ଉତ୍ତରରେ ବାରମ୍ବାର ଆକ୍ରମଣ ଚଳାଉଥିଲେ । ମୋର ମନେହୁଏ ମଧ୍ୟ-ଏସିଆ କିପରି କେତେକ ଯାଯାବର ଲୋକଙ୍କର ଜନ୍ମସ୍ଥଳୀ ହୋଇଥିଲା, କିପରି ଦଳ ଦଳ ହୋଇ ସେଠୁ ଲୋକ ବାହାରି ସମଗ୍ର ଏସିଆ ଓ ଏପରିକି ଇଉରୋପରେ ମଧ୍ୟ ବ୍ୟାପି ଯାଇଥିଲେ, ସେ ସମ୍ବନ୍ଧରେ ଥରେ ମୁଁ ତତେ ଲେଖିଥିଲି । ଖ୍ରୀଷ୍ଟପୂର୍ବରୁ ପ୍ରାୟ ୨୦୦ ବର୍ଷ ଭିତରେ ଏପରି ଅନେକ ବାର ଭାରତ ଆକ୍ରମଣ ହୋଇଥିଲା । ମାତ୍ର ତୋର ମନେରଖିବା ଦରକାର ଯେ ଏସବୁ ଆକ୍ରମଣ କେବଳ ବିଜୟ ଓ ଲୁଟ୍ କରିବା ଲାଗି ହେଉ ନ ଥିଲା; ବସବାସ କରିବା ନିମନ୍ତେ ସ୍ଥାନ ପାଇବା ଲାଗି ଏହାସବୁ ହେଉଥିଲା । ମଧ୍ୟ-ଏସିଆର ଅଧିକାଂଶ ଜାତି ବୁଲା ଫକୀର ପରି ଥିଲେ ଏବଂ ସେମାନଙ୍କର ସଂଖ୍ୟା ବଢ଼ିବାରୁ ସେମାନେ ଯେଉଁ ସ୍ଥାନରେ ଥିଲେ, ସେଥିରେ ସେମାନଙ୍କ ପକ୍ଷରେ ଚଳିବା ଲାଗି ଯଥେଷ୍ଟ ହେଲା ନାହିଁ । ସୁତରାଂ ସେମାନେ ସେ ଦେଶ ଛାଡ଼ିଲେ ଓ ନୂତନ ଜମି ଖୋଜିବୁଲିଲେ । ସ୍ୱା' ଛଡ଼ା ପଶ୍ଚାତ୍ତରୁ ବିତାଡ଼ନ ମଧ୍ୟ ଆଉରି ଗୋଟିଏ ବଡ଼ କାରଣ ଥିଲା । ଗୋଟାଏ ଶକ୍ତିଶାଳୀ ଜାତି ବା ସମ୍ପ୍ରଦାୟ ଅନ୍ୟମାନଙ୍କୁ ତଡ଼ିଦିଅନ୍ତି ଏବଂ ସେମାନେ ବାଧ୍ୟହୋଇ ଅନ୍ୟ ଦେଶ ଆକ୍ରମଣ କରିବାକୁ

ବାହାରନ୍ତି । ସୁତରାଂ ଯେଉଁ ଲୋକେ ଭାରତ ଆକ୍ରମଣ କରିବାକୁ ଆସୁଥିଲେ, ସେମାନେ ଅନେକ ସମୟରେ ତାଙ୍କ ନିଜ ଦେଶରୁ ପଳାତକ ରୂପେ ଆସୁଥିଲେ । ଚୀନ ସାମ୍ରାଜ୍ୟ ଯେତେବେଳେ ହାନ୍ ବଂଶର ରାଜୁତିରେ ଶକ୍ତିଶାଳୀ ହେଲା, ତାହା ମଧ୍ୟ ଏହି ଯାଯାବର-ମାନଙ୍କୁ ତଡ଼ିଦେଲା ଏବଂ ସେମାନେ ନୂଆ ଦେଶ ଖୋଜିବାକୁ ବାଧ୍ୟ ହେଲେ ।

ତୋର ମନେରଖିବା ଦରକାର ଯେ ମଧ୍ୟ ଏସିଆର ଏହି ଯାଯାବର ଜାତିମାନେ ଭାରତକୁ ଧର୍ମଗୁରୁରୂପେ ଗୋଟିଏ ଶତ୍ରୁ ରାଜ୍ୟ ବୋଲି ମଣୁ ନ ଥିଲେ । ସେମାନଙ୍କୁ "ବର୍ବର" ଆଖ୍ୟା ଦିଆଯାଇଛି ଏବଂ ବାସ୍ତବିକ ସେ କାଳର ଭାରତ ତୁଳନାରେ ସେମାନେ ସଭ୍ୟ ନ ଥିଲେ । ମାତ୍ର ସେମାନଙ୍କ ଭିତରୁ ଅନେକେ ନିଷ୍ଠାପର ବୌଦ୍ଧଧର୍ମାବଲମ୍ବୀ ଥିଲେ ଏବଂ ଭାରତରେ ସେ ଧର୍ମର ଜନ୍ମ ହୋଇଥିବାରୁ ଭାରତ ପ୍ରତି ସମ୍ମାନ ଦେଖାଉଥିଲେ ।

ପୁଷ୍ୟମିତ୍ରଙ୍କ ସମୟରେ ମଧ୍ୟ ଜଣେ ଧାର୍ମିକ ବୌଦ୍ଧଧର୍ମାବଲମ୍ବୀ ବକ୍ଟ୍ରିଆର ମିନେନ୍ଦର ଉତ୍ତର-ପଶ୍ଚିମରେ ଆକ୍ରମଣ କରିଥିଲେ । ଠିକ୍ ଭାରତର ସୀମାନ୍ତ ପରେ ବାକ୍ଟ୍ରିଆ ଦେଶ ଥିଲା । ଏହା ସେଲ୍ୟୁକସ୍‌ଙ୍କ ସାମ୍ରାଜ୍ୟର ଏକ ଅଙ୍ଗ ରୂପେ ଥିଲା; ମାତ୍ର ପରେ ଏହା ସ୍ୱାଧୀନ ହୋଇଗଲା । ମିନେନ୍ଦରଙ୍କ ଆକ୍ରମଣ ବାଧା ପାଇଲା; ମାତ୍ର ସେ କାବୁଲ ଓ ସିନ୍ଧୁ ଦେଶକୁ ନିଜ କବଳରେ ଆଣିଲେ ।

ତାପରେ ଶକ ଆକ୍ରମଣ—ସେମାନେ ବହୁ ସଂଖ୍ୟାରେ ଆସିଲେ ଏବଂ ସମଗ୍ର ଉତ୍ତର ଓ ପଶ୍ଚିମ-ଭାରତରେ ବ୍ୟାପିଗଲେ । ଶକମାନେ ତୁର୍କୀର ଯାଯାବର ଶ୍ରେଣୀ ଭିତରୁ ଗୋଟିଏ । ସେମାନଙ୍କୁ କୁଶନମାନେ ତାଙ୍କ ଭୂମିରୁ ତଡ଼ି ଦେଇଥିଲେ । ସେମାନେ ବକ୍ଟ୍ରିଆ, ପାର୍ଥିଆ ଅତିକ୍ରମ କରିଗଲେ ଏବଂ କ୍ରମେ ଉତ୍ତର-ଭାରତ ବିଶେଷତଃ ପଞ୍ଜାବ, ରାଜପୁତାନା ଓ କାଥିଆବାଡ଼ରେ ବସତି କଲେ । ଭାରତ ହିଁ ସେମାନଙ୍କୁ ସଭ୍ୟ କଲା ଓ ସେମାନେ ତାଙ୍କର "ଯାଯାବର" ପ୍ରକୃତି ଛାଡ଼ିଲେ ।

ମଜାର କଥା, ବାକ୍ଟ୍ରିଆ ଓ ତୁର୍କୀର ଲୋକେ ଭାରତର କେତେକ ଅଞ୍ଚଳରେ ଶାସକ ଥିଲେ ସୁଦ୍ଧା ଭାରତୀୟ ଆର୍ଯ୍ୟ-ସମାଜରେ କୌଣସି ପ୍ରଭେଦ ଘଟି ନ ଥିଲା । ଏହି ଶାସକମାନେ ବୌଦ୍ଧଧର୍ମାବଲମ୍ବୀ ଥିଲେ । ତେଣୁ ସେମାନେ ବୌଦ୍ଧ ଗୀର୍ଜା ଅନୁଷ୍ଠାନକୁ ଅନୁସରଣ କଲେ । ଏହା ଭାରତର ଆର୍ଯ୍ୟଙ୍କ ଗଣତନ୍ତ୍ର ନୀତିରେ ଗ୍ରାମ ସମାଜ ଗଢ଼ିବା ନୀତିକୁ ମୂଳ ଭିତ୍ତି କରି ଗଠିତ । ତେଣୁ ଏହି ଶାସକମାନଙ୍କ ଅଧୀନରେ ମଧ୍ୟ ଭାରତ ଗୋଟିଏ କେନ୍ଦ୍ରଶକ୍ତିର ଅନ୍ତର୍ଭୁକ୍ତ ହୋଇ ଅନେକଗୁଡ଼ିଏ ସ୍ୱାୟତ୍ତଶାସିତ ଗ୍ରାମ ପଞ୍ଚାୟତ ବା ଲୋକତନ୍ତ୍ରର ସମଷ୍ଟି ଥିଲା । ଏହି ସମୟରେ ତକ୍ଷଶିଳା ଓ ମଥୁରା ମଧ୍ୟ ଖୁବ୍ ବଡ଼ ବୌଦ୍ଧ ଶିକ୍ଷାକେନ୍ଦ୍ର ଥିଲା ଏବଂ ଚୀନ ଓ ପଶ୍ଚିମ-ଏସିଆରୁ ଛାତ୍ର ସେଠାକୁ ଆସୁଥିଲେ ।

ମାତ୍ର ଉତ୍ତର-ପଶ୍ଚିମରୁ ବାରମ୍ବାର ଆକ୍ରମଣ ଏବଂ ମୌର୍ଯ୍ୟ ସାମ୍ରାଜ୍ୟ ସଂଗଠନ କ୍ରମେ ଭାଙ୍ଗି ଯିବା ଫଳରେ ଗୋଟିଏ ଲାଭ ହେଲା । ଦକ୍ଷିଣ-ଭାରତର ରାଜ୍ୟସବୁ ପୁରାତନ ଭାରତୀୟ ଆର୍ଯ୍ୟପ୍ରଥାର ପ୍ରକୃତ ନମୁନା ହେଲା । ଏହାପରେ ଭାରତୀୟ ଆର୍ଯ୍ୟଶକ୍ତିର କେନ୍ଦ୍ର ଦକ୍ଷିଣକୁ ଗଲା । ଆକ୍ରମଣ ଯୋଗୁଁ ସମ୍ଭବତଃ ଅନେକ ଗୁଣବାନ୍ ଲୋକ ଉତ୍ତରରୁ ଦକ୍ଷିଣକୁ ପଳାଇଗଲେ । ତୁ ପରେ ଦେଖିବୁ ଯେ ୧୦୦୦ ବର୍ଷ ପରେ ଯେତେବେଳେ ମୁସଲମାନ-ମାନେ ଭାରତ ଆକ୍ରମଣ କଲେ, ସେତେବେଳେ ପୁଣି ଏହା ଘଟିଥିଲା । ଆଜି ସୁଦ୍ଧା ବିଦେଶୀ ଆକ୍ରମଣ ଓ ସମ୍ପର୍କ ଉତ୍ତର ଅପେକ୍ଷା ଦକ୍ଷିଣ ଭାରତକୁ ଖୁବ୍ ଅଳ୍ପ ପରିମାଣରେ ସ୍ପର୍ଶ କରିଛି । ଆମେ ଯେସବୁ ଉତ୍ତରରେ ବାସ କରୁଛୁ, ଏକ ମିଶ୍ରିତ ସଂସ୍କୃତିରେ ବଢ଼ିଥାଉଁ । ଏହା ହିନ୍ଦୁ ଓ ମୁସଲମାନ ଓ ଅନେକ ପରିମାଣରେ ପଶ୍ଚିମର ରୀତିନୀତି-ମିଶ୍ରିତ । ଆମ ଭାଷା ହିନ୍ଦି, ଉର୍ଦ୍ଦୁ ବା ହିନ୍ଦୁସ୍ଥାନୀ ଯାହା କହ, ଗୋଟିଏ ମିଶ୍ରିତ ଭାଷା । ମାତ୍ର ତୁ ତ ଦେଖିଥିବୁ ଦକ୍ଷିଣରେ ସେହିପରି ପ୍ରଧାନତଃ ହିନ୍ଦୁ ଓ ରକ୍ଷଣଶୀଳତା ସବୁ ରହିଛି । ଅନେକ ଶହ ବର୍ଷ ପର୍ଯ୍ୟନ୍ତ ହିନ୍ଦୁ ଅର୍ଯ୍ୟସଭ୍ୟତା ରକ୍ଷାକରିବା ନିମନ୍ତେ ଦକ୍ଷିଣ-ଭାରତ ଚେଷ୍ଟା କରିଥିଲା ଏବଂ ଏଥିଲାଗି ଏକ କଠୋର ନିୟମାବଦ୍ଧ ସମାଜ ଗଢ଼ିଥିଲା; ତାହା ଆଜିସୁଦ୍ଧା କିପରି ରହିଛି, ତୁ ଦେଖୁଛୁ । ଆବଦ୍ଧ ପ୍ରାଚୀର ବଡ଼ ବିପଜ୍ଜନକ ସାଥୀ । ସେଗୁଡ଼ିକ ବେଳେ ବେଳେ ବାହାରର ଦୁଷ୍ଟତାରୁ ରକ୍ଷା କରିପାରେ ଏବଂ ଅନାହୂତ ଆକ୍ରମଣକାରୀଙ୍କୁ ବାଧା ଦେଇପାରେ । ମାତ୍ର ସେଗୁଡ଼ିକ ମଧ୍ୟ ମଣିଷକୁ ବନ୍ଦୀ ଓ ଦାସ କରିପକାଏ ଏବଂ ସ୍ୱାଧୀନତା ବିନିମୟରେ ତଥାକଥିତ ବିଶୁଦ୍ଧତା ଓ ମୁକ୍ତି ଆଣିଥାଏ । ସବୁଠାରୁ ଭୀଷଣ ହେଉଛି, ଯେଉଁ ପାଚେରୀଗୁଡ଼ିକ ମଣିଷ ମନ ଭିତରେ ଗଢ଼ା ହୋଇଯାଏ, ଯାହା ଯୋଗୁଁ କୌଣସି ପୁରୁଣା ଖରାପ ଅଭ୍ୟାସ ପୁରୁଣା ହୋଇଯାଇଥିବାର ମଣିଷ ଛାଡ଼ି ପାରେ ନା ବା କୌଣସି ନୂତନ ଚିନ୍ତାକୁ ମଧ୍ୟ ସମ୍ପୂର୍ଣ୍ଣ ନୂତନ ହୋଇଥିବାର ଗ୍ରହଣ କରିପାରେ ନା ।

ମାତ୍ର ପ୍ରାୟ ୧୦୦୦ ବର୍ଷରୁ ଅଧିକ କାଳ ପର୍ଯ୍ୟନ୍ତ ଭାରତୀୟ ଆର୍ଯ୍ୟସଭ୍ୟତା କେବଳ ଧର୍ମରେ ନୁହେଁ, କଳା ଓ ରାଜନୀତି କ୍ଷେତ୍ରରେ ସୁଦ୍ଧା ଦକ୍ଷିଣ-ଭାରତ ରକ୍ଷା କରି ପାରିଥିବାରୁ ପ୍ରକୃତ ସେବା କରିପାରିଛି । ବର୍ତ୍ତମାନ ପୁରାତନ ଭାରତର କଳାର ନମୁନା ଦେଖିବାକୁ ହେଲେ ଦକ୍ଷିଣ-ଭାରତକୁ ଯିବାକୁ ହେବ । ରାଜନୀତି ସମ୍ବନ୍ଧରେ ଗ୍ରୀକ୍ ଲେଖକ ମେଗାସ୍ଥିନିସ୍ ଲେଖିଯାଇଛନ୍ତି ଯେ ଦକ୍ଷିଣର ଲୋକମତରେ ଗଠିତ ପରିଷଦସବୁ ରାଜାଙ୍କ କ୍ଷମତାକୁ ସୀମାବଦ୍ଧ କରି ଦେଇଥିଲେ ।

ମଗଧର ପତନ ପରେ ଖାଲି ବିଦ୍ୱାନ୍ ନୁହନ୍ତି, ଶିଳ୍ପୀ, ରଚୟିତା, କାରିଗର ସମସ୍ତେ ଦକ୍ଷିଣକୁ ଗଲେ । ଦକ୍ଷିଣ-ଭାରତ ଓ ଇଉରୋପ ଭିତରେ ଖୁବ୍ ବାଣିଜ୍ୟ ବେପାର ହେଲା । ହୀରା, ହାତଦାନ୍ତ, ସୁନା, ଧାନ, ଲଙ୍କା, ମୟୂର ଏପରିକି ମାଙ୍କଡ଼

ମଧ୍ୟ ବେବିଲନ୍, ଇଜିପ୍ଟ ଓ ଗ୍ରୀସ୍ ଏବଂ ପରେ ରୋମ୍‌କୁ ପଠାଯାଇଥିଲା । ମାଲବାର ଉପକୂଳରୁ ଶାଗୁଆନ କାଠ ଅନ୍ତତଃ ଆଗରୁ ଚ୍ଲଦିଆ ଓ ବେବେଲୋନିଆକୁ ପଠାଯାଉଥିଲା । ସମସ୍ତ ବେପାର କମ୍ପା ହେଥିରୁ ଅଧିକାଂଶ ଭାରତୀୟ ଜାହାଜଦ୍ୱାରା ଯାଉଥିଲା; ବିଶେଷତଃ ଦ୍ରାବିଡ଼ମାନେ ତାହା ଚଳାଉଥିଲେ । ଦକ୍ଷିଣ-ଭାରତ ଅତୀତ ଜଗତରେ କିପରି ଉନ୍ନତ ସ୍ଥାନ ପାଇଥିଲା, ତୁ ଏଥିରୁ ଅନୁମାନ କରିପାରିବୁ । ଦକ୍ଷିଣରୁ ଅନେକ ସଂଖ୍ୟକ ରୋମାନ ମୁଦ୍ରା ବାହାର କରାଯାଇଛି ଏବଂ ମୁଁ ତ ତତେ ଆଗରୁ କହିଛି ଯେ ମାଲବାର ଉପକୂଳରେ ଆଲେକ୍‌ଜାଣ୍ଡ୍ରିଆବାସୀଙ୍କର ବସତି ଥିଲା ଏବଂ ଆଲେକ୍‌ଜାଣ୍ଡ୍ରିଆରେ ମଧ୍ୟ ଭାରତୀୟ ଉପନିବେଶ ଥିଲା ।

ଅଶୋକଙ୍କ ମୃତ୍ୟୁ ପରେ ପରେ ଦକ୍ଷିଣର ଆନ୍ଧ୍ର ରାଜ୍ୟ ସ୍ୱାଧୀନ ହେଲା । ତୁ ବୋଧହୁଏ ଜାଣୁ, ଆନ୍ଧ୍ର ଗୋଟିଏ ବଂଗୋପ ପ୍ରଦେଶ—ଏହା ମାନ୍ଦ୍ରାଜର ଉତ୍ତରରେ ଭାରତର ପୂର୍ବ-ଉପକୂଳରେ ବିସ୍ତୃତ । ଅନ୍ଧ୍ର ଦେଶର ଭାଷା ହେଉଛି ତେଲୁଗୁ । ଅଶୋକଙ୍କ ପରେ ଆନ୍ଧ୍ର ଶକ୍ତି ଶୀଘ୍ର ଶୀଘ୍ର ପ୍ରସାର ଲଭିଲା ଏବଂ କ୍ରମେ ଏହା ସମସ୍ତ ଦାକ୍ଷିଣାତ୍ୟରେ ବିସ୍ତାର ପାଇଲା ।

ଦକ୍ଷିଣରୁ ଉପନିବେଶ ସ୍ଥାପନ କରିବାର ବଡ଼ ବଡ଼ ଉଦ୍ୟମମାନ ହୋଇଥିଲା; ମାତ୍ର ଏ ସମ୍ବନ୍ଧରେ ଅମେ ପରେ ଆଲୋଚନା କରିବା ।

ମୁଁ ଉପରେ ଶକ, ସିଦିୟାନ ଏବଂ ଆଉ ଯେଉଁମାନେ ଭାରତ ଆକ୍ରମଣ କରିଥିଲେ ଓ ଉତ୍ତରରେ ବାସକଲେ, ସେମାନଙ୍କ କଥା ଲେଖିଥିଲି । ସେମାନେ ଭାରତୀୟମାନଙ୍କର ଅନ୍ତର୍ଭୁକ୍ତ ହୋଇଗଲେ ଏବଂ ଆମେ ଉତ୍ତର-ଭାରତରେ ଯେପରି ଆର୍ଯ୍ୟମାନଙ୍କ ବଂଶଧର, ସେପରି ଏମାନଙ୍କର ମଧ୍ୟ ବଂଶଧର । ବିଶେଷରେ ସାହସୀ ଓ ସୁନ୍ଦର ରାଜପୁତ ଏବଂ ଝାଣ୍ଟୁଆ କାଥିଆବାଡ଼ର ଲୋକେ ସେମାନଙ୍କର ବଂଶଧର ।

## ୩୦ । କୁଶନଙ୍କର ସୀମାନ୍ତ ସାମ୍ରାଜ୍ୟ

ଏପ୍ରିଲ ୧୧, ୧୯୩୨

ଭାରତରେ ବାରମ୍ବାର କିପରି ଶକ ଓ ତୁର୍କୀ ଆକ୍ରମଣ ହୋଇଥିଲା, ସେ ସମ୍ବନ୍ଧରେ ମୁଁ ତୋତେ ମୋର ଗତ ଚିଠିରେ କହିଛି । ବଙ୍ଗୋପସାଗରରୁ ଆରବସାଗର ପର୍ଯ୍ୟନ୍ତ ଦକ୍ଷିଣରେ ବିସ୍ତୃତ ଲଭିଥିବା ଶକ୍ତିଶାଳୀ ଆନ୍ଧ୍ରରାଜ୍ୟ କଥା ବି କହିଛି । କୁଶନମାନେ ଶକମାନଙ୍କୁ ଆଗକୁ ତଡ଼ି ଦେଇଥିଲେ ଏବଂ କିଛି ଦିନ ପରେ

କୁଶନମାନେ ନକେ ଆସି ଘଟଣାସ୍ଥଳରେ ଉପସ୍ଥିତ ହେଲେ । ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀରେ ସେମାନେ ଭାରତ ସୀମାନ୍ତରେ ଏକ ରାଜ୍ୟ ସ୍ଥାପନ କଲେ ଏବଂ ଏହି ରାଜ୍ୟ ଏକ ବଡ଼ ସାମ୍ରାଜ୍ୟରେ ପରିଣତ ହେଲା । ଏହି କୁଶନ ସାମ୍ରାଜ୍ୟ ବନାରସଠାରୁ ଦକ୍ଷିଣରେ ବିନ୍ଧ୍ୟପର୍ବତ, ଉତ୍ତରରେ କାଶଗାର, ୟାରକନ୍ଦ ଓ ଖୋତାନ୍ ଏବଂ ପଶ୍ଚିମରେ ଇରାନ୍ ଓ ପାର୍ଥିଆ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ସୁତରାଂ ଯୁକ୍ତପ୍ରଦେଶ, ପଞ୍ଜାବ, କାଶ୍ମୀର ସମେତ ସମଗ୍ର ଉତ୍ତର-ଭାରତ ଏବଂ ମଧ୍ୟ-ଏସିଆର କେତେକ ଅଂଶ କୁଶନ ଶାସକମାନଙ୍କ ଅଧୀନରେ ଥିଲା । ଏହି ସାମ୍ରାଜ୍ୟ ପ୍ରାୟ ୩୦୦ ବର୍ଷ ପର୍ଯ୍ୟନ୍ତ ରହିଥିଲା । ଠିକ୍ ଆନ୍ଧ୍ର ରାଜ୍ୟ ଯେଉଁ ସମୟରେ ଦକ୍ଷିଣ-ଭାରତରେ ପ୍ରସିଦ୍ଧି ଲାଭ କରିଥିଲା, ଏହା ପ୍ରାୟ ତାହାର ସମସାମୟିକ । ପ୍ରଥମେ କାବୁଲ କୁଶନ ସାମ୍ରାଜ୍ୟର ରାଜଧାନୀ ଥିବା ପରି ମନେହୁଏ । ପରେ ଏହା ପେଶାବାରକୁ ଉଠିଆସିଲା । ପେଶାବାରକୁ ପୁରୁଷପୁର ବୋଲି କୁହାଯାଉଥିଲା ଏବଂ ସେହିଠାରେ ହିଁ ଏହା ରହିଲା ।

କୁଶନ ସାମ୍ରାଜ୍ୟ ନାନା କାରଣରୁ ଆମୋଦଦାୟକ । ଏହା ଏକ ବୌଦ୍ଧ ସାମ୍ରାଜ୍ୟ ଥିଲା ଏବଂ ଏହି ରାଜ୍ୟର ପ୍ରସିଦ୍ଧ ସମ୍ରାଟ୍ କନିଷ୍କ ବୌଦ୍ଧଧର୍ମକୁ ଖୁବ୍ ମାନୁଥିଲେ । ରାଜଧାନୀ ପେଶାବାର ନିକଟରେ ତକ୍ଷଶିଳା ଥିଲା ଏବଂ ଅନେକ ଦିନ ପର୍ଯ୍ୟନ୍ତ ଏହା ବୌଦ୍ଧସଂସ୍କୃତିର କେନ୍ଦ୍ର ଥିଲା । ମୋର ମନେହୁଏ, ମୁଁ ତତେ କହିଛି ଯେ ଏହି କୁଶନମାନେ ମଙ୍ଗୋଲିୟାନ୍ ବା ତାଙ୍କ ସମ୍ପର୍କୀୟ ଥିଲେ । କୁଶନ ରାଜଧାନୀରୁ ମଙ୍ଗୋଲିୟାନମାନଙ୍କ ରାଜ୍ୟକୁ ନିଶ୍ଚୟ ବରାବର ଯାତାୟତ ଲାଗି ରହିଥିବ ଏବଂ ବୌଦ୍ଧଶିକ୍ଷା ଓ ସଂସ୍କୃତି ମଧ୍ୟ ଚୀନ ଓ ମାଙ୍ଗୋଲିଆକୁ ପ୍ରସର ଯାଇଥିବ । ଏହିପରି ପଶ୍ଚିମ-ଏସିଆ ମଧ୍ୟ ବୌଦ୍ଧଚିନ୍ତାଧାରାର ଘନିଷ୍ଠ ସମ୍ପର୍କରେ ଆସିଥିବ । ଆଲେକ୍‌ଜାଣ୍ଡରଙ୍କ ସମୟରୁ ପଶ୍ଚିମ-ଏସିଆ ଗ୍ରୀକ୍‌ଶାସନ ଅଧୀନରେ ଥିଲା ଏବଂ ଅନେକ ଗ୍ରୀକ୍ ମଧ୍ୟ ସେମାନଙ୍କ ସଂସ୍କୃତି ଏଠାରେ ପ୍ରଚଳନ କଲେ । ଏହି ଗ୍ରୀକ୍-ଏସିଆ ସଂସ୍କୃତି ଭାରତୀୟ ବୌଦ୍ଧସଂସ୍କୃତି ସହ ମିଶିଗଲା ।

ଏହିରୂପେ ଚୀନ ଓ ପଶ୍ଚିମ-ଏସିଆ ଭାରତ ଦ୍ୱାରା ପ୍ରଭାବିତ ହୋଇଥିଲା । ମାତ୍ର ଭାରତ ମଧ୍ୟ ସେହି ପ୍ରକାରେ ସେମାନଙ୍କ ଦ୍ୱାରା ପ୍ରଭାବିତ ହୋଇଥିଲା । କୁଶନ ସାମ୍ରାଜ୍ୟ ଦେବତା ପରି ଏସିଆ ପିଠି ଉପରେ—ପଶ୍ଚିମରେ ଗ୍ରୀକ୍ ଓ ରୋମାନ୍ ଜଗତ ମଧ୍ୟରେ, ପୂର୍ବରେ ଚୀନ ଓ ଦକ୍ଷିଣରେ ଭାରତ ଉପରେ ସବାର ହୋଇ ବସିଥିଲା । ଭାରତ ଓ ରୋମ୍ ଏବଂ ଭାରତ ଓ ଚୀନ ଏହି ଦୁଇଟି ଭିତରେ ଏହା ମଝିଘର କହିଲେ ଚଳେ ।

ତୁ ଅନୁମାନ କରିପାରିବୁ ଯେ ଏହି କେନ୍ଦ୍ରସ୍ଥାନ ଯୋଗୁଁ ଭାରତ ଓ ରୋମ୍ ଭିତରେ ଘନିଷ୍ଠ ସମ୍ପର୍କ ଜନ୍ମିବାରେ ସାହାଯ୍ୟ କଲା । ରୋମାନ୍ ଲୋକତନ୍ତ୍ରର ଶେଷବେଳେ

ଅର୍ଥାତ୍ ଜୁଲିଅସ୍ ସିଜର ଜୀବିତ ଥିବା ସମୟରେ ଏବଂ ରୋମାନ୍ ସାମ୍ରାଜ୍ୟର ପ୍ରଥମ ୨୦୦ ବର୍ଷ ଭିତରେ ହିଁ କୁଶନ ସାମ୍ରାଜ୍ୟ ଥିଲା । କୁଶନ ସମ୍ରାଟ୍ ଜଣେ ବଡ଼ ଦୂତଙ୍କୁ ଅଗଷ୍ଟସ୍ ସିଜରଙ୍କ ପାଖକୁ ପଠାଇଥିଲେ ବୋଲି କୁହାଯାଏ । ଜଳ ଓ ସ୍ଥଳ ଉଭୟ ପଥରେ ହିଁ ବାଣିଜ୍ୟ ବୃଦ୍ଧି ପାଇଥିଲା । ଭାରତରୁ ରୋମକୁ ଅତର, ମସଲା, ରେଶମ, ଜରିଧଡ଼ି ଲୁଗା, ମସଲିନ୍, ସୁବର୍ଣ୍ଣ ଅଳଙ୍କାର ଓ ମୂଲ୍ୟବାନ ପଥରସବୁ ପଠା ଯାଉଥିଲା । ପ୍ଲିନି ନାମରେ ଜଣେ ରୋମାନ୍ ଲେଖକ ରୋମ୍‌ରୁ ଭାରତକୁ ସୁନା ଚାଲିଯାଉଥିବାରୁ ଭାରି ଆପତ୍ତି କରିଥିଲେ । ସେ କହୁଥିଲେ ଯେ ଏହି ବିଳାସ ଯୋଗୁଁ ରୋମ୍ ସାମ୍ରାଜ୍ୟକୁ ବାର୍ଷିକ ୧୦୦,୦୦୦,୦୦୦ ସେଷ୍ଟ୍ରେସେସ୍ (Sestreces) (ରୋମାନ୍ ମୁଦ୍ରା) ଦେବାକୁ ପଡ଼ୁଥିଲା । ଏହାର ଅର୍ଥ ସେମାନଙ୍କୁ ବର୍ଷକୁ ଦେଢ଼କୋଟି ଟଙ୍କା ବା ୧,୦୦୦,୦୦୦ ପାଉଣ୍ଡ ଷ୍ଟର୍ଲିଙ୍ଗ୍ ଦେବାକୁ ପଡ଼ୁଥିଲା ।

ଏହି ଯୁଗରେ ବୌଦ୍ଧମଠ ଓ ବୈଠକରେ ବଡ଼ ଧରଣର ଆଲୋଚନା ଓ ଯୁକ୍ତିତର୍କ ହେଉଥିଲା । ଦକ୍ଷିଣ ଓ ପଶ୍ଚିମର ନୂତନ ସିଦ୍ଧାନ୍ତସବୁ ନୂଆ ଢଙ୍ଗରେ ସେଠାରେ ପ୍ରଚାର କରାଯାଇଥିଲା । ବୌଦ୍ଧ ସିଦ୍ଧାନ୍ତର ସରଳତା ଉପରେ କ୍ରମେ ପ୍ରଭାବ ପଡ଼ିଲା । ଏହି ପରିବର୍ତ୍ତନ ଏପରି ହେଲା ଯେ ବୌଦ୍ଧଧର୍ମ ଦୁଇ ସଂପ୍ରଦାୟରେ ବିଭକ୍ତ ହୋଇଗଲା; ଯଥା—ମହାଯାନ ଓ ହୀନଯାନ । ନୂଆ ନୂଆ ଭାଷା ଓ ଭାବଧାରା ହେତୁ ଜୀବନ ଓ ଧର୍ମ ପ୍ରତି ଦୃଷ୍ଟିକୋଣରେ ପରିବର୍ତ୍ତନ ହେଲା । ଆହୁରି ପୁଣି କଳା ଓ କାରୁ-କାର୍ଯ୍ୟରେ ପରିବର୍ତ୍ତନ ଘଟି ଏହି ଭାବଧାରାର ଅଭିବ୍ୟକ୍ତ ହେଲା । କିପରି ଭାବରେ ଏହିସବୁ ପରିବର୍ତ୍ତନ ହେଲା, ତାହା କହିବା ସହଜ ନୁହେଁ । ସମ୍ଭବତଃ ବ୍ରାହ୍ମଣ ବା ହିନ୍ଦୁ ଧର୍ମ ଓ ଗ୍ରୀକ୍‌ସଭ୍ୟତା ଏହି ଦୁଇଟିର ପ୍ରଭାବ ଏପରି ଥିଲା ଯେ ଏଗୁଡ଼ିକ ବୌଦ୍ଧ ବିଚାରଧାରାକୁ ଗୋଟିଏ ଦିଗରେ ପରିଚାଳିତ କରାଇଥିଲା ।

ତେବେ ତ ମୁଁ ଅନେକ ଥର କହିଛି ଯେ ବୌଦ୍ଧଧର୍ମ ଜାତି, ପୁରୋହିତ ପ୍ରଥା ଏବଂ ଅନ୍ୟ ଧର୍ମ ସମ୍ବନ୍ଧୀୟ ରୀତିନୀତିରେ ଏକ ବିଦ୍ରୋହ ଆଣିଥିଲା । ଗୌତମ ମୂର୍ତ୍ତି ପୂଜା ପସନ୍ଦ କରୁ ନ ଥିଲେ । ସେ ନିଜକୁ ଦେବତା ବୋଲି ବିଚାରି ପୂଜା ପାଇବାକୁ ଦାବୀ କରୁ ନ ଥିଲେ । ସେ ନିଜେ ଆଲୋକପ୍ରାପ୍ତ ଅର୍ଥାତ୍ ବୁଦ୍ଧ ଥିଲେ । ଏହି ଆଦର୍ଶ ଅନୁସାରେ ବୁଦ୍ଧଙ୍କୁ କୌଣସି ମୂର୍ତ୍ତି ଆକାରରେ ରଖାଯାଉ ନ ଥିଲା ଏବଂ ସେ କାଳର ମନ୍ଦିରରେ କୌଣସି ମୂର୍ତ୍ତି ରଖାଯାଉ ନ ଥିଲା । କିନ୍ତୁ ବ୍ରାହ୍ମଣମାନେ ହିନ୍ଦୁଧର୍ମ ଓ ବୌଦ୍ଧଧର୍ମ ଭିତରେ ଥିବା ପାର୍ଥକ୍ୟକୁ ଦୂର କରିବାକୁ ଚାହୁଁଥିଲେ । ସେଥିଲାଗି ହିନ୍ଦୁ ଧାରଣା ଓ ପ୍ରତୀକ ଆଦି ସେଥିରେ ଭର୍ତ୍ତି କରିବାର ଚେଷ୍ଟା କରୁଥିଲେ । ଗ୍ରୀକ୍ ରୋମାନ କାରିଗରମାନେ ମଧ୍ୟ ମୂର୍ତ୍ତି ତିଆରି କରିବାରେ ଅଭ୍ୟସ୍ତ ହୋଇଗଲେ । ଏପରି ଭାବରେ କ୍ରମେ ବୌଦ୍ଧମନ୍ଦିରରେ

ମୂର୍ତ୍ତି ପ୍ରବେଶ କଲା । ପ୍ରଥମେ ବୁଦ୍ଧମୂର୍ତ୍ତି ନ ରହି ବୋଧିସତ୍ତ୍ୱର ମୂର୍ତ୍ତି ରହିଲା— ବୌଦ୍ଧପ୍ରଥା ଅନୁସାରେ ବୁଦ୍ଧଙ୍କ ପୂର୍ବରୁ ବୋଧିସତ୍ତ୍ୱ ଅବତାର ହୋଇଥିଲା । ଏହି ସ୍ଥିତ କ୍ରମେ ବଢ଼ି ବଢ଼ି ବୁଦ୍ଧଙ୍କର ବି ମୂର୍ତ୍ତି ରଖାଗଲା ଓ ସେ ପୂଜା ପାଇଲେ ।

ବୌଦ୍ଧଧର୍ମର ମହାଯାନ ଶାଖା ଏହି ପରିବର୍ତ୍ତନକୁ ସ୍ୱାଗତ କଲେ । ଏହା ବ୍ରାହ୍ମଣ ଚିନ୍ତାପର ଥିଲା । କୁଶନ ସମ୍ରାଟ୍‌ମାନେ ମହାଯାନ ଶାଖାର ସିଦ୍ଧାନ୍ତକୁ ଗ୍ରହଣ କଲେ ଏବଂ ଏହାର ପ୍ରସାରରେ ସାହାଯ୍ୟ କଲେ । ମାତ୍ର ସେମାନେ ହୀନଯାନ ଶାଖା ବା ଅନ୍ୟ ଧର୍ମ ପ୍ରତି ଅସହିଷ୍ଣୁ ନ ଥିଲେ । କନିଷ୍କ ପାର୍ସୀ ଧର୍ମକୁ ମଧ୍ୟ ଉତ୍ସାହ ଦେଉଥିଲେ ।

ମହାଯାନ ଓ ହୀନଯାନ ଏହି ଦୁଇ ଶାଖାର ପ୍ରକୃତ ଗୁଣ ସମ୍ବନ୍ଧରେ ପଣ୍ଡିତ ଲୋକଙ୍କ ଭିତରେ ସେଉଁଠୁ ଆଲୋଚନା ହୁଏ, ପଢ଼ିଲେ ବଡ଼ ମଜା ଲାଗେ । ଏହି ଉଦ୍ଦେଶ୍ୟରେ ସଂଘର ବଡ଼ ବଡ଼ ବୈଠକ ହେଉଥିଲା । କନିଷ୍କ କାଶ୍ମୀରରେ ସଂଗତ ଗୋଟିଏ ସାଧାରଣ ବୈଠକ କରୁଥିଲେ । ଏହି ସମସ୍ୟା ଉପରେ ଆଲୋଚନା ଓ ବିବାଦ ପ୍ରାୟ ଅନେକ ଶହ ବର୍ଷ ପର୍ଯ୍ୟନ୍ତ ଲାଗିଥିଲା । ଉତ୍ତର-ଭାରତରେ ମହାଯାନ ମତର ପ୍ରଚାର ହେଲା ଏବଂ ଦକ୍ଷିଣ-ଭାରତରେ ହୀନଯାନ ମତ ଗ୍ରହଣ କଲା-- ଶେଷରେ ଦୁଇଟିଯାକ ହିନ୍ଦୁ ଧର୍ମରେ ମିଶିଗଲା । ଆଜିସୁଦ୍ଧା ବୌଦ୍ଧଧର୍ମର ମହାଯନ ମତାବଲମ୍ବୀ-ମାନେ ଚୀନ, ଜାପାନ ଓ ତିବ୍‌ବତରେ ଅଛନ୍ତି ଏବଂ ହୀନଯାନ ମତାବଲମ୍ବୀ ସିଲୋନ ଓ ବର୍ମାରେ ଅଛନ୍ତି ।

ଏକ ଦେଶର ଶିଳ୍ପ ହିଁ ସେ ଦେଶ ଲୋକଙ୍କର ମନ ଜାଣିବାର ପ୍ରକୃତ ଦର୍ପଣ । ଠିକ୍ ଯେପରି ବୌଦ୍ଧଧର୍ମର ସରଳତା କ୍ରମେ ବ୍ୟାପକ ପ୍ରତୀକବାଦ (Symbolism) କୁ ସ୍ଥାନ ଦେଲା, ସେହିପରି ଭାରତୀୟ କଳା ମଧ୍ୟ ଅଧିକ ଅଲଙ୍କାରପୂର୍ଣ୍ଣ ଓ ବ୍ୟାପକ ହୋଇ ଉଠିଥିଲା । ବିଶେଷତଃ ଉତ୍ତର-ପଶ୍ଚିମରେ ଗାନ୍ଧାର ଦେଶରେ ମହାଯାନ ପ୍ରସ୍ତରମୂର୍ତ୍ତିସବୁ ଖୁବ୍ ଅଲଙ୍କାରପୂର୍ଣ୍ଣ । ହୀନଯାନ ଶିଳ୍ପ ମଧ୍ୟ ଏହି ନୂଆ ଅଧ୍ୟାୟରୁ ଅଲଗା ହୋଇପାରିଲା ନାହିଁ । ପ୍ରଥମେ ଏଥିରେ ଯେଉଁ ସଂଯମ ଓ ସରଳତା ଥିଲା, ତାହା ଗୁଳିଗଲା ଏବଂ ତା ବଦଳରେ ଖୋଳା ଓ ପ୍ରତୀକମାନ ବେଶି ହେଲା ।

କେତେକ ପ୍ରସ୍ତରମୂର୍ତ୍ତି ବର୍ତ୍ତମାନ ସୁଦ୍ଧା ଅଛି । ଅଜନ୍ତାରେ ଥିବା କେତେକ ସୁନ୍ଦର ପ୍ରସ୍ତରମୂର୍ତ୍ତି ବଡ଼ ଚମତ୍କାର ।

ଆମେ ବର୍ତ୍ତମାନ କୁଶନମାନଙ୍କଠାରୁ ବିଦାୟ ନେବା । ମାତ୍ର ମନେ ରଖିବୁ ଚୀନ୍ ବା ତୁର୍କୀ ଲୋକଙ୍କ ପରି କୁଶନମାନେ ପ୍ରାୟ ଭାରତକୁ ଆସି ନ ଥିଲେ କମ୍ବା

ବିଦେଶୀମାନେ ଗୋଟିଏ ବିଜିତ ଦେଶକୁ ଶାସନ କଲା ପରି ଏଠାରେ ଶାସନ କରୁ ନ ଥିଲେ । ଧର୍ମର ବନ୍ଧନ ସେମାନଙ୍କୁ ଭାରତ ଓ ଅନ୍ୟ ଦେଶମାନଙ୍କ ସହିତ ବାନ୍ଧି ଦେଇଥିଲା; ମାତ୍ର ଏହାଛଡ଼ା ସେମାନେ ଭାରତରେ ଆର୍ଯ୍ୟମାନଙ୍କର ଶାସନନୀତି ଗ୍ରହଣ କରିଥିଲେ । ସେମାନେ ବହୁ ପରିମାଣରେ ଆର୍ଯ୍ୟ ଜାତିମାନଙ୍କ ସହ ମିଶି ଗଲେ । ତେଣୁ ପ୍ରାୟ ୩୦୦ ବର୍ଷ ପର୍ଯ୍ୟନ୍ତ ଉତ୍ତର-ଭାରତ ଶାସନ କରିବାରେ ସମର୍ଥ ହୋଇଥିଲେ ।

## ୩୧ । ଯୀଶୁ ଓ ଖ୍ରୀଷ୍ଟଧର୍ମ

ଏପ୍ରିଲ ୧୨, ୧୯୩୨

ଭାରତର ଉତ୍ତର-ପଶ୍ଚିମରେ କୁଶନ୍ ସାମ୍ରାଜ୍ୟ ଏବଂ ଚୀନ୍‌ର ହାନ୍ ବଂଶ ଇତିହାସରେ ଅନେକ ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟ କରିଛନ୍ତି ଏବଂ ଆମକୁ ସେଠିକି ଫେରିଯିବାକୁ ହେବ । ଏପର୍ଯ୍ୟନ୍ତ ଆମେ ଖ୍ରୀଷ୍ଟପୂର୍ବ ସମୟ କଥା ଆଲୋଚନା କରୁଥିଲେ । ବର୍ତ୍ତମାନ ଆମେ ଖ୍ରୀଷ୍ଟିୟାନ୍ ଯୁଗ ଅର୍ଥାତ୍ ଖ୍ରୀଷ୍ଟଜନ୍ମ ପର ସମୟରେ ପହଞ୍ଚିଥାଉଁ । ଏହାର ନାମରୁ ଜାଣିପାରିବ ଖ୍ରୀଷ୍ଟଙ୍କ ଜନ୍ମ ତାରିଖରୁ ଏହି ଯୁଗର ଆରମ୍ଭ । ପ୍ରକୃତରେ ଯେଉଁଦିନରୁ ଖ୍ରୀଷ୍ଟାବ୍ଦ ଧରାଯାଇଛି, ଖୁବ୍ ସମ୍ଭବ ଖ୍ରୀଷ୍ଟ ସେ ତାରିଖର ଚାରି ବର୍ଷ ପୂର୍ବରୁ ଜନ୍ମ ହୋଇଥିଲେ । ମାତ୍ର ସେଥିରେ କିଛି ଯାଏ ଆସେ ନା । ଖ୍ରୀଷ୍ଟ ପର ସମୟକୁ ଏ. ଡି. ( A D. ) ଅର୍ଥାତ୍ ଆନୋଡୋମିନ୍—ପ୍ରଭୁଙ୍କ ବର୍ଷ ବୋଲି କୁହାଯାଏ । ଏପରି ସବୁଠାରେ ପ୍ରଚଳିତ ପ୍ରଥାକୁ ମାନିନେବାରେ କିଛି ବାଧା ନାହିଁ; ମାତ୍ର ମୋର ମନେହୁଏ ଏ. ଡି. ପରିବର୍ତ୍ତେ ଏ. ସି. କହିବା ବିଜ୍ଞାନସମ୍ମତ ହେବ । ମୁଁ ତାହା କହିବି ।

ଯୀଶୁ ବା ଖ୍ରୀଷ୍ଟଙ୍କ ବିଷୟରେ ବାଇବେଲ୍‌ର ନୂତନ ଟେଷ୍ଟାମେଣ୍ଟ୍‌ରେ ଅଛି ଏବଂ ତୁ ଏ ସମ୍ବନ୍ଧରେ କିଛି କିଛି ଜାଣୁ । ଏଥିରେ ଯେଉଁସବୁ ବିବରଣୀ ଅଛି, ସେଥିରେ ଖ୍ରୀଷ୍ଟଙ୍କ ଯୁବାବସ୍ଥା ସମ୍ବନ୍ଧରେ କିଛି ଉଲ୍ଲେଖ ନାହିଁ । ସେ ନଜରଥରେ ଜନ୍ମ ହୋଇଥିଲେ, ଗାଲିଲିରେ ପ୍ରଚାର କଲେ ଏବଂ ୩୦ ବର୍ଷରୁ ବେଶି ବୟସ ହେଲା ପରେ ଜେରୁଜେଲମକୁ ଆସିଲେ । ସେଠାରେ ରୋମାନ୍ ଶାସକ ପୋଣ୍ଟିୟସ୍ ପାଇଲେଟ୍ ତାଙ୍କୁ ବିଚାର କରି ଶାସ୍ତି ଦେଇଥିଲେ । ଯୀଶୁ କଅଣ କରିଥିଲେ ଏବଂ ସେ ପ୍ରଚାର ଆରମ୍ଭ କରିବା ପୂର୍ବରୁ କେଉଁଠିକି ଯାଇଥିଲେ, ସେ ସମ୍ବନ୍ଧରେ ପରିଷ୍କାର ରୂପେ ଜଣା ନାହିଁ । ସମଗ୍ର ମଧ୍ୟ-ଏସିଆ, କାଶ୍ମୀର, ଲଦ୍ଦାଖ, ତିବ୍‌ବତ ଏବଂ ଉତ୍ତର ଅଞ୍ଚଳରେ ଯୁଦ୍ଧା ଲୋକଙ୍କର ଦୃଢ଼ ବିଶ୍ୱାସ ରହିଛି ଯେ ଯୀଶୁ ବା ଇସା ସେ ଅଞ୍ଚଳକୁ ଯାଇଥିଲେ । କେତେକ ଲୋକ ବିଶ୍ୱାସ କରନ୍ତି ଯେ, ସେ ଭାରତକୁ

ବ ଆସିଥିଲେ । ଏ ସମ୍ବନ୍ଧରେ ନିଶ୍ଚିତରୂପେ କିଛି କହିବା ସମ୍ଭବ ନୁହେଁ ଏବଂ ପ୍ରକୃତରେ ଯେଉଁମାନେ ଯୀଶୁଙ୍କର ଜୀବନୀ ଅଧ୍ୟୟନ କରିଛନ୍ତି, ସେମାନେ କହନ୍ତି ଯେ, ଯୀଶୁ ମଧ୍ୟ-ଏସିଆ ବା ଭାରତ କେଉଁଠାକୁ ଆସି ନ ଥିଲେ । ମାତ୍ର ସେ ଏପରି କରିବା କିଛି ଅସମ୍ଭବ ବି ନ ଥିଲା । ସେ କାଳରେ ଭାରତର ବଡ଼ ବଡ଼ ବିଦ୍ୟାଳୟଗୁଡ଼ିକ ବିଶେଷତଃ ଉତ୍ତର-ପଶ୍ଚିମରେ ତକ୍ଷଶିଳାକୁ ଦୂର ଦେଶମାନଙ୍କରୁ ଅନେକ ଛାତ୍ର ଆସୁଥିଲେ ଏବଂ ଯୀଶୁ ଜ୍ଞାନ ଅର୍ଜନ ନିମନ୍ତେ ତକ୍ଷଶିଳାକୁ ଆସିପାରିଥାନ୍ତି । ଯୀଶୁଙ୍କର କେତେକ ଉପଦେଶ ସହିତ ଗୌତମଙ୍କ ଉପଦେଶର ଏପରି ସାମଞ୍ଜସ୍ୟ ରହିଛି ଯେ ସେ ସମ୍ବନ୍ଧରେ ଯୀଶୁଙ୍କର ପୂର୍ଣ୍ଣ ପରିଚୟ ଥିଲା ପରି ମନେହୁଏ । ମାତ୍ର ବୌଦ୍ଧଧର୍ମ ଅନ୍ୟ ଦେଶମାନଙ୍କରେ ମଧ୍ୟ ଯଥେଷ୍ଟ ରୂପେ ପ୍ରସାରିତ ହୋଇଥିଲା ଏବଂ ଭାରତକୁ ନ ଆସି ମଧ୍ୟ ଯୀଶୁ ଏହା ଜାଣିପାରିଥିବା ସମ୍ଭବ ।

ପ୍ରତ୍ୟେକ ସ୍କୁଲ ଛାତ୍ରଛାତ୍ରୀ ଜାଣନ୍ତି ଯେ ଧର୍ମ ଯୋଗୁଁ ଅନେକ ବିବାଦ ଓ ଉତ୍କଟ ସଂଗ୍ରାମମାନ ହୋଇଛି । ପୃଥିବୀର ଧର୍ମଗୁଡ଼ିକର ପ୍ରାଥମିକ ଅବସ୍ଥାକୁ ଲକ୍ଷ୍ୟକରି ତୁଳନା କଲେ ବେଶ୍ ମଜା ଲାଗେ । ଆଦର୍ଶ ଓ ଶିକ୍ଷାଗୁଡ଼ିକରେ ଏତେ ସାମଞ୍ଜସ୍ୟ ଅଛି ଯେ, ଲୋକେ କାହିଁକି ଛୋଟ ଛୋଟ କଥା ନେଇ ନିର୍ବୋଧଙ୍କ ପରି ଏତେ କଳିଆ କରନ୍ତି ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ମାତ୍ର ପ୍ରାଥମିକ ଉପଦେଶଗୁଡ଼ିକୁ କ୍ରମେ ମିଶ୍ରଣ କରି ଏପରି ବିକୃତ କରି ଦିଆଯାଏ ଯେ ତାର ପ୍ରକୃତ ମର୍ମ ବୁଝିବା କଷ୍ଟକର ହୁଏ । ଅତି ନୀଚମନା ଏବଂ ଅସହିଷ୍ଣୁ ଲୋକେ ଉପଦେଷ୍ଟା କାମ କରନ୍ତି । ଅନେକ ସମୟରେ ରାଜନୀତି ଓ ସାମ୍ରାଜ୍ୟବାଦରେ ଧର୍ମ ଏକ ହସ୍ତପୁତ୍ତଳା ରୂପେ କାର୍ଯ୍ୟ କରିଛି । ଜନସାଧାରଣଙ୍କ ମଙ୍ଗଳ ପାଇଁ ନୁହେଁ, ବରଂ ସେମାନଙ୍କୁ ଶୋଷଣ କରିବା ନିମନ୍ତେ ପ୍ରାଚୀନ ରୋମାନ୍‌ମାନେ କୁସଂସ୍କାର ଭର୍ତ୍ତି କରୁଥିଲେ । କାରଣ କୁସଂସ୍କାରପୂର୍ଣ୍ଣ ଲୋକଙ୍କୁ ଦବାଇ ରଖିବା ସହଜ ହେଉଥିଲା । ରୋମାନ୍ ଧନିକ ସମ୍ପ୍ରଦାୟ ହୁଏତ ବଡ଼ ବଡ଼ ଦର୍ଶନ ଚର୍ଚ୍ଚାରେ ମନ ବଳାଉଥିଲେ; ମାତ୍ର ସେମାନଙ୍କ ଲାଗି ଯାହା ଭଲ ବୋଲି ବିଚାର କରାଯାଉଥିଲା, ତାହା ଜନସାଧାରଣଙ୍କ ପକ୍ଷରେ ଭଲ ବା ନିରାପଦ ନ ଥିଲା । ମାକିୟାଭେଲି ବୋଲି ଇଟାଲୀର ଜଣେ ପ୍ରସିଦ୍ଧ ଲୋକ ରାଜନୀତି ସମ୍ବନ୍ଧରେ ଏକ ପୁସ୍ତକ ଲେଖିଛନ୍ତି । ସେ କହନ୍ତି ଯେ ଶାସନ ପାଇଁ ଧର୍ମ ଆବଶ୍ୟକ । ଧର୍ମ ମିଥ୍ୟା ବୋଲି ବିଶ୍ୱାସ କରୁଥିଲେ ସୁଦ୍ଧା ଧର୍ମକୁ ସମର୍ଥନ କରିବା ରାଜାର କର୍ତ୍ତବ୍ୟ ହେବା ଉଚିତ୍ । ଆଜିକାଲି ସୁଦ୍ଧା ଧର୍ମର ଆବରଣରେ ସାମ୍ରାଜ୍ୟବାଦ ଅଗ୍ରସର ହେବାର ଅସଂଖ୍ୟ ଉଦାହରଣ ଆମେ ଦେଖୁଛେଁ । ସୁତରାଂ କାର୍ଲମାର୍କସ "ଧର୍ମ ଜନସାଧାରଣଙ୍କ ପ୍ରତି ଅଫିମ ପରି" ଯାହା ଲେଖିଥିଲେ, ସେଥିରେ ବିସ୍ମିତ ହେବାର କିଛି ନାହିଁ ।

ଯୀଶୁ ଇହୁଦୀ ଥିଲେ । ସେକାଳର ଓ ଆଜିକାଲିକାର ଇହୁଦୀମାନେ ଏକ ବିଚିତ୍ର ଅଧ୍ୟବସାୟୀ ଜାତି । ଡେଭିଡ୍ ଓ ସଲୋମନ୍‌ଙ୍କ କାଳର କ୍ଷଣସ୍ଥାୟୀ ଗୌରବ ପରେ

ସେମାନଙ୍କର ଭାଗ୍ୟ ବିପର୍ଯ୍ୟୟ ଘଟିଲା । ଏହି ଘଟଣାଟି ଅତି ସାମାନ୍ୟ ହୋଇଥିଲେ ସୁଦ୍ଧା ପ୍ରଗୃହିତ୍ଵ ଏହାକୁ ଲୋକଙ୍କ କଳ୍ପନାରେ ଏପରି ଆକାର ଦିଆଗଲା ଯେ, ଏହା ଅତୀତରେ ଏକପ୍ରକାର "ସୁବର୍ଣ୍ଣ ଯୁଗ" ବୋଲି କୁହାଗଲା । ପ୍ରତ୍ୟୟ ହେଲା ଯେ ଇହୁଦୀମାନେ ପୁଣି ମହାନ୍ ଓ ଶକ୍ତିଶାଳୀ ହେଲେ ଏହି ଗୌରବ ପୁଣି ଫେରିଆସିବ । ଇହୁଦୀ ରୋମାନ୍ ସାମ୍ରାଜ୍ୟ ଓ ଅନ୍ୟ ଅଞ୍ଚଳରେ ପ୍ରଚାର କଲେ ଏବଂ ନିଜ ଭିତରେ ଏକତା ରକ୍ଷି ଦୃଢ଼ ରହିଥିଲେ । ସେମାନଙ୍କର ପୂର୍ଣ୍ଣ ବିଶ୍ୱାସ ଥିଲା ଯେ ସେମାନଙ୍କ ଗୌରବର ଦିନ ଆସୁଛି ଏବଂ ଜଣେ ପଥପ୍ରଦର୍ଶକ ଏହାନେଇ ଆବିର୍ଭାବ ହେବେ । ଘର ବା ଆଶ୍ରୟସ୍ଥଳ ନ ଥାଇ, ବାରମ୍ବାର ହିଂସ୍ର ଓ ଶାସ୍ତି ଏପରି କି ମୃତ୍ୟୁଦଣ୍ଡ ପାଇ ସୁଦ୍ଧା ଇହୁଦୀମାନେ କିପରି ତାଙ୍କର ନିଜତ୍ୱ ରକ୍ଷିପାରିଛନ୍ତି ଏବଂ ୨୦୦୦ ବର୍ଷରୁ ଅଧିକ କାଳ ପର୍ଯ୍ୟନ୍ତ ଏକତ୍ର ହୋଇ ରହିଛନ୍ତି, ଏହା ଇତିହାସରେ ଏକ ଆଶ୍ଚର୍ଯ୍ୟ କଥା ।

ଇହୁଦୀମାନେ ଏକ ପଥପ୍ରଦର୍ଶକଙ୍କୁ ଖୋଜି ବସିଥିଲେ ଏବଂ ଯୀଶୁଙ୍କଠାରୁ ସମ୍ଭବତଃ ବହୁତ ଆଶା କରୁଥିଲେ । ମାତ୍ର ସେମାନେ ଶୀଘ୍ର ହତାଶ ହେଲେ । ଯୀଶୁ ପ୍ରଚଳିତ ଅବସ୍ଥା ଓ ସାମାଜିକ ବ୍ୟବସ୍ଥା ବିରୁଦ୍ଧରେ ବିଦ୍ରୋହ ଘୋଷଣା କଲେ । ବିଶେଷତଃ ଯେଉଁ ଧନୀ ଓ ପ୍ରଚାରକଶ୍ରେଣୀ ଧର୍ମକୁ ଖାଲି କେତେକ ପ୍ରଥା ଓ ପୂଜାପାଠରେ ଆବଦ୍ଧ ରଖିଥିଲେ, ତାଙ୍କ ବିରୁଦ୍ଧରେ ସେ ବିଦ୍ରୋହ ଘୋଷଣା କଲେ । ଧନ ଓ ଗୌରବ ଅର୍ଜ୍ଜନ କରିବାକୁ କହିବା ପରିବର୍ତ୍ତେ ଏକ ଅସ୍ପଷ୍ଟ ଓ କାଳ୍ପନିକ ସ୍ୱର୍ଗରାଜ୍ୟ ଲାଗି ଯେଉଁ ଧନସମ୍ପତ୍ତି ରହିଛି, ତାହା ତ୍ୟାଗକରିବା ଲାଗି ସେ ଲୋକଙ୍କୁ ପରାମର୍ଶ ଦେଉଥିଲେ । ସେ ଗଳ୍ପ ଓ କଥା ଆକାରରେ ତାଙ୍କର ଉପଦେଶ ପ୍ରଚାର କରୁଥିଲେ; ମାତ୍ର ସେ ଥିଲେ ଜଣେ ଜାତି-ବିଦ୍ରୋହୀ, ଏଥିରେ ସନ୍ଦେହ ନାହିଁ । ସେ ପ୍ରଚଳିତ ଅବସ୍ଥାକୁ ସହ୍ୟ କରି ପାରି ନ ଥିଲେ ଏବଂ ତାହା ପରିବର୍ତ୍ତନ କରିବା ସକାଶେ ଲାଗିପଡ଼ିଥିଲେ । ଇହୁଦୀମାନେ ଏହା ଆଶା କରି ନ ଥିଲେ; ତେଣୁ ସେମାନଙ୍କ ଭିତରୁ ଅଧିକାଂଶ ତାଙ୍କ ବିରୁଦ୍ଧରେ ଗଲେ ଏବଂ ତାଙ୍କୁ ରୋମାନ୍ ଶାସକମାନଙ୍କ ହାତରେ ଅର୍ପଣ କରିଦେଲେ ।

ରୋମାନ୍ ଲୋକେ ଧର୍ମ ସମ୍ବନ୍ଧରେ ସେପରି ଅସହିଷ୍ଣୁ ନ ଥିଲେ; କାରଣ ରୋମାନ୍ ସାମ୍ରାଜ୍ୟ ସମସ୍ତ ପ୍ରକାର ଧର୍ମକୁ ସ୍ୱାଧୀନତା ଦେଇଥିଲା । କେହି ଯଦି କୌଣସି ଧର୍ମ ବିରୁଦ୍ଧରେ କହୁଥିଲା ବା ଦେବାଦେବୀଙ୍କୁ ଗାଳି ଦେଉଥିଲା, ତାକୁ କୌଣସି ଶାସ୍ତି ଦିଆଯାଉ ନ ଥିଲା । ଟାଇବେରିୟସ୍ ବୋଲି ଜଣେ ସମ୍ରାଟ୍ କହିଥିଲେ, "ଯଦି ଦେବତା-ମାନେ ଅପମାନ ପାଆନ୍ତି, ତେବେ ତାଙ୍କ କଥା ସେ ବୁଝିବେ ।" ସୁତରାଂ ରୋମାନ୍ ଗଭର୍ଣ୍ଣର ପଣ୍ଟିୟସ୍ ପାଇଲେଟଙ୍କ ଆଗରେ ନେଇ ଯୀଶୁଙ୍କୁ ହାଜର କଲାବେଳେ ସେ ତାଙ୍କ ଧର୍ମ ପ୍ରଚାରରେ ତେତେ ମୁଣ୍ଡ ଘୂରାଇ ନ ଥିବେ । ଯୀଶୁ ଜଣେ ରାଜନୀତିକ ବିଦ୍ରୋହୀ ଓ ଇହୁଦୀଙ୍କ ଦୃଷ୍ଟିରେ ସାମାଜିକ ବିଦ୍ରୋହୀରୂପେ ଅଭିଯୁକ୍ତ ହୋଇଥିଲେ । ସେହି କାରଣରୁ

ତାଙ୍କର ବିଚାର ହୋଇ ତାଙ୍କୁ ଶାସ୍ତି ଦିଆଗଲା ଏବଂ ଗଲଗୋଥାଠାରେ ତାଙ୍କୁ କ୍ରୁଶବିଦ୍ଧ କରାଗଲା । ଏପରି ଦୁଃସମୟରେ ତାଙ୍କର ବହୁ ବହୁ ଶିଷ୍ୟ ସୁଦ୍ଧା ତାଙ୍କୁ ଛାଡ଼ି ଯାଇଥିଲେ ଓ ତାଙ୍କୁ ଅସ୍ୱୀକାର କଲେ । ଏହି ବିଶ୍ୱାସଘାତକତା ଯୋଗୁଁ ତାଙ୍କର କଷ୍ଟ ଅଧିକ ଅସହ୍ୟ ହୋଇ ପଡ଼ିଥିଲା । ସେଥିଲାଗି ସେ ମୃତ୍ୟୁ ପୂର୍ବରୁ ହୃଦୟବିଦାରକ ସ୍ୱରରେ କହିଥିଲେ, "ହେ ଭଗବାନ ! ତୁମେ କଅଣ ମୋତେ ଛାଡ଼ି ଚାଲିଗଲ !"

ଯୀଶୁ ଖ୍ରୀଷ୍ଟ ଯୁବକ ଥିଲେ— ମୃତ୍ୟୁ ବେଳକୁ ତାଙ୍କର ବୟସ ମୋଟେ ୩୦ ବର୍ଷରୁ କିଛି ବେଶି ହୋଇଥିଲା । ଖୁବ୍ ସୁନ୍ଦର ଭାଷାରେ ଲେଖା ହୋଇଥିବା ତାଙ୍କର ମୃତ୍ୟୁକାହାଣୀ ଆମେ ପଢ଼ି ତରଳିଯାଉ । ପରବର୍ତ୍ତୀ କାଳରେ ଖ୍ରୀଷ୍ଟଧର୍ମର ବୃଦ୍ଧି ସଙ୍ଗେ ସଙ୍ଗେ ଲକ୍ଷ ଲକ୍ଷ ଲୋକ ଯୀଶୁଙ୍କ ନାମକୁ ସମ୍ମାନ ଦେଖାଉଛନ୍ତି — ସେମାନେ ତାଙ୍କ ଶିକ୍ଷାକୁ ପ୍ରାୟ ଅନୁସରଣ କରୁ ନାହାନ୍ତି । ମାତ୍ର ଆମର ମନେ ରଖିବାର କଥା ଯେ କ୍ରୁଶବିଦ୍ଧ ହେଲାବେଳକୁ ସେ ପାଲେଷ୍ଟାଇନ ଛଡ଼ା ଅନ୍ୟ ଦେଶରେ ପ୍ରାୟ ଅଜଣା ଥିଲେ । ରୋମ୍ ଲୋକେ ତାଙ୍କ ବିଷୟରେ କିଛି ଜାଣି ନ ଥିଲେ ଏବଂ ମଣ୍ଟିଲସ୍ ପାଇଲେଟ୍ ମଧ୍ୟ ତାଙ୍କ ବିଷୟରେ ବି କିଛି ଗୁରୁତ୍ୱ ଦେଇ ନ ଥିବେ ।

ଯୀଶୁଙ୍କର ଶିଷ୍ୟମାନେ ତାଙ୍କୁ ଅସ୍ୱୀକାର କରିବା ପରେ ଭୟଭୀତ ହୋଇଗଲେ; ମାତ୍ର ତାଙ୍କ ମୃତ୍ୟୁର ଅଳ୍ପ କିଛି ଦିନ ପରେ ପଲ୍ ନାମକ ଜଣେ ଲୋକ ଖ୍ରୀଷ୍ଟିୟାନ ଧର୍ମବାଣୀ ପ୍ରଚାର କଲେ । ସେ କେବେ ଯୀଶୁଙ୍କୁ ଦେଖି ନ ଥିଲେ । ଅନେକ ଲୋକ କହନ୍ତି ଯେ ପଲ୍ ଯେଉଁ ଖ୍ରୀଷ୍ଟଧର୍ମ ପ୍ରଚାର କଲେ, ସେଥିରେ ଯୀଶୁଙ୍କ ଉପଦେଶଠାରୁ ଅନେକ ପ୍ରଭେଦ ଥିଲା । ପଲ୍ ଜଣେ ସମର୍ଥ ଓ ବିଦ୍ୱାନ ଲୋକ ଥିଲେ । ମାତ୍ର ଯୀଶୁଙ୍କ ପରି ସେ ସମାଜବିଦ୍ରୋହୀ ନ ଥିଲେ । ଯାହାହେଉ ପଲ୍ କୃତିତ୍ୱ ଲାଭ କଲେ ଏବଂ କ୍ରମେ ଖ୍ରୀଷ୍ଟଧର୍ମ ପ୍ରସାରିତ ହେଲା । ପ୍ରଥମେ ରୋମାନ୍‌ମାନେ ଏହାକୁ କିଛି ଗୁରୁତ୍ୱ ଦେଇ ନ ଥିଲେ । ଖ୍ରୀଷ୍ଟିୟାନମାନେ ଇହୁଦୀଙ୍କର ଏକ ସମ୍ପ୍ରଦାୟ ବୋଲି ସେମାନେ ମନେ କରୁଥିଲେ । ମାତ୍ର ଖ୍ରୀଷ୍ଟିୟାନମାନେ କ୍ରମେ ଉଗ୍ରପନ୍ଥୀ ହେଲେ । ସେମାନେ ଅନ୍ୟ ସମସ୍ତ ଧର୍ମର ବିରୁଦ୍ଧରେ ଗଲେ ଏବଂ ସମ୍ରାଟଙ୍କ ପ୍ରତିମୂର୍ତ୍ତିକୁ ପୂଜା କରିବାକୁ ଅସ୍ୱୀକାର କଲେ । ରୋମାନ୍‌ମାନେ ଏ ମନୋଭାବ ବୁଝିପାରିଲେ ନାହିଁ ଏବଂ ସେମାନେ ଏହା ନୀଚ ମନୋବୃତ୍ତି ବୋଲି ବିଚାରୁଥିଲେ । ସେମାନେ ତେଣୁ ଖ୍ରୀଷ୍ଟିୟାନମାନଙ୍କୁ ପାଗଳା, ଅଶିକ୍ଷିତ ଓ ସମସ୍ତ ମାନବ ପ୍ରଗତିପଥରେ ବିରୋଧୀ ବୋଲି ବିଚାରୁଥିଲେ । ଧର୍ମଭାବରେ ସେମାନେ ଖ୍ରୀଷ୍ଟଧର୍ମକୁ ସହ୍ୟ କରିଥାନ୍ତେ; ମାତ୍ର ସମ୍ରାଟଙ୍କୁ ଭକ୍ତି ପ୍ରଦର୍ଶନ ନ କରିବା ରାଜନୀତିକ ଷଡ଼ଯନ୍ତ୍ର ବୋଲି ଧରାଗଲା ଏବଂ ସେଥିଲାଗି ମୃତ୍ୟୁଶାସ୍ତି ବି ଦିଆଯାଉଥିଲା । ଯେଉଁ ମଲ୍ଲଯୁଦ୍ଧ (Gladiator) ହେଉଥିଲା, ଖ୍ରୀଷ୍ଟିୟାନ୍‌ମାନେ ତାର ଖୁବ୍ ବିରୋଧରେ ଥିଲେ । ତାପରେ ଖ୍ରୀଷ୍ଟିୟାନମାନଙ୍କ ବିରୁଦ୍ଧରେ ଶାସ୍ତିବିଧାନ ଚାଲିଲା – ସେମାନଙ୍କର ସମ୍ପତ୍ତି ବାଜ୍ୟାପ୍ତ କରାଗଲା

ଏବଂ ସେମାନଙ୍କୁ ସିଂହମୁହଁକୁ ଠେଲି ଦିଆଗଲା । ଏହି ଖ୍ରୀଷ୍ଟିୟାନ୍ ଶହୀଦମାନଙ୍କ ସମ୍ବନ୍ଧରେ ତୁ ଅବଶ୍ୟ ଗପସବୁ ପଢ଼ିଥିବୁ ଏବଂ ସିନେମା ବି ଦେଖିଥିବୁ । ମାତ୍ର ଯଦି କେହି ଲୋକ କୌଣସି ଏକ ଉଦ୍ଦେଶ୍ୟରେ ମରିବା ଲାଗି ପ୍ରସ୍ତୁତ ହୋଇଯାଏ (ଯେପରି ମୃତ୍ୟୁରେ ବାସ୍ତବିକ ଗୌରବ ଅଛି), ସେତେବେଳେ ତାକୁ ଦବାଇବା କିମ୍ବା ସେ ଯେଉଁ ଉଦ୍ଦେଶ୍ୟ ଲାଗି ଲଢ଼ୁଛି, ତାକୁ ଲୋପ କରିବା ଅସମ୍ଭବ ହୋଇପଡ଼େ । ରୋମାନ୍ ସାମ୍ରାଜ୍ୟ ଖ୍ରୀଷ୍ଟିୟାନଙ୍କୁ ଦବାଇବାରେ ସମ୍ପୂର୍ଣ୍ଣ ବିଫଳ ହେଲା । ପ୍ରକୃତରେ ଏହି ବିବାଦରେ ଖ୍ରୀଷ୍ଟଧର୍ମର ଜୟ ହେଲା ଏବଂ ଚତୁର୍ଥ ଶତାବ୍ଦୀର ପ୍ରଥମ ଭାଗରେ ଜଣେ ରୋମାନ୍ ସମ୍ରାଟ୍ ନିଜେ ଖ୍ରୀଷ୍ଟିୟାନ୍ ହେଲେ ଏବଂ ଖ୍ରୀଷ୍ଟଧର୍ମ ସାମ୍ରାଜ୍ୟର ସରକାରୀ ଧର୍ମ ହେଲା । ଏହାଙ୍କ ନାମ ହେଉଛି କନ୍‌ଷ୍ଟାଣ୍ଟାଇନ୍ । ସେ କନ୍‌ଷ୍ଟାଣ୍ଟିନୋପଲ୍ ସହର ବସାଇଥିଲେ । ତାଙ୍କ ସମ୍ବନ୍ଧରେ ଆମେ ପରେ ଆଲୋଚନା କରିବା ।

ଖ୍ରୀଷ୍ଟଧର୍ମର ବୃଦ୍ଧି ସଙ୍ଗେ ସଙ୍ଗେ ଯୀଶୁ ଦେବତା ଥିଲେ କି ନାହିଁ, ସେ ସମ୍ବନ୍ଧରେ ଖୁବ୍ ବିବାଦ ଲାଗିଲା । ତୋର ତ ମନେଥିବ, ମୁଁ ତତେ ଲେଖିଥିଲି ଗୌତମ ନିଜକୁ ଦେବତା ବୋଲି ଦାବୀ କରୁ ନ ଥିଲେ ସୁଦ୍ଧା ଲୋକେ ତାଙ୍କୁ କପରି ଦେବତା ଓ ଅବତାର ରୂପେ ପୂଜା କରିବାକୁ ଲାଗିଲେ । ସେହିପରି ଯୀଶୁ ଦେବତା ବୋଲି ନିଜକୁ ଦାବୀ କରୁ ନ ଥିଲେ । ଭଗବାନଙ୍କ ସନ୍ତାନ ଓ ମାନବର ସନ୍ତାନ ବୋଲି ବାରମ୍ବାର ଉଲ୍ଲେଖ କରିବାଦ୍ୱାରା ସେ ଯେକୌଣସି ଦେବତା ବା ଅତିମାନବ ବୋଲି ଦାବୀ କରିଛନ୍ତି, ତାହା ନୁହେଁ । ମାତ୍ର ମଣିଷ ମହାନ୍ ପୁରୁଷମାନଙ୍କୁ ଦେବତା କରି ପକାଏ ଓ ଦେବତା କରିସାରିଲା ପରେ ଆଉ ତାଙ୍କୁ ଅନୁସରଣ କରେ ନାହିଁ । ୬୦୦ ବର୍ଷ ପରେ ପ୍ରଫେଟ୍ ମହମ୍ମଦ ଆହୁରି ଏକ ମହତ୍ ଧର୍ମର ପ୍ରଚାର କଲେ ଏବଂ ପୂର୍ବର ଦୃଷ୍ଟାନ୍ତମାନଙ୍କରୁ ଶିକ୍ଷାଲାଭ କରି ସେ ବାରମ୍ବାର ସ୍ପଷ୍ଟ ଘୋଷଣା କରିଥିଲେ ଯେ ସେ ଜଣେ ମଣିଷ, ଦେବତା ନୁହନ୍ତି ।

ତେଣୁ ଯୀଶୁଙ୍କର ଉପଦେଶକୁ ବୁଝିବା ଓ ଅନୁସରଣ କରିବା ପରିବର୍ତ୍ତେ ଖ୍ରୀଷ୍ଟିୟାନମାନେ ଯୀଶୁ ଦେବତା ଥିଲେ କି ତିନୋଟି ପୁରୁଷର ସମଷ୍ଟି ରୂପେ ପିତା ସ୍ୱରୂପ ଆସିଥିଲେ, ଏହି ବିଷୟ ନେଇ ଯୁକ୍ତି ଓ କଳହ ଆରମ୍ଭ କରିଦେଲେ । ସେମାନଙ୍କ ମଧ୍ୟରୁ ଏକ ଦଳ ଅନ୍ୟ ଦଳକୁ ଠିକ୍ ଧର୍ମାବଲମ୍ବୀ ନୁହନ୍ତି ବୋଲି ଅଭିଯୋଗ କରି ଶାସ୍ତି ଦେଉଥିଲେ ଏବଂ ମୁଣ୍ଡ କାଟୁଥିଲେ । ଏକ ସମୟରେ ବିଭିନ୍ନ ଖ୍ରୀଷ୍ଟିୟାନ ସମ୍ପ୍ରଦାୟ ଭିତରେ ଗୋଟିଏ ଦୁଇଟି ସ୍ୱରବର୍ଣ୍ଣ ବିଶିଷ୍ଟ ଶବ୍ଦ ନେଇ ଖୁବ୍ ବଡ଼ ବିବାଦ ଲାଗିଲା । ଗୋଟିଏ ଦଳ କହିଲେ ଯେ ପ୍ରାର୍ଥନାରେ ହୋମ ଆଉଜନ (Home Ousion) ଶବ୍ଦର ବ୍ୟବହାର ହେବ; ଅନ୍ୟମାନେ କହୁଥିଲେ ହୋମୋଇ ଆଉଜନ (Homoi Ousion)

ବ୍ୟବହାର ହେବ । ଏହି ଶବ୍ଦର ଯୀଶୁ ଦେବତା ହେବା ସହିତ କଅଣ ସମ୍ପର୍କ ରହିଛି ? ଏହି ଶବ୍ଦ ଲାଗି ଖୁବ୍ ଭୀଷଣ ଯୁଦ୍ଧ ଲାଗିଥିଲା ଏବଂ ବହୁସଂଖ୍ୟକ ଲୋକ ନିହତ ହେଲେ ।

ଗୀର୍ଜା ଷମତାଶାଳୀ ହେବା ସଙ୍ଗେ ସଙ୍ଗେ ଏହି ଅନ୍ତର୍ବିବାଦ ଲାଗିଲା । ପାଶ୍ଚାତ୍ୟ ଦେଶରେ ବିଭିନ୍ନ ଖ୍ରୀଷ୍ଟିୟାନ ସମ୍ପ୍ରଦାୟ ଭିତରେ ଏପରି ବିବାଦ ବହୁଦିନ ପର୍ଯ୍ୟନ୍ତ ଲାଗି ରହିଥିଲା ।

ତୁ ଶୁଣି ବିସ୍ମିତ ହେବୁ ଯେ ଇଂଲଣ୍ଡ ଏବଂ ପଶ୍ଚିମ ଇଉରୋପକୁ ଯିବା ପୂର୍ବରୁ ଖ୍ରୀଷ୍ଟଧର୍ମ ଭାରତବର୍ଷକୁ ଆସିଥିଲା—ଏପରି କି ରୋମରେ ଯେତେବେଳେ ଏହାକୁ ଘୃଣା କରୁଥିଲେ ଓ ଧର୍ମାବଲମ୍ବୀଙ୍କୁ ଶାସ୍ତି ଦେଉଥିଲେ । ଯୀଶୁଙ୍କ ମୃତ୍ୟୁର ଶହେ ବର୍ଷ ଭିତରେ ଖ୍ରୀଷ୍ଟଧର୍ମର ପ୍ରଚାରକମାନେ ସମୁଦ୍ରପଥରେ ଦକ୍ଷିଣ-ଭାରତକୁ ଆସିଥିଲେ । ସେମାନଙ୍କୁ ଖୁବ୍ ଆଦରର ସହିତ ଗ୍ରହଣ କରାଯାଇଥିଲା ଏବଂ ନୂତନ ଧର୍ମର ପ୍ରଚାର ଲାଗି ଅନୁମତି ଦିଆଯାଇ ଥିଲା । ସେମାନେ ଅନେକ ଲୋକଙ୍କୁ ଦୀକ୍ଷା ଦେଲେ ଏବଂ ସେମାନଙ୍କ ବଂଶଧରମାନେ ଆଜିପର୍ଯ୍ୟନ୍ତ ସେଠାରେ ବିଭିନ୍ନ କ୍ଷେତ୍ରରେ ରହିଛନ୍ତି । ତାଙ୍କ ଭିତରୁ ଅନେକେ ପୁରୁଣା ଖ୍ରୀଷ୍ଟିୟାନ ସମ୍ପ୍ରଦାୟର—ଇଉରୋପରେ ଆଜିକାଲି ତାର ଅସ୍ତିତ୍ୱ ନାହିଁ । ଏମାନଙ୍କ ଭିତରୁ କେତେକଙ୍କର ଏବେ ଏସିଆ-ମାଇନରରେ କେନ୍ଦ୍ର ରହିଛି ।

ଖ୍ରୀଷ୍ଟଧର୍ମ ଆଜି ରାଜନୀତି ଦୃଷ୍ଟିରେ ପ୍ରଧାନ ଧର୍ମ; କାରଣ ଇଉରୋପର ପ୍ରଧାନ ଦେଶଗୁଡ଼ିକ ଏହା ଗ୍ରହଣ କରିଛନ୍ତି । ମାତ୍ର ବିଦ୍ରୋହୀ ଯୀଶୁଙ୍କର ଅହିଂସା ଓ ସାମାଜିକ ବ୍ୟବସ୍ଥା ବିରୁଦ୍ଧରେ ବିଦ୍ରୋହ ପ୍ରଚାର ସହ ଆଜିକାଲି ତାଙ୍କ ଧର୍ମାବଲମ୍ବୀମାନେ ଯେପରି ସାମ୍ରାଜ୍ୟବାଦୀ ହୋଇଛନ୍ତି, ଅସ୍ତ୍ରଶସ୍ତ୍ର ତିଆରି କରୁଛନ୍ତି, ଯୁଦ୍ଧରେ ଲାଗିଛନ୍ତି ଓ ସମ୍ପତ୍ତିର ପୂଜା କରୁଛନ୍ତି, ତାହା ଭାବିଲେ ବିସ୍ମିତ ହେବାକୁ ହୁଏ । ଇଉରୋପ ଓ ଆମେରିକାରେ ପ୍ରଚଳିତ ଆଧୁନିକ ଧର୍ମ ଏବଂ 'ସରମନ ଅନ୍ ଦି ମାଉଣ୍ଟ' (Sermon on the mount) ଭିତରେ କି ଅଦ୍ଭୁତ ପାର୍ଥକ୍ୟ ଦେଖିବାକୁ ମିଳେ ! ପାଶ୍ଚାତ୍ୟ ଦେଶର ଖ୍ରୀଷ୍ଟଙ୍କ ତଥାକଥିତ ଅନୁଗାମୀଙ୍କ ଅପେକ୍ଷା ବାପୁ (ଗାନ୍ଧୀ) ଖ୍ରୀଷ୍ଟଙ୍କର ନିକଟତମ ବୋଲି ଯେ ଅନେକ ଲୋକ କହନ୍ତି, ସେଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ।

## ୨ । ରୋମ୍ ସାମ୍ରାଜ୍ୟ

ଏପ୍ରିଲ ୨୩, ୧୯୩୨

ମୁଁ ତୋ ପାଖକୁ ଅନେକ ଦିନ ହେଲା ଲେଖି ନାହିଁ । ଏଲାହାବାଦରୁ ସମ୍ବାଦ ପାଇ ବିଶେଷତଃ ତୋର ବଡ଼ମା (ପିତାମହୀ) 'ଦୋଲ ଅମ୍ମା'ଙ୍କ ଖବର ପାଇ ମୁଁ ବ୍ୟସ୍ତ ଓ

ବିବ୍ରତ ହୋଇପଡ଼ୁଛି । ମୋର ମାଆ ପୁଲିସ ଲାଠିର ସମ୍ମୁଖୀନ ହୋଇ ପ୍ରହାର ଖାଉଥିଲା ବେଳେ ମୁଁ ଏଠି ଯେ ଜେଲରେ ଟିକିଏ ସ୍ୱଚ୍ଛନ୍ଦରେ ଅଛି, ଏହା ଭାବି ମନରେ ଟିକିଏ କ୍ରୋଧ ଜାତ ହୋଉଛି । ମାତ୍ର ମୋର ଚିନ୍ତାଧାରାରେ ଭାସିଯାଇ ନିଜ କାର୍ଯ୍ୟ ଭୁଲିଯିବା ଉଚିତ୍ ନୁହେଁ ।

ଆମେ ରୋମକୁ ଫେରିଯିବା । ଆମର ପୁରୁଣା ସଂସ୍କୃତ ବହିରେ ଏହାକୁ ଓ 'ରୋମକା' ବୋଲି କୁହାଯାଇଛି । ଆମେ ରୋମାନ୍ ଲୋକତନ୍ତ୍ରର ଶେଷ ରୋମାନ୍ ସାମ୍ରାଜ୍ୟର ଆଗମନ ବିଷୟ ଯେ ଆଲୋଚନା କରୁଥିଲେ, ତାହା ତୋର ମନେଥିବ । ଜୁଲିଅସ୍ ସିଜରଙ୍କ ପାଳିତ ପୁତ୍ର ଅକ୍ଟୋଭିୟାନ ଅଗଷ୍ଟସ୍ ସିଜର ନାମରେ ପ୍ରଥମ ସମ୍ରାଟ୍ ହେଲେ । ସେ ନିଜକୁ ରାଜା ବୋଲି ଆଖ୍ୟା ଦେଇ ନ ଥିଲେ । କାରଣ ଏ ଉପାଧି ଖୁବ୍ ବଡ଼ ବୋଲି ସେ ବିଚାରୁ ନ ଥିଲେ ଏବଂ ଲୋକତନ୍ତ୍ରର ବାହ୍ୟ ଆଡ଼ମ୍ବର ମଧ୍ୟ ସେ ବଜାୟ ରଖିବାକୁ ଚାହୁଁଥିଲେ । ତେଣୁ ସେ ନିଜକୁ "ଇମ୍ପରେଟର" ବା କମାଣ୍ଡର ବୋଲି କହୁଥିଲେ । ଏହିପରି ଭାବରେ ଇମ୍ପରେଟର ଶବ୍ଦ ସର୍ବାପେକ୍ଷା ବଡ଼ ଉପାଧି ହେଲା ଏବଂ "ଏମ୍ପରର" (ସମ୍ରାଟ୍) ଶବ୍ଦ ଇଂରେଜୀରେ ଏଇଥିରୁ ହୋଇଛି । ସୁତରାଂ ରୋମ୍ ସାମ୍ରାଜ୍ୟରୁ ଏମ୍ପରର ଓ ସିଜର ବା କାଇଜର ବା ଜାର ଏହି ଶବ୍ଦ ଆସିଥିଲା ଏବଂ ସମଗ୍ର ଦୁନିଆର ସମ୍ରାଟମାନେ ତାହା ଗ୍ରହଣ କଲେ । ପ୍ରଥମେ ଦୁନିଆରେ କେବଳ ଜଣେ ସମ୍ରାଟ୍ ରହିବେ ବୋଲି କଳ୍ପନା କରାଯାଉଥିଲା—ସେ ସମଗ୍ର ଦୁନିଆର ମୁରବି ହେବେ । ରୋମକୁ ଜଗତର ରାଣୀ ବୋଲି କହୁଥିଲେ ଏବଂ ପାଶ୍ଚାତ୍ୟ ଦେଶର ଲୋକେ ଭାବୁଥିଲେ ଯେ ରୋମ୍ ସମଗ୍ର ଦୁନିଆକୁ ଆଚ୍ଛନ୍ନ କରିଛି । ଅବଶ୍ୟ ଏହା ଭୁଲ ଏବଂ ଏଥିରୁ ଇତିହାସ ଓ ଭୂଗୋଳ ବିଷୟରେ ଅଜ୍ଞତାର ପ୍ରମାଣ ମିଳୁଛି । ରୋମାନ୍ ସାମ୍ରାଜ୍ୟ ବିଶେଷ ଭାବରେ ଭୂମଧ୍ୟସାଗର କୂଳବର୍ତ୍ତୀ ଅଞ୍ଚଳରେ ବ୍ୟାପିଥିଲା ଏବଂ ପୂର୍ବରେ ମେସୋପଟମିଆ ଅତିକ୍ରମ କରି ଯାଇ ନ ଥିଲା । ଚୀନ୍ ଓ ଭାରତରେ ଅନେକ ବଡ଼ ବଡ଼ ଶକ୍ତିଶାଳୀ ସଭ୍ୟ ରାଜ୍ୟ ରହିଥିଲା । ଯାହା ହେଉ, ପାଶ୍ଚାତ୍ୟ ଜଗତରେ ପୁରାକାଳରେ ରୋମ୍ ହିଁ ପ୍ରଧାନ ସାମ୍ରାଜ୍ୟ ଥିଲା । ଏହା ଏକ ପ୍ରକାର ପୃଥିବୀର ସାମ୍ରାଜ୍ୟ ଥିଲା ଏବଂ ଏହାର ଅଦ୍ଭୁତ ଖ୍ୟାତି ବି ଥିଲା ।

ରୋମ୍ ବିଷୟରେ ସବୁଠାରୁ ଆଶ୍ଚର୍ଯ୍ୟଜନକ ବିଷୟ ହେଉଛି—ଦୁନିଆରେ ପ୍ରାଧାନ୍ୟ ବିସ୍ତାର କରିବା ଓ ପୃଥିବୀ-ପରିଚାଳନା କରିବାର କଳ୍ପନା । ରୋମ୍‌ର ପତନ ସମୟରେ ସୁଦ୍ଧା ଏହି ଧାରଣା ହିଁ ତାକୁ ରକ୍ଷା କରିଥିଲା ଓ ଶକ୍ତି ଦାନ କରିଥିଲା । ରୋମଠାରୁ ସମ୍ପୂର୍ଣ୍ଣ ବିଚ୍ଛିନ୍ନ ହେଲା ପରେ ମଧ୍ୟ ଏହି କଳ୍ପନା ବରାବର ରହିଥିଲା; ଏପରିକି ସାମ୍ରାଜ୍ୟ ଲୋପ ପାଇ ଯାଇଥିଲେ ସୁଦ୍ଧା ଏହି ଧାରଣା ବଞ୍ଚି ରହିଥିଲା ।

ରୋମ୍ ଓ ତାର ଉତ୍ତରାଧିକାରୀମାନଙ୍କ ସମ୍ବନ୍ଧରେ ଲେଖିବାକୁ ମୁଁ ଟିକିଏ କଷ୍ଟ ବୋଧ କରୁଛି । ମୋର ଆଶଙ୍କା ଯେ ମୁଁ ଜେଲ ଭିତରେ ଯେଉଁସବୁ ପୁରୁଣା ବହି ପଢ଼ିଛି,

ସେଥିରେ ଏତେ ବାଜେ କଥା ମୋ ମନରେ ପଶିଯାଇଛି ଯେ ତହିଁରୁ ବାଛି ତୋ ପାଖକୁ ପ୍ରକୃତ କଥା ଲେଖିବା ମୋ ପକ୍ଷରେ ସହଜ ନୁହେଁ । ବାସ୍ତବିକ ମୁଁ ଯଦି ଜେଲ ଆସି ନ ଥାନ୍ତି, ତେବେ ରୋମାନ୍ ଇତିହାସରୁ ଗୋଟିଏ ପ୍ରସିଦ୍ଧ ବହି ହୁଏତ ପଢ଼ିପାରି ନ ଥାନ୍ତି । ପୁସ୍ତକଟି ଏତେ ବଡ଼ ଯେ ଅନ୍ୟ କାମ ଭିତରେ ତାକୁ ପଢ଼ି ଶେଷ କରିବା କଷ୍ଟକର । ଏହି ପୁସ୍ତକର ନାମ ହେଉଛି – 'ରୋମାନ୍ ସାମ୍ରାଜ୍ୟର ପତନ' ( The decline and fall of the Roman Empire ) । ଏହାକୁ ଗିବନ୍ ନାମରେ ଜଣେ ଇଂରେଜ ଲେଖିଛନ୍ତି । ସୁଇଜରଲଣ୍ଡର ଲିକ୍ ଲେମନ କୂଳରେ ପ୍ରାୟ ୧୫୦ ବର୍ଷ ତଳେ ଏହା ଲେଖା ହୋଇଥିଲା; ମାତ୍ର ଆଜି ସୁଦ୍ଧା ଏହା ପଢ଼ିଲେ ବେଶ୍ ଆନନ୍ଦ ଲାଗେ ଏବଂ ଏହା ଏପରି ଆଡ଼ମ୍ବରପୂର୍ଣ୍ଣ ଅଥଚ ସୁଲଳିତ ଭାଷାରେ ଲେଖାଯାଇଛି ଯେ କୌଣସି ଉପନ୍ୟାସ-ଠାରୁ ମୋତେ ଏହା କମ୍ ଭଲ ଲାଗିଲା ନାହିଁ । ପ୍ରାୟ ଦଶବର୍ଷ ପୂର୍ବେ ଲକ୍ଷ୍ନୌ ଜେଲରେ ମୁଁ ଏହାକୁ ପଢ଼ିଥିଲି ଏବଂ ଗିବନ୍ ତାଙ୍କ ଭାଷାରେ ଯେପରି ଅତୀତର ମୂର୍ତ୍ତି ଗଢ଼ିଛନ୍ତି, ସେଥିରେ ମୁଁ ମଜ୍ଜି ଯାଇ ତାଙ୍କର ସାଥୀରୂପେ ପ୍ରାୟ ମାସେ ରହିଗଲି; ଅର୍ଥାତ୍ ବହି ମାସେ ପର୍ଯ୍ୟନ୍ତ ପଢ଼ିଥିଲି । ମୁଁ ସେ ବହି ଶେଷ କରିବା ପୂର୍ବରୁ ହଠାତ୍ ଖଲାସ ହୋଇଗଲି ଓ ମୋର ସେ ମୋହ ଭାଙ୍ଗିଗଲା । ଆଉ ଯେଉଁ ଶହେ ବା କେତେ ପୃଷ୍ଠା ରହିଗଲା, ସେଥିରେ ପୂର୍ବକାଳର ରୋମ୍ ଓ କନ୍‌ଷ୍ଟାଣ୍ଟିନୋପ୍‌ଲର ବର୍ଣ୍ଣନା ପଢ଼ିବାକୁ ସମୟ ବା ସୁଯୋଗ ପାଇବା ମୋ ପକ୍ଷରେ କଷ୍ଟକର ହେଲା ।

ଏହା ଦଶବର୍ଷ ତଳର କଥା ଏବଂ ମୁଁ ସେତେବେଳେ ଯାହା ପଢ଼ିଥିଲି ସେଥିରୁ ଅନେକ କଥା ଅବଶ୍ୟ ଭୁଲିଯାଇଛି । ତଥାପି ମୋ ମନରେ ଅନେକ କଥା ରହିଛି ଓ ମୋ ମନକୁ ଗୋଳମାଳିଆ କରି ପକାଉଛି । ମୋ ମନର ଏହି ମିଶ୍ରିତ ଭାବ ମୁଁ ତତେ ଲେଖିବାକୁ ଚାହେଁନା ।

ରୋମାନ୍ ସାମ୍ରାଜ୍ୟ ବା ସାମ୍ରାଜ୍ୟଗୁଡ଼ିକ ଯୁଗ ଯୁଗ ଧରି କିପରି ରହିଥିଲେ, ସେ ସମ୍ବନ୍ଧରେ ଚାଲ ଆଲୋଚନା କରି ଦେଖିବା । ଯଦି ଦରକାର ପଡ଼େ, ତେବେ ପରେ ହୁଏତ ସେଥିରେ ଆଉ କିଛି ଯୋଗ କରିବା ।

ଖ୍ରୀଷ୍ଟିୟାନ ଯୁଗ ପୂର୍ବରୁ ଅଗଷ୍ଟସ୍ ସିଜରଙ୍କଠାରୁ ଏହି ସାମ୍ରାଜ୍ୟର ଆରମ୍ଭ । କିଛି ଦିନ ସକାଶେ ସମ୍ରାଟମାନେ ସିନେଟ୍‌କୁ ଖାତିରି କରୁଥିଲେ; ମାତ୍ର ଅତି ଶୀଘ୍ର ଲୋକତନ୍ତ୍ରର ଶେଷ ଚିହ୍ନ ବି ଲିଭିଗଲା । ସମ୍ରାଟମାନେ ନିଜ ନିଜକୁ ସର୍ବଶକ୍ତିମାନ୍ ମନେକଲେ, ସ୍ୱେଚ୍ଛାଚାରୀ ହୋଇପଡ଼ିଲେ, ନିଜକୁ ଦେବତା ପରି ମନେ କଲେ । ତାଙ୍କ ଜୀବଦ୍ଦଶାରେ ହିଁ ସେ ଅର୍ଦ୍ଧଦେବତା ରୂପେ ପୂଜା ପାଉଥିଲେ । ମଲା ପରେ ସେ ପୂର୍ଣ୍ଣ ଦେବତା ହୋଇଗଲେ । ଲେଖକମାନେ ପୂର୍ବକାଳର ସମ୍ରାଟ୍ ବିଶେଷତଃ ଅଗଷ୍ଟସ୍‌ଙ୍କୁ ଉଚ୍ଚ

ସ୍ଥାନ ଦିଅନ୍ତି । ସେମାନେ ଅଗଷ୍ଟସ୍‌ଙ୍କ ରାଜତ୍ୱ କାଳକୁ 'ସୁବର୍ଣ୍ଣ ଯୁଗ' ବୋଲି କହୁଥିଲେ । ଏହି ସମୟରେ ପ୍ରତ୍ୟେକ ବିଭାଗର ଉନ୍ନତି ହୋଇଥିଲା । ସାଧୁ ଲୋକମାନେ ପୁରସ୍କାର ପାଇଲେ ଏବଂ ଦୁଷ୍ଟମାନଙ୍କୁ ଦମନ କରାଯାଇଥିଲା । ସ୍ୱେଚ୍ଛାଚାରୀ ରାଜ୍ୟମାନଙ୍କର ଲେଖକ-ମାନେ ହିଁ ଏହିପରି ଲେଖନ୍ତି; କାରଣ ଶାସକମାନଙ୍କୁ ପ୍ରଶଂସା କଲେ ଲାଭବାନ୍ ହୋଇଥାନ୍ତି । ଭର୍ଜିଲ, ଓଭିଡ୍ ଏବଂ ହୋରେସ୍ ପ୍ରଭୃତି କେତେକ ପ୍ରସିଦ୍ଧ ଲାଟିନ୍ ଲେଖକ ଏହି କାଳର । ସେମାନଙ୍କ ବହି ଆମେ ସ୍କୁଲରେ ପଢ଼ୁ । ଲୋକତନ୍ତ୍ରର ଶେଷ-ବେଳାକୁ ଗୃହବିବାଦ ଓ ଗୋଳମାଳ ବରାବର ଲାଗିରହିଥିଲେ ସୁଦ୍ଧା ତାପରେ ଶାନ୍ତିଶୃଙ୍ଖଳା ସ୍ଥାପନ କରାଯାଇ ବାଣିଜ୍ୟ ଓ ସଭ୍ୟତାର ବିକାଶ ହୋଇ ପାରିଥିଲା, ଏହା ଖୁବ୍ ଆନନ୍ଦର କଥା ।

ମାତ୍ର ଏ ସଭ୍ୟତା କିପରି ଥିଲା ? ଏହା ଧନୀ ଲୋକଙ୍କ ସଭ୍ୟତା ଥିଲା । ଏହି ଧନୀ ଲୋକେ ପୁରାତନ ଗ୍ରୀସ୍‌ର ଧନୀମାନଙ୍କ ପରି କଳାପ୍ରେମୀ ବା ବିଚକ୍ଷଣ ନ ଥିଲେ; ବରଂ ଏମାନେ ଏକପ୍ରକାର ସାଧାରଣ ଲୋକ ଥିଲେ । ଏମାନଙ୍କର ପ୍ରଧାନ କାମ ହେଉଥିଲା ଉପଭୋଗ କରିବା । ଦୁନିଆର ଚାରିଆଡ଼ୁ ଖାଦ୍ୟ ଓ ବିଳାସସାମଗ୍ରୀ ସେମାନଙ୍କ ପାଖକୁ ଆସୁଥିଲା ଏବଂ ସେମାନେ ସେସବୁ ନେଇ ଖୁବ୍ ବିଳାସ ଓ ବିଭବ ଦେଖାଉଥିଲେ । ଏହି ଶ୍ରେଣୀର ଲୋକେ ଆଜିସୁଦ୍ଧା ଲୋପ ପାଇ ନାହାନ୍ତି । ରୋମ୍‌ରେ ବରାବର ଆଡ଼ମ୍ବର ଓ ଜାକଜମକ ଚାଲିଥିଲା; ବଡ଼ ବଡ଼ ଶୋଭାଯାତ୍ରା ବା ସର୍କସ ହେଉଥିଲା ଏବଂ ମଲ୍ଲଯୁଦ୍ଧରେ ଲୋକେ ବି ମରୁଥିଲେ । ମାତ୍ର ଏହି ଆଡ଼ମ୍ବରର ପଶ୍ଚାତ୍‌ରେ ଜନସାଧାରଣଙ୍କ ଦୁର୍ଗତି ହିଁ ପୂରି ରହିଥିଲା । ଅତ୍ୟଧିକ କରଭାର ମୁଖ୍ୟଭାବରେ ସାଧାରଣ ଲୋକଙ୍କ ଉପରେ ପଡ଼ୁଥିଲା ଏବଂ ଅସଂଖ୍ୟ ଦାସ ସମସ୍ତ କାର୍ଯ୍ୟ କରୁଥିଲେ । ଏପରି କି ଚିକିତ୍ସା, ଦର୍ଶନଶାସ୍ତ୍ର ଆଲୋଚନା ଓ ଚିନ୍ତା ଏସବୁ କାର୍ଯ୍ୟ ଗ୍ରୀକ୍ ଦାସମାନେ କରୁଥିଲେ । ରୋମର ସମ୍ରାଟ୍-ମାନେ ନିଜକୁ ଯେଉଁ ଦୁନିଆର ପ୍ରଭୁ ବୋଲି କହି ହେଉଥିଲେ, ସେହି ଦୁନିଆ ସମ୍ବନ୍ଧରେ ବିବରଣୀ ସଂଗ୍ରହ ବା ସେ ବିଗରେ ଶିକ୍ଷାଦେବା ନିମନ୍ତେ ଆଦୌ ଉଦ୍ୟମ କରାଯାଇ ନ ଥିଲା ।

ସମ୍ରାଟ୍ ପରେ ସମ୍ରାଟ୍ ହେଲେ; କେତେକ ଅଳ୍ପ ଖରାପ ଥିଲେ ତ କେତେକ ଅତ୍ୟନ୍ତ ଖରାପ ଥିଲେ । କ୍ରମେ ସୈନ୍ୟମାନେ ହିଁ ପୁରା କ୍ଷମତାଶାଳୀ ହେଲେ ଏବଂ ସେମାନେ ସମ୍ରାଟ୍ କରିପାରୁଥିଲେ ଓ ତଡ଼ି ବି ଦେଉଥିଲେ । ତେଣୁ ସୈନ୍ୟମାନଙ୍କର ଅନୁଗ୍ରହ ପାଇବା ନିମନ୍ତେ ବରାବର ପ୍ରତିଯୋଗିତା ଚାଲୁଥିଲା ଏବଂ ସୈନ୍ୟମାନଙ୍କୁ ଲାଞ୍ଚ ଦେବା ନିମନ୍ତେ ବିଜିତ ଦେଶ ଓ ଜନସାଧାରଣଙ୍କଠାରୁ ଧନ ଶୋଷଣ ଚାଲିଲା । ଦାସ ବାଣିଜ୍ୟ ହିଁ ଟଙ୍କା ପାଇବାର ଗୋଟିଏ ପ୍ରଧାନ ପନ୍ଥା ଥିଲା ଏବଂ ପୂର୍ବଦିଗରେ ରୋମାନ୍ ସୈନ୍ୟମାନେ ସଂଗଠିତ ଭାବରେ ଦାସ ଅନ୍ୱେଷଣ କରିବାକୁ ଲାଗିଲେ । ଦାସବଣିକମାନେ

ମଧ୍ୟ ଦାସମାନଙ୍କୁ କିଣିନେବା ସକାଶେ ସୈନ୍ୟଙ୍କ ସାଙ୍ଗରେ ଯାଉଥିଲେ । ପୁରାତନ ଗ୍ରୀକ୍‌ଙ୍କର ପବିତ୍ର ସ୍ଥାନ ଡେଲୋସ ଦ୍ୱୀପ ଗୋଟିଏ ପ୍ରଧାନ ଦାସ-ବଜାର ହୋଇଗଲେ ଏବଂ ସେଠାରେ ଦିନକ ଭିତରେ ପ୍ରାୟ ୧୦ ହଜାର ଦାସ ବିକି ହେଉଥିଲେ । ରୋମର ଏକ ବୃହତ୍ ପ୍ରାଙ୍ଗଣରେ ଜଣେ ଲୋକପ୍ରିୟ ସମ୍ରାଟ୍ ଏକ ସମୟରେ ୧୬୦୦ ମଲ୍ଲଯୁଦ୍ଧ କରାଇଥିଲେ; ଅର୍ଥାତ୍ ସମ୍ରାଟ୍ ଓ ତାଙ୍କ ପରିବାରଙ୍କ ଆମୋଦ ସକାଶେ ଏମାନଙ୍କୁ ପ୍ରାଣ ଦେବାକୁ ପଡ଼ିଥିଲା ।

ରୋମ୍ ସାମ୍ରାଜ୍ୟର ପ୍ରତିପତ୍ତି ସମୟରେ ରୋମାନ୍ ସଭ୍ୟତା ଏହି ପ୍ରକାର ଥିଲା । ତଥାପି ଆମର ବନ୍ଧୁ ଗିବନ୍ ଲେଖିଛନ୍ତି—"ଯଦି ମନୁଷ୍ୟ ଜାତି ପୃଥିବୀ ଇତିହାସରେ କେବେ ସବୁଠାରୁ ସୁଖୀ ଓ ଉନ୍ନତ ଥିଲା ବୋଲି ପଚରାଯାଏ, ତେବେ ଯେ କୌଣସି ଲୋକ ବିନା ଦ୍ୱିଧାରେ ଡୋମିସିୟାନଙ୍କ ମୃତ୍ୟୁଠାରୁ କମୋଡ଼ସଙ୍କ ରାଜା ହେବା ସମୟକୁ କହିବ ।" ଅର୍ଥାତ୍ ୯୬ ଖ୍ରୀଷ୍ଟାବ୍ଦରୁ ୧୮୦ ଖ୍ରୀଷ୍ଟାବ୍ଦ ମଧ୍ୟବର୍ତ୍ତୀ ୮୪ ବର୍ଷ ସମୟକୁ ହିଁ କହିବ । ମୋର ଆଶଙ୍କା ଯେ ଗିବନ୍ ଜଣେ ବିଦ୍ୱାନ୍ ଲୋକ ହେଲେ ମଧ୍ୟ ଏପରି କଥା କହିଛନ୍ତି, ଯେଉଁଥିରେ ଅନେକ ଲୋକ ସହଜରେ ସମ୍ମତ ହେବେ ନାହିଁ । ସେ ମାନବ ଜାତି କହିଲାବେଳେ କେବଳ ଭୂମଧ୍ୟସାଗରକୂଳସ୍ଥ ଦେଶମାନଙ୍କୁ ହିଁ ଲକ୍ଷ୍ୟ କରିଛନ୍ତି । କାରଣ ଭାରତ, ଚୀନ ବା ପୁରାତନ ଇଜିପ୍ଟ ସମ୍ବନ୍ଧରେ ତାଙ୍କର କୌଣସି ଜ୍ଞାନ ନ ଥିଲା ।

ମୁଁ ବୋଧହୁଏ ରୋମ କଥା ଲେଖିଲାବେଳେ ଟିକିଏ କଡ଼ା ହୋଇଛୁ । ରୋମାନ୍ ରାଜ୍ୟରେ କେତେକ ପରିମାଣରେ ଶାନ୍ତି ପାଇବା ଅବଶ୍ୟ ଗୋଟିଏ ଆନନ୍ଦଦାୟକ ପରିବର୍ତ୍ତନ ବୋଲିବାକୁ ହେବ । ସୀମାନ୍ତଗୁଡ଼ିକରେ ବାରମ୍ବାର ଯୁଦ୍ଧ ଲାଗୁଥିଲା; ମାତ୍ର ପ୍ରଥମ କାଳରେ ଅନ୍ତତଃ ସାମ୍ରାଜ୍ୟ ଭିତରେ ପାକ୍ସ ରୋମାନ୍—ଅର୍ଥାତ୍ ରୋମୀୟ ଶାନ୍ତି ବିରାଜୁଥିଲା । କେତେକ ପରିମାଣରେ ଦେଶରେ ନିରାପଦ ଅବସ୍ଥା ଥିଲା ଏବଂ ସେହି ହେତୁ ବାଣିଜ୍ୟ ବି ହେଲା । ସମସ୍ତ ରୋମ୍ ଜଗତରେ ରୋମୀୟଗଣ ନାଗରିକ ହେଲେ—ମାତ୍ର ଗରିବ ଦାସମାନଙ୍କର ଏଥିରେ କିଛି ଯାଏ ଆସେ ନାହିଁ । ଏକଥା ମଧ୍ୟ ମନେ ରଖିଥିବୁ ଯେ ସମ୍ରାଟ୍ ହିଁ ସର୍ବଶକ୍ତିମାନ୍ ଥିଲେ ଏବଂ ନାଗରିକଙ୍କର ଖୁବ୍ ଅଳ୍ପ ଅଧିକାର ଥିଲା । ରାଜନୀତି ସମ୍ବନ୍ଧରେ କୌଣସି ଆଲୋଚନା ସମ୍ରାଟଙ୍କ ବିରୁଦ୍ଧରେ ଷଡଯନ୍ତ୍ର ରୂପେ ଧରାଯାଉଥିଲା । ଉଚ୍ଚ ଶ୍ରେଣୀମାନଙ୍କ ଲାଗି ଏକପ୍ରକାର ଶାସନ ଓ ଆଇନ୍ ଥିଲା । ଯେଉଁ ଲୋକେ ସ୍ୱେଚ୍ଛାଚାରୀ ଶାସନରେ ପୂର୍ବରୁ କଷ୍ଟ ଭୋଗୁଥିଲେ, ସେମାନଙ୍କୁ ଏହା ଖୁବ୍ ଭଲ ଅବସ୍ଥା ବୋଲି ମନେ ହୋଇଥିବ ।

କ୍ରମେ ରୋମୀୟମାନେ ଖୁବ୍ ଅଳସୁଆ ହୋଇଗଲେ ଏପରି କି ନିଜ ସୈନ୍ୟ ଭିତରେ ରହି ଯୁଦ୍ଧ କରିବାକୁ ବି ଅଯୋଗ୍ୟ ହେଲେ । ଗ୍ରାମ ଅଞ୍ଚଳରେ କୃଷକମାନଙ୍କ

ଉପରେ ଯେଉଁ ବୋଝ ପଡ଼ିଲା, ସେଥିରେ ସେମାନେ ଅଧିକ ଦରିଦ୍ର ହୋଇଗଲେ—ସେହିପରି ସହରର ଲୋକେ ମଧ୍ୟ । ମାତ୍ର ସହରରେ ଲୋକେ ଯେପରି କୌଣସି ଗଣ୍ଡଗୋଳ ନ କରନ୍ତି, ସେଥିଲାଗି ସମ୍ରାଟମାନେ ତାଙ୍କୁ ସନ୍ତୁଷ୍ଟ କରି ରଖିବାକୁ ଚେଷ୍ଟାଥିଲେ । ଏହି ଉଦ୍ଦେଶ୍ୟରେ ରୋମର ଲୋକଙ୍କୁ ମାଗଣା ଖାଦ୍ୟ ଦିଆଯାଉଥିଲା ଏବଂ ସେମାନଙ୍କର ଆମୋଦ ସକାଶେ ମାଗଣା ଖେଳନାସବୁ ବି କରାଯାଉଥିଲା । ଏହିପରି ଭାବରେ ସେମାନଙ୍କୁ ଆମୋଦରେ ରଖାଯାଉଥିଲା । ମାତ୍ର ଏପରି ମାଗଣା ବାଣ୍ଟିବା ଅଳ୍ପ କେତେକ ସ୍ଥାନରେ ହୋଇ ପାରୁଥିଲା । ଏହା ହେବା ଫଳରେ ଇଜିପ୍ଟ ପ୍ରଭୃତି ଯେଉଁ ଦେଶରୁ ମାଗଣା ଗହମ ଅଣାଯାଉଥିଲା, ସେଠାର ଦାସମାନଙ୍କୁ ଖୁବ୍ କଷ୍ଟ ଓ ଦୁର୍ଦ୍ଦଶା ଭୋଗିବାକୁ ପଡ଼ିଲା ।

ରୋମ ଲୋକେ ଆଗଭଳି ସହିତ ସୈନ୍ୟଶ୍ରେଣୀରେ ଯୋଗ ଦେଉ ନ ଥିବାରୁ ରୋମ ସାମ୍ରାଜ୍ୟର ବାହାରୁ ଲୋକ ଅଣାହେଲା । ସେମାନଙ୍କୁ "ବର୍ବର" ବୋଲି କହୁଥିଲେ । କ୍ରମେ ରୋମର ଏହି "ବର୍ବର" ଶବ୍ଦ ବା ସେମାନଙ୍କର ବଂଶଧରମାନଙ୍କୁ ନେଇ ରୋମର ସେନା ଗଠିତ ହେଲା । ସୀମାନ୍ତରେ ଏହି "ବର୍ବରମାନେ" ରୋମୀୟମାନଙ୍କୁ ଦବାଇବାର ଚେଷ୍ଟା କଲେ । ରୋମ ଦୁର୍ବଳ ହେବା ସଙ୍ଗେ ସଙ୍ଗେ ଏହି "ବର୍ବରମାନେ" ଶକ୍ତିଶାଳୀ ଓ ସାହସୀ ହୋଇଗଲେ । ବିଶେଷତଃ ପୂର୍ବଦିଗରୁ ବିପଦ ଆଶଙ୍କା କରାଯାଉଥିଲା ଏବଂ ଏହି ସୀମାନ୍ତ ରୋମଠାରୁ ବହୁଦୂରରେ ରହିଥିବାରୁ ଏହାକୁ ରକ୍ଷାକରିବା ସହଜ ନ ଥିଲା । ଅଗଷ୍ଟସ୍ ସିଜରଙ୍କର ୩୦୦ ବର୍ଷ ପରେ କନ୍‌ଷ୍ଟାଣ୍ଟାଇନ୍ ନାମକ ଜଣେ ସମ୍ରାଟ୍ ଏପରି କାର୍ଯ୍ୟ କଲେ ଯାହା କ୍ରମେ ଖୁବ୍ ଫଳପ୍ରଦ ହୋଇଥିଲା । ସେ ପ୍ରକୃତରେ ତାଙ୍କର ରାଜଧାନୀ ରୋମରୁ ପୂର୍ବଦିଗକୁ ନେଇଗଲେ । ବସ୍‌ଫରସ କୂଳରେ ବିଜାଣ୍ଟାଇନ୍ ନାମକ ଏକ ପୁରୁଣା ସହର ନିକଟରେ କୃଷ୍ଣସାଗର ଓ ଭୂମଧ୍ୟସାଗର ମଧ୍ୟରେ ସେ ଏକ ନୂତନ ସହର ସ୍ଥାପନ କଲେ ଏବଂ ତାଙ୍କର ନାମ ଅନୁସାରେ ସେହି ସହରର ନାମ କନ୍‌ଷ୍ଟାଣ୍ଟିନୋପ୍‌ଲ ହେଲା । କନ୍‌ଷ୍ଟାଣ୍ଟିନୋପ୍‌ଲକୁ ସେତେବେଳେ ନୂତନ ରୋମ ବୋଲି କହୁଥିଲେ । ସେତେବେଳେ ଏହା ହିଁ ରୋମାନ୍ ସାମ୍ରାଜ୍ୟର ରାଜଧାନୀ ହେଲା । ଆଜିକାଲି ମଧ୍ୟ ଏସିଆର ଅନେକ ଅଞ୍ଚଳରେ କନ୍‌ଷ୍ଟାଣ୍ଟିନୋପଲ ସହରକୁ ରୁମ୍ ବା ରୂଉମ୍ ବୋଲି କହନ୍ତି ।

## ୩୩ । ଖଣ୍ଡବିଖଣ୍ଡିତ ରୋମ ସାମ୍ରାଜ୍ୟ ଓ ତାର ପ୍ରେତାତ୍ମା

ଅପ୍ରେଲ ୨୪, ୧୯୩୨

ଆଜି ଆମେ ରୋମ ସାମ୍ରାଜ୍ୟ ସମ୍ବନ୍ଧରେ ଆଲୋଚନା କରିବା । ଚତୁର୍ଥ ଶତାବ୍ଦୀର ପ୍ରଥମ ଭାଗରେ ୩୨୬ ଖ୍ରୀଷ୍ଟାବ୍ଦରେ କନ୍‌ଷ୍ଟାଣ୍ଟାଇନ୍ ପୁରାତନ ବିଜାଣ୍ଟାଇନ୍ ସହର ନିକଟରେ କନ୍‌ଷ୍ଟାଣ୍ଟିନୋପଲ ସ୍ଥାପନ କଲେ ଏବଂ ସେ ବସ୍‌ଫରସରେ ସ୍ଥାପିତ ଏହି

ନୂତନ ରୋମକୁ ତାଙ୍କ ରାଜ୍ୟର ରାଜଧାନୀ ପୁରାତନ ରୋମରୁ ଉଠାଇନେଲେ । ମାନଚିତ୍ରକୁ ଅନାଇଲେ ତୁ ଦେଖିପାରିବୁ ଯେ ବୃହତ୍ ଏସିଆ ଆଡ଼କୁ ମୁଖ କରି ଇଉରୋପର ଏକ ପ୍ରାନ୍ତରେ ଏହି ନୂତନ ସହର କନ୍‌ଷ୍ଟାଣ୍ଟିନୋପଲ ରହିଛି – ଏହା ଦୁଇ ମହାଦେଶ ଭିତରେ ଏକପ୍ରକାର ଯୋଗସୂତ୍ର ପରି ରହିଛି । ଜଳ ଓ ସ୍ଥଳ ଉଭୟ ଏହି ବାଟେ ବଡ଼ ବଡ଼ ବାଣିଜ୍ୟପଥ ଯାଇଛି । ଗୋଟିଏ ସହର ଓ ରାଜଧାନୀ ହେବା ନିମନ୍ତେ ଏହାର ଅବସ୍ଥିତି ବଡ଼ ଅନୁକୂଳ । କନ୍‌ଷ୍ଟାଣ୍ଟାଇନ୍ ଭଲ ସ୍ଥାନ ବାଛିଥିଲେ; ମାତ୍ର ତାଙ୍କୁ ଓ ତାଙ୍କ ଉତ୍ତରାଧିକାରୀମାନଙ୍କୁ ଏହି ରାଜଧାନୀ ପରିବର୍ତ୍ତନ ସକାଶେ ଅନେକ କଷ୍ଟ ଭୋଗିବାକୁ ପଡ଼ିଥିଲା । ଯେପରି ପୁରାତନ ରୋମ୍ ଏସିଆ ମାଇନର ଓ ପୂର୍ବଠାରୁ ଦୂରବର୍ତ୍ତୀ ଥିଲା, ସେହିପରି ଏହି ନୂତନ ପ୍ରାଚ୍ୟ ରାଜଧାନୀ ମଧ୍ୟ ଗଲ୍ (ଫ୍ରାନ୍‌ସ) ଓ ବ୍ରିଟେନ୍ ପରି ପଶ୍ଚିମ ଦେଶମାନଙ୍କଠାରୁ ଦୂର ହେଲା ।

ଏହି ଅସୁବିଧା ଦୂର କରିବା ନିମନ୍ତେ କିଛି ଦିନ ସକାଶେ ଦୁଇ ଜଣ ସମ୍ରାଟ୍ ରହିଲେ । ଜଣେ ରୋମ୍‌ରେ ରହିଲେ ଓ ଅନ୍ୟ ଜଣକ କନ୍‌ଷ୍ଟାଣ୍ଟିନୋପଲରେ ରହିଲେ । ଏହା ଫଳରେ ସାମ୍ରାଜ୍ୟଟି ସ୍ୱତନ୍ତ୍ର ପଶ୍ଚିମ ଓ ପୂର୍ବ ଖଣ୍ଡରେ ବିଭକ୍ତ ହୋଇଗଲା । ରୋମ୍ ପଶ୍ଚିମ ଖଣ୍ଡର ରାଜଧାନୀ ଥିଲା—ଏହା ବେଶିଦିନ ତିଷ୍ଠି ରହି ପାରିଲା ନାହିଁ । "ବର୍ବର" ବୋଲି ଯାହାଙ୍କୁ କହୁଥିଲେ, ସେମାନଙ୍କ ଆକ୍ରମଣରୁ ରକ୍ଷା ପାଇପାରିଲା ନାହିଁ । ଏକ ଜର୍ମାନ ଜାତି ଗୋଥ୍‌ମାନେ ଆସି ରୋମ୍‌ରେ ଚଢ଼ାଉ କରିଥିଲେ; ତାପରେ ଭାଣ୍ଡାଲ ଓ ହୁନ୍‌ମାନେ ଆସିଥିଲେ । ଶେଷରେ ପଶ୍ଚିମ ସାମ୍ରାଜ୍ୟ ଲୋପ ପାଇଲା । ତୁ ହୁନ୍ ଶବ୍ଦ ବ୍ୟବହାର ଶୁଣିଥିବୁ । ଗତ ଯୁଦ୍ଧରେ ଜର୍ମାନମାନଙ୍କୁ ଅତ୍ୟନ୍ତ ନିଷ୍ଠୁର ଓ ବର୍ବର ବୋଲି ପରିଚୟ ଦେବା ନିମନ୍ତେ ଇଂରେଜମାନେ ଏ ଶବ୍ଦ ବ୍ୟବହାର କରୁଥିଲେ । ବାସ୍ତବିକ ଯୁଦ୍ଧ ସମୟରେ ପ୍ରତ୍ୟେକ ଲୋକର ମସ୍ତିଷ୍କ ବିକୃତ ହୋଇଯାଏ—ସଦାଚରଣ ଓ ସଭ୍ୟତା ଭୁଲିଯାଏ ଏବଂ ଅତ୍ୟନ୍ତ ବର୍ବର ଓ ନିଷ୍ଠୁର ଭାବରେ ବ୍ୟବହାର କରେ । ଜର୍ମାନ୍‌ମାନେ ଏହିପରି ଆଚରଣ ଦେଖାଇଥିଲେ, ଇଂରେଜ ଓ ଫରାସୀମାନେ ମଧ୍ୟ ସେହିପରି କଲେ । ଏ ବିଷୟରେ ଏମାନେ କେହି କାହାରିକି ଊଣା ନୁହନ୍ତି ।

ହୁନ୍ ଗୋଟିଏ ଖରାପ ଗାଳିରୂପେ ପ୍ରଚଳିତ ହୋଇଛି । ଭାଣ୍ଡାଲ ଶବ୍ଦ ମଧ୍ୟ ସେହିପରି । ସମ୍ଭବତଃ ଏହି ହୁନ୍ ଓ ଭାଣ୍ଡାଲମାନେ ନିଷ୍ଠୁର ଓ କଠୋର ଥିଲେ ଏବଂ ଲୋକଙ୍କର କ୍ଷତି କରିଥିଲେ; ମାତ୍ର ମନେରଖିବା ଦରକାର ଯେ ଏ ସମ୍ବନ୍ଧରେ ଆମେ ଯାହା ବା ଇତିହାସ ଜାଣିଛୁ ତାହା ସେମାନଙ୍କର ଶତ୍ରୁ ରୋମାନମାନଙ୍କ ଦ୍ୱାରା ଲିଖିତ ଏବଂ ତାହା ନିରପେକ୍ଷ ବର୍ଣ୍ଣନା ହୋଇପାରେନା । ଯାହାହେଉ ଗୋଥ୍, ଭାଣ୍ଡାଲ ଓ ହୁନ୍‌ମାନେ ପଶ୍ଚିମ ରୋମ ସାମ୍ରାଜ୍ୟକୁ ଭାଙ୍ଗି ଛିନ୍ନଭିନ୍ନ କରି ପକାଇଲେ । ସେମାନେ

ଏଥିରେ କୃତିତ୍ୱ ଲାଭ କରିବାର ଏକ କାରଣ ହେଉଛି ଯେ ରୋମାନ୍ କୃଷକମାନେ ସାମ୍ରାଜ୍ୟ ଅଧୀନରେ ଏତେ ଦୁର୍ଦ୍ଦଶା ଭୋଗୁଥିଲେ, ଏତେ ଟିକସ ବୋଝ ବଢ଼ି ଥିଲା ଏବଂ ଏପରି ଋଣଗ୍ରସ୍ତ ହୋଇଥିଲା ଯେ ସେମାନେ ଯେକୌଣସି ପରିବର୍ତ୍ତନକୁ ଅଭିବାଦନ କରିଥିଲେ । ଆଜି ଭାରତର ଶୋଷଣ ଦାରିଦ୍ର୍ୟ ଓ ଦୁର୍ଦ୍ଦଶା ଭୋଗ କରୁଥିବା କୃଷକ ସେମିତି ଯେକୌଣସି ପରିବର୍ତ୍ତନକୁ ଆନନ୍ଦରେ ସ୍ୱାଗତ କରିବ ।

ଏହିପରି ଭାବରେ ପଶ୍ଚିମ ରୋମାନ୍ ସାମ୍ରାଜ୍ୟର ପତନ ହେଲା । କେତେକ ଶତାବ୍ଦୀ ପରେ ଅନ୍ୟ ଆକାରରେ ଏହା ପୁଣି ଉଠିଥିଲା । ପୂର୍ବ ସାମ୍ରାଜ୍ୟଟି ବଞ୍ଚାଯାଇ ରହିଥିଲା । ଅବଶ୍ୟ ହୁନ୍ ଓ ଅନ୍ୟମାନଙ୍କ ଆକ୍ରମଣରୁ ରକ୍ଷାପାଇବା ନିମନ୍ତେ ଏହାକୁ ଅଶେଷ କଷ୍ଟ ବରଣ କରିବାକୁ ପଡ଼ିଥିଲା । ଏହା ଯେ କେବଳ ଏସବୁ ଆକ୍ରମଣ ସତ୍ତ୍ୱେ ବଞ୍ଚି ରହିଲା ତାହା ନୁହେଁ, ଆରବ ଏବଂ ତାପରେ ତୁର୍କୀମାନଙ୍କର ବାରମ୍ବାର ଆକ୍ରମଣ ସତ୍ତ୍ୱେ ଏହା ଶତାବ୍ଦୀ ପରେ ଶତାବ୍ଦୀ ବି ସେହିପରି ଚାଲିଲା । ପ୍ରାୟ ୧୧୦୦ ବର୍ଷ ପର୍ଯ୍ୟନ୍ତ ଏହା ଚାଲିଥିଲା । ଶେଷରେ ୧୪୫୩ ଖ୍ରୀଷ୍ଟାବ୍ଦରେ ଏହାର ପତନ ହେଲା ଓ କନଷ୍ଟାଣ୍ଟି-ନୋପଲକୁ ଅଟୋମାନ୍ ତୁର୍କୀ ବା ଓସମାନଲିମାନେ ଅଧିକାର କଲେ । ସେହିଦିନଠାରୁ ୫୦୦ ବର୍ଷ ହେଲା କନ୍‌ଷ୍ଟାଣ୍ଟିନୋପଲ୍ ତୁର୍କମାନଙ୍କ ଅଧୀନରେ ଅଛି । ତାକୁ ଆଜିକାଲି ଇସ୍ତାନବୁଲ୍ ବୋଲି କହୁଛନ୍ତି । ସେଠାରୁ ସେମାନେ ବାରମ୍ବାର ଇଉରୋପକୁ ଆସିଲେ ଏବଂ ଭିଏନାର ପ୍ରାଚୀର ପର୍ଯ୍ୟନ୍ତ ଆସି ହାଜର ହୋଇଥିଲେ । ପର ଶତାବ୍ଦୀରେ ସେମାନଙ୍କୁ କ୍ରମେ ପଛକୁ ହଟାଇ ଦିଆଯାଇଥିଲା ଏବଂ ପ୍ରାୟ ୧୬ ବର୍ଷ ପୂର୍ବେ ମହା-ସମରରେ ପରାଜିତ ହୋଇ ସେମାନେ ପ୍ରାୟ କନ୍‌ଷ୍ଟାଣ୍ଟିନୋପଲକୁ ହରାଇ ବସିଲେ । ଇଂରେଜମାନେ ଏହି ସହର ଅଧିକାର କଲେ ଏବଂ ତୁର୍କୀ ସୁଲତାନ ସେମାନଙ୍କ ହାତରେ ପିତୁଳା ପରି ରହିଥଲେ । ମାତ୍ର ମୁସ୍ତାଫା କେମାଲପାଶା ନାମରେ ଜଣେ ବଡ଼ ନେତା ଆସି ସେମାନଙ୍କୁ ରକ୍ଷା କରିଥଲେ ଓ ଖୁବ୍ ଯୁଦ୍ଧ କରି ଶେଷରେ ସେ ଜୟଲାଭ କଲେ । ବର୍ତ୍ତମାନ ତୁର୍କୀ ଦେଶ ଏହି ସାଧାରଣତନ୍ତ୍ର ହୋଇ ରହିଛି—ସୁଲତାନ ଆଉ ନାହାନ୍ତି । କେମାଲପାଶା ଏହି ସାଧାରଣତନ୍ତ୍ରର ଦଳପତି ହୋଇଛନ୍ତି ।* ରୋମାନ୍ ଓ ତୁର୍କମାନଙ୍କର ୧୫୦୦ ବର୍ଷ ପୂର୍ବେ ଯେଉଁ କନଷ୍ଟାଣ୍ଟିନୋପଲ ରାଜଧାନୀ ହୋଇଥଲା, ତାହା ବର୍ତ୍ତମାନ ସୁଦ୍ଧା ତୁର୍କୀ ରାଜ୍ୟର ଅଂଶରୂପେ ରହିଛି; କିନ୍ତୁ ଏହା ତୁର୍କୀର ରାଜଧାନୀ ନୁହେଁ । ସାମ୍ରାଜ୍ୟ ସହିତ ସମ୍ପୃକ୍ତ ସହରରୁ ଦୂରରେ ରହିବାକୁ ତୁର୍କମାନେ ପସନ୍ଦ କରି ଏସିଆ ମାଇନରରେ ଆଙ୍ଗୋରା (ଅଙ୍କାରା)ରେ ସେମାନଙ୍କର ରାଜଧାନୀ କରିଛନ୍ତି ।

---

* କେମାଲପାଶା ୧୯୩୯ରେ ମରିଛନ୍ତି । ବର୍ତ୍ତମାନ ପ୍ରେସିଡେଣ୍ଟ ହେଉଛନ୍ତି ଇନୋନୁ ।

ଆମେ ୨୦୦୦ ବର୍ଷ ଅତିକ୍ରମ କରିଛେଁ ଏବଂ କ୍ରମେ ଗୋଟିକ ପରେ ଗୋଟିଏ ପରିବର୍ତ୍ତନ ହୋଇ ଯେପରି କନ୍‌ଷ୍ଟାଣ୍ଟିନୋପ୍‌ଲ ସହର ସ୍ଥାପିତ ହେଲା ଏବଂ ଏହି ନୂତନ ସହରକୁ ରୋମ୍ ସାମ୍ରାଜ୍ୟର ରାଜଧାନୀ କରାଗଲେ, ତାହା ମଧ୍ୟ ଦେଖିଲେ । ମାତ୍ର କନ୍‌ଷ୍ଟାଣ୍ଟାଇନ ଆଉ ଗୋଟିଏ ନୂଆ କଥା କରିଥିଲେ । ସେ ନିଜେ ଖ୍ରୀଷ୍ଟିୟାନ ହେଲେ ଏବଂ ସେ ସମ୍ରାଟ୍ ଥିବାରୁ ଖ୍ରୀଷ୍ଟଧର୍ମ ରୋମାନ୍ ସାମ୍ରାଜ୍ୟର ସରକାରୀ ଧର୍ମ ହେଲା । ଯେଉଁ ଖ୍ରୀଷ୍ଟଧର୍ମ ପୂର୍ବେ ରୋମାନ୍ ସାମ୍ରାଜ୍ୟରେ ଏକ ଅଭିଶପ୍ତ ଧର୍ମରୂପେ ଥିଲା, ତାହା ହଠାତ୍ ସାମ୍ରାଜ୍ୟର ଧର୍ମ ରୂପେ ଯେ ପରିବର୍ତ୍ତିତ ହୋଇଗଲେ—ଏହା ନିଶ୍ଚୟ ଏକ ଆଶ୍ଚର୍ଯ୍ୟଜନକ ଘଟଣା ହୋଇଥିବ । ଏହି ପରିବର୍ତ୍ତନ ହେତୁ ବିଶେଷ କିଛି ଭଲ ଫଳ ହୋଇ ନ ଥିଲା । ଖ୍ରୀଷ୍ଟିୟାନ ଧର୍ମର ବିଭିନ୍ନ ସମ୍ପ୍ରଦାୟ ପରସ୍ପର ଭିତରେ ବିବାଦ କରିବାକୁ ଲାଗିଲେ । ଶେଷରେ ଦୁଇ ସମ୍ପ୍ରଦାୟ ଭିତରେ ଭୀଷଣ କଳହ ଲାଗିଲା—ଲାଟିନ୍ ଓ ଗ୍ରୀକ୍ ଦୁଇଟି ସମ୍ପ୍ରଦାୟ ହେଲେ । ଲାଟିନ୍‌ପନ୍ଥୀଙ୍କର ପ୍ରଧାନ ପୀଠସ୍ଥଳୀ ହେଲା ରୋମ୍ ଏବଂ ରୋମ୍‌ର ବିଶପ ହିଁ ତାର ଅଧ୍ୟକ୍ଷ ହେଲେ—ପରେ ସେ ରୋମର ପୋପ୍ ହେଲେ । ଗ୍ରୀକ ଶାଖାର ପୀଠସ୍ଥଳୀ ଥିଲା କନ୍‌ଷ୍ଟାଣ୍ଟିନୋପଲ । ଲାଟିନ୍ ଗୀର୍ଜା ସମଗ୍ର ଉତ୍ତର ଓ ପଶ୍ଚିମ ଇଉରୋପରେ ବିସ୍ତାର ଲଭିଲା ଏବଂ ଏହାକୁ ରୋମାନ୍ କାଥଲିକ୍ ଚର୍ଚ୍ଚ ବୋଲି କହନ୍ତି । ଗ୍ରୀକ୍ ଗୀର୍ଜାକୁ ସନାତନୀ ଗୀର୍ଜା (Orthodox Church) କହନ୍ତି । ପୂର୍ବ ରୋମାନ୍ ସାମ୍ରାଜ୍ୟର ପତନ ପରେ ଏକମାତ୍ର ରୁଷ ଦେଶରେ ହିଁ ଏହି ସନାତନୀ ଶାଖାର ପ୍ରଚାର ଥିଲା; ବର୍ତ୍ତମାନ ବଲ୍‌ସେଭିକ୍‌ମାନେ ରୁଷରେ ପ୍ରାଧାନ୍ୟ ଲାଭ କଲା ପରେ ଏ ଗୀର୍ଜା ବା ଅନ୍ୟ କୌଣସି ଗୀର୍ଜାର କୌଣସି ସରକାରୀ ସ୍ଥାନ ନାହିଁ ।

ମୁଁ ପୂର୍ବ ରୋମାନ୍ ସାମ୍ରାଜ୍ୟ କଥା କହୁଛି—ଏହାର ରୋମ୍ ସହିତ କୌଣସି ସମ୍ପର୍କ ନ ଥିଲା । ସେମାନେ ଲାଟିନ୍ ଭାଷା ବ୍ୟବହାର ନ କରି ଗ୍ରୀକ୍ ଭାଷା ବ୍ୟବହାର କରୁଥିଲେ । ଏକପ୍ରକାରେ ଏହା ଆଲେକ୍‌ଜାଣ୍ଡାରଙ୍କ ଗ୍ରୀକ୍ ସାମ୍ରାଜ୍ୟର ଗୋଟାଏ ବିସ୍ତୃତି ବୋଲି କୁହାଯାଇପାରେ । ଏହାର ପଶ୍ଚିମ ଇଉରୋପ ସହିତ କୌଣସି ସମ୍ପର୍କ ନ ଥିଲା, ତଥାପି କୌଣସି ପଶ୍ଚିମଦେଶ ଏଥିରୁ ସ୍ୱାଧୀନ ହୋଇଯିବା କଥା ଏହା କେବେ ସ୍ୱୀକାର କରୁ ନ ଥିଲା । ତଥାପି ପୂର୍ବ ସାମ୍ରାଜ୍ୟକୁ ବି ରୋମାନ୍ ସାମ୍ରାଜ୍ୟ କହୁଥିଲେ ଏବଂ ଲୋକଙ୍କୁ ରୋମାନ୍ ବୋଲି କହୁଥିଲେ—ଯେପରି କି ରୋମାନ୍ ଶବ୍ଦରେ ଗୋଟାଏ କିଛି କୁହୁକ ରହିଛି । ଆହୁରି ଅଦ୍ଭୁତ କଥା ଯେ ରୋମ ସହର ସାମ୍ରାଜ୍ୟର ପ୍ରାଧାନ୍ୟ ହରାଇ ସୁଦ୍ଧା ତାର ମର୍ଯ୍ୟାଦା ହରାଇ ନ ଥିଲା ଏବଂ ଏପରି କି ଯେଉଁ ବର୍ବରମାନେ ତାକୁ ଜୟ କରିବାକୁ ଆସିଥିଲେ, ସେମାନେ ପ୍ରଥମେ ଇତସ୍ତତଃ ହୋଇଥିଲେ ଓ ବଡ଼ ଭକ୍ତିର ସହିତ ବ୍ୟବହାର କରିଥିଲେ । ଗୋଟାଏ ବଡ଼ ନାମ ଓ ଧାରଣାର ଏପରି କରାମତି ।

ସାମ୍ରାଜ୍ୟ ଧ୍ୱଂସହେବା ପରେ ରୋମ ଏକ ନୂତନ ସାମ୍ରାଜ୍ୟ ଆରମ୍ଭ କଲା; ଅବଶ୍ୟ ଏହା ଅନ୍ୟ ପ୍ରକାରରେ ହୋଇଥିଲା । କଥିତ ଅଛି ଯୀଶୁଙ୍କର ଶିଷ୍ୟ ପିଟର ରୋମକୁ ଆସି ସେଠାରେ ପ୍ରଥମ ବିଶପ ହେଲେ । ଅନେକ ଖ୍ରୀଷ୍ଟିୟାନଙ୍କ ଚକ୍ଷୁରେ ଏହା ପବିତ୍ର ସ୍ଥାନ ରୂପେ ପୂଜା ପାଇଲା ଏବଂ ରୋମର ବିଶପମାନଙ୍କୁ ବଡ଼ ଗୁରୁତ୍ୱ ଦିଆଗଲା । ପ୍ରଥମେ ରୋମର ବିଶପ ଅନ୍ୟମାନଙ୍କ ପରି ନ ଥିଲେ; ମାତ୍ର ସମ୍ରାଟ କନ୍‌ଷ୍ଟାଣ୍ଟିନୋପ୍‌ଲ ଗଲା ପରେ ତାଙ୍କର ପ୍ରାଧାନ୍ୟ ବଢ଼ିଲା । ସେତେବେଳେ ତାଙ୍କଠାରୁ ବଡ଼ ହେଲାଭଳି ସେଠାରେ କେହି ନ ଥିଲା ଏବଂ ପିଟରଙ୍କ ଉତ୍ତରାଧିକାରୀ ଭାବରେ ସେ ବିଶପମାନଙ୍କ ମଧ୍ୟରେ ମୁଖ୍ୟ ଭାବରେ ସମ୍ମାନ ପାଇଲେ । ପରେ ତାଙ୍କୁ ପୋପ୍ କହିଲେ ଏବଂ ତୁ ମ ଜାଣ ଆଜିକାଲି ବି ପୋପ୍ ଅଛନ୍ତି ଏବଂ ରୋମାନ୍ କାଥଲିକ୍ ଚର୍ଚ୍ଚର ସେ ଗୁରୁ ।

ଆହୁରି ଅଦ୍ଭୁତ କଥା ଯେ ରୋମାନ୍ କାଥଲିକ୍ ଗିର୍ଜା ଓ ଗ୍ରୀକ୍ ସନାତନୀ ଗିର୍ଜାମାନଙ୍କ ଭିତରେ କଳିଆର ଗୋଟାଏ କାରଣ ହେଉଛି ମୂର୍ତ୍ତିପୂଜା ସମସ୍ୟା । ରୋମାନ୍ ଗିର୍ଜା ମହାପୁରୁଷମାନଙ୍କ ମୂର୍ତ୍ତି ବିଶେଷତଃ ଯୀଶୁଙ୍କ ମାତା ମେରୀଙ୍କୁ ପୂଜା କରିବା ନିମନ୍ତେ ଉତ୍ସାହିତ କରୁଥିଲେ; ମାତ୍ର ସନାତନୀ ଗ୍ରୀକ୍ ଶାଖା ଏହାର ଘୋର ଆପତ୍ତି କରୁଥିଲେ ।

ଉତ୍ତର ଜାତିମାନଙ୍କର ମୁଖ୍ୟ ବ୍ୟକ୍ତିମାନଙ୍କଦ୍ୱାରା ରୋମ ଅଧିକୃତ ହୋଇ କେତେ ବର୍ଷ ଶାସିତ ହୋଇଥିଲା । ସେମାନେ ମଧ୍ୟ କନ୍‌ଷ୍ଟାଣ୍ଟିନୋପଲରେ ଥିବା ସମ୍ରାଟଙ୍କ ପ୍ରଭୁତ୍ୱକୁ ସ୍ୱୀକାର କରୁଥିଲେ । ଏଥିଭିତରେ ଧର୍ମଗୁରୁ ହିସାବରେ ରୋମର ପୋପ୍‌ଙ୍କ କ୍ଷମତା ବଢ଼ିଲା ଏବଂ ଶେଷରେ ସେ ଶକ୍ତିଶାଳୀ ହୋଇ କନଷ୍ଟାଣ୍ଟିନୋପଲକୁ ମାନିଲେ ନାହିଁ । ଯେତେବେଳେ ମୂର୍ତ୍ତିପୂଜା ଘେନି ବିବାଦ ଆରମ୍ଭ ହେଲା, ସେତେବେଳେ ପୂର୍ବରାଜ୍ୟମାନଙ୍କର ପୋପ୍ ରୋମକୁ ଅଲଗା କରିଦେଲେ । ଏହାପରେ ଅନେକ କଥା ଘଟିଯାଇଛି – ସେ ସମ୍ବନ୍ଧରେ ଆମେ ପରେ କହିବା । ଆରବରେ ନୂତନ ଧର୍ମ ଇସ୍‌ଲାମର ଆବିର୍ଭାବ ହୋଇଛି । ଆରବମାନେ ସମଗ୍ର ଉତ୍ତର-ଆଫ୍ରିକା ଓ ସ୍ପେନରେ ବିସ୍ତାରଲାଭ କରି ଶେଷରେ ଇଉରୋପକୁ ମଧ୍ୟ ଆକ୍ରମଣ କଲେ । ଉତ୍ତର ଓ ପଶ୍ଚିମ ଇଉରୋପରେ ନୂତନ ରାଜ୍ୟ ଗଢ଼ି ଉଠିଥିଲା ଏବଂ ପୂର୍ବ ରୋମାନ୍ ସାମ୍ରାଜ୍ୟ ଆରବମାନଙ୍କଦ୍ୱାରା ଭୀଷଣ ଭାବରେ ଆକ୍ରାନ୍ତ ହୋଇଥିଲା ।

ଉତ୍ତରର ଫ୍ରାଙ୍କ ନାମକ ଏକ ଜର୍ମାନୀ ଜାତିର ନେତାଙ୍କଠାରୁ ପୋପ୍ ସାହାଯ୍ୟ ଭିକ୍ଷା କଲେ ଏବଂ ପରେ ଫ୍ରାଙ୍କମାନଙ୍କ ନେତା କାର୍ଲ୍ ବା ଚାର୍ଲସ ରୋମ୍‌ର ସମ୍ରାଟ୍ ରୂପେ ଅଭିଷିକ୍ତ ହେଲେ । ଏହା ଗୋଟିଏ ସମ୍ପୂର୍ଣ୍ଣ ନୂତନ ସାମ୍ରାଜ୍ୟ; ତଥାପି ଏହାକୁ ରୋମାନ୍

ସାମ୍ରାଜ୍ୟ ଏବଂ ପରେ ପବିତ୍ର ରୋମାନ୍ ସାମ୍ରାଜ୍ୟ ବୋଲି କହୁଥିଲେ । ରୋମାନ୍ ନ ହେଲେ ଯେ ସାମ୍ରାଜ୍ୟ ହୋଇପାରିବ, ଏହା ସେମାନେ ଭାବି ପାରୁ ନ ଥିଲେ ଏବଂ ସର୍ଲମେନ୍ ବା ଗ୍ରୀଲଙ୍କର ରୋମ୍ ସହିତ କିଛି ସମ୍ବନ୍ଧ ନ ଥିଲେ ସୁଦ୍ଧା ସେ ଇମ୍ପରେଟର, ସିଜର ଏବଂ ଅଗଷ୍ଟସ୍ ନାମରେ ପରିଚିତ ହେଲେ । ଏହି ନୂତନ ସାମ୍ରାଜ୍ୟ ପୁରୁଣା ସାମ୍ରାଜ୍ୟର ଅଂଶ ରୂପେ ଚଳୁଥିଲା । ମାତ୍ର ତାହାର ନାମ କେବଳ ଟିକିଏ ବଢ଼ିଥିଲା । ଏହାକୁ ପବିତ୍ର ବା "ହୋଲି" (Holy) ବୋଲି କହିଲେ । ବିଶେଷ ଭାବରେ ଏହା ଏକ ଖ୍ରୀଷ୍ଟିୟାନ ସାମ୍ରାଜ୍ୟ ହୋଇଥିବାରୁ ଏବଂ ପୋପ୍ ଏହାର ଧର୍ମଗୁରୁ ହୋଇଥିବାରୁ ଏହାକୁ ପବିତ୍ର ଆଖ୍ୟା ଦିଆଗଲା ।

ଏକ ଧାରଣାର କି ଅଦ୍ଭୁତ ଶକ୍ତି ଦେଖ । ମଧ୍ୟ-ଇଉରୋପରେ ବାସ କରୁଥିବା ଫ୍ରାଙ୍କ ବା ଜର୍ମାନ ରୋମାନ୍ ସମ୍ରାଟ୍ ହୋଇପାରିଲା । କିନ୍ତୁ ଏହି ରୋମାନ୍ ଇତିହାସର ଭବିଷ୍ୟତ ଆହୁରି ବିସ୍ମୟଜନକ । ସାମ୍ରାଜ୍ୟ ହିସାବରେ ଏହା ଏକ ପ୍ରତିବିମ୍ବ ପରି ରହିଲା । କନ୍‌ଷ୍ଟାଣ୍ଟିନୋପଲରେ ଥିବା ପୂର୍ବ ରୋମାନ୍ ସାମ୍ରାଜ୍ୟ ଚାଲୁଥିଲେ ସୁଦ୍ଧା ପଶ୍ଚିମ-ସାମ୍ରାଜ୍ୟ ପରିବର୍ତ୍ତିତ ହେଉଥିଲା, ଲୋପ ପାଉଥିଲା ଏବଂ ପୁଣି ଥରେ ଦେଖା ଦେଉଥିଲା । ବାସ୍ତବିକ୍ ଏହା ଏକ ଶୂନ୍ୟ ଓ ସାମ୍ରାଜ୍ୟର ପ୍ରେତ କହିଲେ ଚଳେ—କେବଳ ପୁରୁଣା ରୋମାନ୍ ଦେଶର ମର୍ଯ୍ୟାଦା ଓ ଖ୍ରୀଷ୍ଟିୟାନ ଗୀର୍ଜା ବଳରେ ଏହା ଚଳୁଥିଲା । ଏହା ଏକ କଳ୍ପନା-ପ୍ରସୂତ ସାମ୍ରାଜ୍ୟ ବାସ୍ତବତାର ନାମ ଲେଶ ନାହିଁ । କେହି ଜଣେ ମୋର ମନେହୁଏ, ଭଲଟେୟାର କହୁଥିଲେ ଯେ ପବିତ୍ର ରୋମାନ୍ ସାମ୍ରାଜ୍ୟ (Holy Roman Empire) ପବିତ୍ର ନୁହେଁ, ରୋମାନ୍ ନୁହେଁ କି ସାମ୍ରାଜ୍ୟ ବି ନୁହେଁ । ଜଣେ ମଧ୍ୟ ଆମେ ଯେଉଁ ଭାରତୀୟ ସିଭିଲ ସର୍ଭିସ ଦ୍ୱାରା ଶାସିତ ହେଉଥାଉଁ ତାକୁ ଲକ୍ଷ୍ୟ କରି କହୁଥିଲେ ଯେ ଏହା ଭାରତୀୟ ନୁହେଁ କି ସିଭିଲ (ଶିଷ୍ଟ) ନୁହେଁ କିମ୍ବା ସର୍ଭିସ (ସେବା) ବି ନୁହେଁ ।

ଯାହା ହୋଇଥାଉ ପଛକେ ଏହି ଶୂନ୍ୟରେ ଥିବା ପବିତ୍ର ରୋମାନ୍ ସାମ୍ରାଜ୍ୟ କେବଳ ନାମକୁ ମାତ୍ର ୧୦୦୦ ବର୍ଷ ପର୍ଯ୍ୟନ୍ତ ଚାଲିଲା ଏବଂ ପ୍ରାୟ ୧୦୦ ବର୍ଷ ପୂର୍ବେ ନେପୋଲିୟନଙ୍କ ସମୟରେ ଏହା ଲୋପ ପାଇଲା । ଏହାର ବିଲୟ ସେପରି କିଛି ଉଲ୍ଲେଖଯୋଗ୍ୟ ବା ନାଟକୀୟ ଛଟାର ନ ଥିଲା । ବାସ୍ତବିକ ଏହାର ଅସ୍ତିତ୍ୱ ନ ଥିଲାବେଳେ କାହାର ହୁଏତ ସ୍ମରଣ ନ ଥିବ । ଶେଷରେ ପ୍ରେତ ଗଲା—ଅବଶ୍ୟ ସବୁଦିନ ପାଇଁ ନୁହେଁ—ଏହା ପୁଣି କାଇଜର, ଜାର ଓ ଏହିପରି ନାମରେ ଦେଖା ଦେଇଥିଲା । ୧୪ ବର୍ଷ ତଳେ ଯେଉଁ ମହାସମର ଶେଷ ହେଲା, ସେଥିରେ ଏହା ସବୁଦିନ ପାଇଁ ଗଲା ।

# ୩୪ । ବିଶ୍ୱ ରାଷ୍ଟ୍ରର ଧାରଣା

ଏପ୍ରିଲ ୨୫, ୧୯୩୨

ମୋର ଆଶଙ୍କା ଏହିସବୁ ଚିଠି ଲେଖି ମୁଁ ତୋତେ କ୍ଳାନ୍ତ ଓ ବିଚଳିତ କରି ପକାଇବି । ବିଶେଷତଃ ରୋମାନ୍ ସାମ୍ରାଜ୍ୟଗୁଡ଼ିକ ସମ୍ବନ୍ଧରେ ମୋର ଗତ ଚିଠି ଦୁଇଟି ତୋତେ ଏକ ପରୀକ୍ଷାରେ ପକାଇ ଦେଇଥିବ । ମୁଁ ପଛକୁ ଫେରି ଯାଉଛି, ପୁଣି ଆଗକୁ ଆସିଛି, ହଜାର ହଜାର ବର୍ଷ ଓ ହଜାର ହଜାର ମାଇଲ ଦେଇ ଗତି କରିଛି ଏବଂ ତୋ ମନରେ ଯଦି କିଛି ଗୋଳମାଳ ସୃଷ୍ଟି ହୋଇଥାଏ, ତେବେ ସେ ଦୋଷ ସମ୍ପୂର୍ଣ୍ଣଭାବରେ ମୋର । ଦମ୍ଭ ହରାଅ ନାହିଁ । ଏହା ପଢ଼ିଯା । ମୁଁ ସାବଧାନରେ କହୁଛି, ସେଥିରୁ କୌଣସି ସ୍ଥାନରେ କିଛି ଯଦି ବୁଝି ନ ପାରୁଛୁ, ତେବେ ସେଥିଲାଗି ପରୁଆ ନ କରି ଅଗ୍ରସର ହୋ । ତୋତେ ଇତିହାସ ଶିକ୍ଷା ଦେବା ନିମନ୍ତେ ଏହି ଚିଠି ଲେଖା ହୋଇ ନାହିଁ; ମାତ୍ର ଏହା ସେଥିପ୍ରତି ଉପର ଦୃଷ୍ଟି ଦେବା ପାଇଁ ଓ ତୋ ମନରେ ଆଗ୍ରହ ଜାତ କରାଇବା ନିମନ୍ତେ ଲେଖା ହୋଇଛି ।

ରୋମାନ୍ ସାମ୍ରାଜ୍ୟଗୁଡ଼ିକ ସମ୍ବନ୍ଧରେ ଶୁଣି ତୁ ଏକପ୍ରକାର ବିରକ୍ତ ହୋଇ ପଡ଼ିଥିବୁ । ମୁଁ ଯେ କ୍ଳାନ୍ତ ହେଉଛି, ଏହା ମୁଁ ସ୍ୱୀକାର କରୁଛି । କିନ୍ତୁ ଆମକୁ ଆଉ ଟିକିଏ ସେଗୁଡ଼ିକ ଦେଖିବାକୁ ପଡ଼ିବ ଏବଂ ତାପରେ ଆମେ କ୍ଷଣକାଳ ଲାଗି ସେଥିରୁ ବିଦାୟ ନେବା ।

ତୁ ଜାଣୁ ଆଜିକାଲି ଜାତୀୟତା ଓ ଦେଶପ୍ରେମ — ନିଜ ଦେଶକୁ ଭଲ ପାଇବା ଆଦି କଥା ବହୁତ ଶୁଣାଯାଉଛି । ଆଜି ଭାରତରେ ଆମେ ସମସ୍ତେ ପ୍ରାୟ ତୀବ୍ର ଜାତୀୟତାବାଦୀ । ଇତିହାସରେ ଏହି ଜାତୀୟତା ଏକ ସମ୍ପୂର୍ଣ୍ଣ ନୂତନ ଜିନିଷ ଏବଂ ଆମେ ଏହିସବୁ ଚିଠିରେ ହୁଏତ ଏହାର ଆରମ୍ଭ ଓ ବୃଦ୍ଧି ବିଷୟ ପଢ଼ିବା । ରୋମାନ୍ ସାମ୍ରାଜ୍ୟ ଅମଳରେ ପ୍ରାୟ ଏପରି କୌଣସି ଭାବନା ନ ଥିଲା । ସାମ୍ରାଜ୍ୟ ହିଁ ଏକ ବିରାଟ ରାଷ୍ଟ୍ର ଓ ଦୁନିଆକୁ ଶାସନ କରୁଛି ବୋଲି ଧରାଯାଉଥିଲା । ସାରା ଦୁନିଆ ଶାସନ କଲାପରି କୌଣସି ସାମ୍ରାଜ୍ୟ ବା ରାଷ୍ଟ୍ର ଆଜିଯାଏ ହୋଇ ନାହିଁ; କିନ୍ତୁ ଭୂଗୋଳ ବିଷୟରେ ଅଜ୍ଞତା ଏବଂ ଦୂର ଦୂରାନ୍ତରେ ଗସ୍ତ କରିବାର ଯାନବାହନ ଅସୁବିଧା ହେତୁ ଏପରି ଏକ ରାଷ୍ଟ୍ର ରହିଥିଲା ବୋଲି ପୂର୍ବକାଳରେ ଲୋକେ ଭାବୁଥିଲେ । ତେଣୁ ରୋମାନ୍ ରାଷ୍ଟ୍ର ସାମ୍ରାଜ୍ୟ ହେବା ପୂର୍ବରୁ ମଧ୍ୟ-ଇଉରୋପ ଓ ଭୂମଧ୍ୟସାଗର ଚତୁର୍ଦ୍ଦିଗସ୍ଥ ଲୋକେ ଏହାକୁ ଏକପ୍ରକାର ସର୍ବପ୍ରଧାନ ରାଷ୍ଟ୍ର (Super State) ଏବଂ ଅନ୍ୟମାନଙ୍କୁ ଏହାର ଅଧୀନସ୍ଥ ବୋଲି ମନେ

କରୁଥିଲେ । ଏହାର ପ୍ରତିଷ୍ଠା ଏତେ ଅଧିକ ଥିଲି ଯେ ଏସିଆ ମାଇନରର ଗ୍ରୀକ୍ ରାଷ୍ଟ୍ର, ପର୍ଗାମମ ଓ ଇଜିପ୍ଟର ଶାସକମାନେ ହିଁ ପ୍ରକୃତରେ ଆସି ସେମାନଙ୍କ ରାଜ୍ୟଗୁଡ଼ିକ ରୋମାନ୍ ଲୋକଙ୍କୁ ସମର୍ପିଦେଲେ । ସେମାନେ ବୋଧ କଲେ ଯେ ରୋମ୍ ସର୍ବଶକ୍ତିମାନ୍ ଓ ଅପ୍ରତିହତ । ମୁଁ ତତେ ତ କହିଛି ସାଧାରଣତନ୍ତ୍ର ବା ସାମ୍ରାଜ୍ୟ କୌଣସି ଅବସ୍ଥାରେ ରୋମ ଭୂମଧ୍ୟସାଗର ରାଜ୍ୟ ଛଡ଼ା ଆଉ ଅଧିକ ସ୍ଥାନରେ ଶାସନ କରୁ ନ ଥିଲି । ଇଉରୋପର ଉତ୍ତରରେ ଥିବା "ବର୍ବର"ମାନେ ଏହା ପାଖରେ ବଶ୍ୟତା ସ୍ୱୀକାର କଲେ ନାହିଁ ଏବଂ ସେମାନଙ୍କୁ ଏହା ମଧ୍ୟ ବିଶେଷ ଖାତିର କଲି ନାହିଁ । କିନ୍ତୁ ରୋମର କର୍ତ୍ତୃତ୍ୱ ଯେପର୍ଯ୍ୟନ୍ତ ଥାଉ ନା କାହିଁକି, ଏହା ପଶ୍ଚାତରେ ଏକ ବିଶ୍ୱ-ରାଷ୍ଟ୍ରର ଧାରଣା ଥିଲି ଏବଂ ପଶ୍ଚିମରେ ଅଧିକାଂଶ ଲୋକ ଏହି ଧାରଣାକୁ ଗ୍ରହଣ କରୁଥିଲେ । ଏହି କାରଣରୁ ହିଁ ରୋମାନ୍ ସାମ୍ରାଜ୍ୟ ଦୀର୍ଘକାଳ ପର୍ଯ୍ୟନ୍ତ ତିଷ୍ଠି ରହିଲି ଏବଂ ସେଗୁଡ଼ିକର କିଛି ମହତ୍ତ୍ୱ ନ ଥିଲେ ସୁଦ୍ଧା ଖୁବ୍ ନାମ ଓ ପ୍ରତାପ ଥିଲି ।

ଏପରି ଏକ ମହାନ୍ ରାଷ୍ଟ୍ର ପୃଥିବୀର ଅବଶିଷ୍ଟ ଅଂଶ ଉପରେ ପ୍ରାଧାନ୍ୟ କରିବା ଧାରଣା କିଛି ରୋମ୍‌ରେ ସୀମାବଦ୍ଧ ନ ଥିଲି । ପୂର୍ବକାଳରେ ଆମେ ଚୀନ୍ ଓ ଭାରତରେ ଏହା ଦେଖିପାରୁ । ତୁ ଜାଣୁ, ରୋମାନ୍ ସାମ୍ରାଜ୍ୟ ଅପେକ୍ଷା ଚୀନ୍ ରାଷ୍ଟ୍ର ବିଶାଳତର ଥିଲି; ଏହା କାସ୍ପିଆନ ସାଗର ପର୍ଯ୍ୟନ୍ତ ବିସ୍ତୃତ ଥିଲି । ଚୀନ୍ ସମ୍ରାଟଙ୍କୁ "ସ୍ୱର୍ଗପୁତ୍ର" ବୋଲି ଡାକୁଥିଲେ ଏବଂ ସେ ବିଶ୍ୱବ୍ରହ୍ମାଣ୍ଡର ଶାସକ ବୋଲି ଚୀନାମାନେ ଭାବୁଥିଲେ । ଏହା ସତ୍ୟ ଯେ ସେଠାରେ ଅନେକ ପାହାଡ଼ିଆ ଜାତି ଓ ଲୋକସବୁ ଥିଲେ ଏବଂ ସେମାନେ ସମ୍ରାଟଙ୍କୁ ମାନୁ ନ ଥିଲେ । କିନ୍ତୁ ସେମାନେ "ବର୍ବର"—ଯେମିତି ରୋମାନମାନେ ଉତ୍ତର ଇଉରୋପବାସୀଙ୍କୁ "ବର୍ବର" ବୋଲି କହୁଥିଲେ ।

ସେହିପରି ଭାରତରେ ଆଦିମ କାଳରୁ ଏହି ତଥାକଥିତ ବିଶ୍ୱଶାସକ ଚକ୍ରବର୍ତ୍ତୀ ରାଜାମାନଙ୍କ ଉଲ୍ଲେଖ ଦେଖାଯାଏ । ଅବଶ୍ୟ ସେମାନଙ୍କର ବିଶ୍ୱ ସମ୍ବନ୍ଧରେ ଧାରଣା ସୀମାବଦ୍ଧ ଥିଲି । ଭାରତ ଏଡ଼େ ପ୍ରକାଣ୍ଡ ଦେଶ ଯେ ଏହା ସେମାନଙ୍କୁ ବିଶ୍ୱ ପରି ବୋଧ ହେଉଥିଲି ଏବଂ ଭାରତ ଉପରେ କର୍ତ୍ତୃତ୍ୱ ସେମାନଙ୍କୁ ପୃଥିବୀରେ କର୍ତ୍ତୃତ୍ୱ ପରି ମନେ ହେଉଥିଲି । ଆଉ ଯେଉଁମାନେ ବାହାରେ ଥିଲେ, ସେମାନେ ହେଲେ "ବର୍ବର" ମ୍ଳେଚ୍ଛ । ପୌରାଣିକ ମହାଭାରତରୁ ଆମ ଦେଶର ନାମ ହୋଇଛି ଭାରତବର୍ଷ—ପରମ୍ପରା ଅନୁସାରେ ଏହା ବି ଏକ ଚକ୍ରବର୍ତ୍ତୀ ରାଷ୍ଟ୍ର ପରି ଧରାଯାଏ । ମହାଭାରତ ଅନୁସାରେ ଯୁଧିଷ୍ଠିର ଓ ତାଙ୍କ ଭାଇମାନେ ଚକ୍ରବର୍ତ୍ତୀ ପଦ ପାଇବା ନିମନ୍ତେ ଲଢ଼ିଥିଲେ । ଅଶ୍ୱମେଧ ହେଉଛି ଅନ୍ୟମାନଙ୍କୁ ଆହ୍ୱାନ ଓ ପୃଥିବୀ କର୍ତ୍ତୃତ୍ୱର ପ୍ରତୀକ । ପୂର୍ବରୁ ସମ୍ଭବତଃ ଅଶୋକଙ୍କର ଏହା ହିଁ ଲକ୍ଷ୍ୟଥିଲି; ମାତ୍ର ମନସ୍ତାପ ହେତୁ ସେ ସବୁ ଯୁଦ୍ଧ ବନ୍ଦ ରଖିଲେ । ପରେ ତୁ ଦେଖିବୁ ଗୁପ୍ତବଂଶ ପରି ଅନ୍ୟସବୁ ସାମ୍ରାଜ୍ୟବାଦୀ ରାଜାମାନେ ଏହାହିଁ କଳ୍ପନା କରୁଥିଲେ ।

ଏହିରୂପେ ତୁ ଦେଖିପାରିବୁ ଯେ ପୂର୍ବକାଳରେ ଲୋକେ ବିଶ୍ୱବ୍ୟାପୀ କର୍ତ୍ତୃତ୍ୱ ଓ ପୃଥିବୀ-ରାଷ୍ଟ୍ର ଦୃଷ୍ଟିରେ ଚିନ୍ତା କରୁଥିଲେ । ଦୀର୍ଘକାଳ ପରେ ଜାତୀୟତାବାଦ ଓ ଏକ ନୂତନ ପ୍ରକାର ସାମ୍ରାଜ୍ୟବାଦ ଆସିଲା ଏବଂ ଏହି ଦୁହେଁ ପୃଥିବୀରେ ଯଥେଷ୍ଟ ଆତଙ୍କ ଜାତ କରିଛନ୍ତି । ପୁନର୍ବାର ଆଜି ପୃଥିବୀ-ରାଷ୍ଟ୍ରର କଳ୍ପନା ହେଉଛି । ଏଥିରେ ଏକ ବିଶାଳ ସାମ୍ରାଜ୍ୟ ବା ଚକ୍ରବର୍ତ୍ତୀ ରାଜାର କଳ୍ପନା ନାହିଁ; ମାତ୍ର ଏକପ୍ରକାର ବିଶ୍ୱ ସାଧାରଣତନ୍ତ୍ର ସ୍ଥାପିତ ହେବ—ଯାହା ଏକ ଦେଶ, ଲୋକ ବା ଶ୍ରେଣୀ ଅପରକୁ ଶୋଷଣ କରିବାରେ ବାଧା ଦେବ । ନିକଟ ଭବିଷ୍ୟତରେ ଏପରି ଘଟିବ କି ନାହିଁ କହିବା କଷ୍ଟକର । ପୃଥିବୀ ଖରାପ ଅବସ୍ଥାରେ ଗତି କରୁଛି ଏବଂ ଏହି ପୀଡ଼ା ଦୂର କରିବାର ଅନ୍ୟ କୌଣସି ପନ୍ଥା ଥିଲା ପରି ବୋଧ ହେଉ ନାହିଁ ।

ମୁଁ ବାରମ୍ବାର ଉତ୍ତର-ଇଉରୋପର "ବର୍ବର"ମାନଙ୍କ କଥା ଉଲ୍ଲେଖ କରିଛି । ରୋମାନ୍‌ମାନେ ଏପରି ଶବ୍ଦ ବ୍ୟବହାର କରୁଥିବାରୁ ମୁଁ ଏହା ବ୍ୟବହାର କରିଛି । ମଧ୍ୟ-ଏସିଆର ଯାଯାବର ଓ ଅନ୍ୟ ପାହାଡ଼ିଆ ଜାତିମାନଙ୍କ ପରି ଏମାନେ ରୋମ ବା ଭାରତରେ ଥିବା ତାଙ୍କ ପଡ଼ୋଶୀଙ୍କ ଅପେକ୍ଷା ଅଳ୍ପ ସଭ୍ୟ ଥିଲେ; କିନ୍ତୁ ମୁକ୍ତ ବାୟୁରେ ଜୀବନ କଟାଉଥିବାରୁ ସେମାନେ ଅଧିକ ତେଜସ୍ୱାନ୍ ଥିଲେ । ପରେ ସେମାନେ ଖ୍ରୀଷ୍ଟିୟାନ୍ ହେଲେ ଏବଂ ରୋମ ଜୟ କଲାବେଳେ ମଧ୍ୟ ସାଧାରଣତଃ ନିଷ୍ଠୁର ଶତ୍ରୁରୂପ ଧାରଣ କରି ନ ଥିଲେ । ଏହି "ବର୍ବର" ସମ୍ପ୍ରଦାୟ—ଗୋଥ୍, ଫ୍ରାଙ୍କ ଓ ଅନ୍ୟମାନଙ୍କର ବଂଶଧର ହେଉଛନ୍ତି ଉତ୍ତର-ଇଉରୋପର ଆଧୁନିକ ଜାତିସବୁ ।

ମୁଁ ରୋମାନ୍ ସମ୍ରାଟମାନଙ୍କର ନାମ ତୋ ପାଖକୁ ଲେଖି ନାହିଁ । ତାଙ୍କ ସଂଖ୍ୟା ବହୁତ ଏବଂ କେତେକଙ୍କୁ ବାଦ ଦେଲେ ଅଧିକାଂଶ ବଡ଼ ଖରାପ ଥିଲେ । କେତେକ ରାକ୍ଷସ ଥିଲେ । ତୁ ନୀରୋ ନାମ ନିଶ୍ଚୟ ଶୁଣିଛୁ; ମାତ୍ର ଏମାନେ ତାଙ୍କ ଅପେକ୍ଷା ଆହୁରି ଅଧିକ ଖରାପ ଥିଲେ । ଆଇରିନ୍ ନାମକ ଜଣେ ସ୍ତ୍ରୀଲୋକ ନିଜେ ସାମ୍ରାଜ୍ଞୀ ହେବା ନିମନ୍ତେ ସମ୍ରାଟ୍ ହୋଇଥିବା ତାର ପୁଅକୁ ହତ୍ୟା କରିଥିଲା । ଏହା କନଷ୍ଟାଣ୍ଟିନୋପଲରେ ହୋଇଥିଲା ।

ଅନ୍ୟ ସମସ୍ତଙ୍କ ଭିତରେ ଜଣେ ରୋମ ସମ୍ରାଟ୍ ଶ୍ରେଷ୍ଠ ଥିଲେ । ତାଙ୍କ ନାମ ହେଉଛି ମାର୍କସ ଔରେଲିୟସ୍ ଆଣ୍ଟୋନିନସ୍ । ସେ ଜଣେ ଦାର୍ଶନିକ ଥିଲେ ବୋଲି କୁହା-ଯାଏ ଏବଂ ତାଙ୍କର ଚିନ୍ତା ଓ ମନୋଭାବସମ୍ବଳିତ ପୁସ୍ତକ ପଠନୋପଯୋଗୀ । ତାଙ୍କ ପରେ ତାଙ୍କ ପୁତ୍ର ସମ୍ରାଟ ହେଲେ—ସେ ରୋମର ଏକ ଅତ୍ୟନ୍ତ ବଦମାସ୍ ସମ୍ରାଟ୍ ଥିଲେ ।

ରୋମାନ୍ ସାମ୍ରାଜ୍ୟର ପ୍ରଥମ ତିନି ଶହ ବର୍ଷ ଭିତରେ ପାଶ୍ଚାତ୍ୟ ଜଗତରେ ରୋମ ହିଁ କେନ୍ଦ୍ର ଥିଲା । ଏହା ନିଶ୍ଚୟ ଏକ ପ୍ରଧାନ ସହର ହୋଇଥିବ—ବୃହତ୍ କୋଠା

ବାଡ଼ି ପରିପୂର୍ଣ୍ଣ ଥିବ ଏବଂ ସାମ୍ରାଜ୍ୟର ସବୁ ଅଞ୍ଚଳରୁ ଏବଂ ଏପରିକି ଆହୁରି ଦୂରରୁ ସେଠିକି ଲୋକ ଅବଶ୍ୟ ଆସୁଥିବେ । ସୁଦୂର ଦେଶମାନଙ୍କରୁ ଖାଦ୍ୟ ଓ ଅନ୍ୟ ମୂଲ୍ୟବାନ ପଦାର୍ଥସବୁ ପ୍ରଚୁର ପରିମାଣରେ ଅସଂଖ୍ୟ ଜାହାଜରେ ଏଠାକୁ ଆସିଲା । କୁହାଯାଏ ଯେ ପ୍ରତ୍ୟେକ ବର୍ଷ ଲୋହିତ ସାଗରର ଏକ ଇଜିପ୍ଟ ବନ୍ଦରରୁ ୧୨୦ ଜାହାଜ ଭାରତକୁ ଯାଉଥିଲା । ସେମାନେ ମୌସୁମୀ ବାୟୁର ସୁବିଧା ନେବା ନିମନ୍ତେ ଠିକଣା ସମୟରେ ଯାଉଥିଲେ ଏବଂ ଏହା ସେମାନଙ୍କୁ ଖୁବ୍ ସାହାଯ୍ୟ କଲା । ସାଧାରଣତଃ ସେମାନେ ଦକ୍ଷିଣ ଭାରତକୁ ଆସିଲେ । ସେମାନେ ମୂଲ୍ୟବାନ ପଦାର୍ଥସବୁ ବୋଝାଇ କରୁଥିଲେ ଏବଂ ଅନୁକୂଳ ବାୟୁ ସାହାଯ୍ୟରେ ଇଜିପ୍ଟକୁ ଫେରି ଯାଉଥିଲେ । ଇଜିପ୍ଟରୁ ମାଲସବୁ ସ୍ଥଳ ଓ ଜଳପଥରେ ରୋମ୍‌କୁ ପଠାଯାଉଥିଲା ।

କିନ୍ତୁ ଏହିସବୁ ବାଣିଜ୍ୟ ଅଧିକ ଭାବରେ ଧନୀଙ୍କ ହିତ ପାଇଁ ହେଉଥିଲା । କେତେକଙ୍କର ଆମୋଦ ପଶ୍ଚାତ୍‌ରେ ଅନେକଙ୍କର ଦୁର୍ଦ୍ଦଶା ଭରି ରହିଥିଲା । ୩୦୦ ବର୍ଷରୁ ଅଧିକ କାଳ ପର୍ଯ୍ୟନ୍ତ ପାଶ୍ଚାତ୍ୟ ଖଣ୍ଡରେ ରୋମ ସର୍ବଶ୍ରେଷ୍ଠ ଥିଲା ଏବଂ କନ୍‌ଷ୍ଟାଣ୍ଟିନୋପଲ ସ୍ଥାପିତ ହେବା ପରେ ଏହା ଏହି କର୍ତ୍ତୃତ୍ୱରେ ଭାଗୀଦାର ହେଲା । ବିଚିତ୍ର କଥା, ଅତି ଅଳ୍ପକାଳ ଭିତରେ ପୁରାତନ ଗ୍ରୀସ୍ ଯାହା କରିପାରିଥିଲା, ଏତେ ଦୀର୍ଘକାଳ ମଧ୍ୟରେ ଚିନ୍ତା ରାଜ୍ୟରେ ରୋମାନ୍ ସାମ୍ରାଜ୍ୟ ବିଶେଷ କିଛି କରିପାରି ନ ଥିଲା । ବାସ୍ତବିକ ଅନେକଙ୍କ ଦୃଷ୍ଟିରେ ରୋମାନ୍ ସଭ୍ୟତା ଗ୍ରୀକ୍ ସଭ୍ୟତାର ଏକ କ୍ଷୀଣ ଛାୟା ପରି ବୋଧହୁଏ । ଗୋଟିଏ ବିଷୟରେ ରୋମାନ୍‌ମାନେ ଏକ ମହାନ୍ ନେତୃତ୍ୱ ଦେଇଥିଲା ପରି ମନେହୁଏ । ଏହା ହେଉଛି ଆଇନ୍ । ଆଜିକାଲି ସୁଦ୍ଧା ପାଶ୍ଚାତ୍ୟ ଦେଶରେ ଓକିଲମାନଙ୍କୁ ରୋମାନ୍ ଆଇନ୍ ଶିକ୍ଷା କରିବାକୁ ପଡ଼େ । ଇଉରୋପରେ ଅନେକ ପରିମାଣରେ ଆଇନର ଏହା ଭିତ୍ତି ବୋଲି ଧରାଯାଏ । ମୋର ମନେ ଅଛି, ଅନେକ ଦିନ ତଳେ ମୋତେ ବି ଏହି ଆଇନ୍ ପଢ଼ିବାକୁ ପଡ଼ିଥିଲା ।

ସାଧାରଣତଃ ଇଂରେଜମାନେ ରୋମାନ୍ ସାମ୍ରାଜ୍ୟ ସହିତ ବ୍ରିଟିଶ ସାମ୍ରାଜ୍ୟଟିକୁ ତୁଳନା କରି ନିଜେ ଖୁବ୍ ସନ୍ତୋଷଲାଭ କରନ୍ତି । ସବୁ ସାମ୍ରାଜ୍ୟ ଉଣା ଅଧିକେ ଏକାଭଳିଆ । ବହୁ ଲୋକଙ୍କର ଶୋଷଣ ଉପରେ ଏଗୁଡ଼ିକ-ମୋଟା ହୁଏ । କିନ୍ତୁ ରୋମାନ୍ ଓ ଇଂରେଜ ଲୋକଙ୍କ ଭିତରେ ଏକ ବଡ଼ ସାମଞ୍ଜସ୍ୟ ଦେଖାଯାଏ—ଉଭୟରେ ହିଁ ଏକଦମ୍ କଳ୍ପନାଶକ୍ତି ନାହିଁ । ଆତ୍ମତୃପ୍ତି ଓ ଶାନ୍ତି ବୋଧକରି ଏବଂ ସେମାନଙ୍କର ହିତ ନିମନ୍ତେ ଦୁନିଆ ବିଶେଷ ଭାବରେ ତିଆରି ହୋଇଛି ବୋଲି ଉପଲବ୍ଧି କରି କୌଣସି ପ୍ରକାର ଆଶଙ୍କା ବା ଅସୁବିଧାରେ ବିଚଳିତ ନ ହୋଇ ଏମାନେ ନିଜର ଜୀବନ ଅତିବାହିତ କରିଯାଆନ୍ତି ।

# ୩୪ । ପାର୍ଥିଆ ଓ ସସାନୀଦଗଣ

ଏପ୍ରିଲ ୨୬, ୧୯୩୨

ଆମେ ଏବେ ରୋମାନ ସାମ୍ରାଜ୍ୟ ଓ ଇଉରୋପ ଛାଡ଼ିବା; ପୃଥିବୀର ଅନ୍ୟ ଅଂଶ ଦେଖିବାକୁ ଯିବା । ଏସିଆରେ କ'ଣ ଘଟିଯାଇଛି ଦେଖିବା ଏବଂ ଭାରତ ଓ ଚୀନର କାହାଣୀ ଅନୁସରଣ କରିବା । ଇତିହାସ କ୍ଷେତ୍ରରେ ଅନ୍ୟ ଦେଶସବୁ ଏବେ ଦେଖାଦେଇଛି ଏବଂ ସେଗୁଡ଼ିକ ସମ୍ବନ୍ଧରେ କିଛି କହିବାକୁ ପଡ଼ିବ । ବାସ୍ତବିକ ଆମେ ଆମ୍ଭେ କଲମାନେ ଏତେ ଜାଗାରେ ଏତେ କଥା କହିବାକୁ ପଡ଼ିବ ଯେ ମୁଁ ହତାଶ ହୋଇ ଏହି କାର୍ଯ୍ୟ ଛାଡ଼ିଦେବାର ସମ୍ଭାବନା ରହିଛି ।

ମୋର ଏକ ଚିଠିରେ ପାର୍ଥିଆରେ କୈରେ ଯୁଦ୍ଧରେ ରୋମାନ୍ ସାଧାରଣତନ୍ତ୍ର ସେନାର ବିରାଟ ପରାଜୟ କଥା ଉଲ୍ଲେଖ କରିଥିଲି । ପାର୍ଥିଆନଙ୍କ ସମ୍ବନ୍ଧରେ ମୁଁ ଆଉ କିଛି ବୁଝାଇ ନ ଥିଲି ଏବଂ ସେମାନେ କପରି ଏବେ ଯେଉଁଠି ଇରାନ ଓ ଇରାକ ଅଛି, ସେଠାରେ ଏକ ରାଜ୍ୟ ସ୍ଥାପନ କରିପାରିଥିଲେ ସେ କଥା କହି ନାହିଁ । ତୋର ମନେଥିବ, ଆଲେକ୍‌ଜାଣ୍ଡରଙ୍କ ପରେ ପରେ ତାଙ୍କର ସେନାପତି ସେଲ୍ୟୁକସ୍ ଓ ତାଙ୍କର ବଂଶଧରମାନେ ଭାରତର ପଶ୍ଚିମରେ ଏସିଆ ମାଇନର ପର୍ଯ୍ୟନ୍ତ ବିସ୍ତୃତ ସାମ୍ରାଜ୍ୟରେ ଶାସନ କରୁଥିଲେ । ପ୍ରାୟ ୩୦୦ ବର୍ଷ ପର୍ଯ୍ୟନ୍ତ ସମୃଦ୍ଧି ଲାଭ କଲେ । ଶେଷରେ ପାର୍ଥିଆନ ନାମକ ଆଉ ଏକ ମଧ୍ୟ-ଏସିଆର ପାହାଡ଼ିଆ ଜାତି ସେମାନଙ୍କୁ ତଡ଼ିଦେଲେ । ଫାରୁସ ବା ପାର୍ଥିଆର ଏହି ପାର୍ଥିଆନମାନେ ରୋମାନ୍ ସାଧାରଣତନ୍ତ୍ର ଶେଷ ଅବସ୍ଥାରେ ରୋମାନ୍‌ମାନଙ୍କୁ ପରାସ୍ତ କଲେ ଏବଂ ପରେ ଯେଉଁ ସାମ୍ରାଜ୍ୟ ସ୍ଥାପିତ ହେଲା, ତାହା ସେମାନଙ୍କୁ ପରାସ୍ତ କରିବାରେ ସମ୍ପୂର୍ଣ୍ଣରୂପେ ଅସମର୍ଥ ହୋଇଥିଲା । ସେମାନେ ଅଢ଼େଇ ଶତାବ୍ଦୀ ଧରି ପାର୍ଥିଆ ଶାସନ କଲେ, ଏକ ଆଭ୍ୟନ୍ତରୀଣ ବିପ୍ଳବରେ ତଡ଼ା ଖାଇଲେ । ପାର୍ଥିଆନ୍‌ମାନେ ବିଦେଶୀ ଶାସକମାନଙ୍କର ବିରୁଦ୍ଧରେ ଉଠିଲେ ଏବଂ ନିଜ ଜାତି ଓ ଧର୍ମର ଜଣେ ଲୋକଙ୍କୁ ତାଙ୍କ ସ୍ଥାନରେ ବସାଇଲେ । ଏହାଙ୍କ ନାମ ହେଉଛି ପ୍ରଥମ ଆର୍ଦ୍ଦେଶୀର ଏବଂ ଏହାଙ୍କ ବଂଶକୁ ସସାନୀଦ ବଂଶ ବୋଲି କହନ୍ତି । ଆର୍ଦ୍ଦେଶୀର ପାର୍ଶି ଧର୍ମର ଜଣେ ପ୍ରବଳ ସମର୍ଥକ ଥିଲେ ଏବଂ ସେ ଅନ୍ୟ ଧର୍ମସବୁ ସହ୍ୟ କରିପାରୁ ନ ଥିଲେ । ସସାନୀଦ ଓ ରୋମାନ ସାମ୍ରାଜ୍ୟ ଭିତରେ ପ୍ରାୟ ବରାବର ଯୁଦ୍ଧ ଲାଗିଥିଲା; ଏପରି କି ଜଣେ ରୋମାନ ସମ୍ରାଟ୍‌ଙ୍କୁ ସେମାନେ ବନ୍ଦୀ କରି ନେଇଥିଲେ । କେତେକ ଘଟଣାରେ ପାର୍ଶିଆନ ସେନା ପ୍ରାୟ କନଷ୍ଟାଣ୍ଟିନୋପଲରେ ପହଞ୍ଚି ଯାଇଥିଲେ । ଥରେ ସେମାନେ ଇଜିପ୍ଟ ବିଜୟ କଲେ । ସସାନୀଦ ସାମ୍ରାଜ୍ୟ ମୁଖ୍ୟତଃ ପାର୍ଶି ଧର୍ମ ପ୍ରଚାର ସକାଶେ ଉଲ୍ଲେଖଯୋଗ୍ୟ । ସପ୍ତମ ଶତାବ୍ଦୀରେ ଯେତେବେଳେ ଇସଲାମ ଆସି ପହଞ୍ଚିଲା, ଏହା ସସାନୀଦ ସାମ୍ରାଜ୍ୟ ଓ ତାର

ରାଜଧର୍ମକୁ ଲୋପ କରିଦେଲା । ଅନେକ ପାର୍ଶି ଧର୍ମାବଲମ୍ବୀ ଏହି ପରିବର୍ତ୍ତନ ହେତୁ ଏବଂ ଶାସ୍ତି ପାଇବା ଭୟରେ ନିଜ ଦେଶ ତ୍ୟାଗ କରିବାକୁ ପସନ୍ଦ କଲେ ଏବଂ ସେମାନେ ଭାରତକୁ ଆସିଲେ । ଏଠାରେ ଅନ୍ୟ ଆଶ୍ରିତ ଲୋକଙ୍କୁ ସ୍ୱାଗତ କଲା ପରି ଏମାନଙ୍କୁ ମଧ୍ୟ ଭାରତ ସ୍ୱାଗତ କରିଥିଲା । ଭାରତର ପାର୍ଶିମାନେ ଏହି ଜୋରୋଷ୍ଟ୍ରିଆନମାନଙ୍କର ବଂଶଧର ।

ବିଭିନ୍ନ ଧର୍ମ ପ୍ରତି ଭାରତ ଓ ଅନ୍ୟ ଦେଶରେ କିପରି ବ୍ୟବହାର କରାଯାଉଛି, ତାହା ତୁଳନା କଲେ ବିଚିତ୍ର ଏବଂ ବେଳେ ବେଳେ ଆଶ୍ଚର୍ଯ୍ୟ ବୋଧ ହୁଏ । ତୁ ଦେଖିବୁ, ଅତୀତରେ ଅଧିକାଂଶ ସ୍ଥଳରେ ବିଶେଷତଃ ଇଉରୋପରେ ଯେଉଁମାନେ ସରକାରୀ ଧର୍ମ ଗ୍ରହଣ କରି ନାହାନ୍ତି, ସେମାନଙ୍କ ପ୍ରତି ଅସହିଷ୍ଣୁ ଭାବରେ ବ୍ୟବହାର କରାଯାଇଛି ଓ ଶାସ୍ତି ଦିଆଯାଇଛି । ପ୍ରାୟ ପ୍ରତ୍ୟେକ ସ୍ଥାନରେ ବାଧ୍ୟତା ପ୍ରୟୋଗ କରାଯାଇଛି । ଇଉରୋପର ଭୀଷଣ ଇନକ୍ୟୁଜିସନ (Inquistion) ଓ ତଥାକଥିତ ଡାଆଣୀମାନଙ୍କୁ ପୋଡ଼ିବା କଥା ପଢ଼ିଛୁ । କିନ୍ତୁ ଭାରତରେ ପୂର୍ବକାଳରେ ପ୍ରାୟ ପୂର୍ଣ୍ଣ ସହନଶୀଳତା ଥିଲା । ପାଶ୍ଚାତ୍ୟ ଦେଶରେ ଧର୍ମସମ୍ପ୍ରଦାୟଙ୍କ ଭିତରେ ହୋଇଥିବା ହିଂସ୍ର ସଂଗ୍ରାମ ତୁଳନାରେ ଭାରତରେ ହିନ୍ଦୁଧର୍ମ ଓ ବୌଦ୍ଧଧର୍ମ ମଧ୍ୟରେ ହୋଇଥିବା କ୍ଷୀଣ ବିବାଦ କିଛି ନୁହେଁ । ତୋର ମନେଥିବ, ଦୁର୍ଭାଗ୍ୟବଶତଃ ଆଜିକାଲି ଆମର ଧର୍ମ ସମ୍ବନ୍ଧୀୟ ଓ ସାମ୍ପ୍ରଦାୟିକ ଗୋଲମାଲ ଲାଗିଛି ଏବଂ ଇତିହାସ ବିଷୟରେ ଅନଭିଜ୍ଞ କେତେକ ଲୋକ ଭାବନ୍ତି ଯେ ଯୁଗ ଯୁଗ ଧରି ଭାରତରେ ଏହା ଲାଗିରହିଛି; ଏହା ସମ୍ପୂର୍ଣ୍ଣ ଭୁଲ । ଏପରି ଗୋଲମାଲସବୁ ଅଧିକ ପରିମାଣରେ ଆଜିକାଲିକାର ସୃଷ୍ଟି । ତୁ ଦେଖିପାରିବୁ, ଇସଲାମ ଧର୍ମ ଆରମ୍ଭ ହେଲା ପରେ ଭାରତର ଅନେକ ଅଞ୍ଚଳରେ ଅନେକ ବର୍ଷ ପର୍ଯ୍ୟନ୍ତ ମୁସଲମାନମାନେ ପୂର୍ଣ୍ଣ ଶାନ୍ତିରେ ତାଙ୍କର ପଡ଼ୋଶୀମାନଙ୍କ ସହିତ ବାସ କରୁଥିଲେ । ବେପାରୀ ଭାବରେ ଆସିଲାବେଳେ ସେମାନଙ୍କୁ ସ୍ୱାଗତ କରାଗଲେ ଏବଂ ବସବାସ ସ୍ଥାପନ କରିବା ନିମନ୍ତେ ଉତ୍ସାହିତ କରାଗଲା । ମାତ୍ର ମୁଁ ଟିକିଏ ଆଗରୁ କହି ପକାଉଛି ।

ଠିକ୍ ଯେପରି ପ୍ରଥମ ଶତାବ୍ଦୀରେ ଶାସ୍ତି ଭୟରେ ରୋମରୁ ପଳାଇ ଆସୁଥିବା ଇହୁଦୀମାନଙ୍କୁ କେତେ ଶହ ବର୍ଷ ପୂର୍ବରୁ ଭାରତ ସ୍ୱାଗତ କରିଥିଲା, ସେହିପରି ଜୋରୋଷ୍ଟ୍ରିଆନମାନଙ୍କୁ ମଧ୍ୟ ସ୍ୱାଗତ କଲା ।

ଇରାନ୍‌ରେ ସସାନିଦ ରାଜତ୍ୱକାଳରେ ସିରିୟାର ପାମିର ମରୁଭୂମିରେ ଏକ ରାଷ୍ଟ୍ର ଉନ୍ନତିଲାଭ କଲା ଏବଂ ଅଳ୍ପକାଳ ନିମନ୍ତେ ଏହା ଖୁବ୍ ଧନ ଅର୍ଜନ କରିଥିଲା । ସିରିଆ ମରୁଭୂମିର ମଧ୍ୟଭାଗରେ ପାମିର ଏକ ବେପାର ବଜାର ଥିଲା । ଆଜି ବି ଯେଉଁସବୁ ଭଗ୍ନାବଶେଷ ଦେଖାଯାଏ, ସେଥିରୁ ପ୍ରକାଣ୍ଡ ପ୍ରାସାଦର ଅଂଶମାନ ଆମେ ଦେଖିପାରୁଁ ।

ପରେ ଜେନୋବିଆ ନାମକ ଜଣେ ସ୍ତ୍ରୀଲୋକ ଏହି ରାଷ୍ଟ୍ରର ଶାସକ ଥିଲେ; କିନ୍ତୁ ରୋମାନ୍‌ମାନେ ତାଙ୍କୁ ପରାସ୍ତ କଲେ ଏବଂ ସେମାନେ ଅତି ଅନୁଦାର ଭାବରେ ତାଙ୍କୁ ଜଞ୍ଜିରରେ ବାନ୍ଧି ରୋମକୁ ନେଇ ଯାଇଥିଲେ ।

ଖ୍ରୀଷ୍ଟିୟାନ ଯୁଗ ଆରମ୍ଭରେ ସିରିୟା ଏକ ଆମୋଦଦାୟକ ସ୍ଥଳ ଥିଲା । ନୂତନ ଟେଷ୍ଟାମେଣ୍ଟରେ ଏ ସମ୍ବନ୍ଧରେ କିଛି ବର୍ଣ୍ଣନା ଅଛି । ଲୁଣାସନ ଓ ଅତ୍ୟାଚାର ସତ୍ତ୍ୱେ ବଡ଼ ବଡ଼ ସହର ଓ ବହୁତ ଲୋକ ସେଠାରେ ବାସ କରୁଥିଲେ; ବୃହତ୍ କେନାଲମାନ ଏବଂ ଏକ ବିସ୍ତୃତ ବାଣିଜ୍ୟ ବି ଚଳୁଥିଲା । କିନ୍ତୁ ଅବିରତ ଯୁଦ୍ଧ, କୁଶାସନ ହେତୁ ୬୦୦ ବର୍ଷ ଭିତରେ ଏହି ଦେଶ ଏକପ୍ରକାର ମରୁଭୂମିରେ ପରିଣତ ହୋଇଗଲା—ବଡ଼ ବଡ଼ ସହରମାନ ଖାଲି ପଡ଼ିଲା ଏବଂ ପୁରାତନ କୋଠାବାଡ଼ି ଧ୍ୱଂସ ପାଇଗଲା ।

ତୁ ଯଦି ଉଡ଼ାଜାହାଜରେ ଭାରତରୁ ଇଉରୋପକୁ ଯାଉ, ତେବେ ପାମିର ଓ ବାଲ୍‌ବାକର ଏହି ଭଗ୍ନାବଶେଷ ଅତିକ୍ରମ କରି ଯିବୁ । ବେବିଲୋନ କେଉଁଠି ଥିଲା ଏବଂ ଇତିହାସପ୍ରସିଦ୍ଧ ଆହୁରି ଅନେକ ସ୍ଥାନ ଦେଖିପାରିବୁ, ସେଗୁଡ଼ିକ ଆଜି ଆଉ ନାହିଁ ।

## ୩୬ । ଦକ୍ଷିଣ-ଭାରତର ଉପନିବେଶ

ଏପ୍ରିଲ ୨୮, ୧୯୩୨

ଆମେ ଖୁବ୍ ଦୂର ଭ୍ରମଣ କଲେ । ଚାଲ ଭାରତକୁ ଫେରିଯିବା ଏବଂ ଏ ଦେଶରେ ଆମର ପୂର୍ବପୁରୁଷମାନେ କ'ଣ କରୁଥିଲେ ଦେଖିବା । କୁଶାଣମାନଙ୍କ ସୀମାନ୍ତ ସାମ୍ରାଜ୍ୟ କଥା ତୋର ମନେଥିବ—ଏହା ଏକ ବିଶାଳ ବୌଦ୍ଧ ରାଷ୍ଟ୍ର, ସମଗ୍ର ଉତ୍ତର-ଭାରତ ଓ ମଧ୍ୟ-ଏସିଆର କେତେକ ଅଞ୍ଚଳ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ପୁରୁଷପୁର ବା ପେଶାବାର ଏହାର ରାଜଧାନୀ ଥିଲା । ତୁ ଦେଖିବୁ ଯେ ଏହି ସମୟରେ ଭାରତର ଦକ୍ଷିଣରେ ଏକ ସମୁଦ୍ରରୁ ଅନ୍ୟ ସମୁଦ୍ର ପର୍ଯ୍ୟନ୍ତ ଆନ୍ଧ୍ର ପରି ଏକ ବିରାଟ ରାଷ୍ଟ୍ର ଥିଲା । ପ୍ରାୟ ୩୦୦ ବର୍ଷ ପର୍ଯ୍ୟନ୍ତ କୁଶାଣ ଓ ଆନ୍ଧ୍ରମାନେ ସମୃଦ୍ଧିଲାଭ କଲେ । ତୃତୀୟ ଶତାବ୍ଦୀର ମଧ୍ୟ ବେଳକୁ ଏହି ଦୁଇଟି ସାମ୍ରାଜ୍ୟ ଲୋପ ପାଇଗଲା ଏବଂ ଭାରତରେ କିଛିକାଳ ଅନେକଗୁଡ଼ିଏ କ୍ଷୁଦ୍ର ରାଷ୍ଟ୍ର ଦେଖାଦେଲା । ଯାହାହେଉ ୧୦୦ ବର୍ଷ ଭିତରେ ପାଟଳୀପୁତ୍ରଠାରେ ଆଉ ଏକ ଚନ୍ଦ୍ରଗୁପ୍ତଙ୍କର ଆବିର୍ଭାବ ହେଲା ଏବଂ ଏକ ଉଗ୍ର ହିନ୍ଦୁ ସାମ୍ରାଜ୍ୟବାଦର ଯୁଗ ଆରମ୍ଭ ହେଲା । ଲୋକେ ତାଙ୍କୁ ଗୁପ୍ତ ବୋଲି କହନ୍ତି, କିନ୍ତୁ ତାଙ୍କ

ସମ୍ବନ୍ଧରେ ଆଲୋଚନା କରିବା ପୂର୍ବରୁ ପ୍ରଥମେ ଭାରତର କଳା ଓ ସଂସ୍କୃତି କିପରି ସୁଦୂର ପ୍ରାଚ୍ୟ ଦ୍ୱୀପରେ ପ୍ରସୃତ ହେଲା ସେଥିପ୍ରତି ଆମେ ଦୃଷ୍ଟି ଦେବା ।

ଭାରତର ଆକୃତି ତୋତେ ଭଲରୂପେ ଜଣା—ଏହା ହିମାଳୟ ଓ ଦୁଇ ସାଗର ମଧ୍ୟରେ ଅବସ୍ଥିତ । ଉତ୍ତର ଦିଗ ସମୁଦ୍ରଠାରୁ ବହୁତ ଦୂରରେ । ଅତୀତକାଳରେ ଏହି ସ୍ଥଳସୀମାନ୍ତ ବାଟ ଦେଇ ଶତ୍ରୁ ଓ ଆକ୍ରମଣକାରୀମାନେ ଆସୁଥିଲେ । କିନ୍ତୁ ପୂର୍ବ-ପଶ୍ଚିମ ଓ ଦକ୍ଷିଣରେ ଆମର ପ୍ରକାଣ୍ଡ ସମୁଦ୍ର ଉପକୂଳ ରହିଛି ଏବଂ ଭାରତ କ୍ରମେ କୃଶ ହୋଇ ଆସି ଶେଷରେ କନ୍ୟାକୁମାରୀ ବା କେପ କେମୋରିନଠାରେ ପୂର୍ବ ଦିଗ ପଶ୍ଚିମ ଦିଗ ସହିତ ମିଳିତ ହୋଇଛି । ସମୁଦ୍ରକୂଳରେ ବାସ କରୁଥିବା ଏହି ଲୋକମାନେ ସମୁଦ୍ରରେ ଆଗ୍ରହୀ ହେବା ସ୍ୱାଭାବିକ ଏବଂ ତାଙ୍କ ଭିତରୁ ଅନେକେ ସମୁଦ୍ରଯାତ୍ରୀ ଜାତି ଥିଲେ । ଅତୀତକାଳରୁ ଦକ୍ଷିଣ-ଭାରତ ପାଶ୍ଚାତ୍ୟ ଦେଶ ସହିତ କିପରି ଖୁବ୍ ବାଣିଜ୍ୟ କରୁଥିଲା, ତାହା ମୁଁ ତୋତେ ଆଗରୁ କହିଛି । ତେଣୁ ଆଦିକାଳରୁ ଭାରତରେ ଜାହାଜ ତିଆରି ହେଉଥିବା ଏବଂ ଲୋକେ ବେପାର ଖୋଜିବା ଲାଗି କିମ୍ବା ହୁଏତ ଦୁଃସାହସ ପାଇଁ ସମୁଦ୍ରଯାତ୍ରା ଯେ କରୁଥିଲେ, ଏଥିରେ ଆଶ୍ଚର୍ଯ୍ୟ କିଛି ନାହିଁ । ବିଜୟ ଭାରତରୁ ସିଲୋନ ଯାଇଥିଲେ ଏବଂ ଗୌତମ ବୁଦ୍ଧ ବାସ କରୁଥିବା ବେଳେ ସେ ସିଲୋନ ଜୟ କରିଥିଲେ ବୋଲି ଧରାଯାଏ । ଅଜନ୍ତା ଗୁମ୍ଫାରେ ମୋର ମନେହୁଏ, ଜାହାଜରେ ହାତୀ ଘୋଡ଼ାମାନ ବୋହି ନେଇ ବିଜୟ ସିଲୋନ ଯାଉଥିବା ଛବି ରହିଛି । ବିଜୟ ହିଁ ଏହି ଦ୍ୱୀପକୁ ସିଂହଳ ନାମ ଦେଲେ; ଏହାକୁ ସିଂହଳ ଦ୍ୱୀପ କହନ୍ତି । ସିଂହରୁ ସିଂହଳ ହୋଇଛି ଏବଂ ସିଲୋନରେ ଏହି ସିଂହ ସମ୍ବନ୍ଧରେ ଗୋଟିଏ ପୁରାତନ କାହାଣୀ ରହିଛି । ମୁଁ ତାହା ଭୁଲିଯାଇଛି । ମୋର ମନେହୁଏ ସିଂହଳରୁ ସିଲୋନ ଶବ୍ଦ ଆସିଛି ।

ଅବଶ୍ୟ ଦକ୍ଷିଣ-ଭାରତରୁ ସିଂହଳକୁ ଯିବା କିଛି ଗୋଟାଏ ବଡ଼ କାର୍ଯ୍ୟ ନୁହେଁ । ଆମ ପାଖରେ ଜାହାଜ ତିଆରି ହେବାର ଯଥେଷ୍ଟ ପ୍ରମାଣ ରହିଛି ଏବଂ ଲୋକେ ବଙ୍ଗଳାଠାରୁ ଗୁଜୁରାଟର ସମୁଦ୍ର ଉପକୂଳସ୍ଥ ଅନେକ ଭାରତୀୟ ବନ୍ଦରରୁ ସମୁଦ୍ର ଅତିକ୍ରମ କରିଯିବାର ପ୍ରମାଣ ଅଛି । ଚନ୍ଦ୍ରଗୁପ୍ତ ମୌର୍ଯ୍ୟଙ୍କ ପ୍ରଧାନମନ୍ତ୍ରୀ ଚାଣକ୍ୟ ଏହି ନୌବାହିନୀ ସମ୍ବନ୍ଧରେ ତାଙ୍କର ଅର୍ଥଶାସ୍ତ୍ର ପୁସ୍ତକରେ ଲେଖିଯାଇଛନ୍ତି । ନୈନ୍ନରୁ ଏହି ସମ୍ବନ୍ଧରେ ମୁଁ ତୋତେ ଲେଖିଥିଲି । ଚନ୍ଦ୍ରଗୁପ୍ତଙ୍କ ରାଜସଭାର ଗ୍ରୀକ୍‌ଦୂତ ମେଗାସ୍ଥିନିସ୍ ମଧ୍ୟ ଏହା ଲେଖିଯାଇଛନ୍ତି । ତେଣୁ ଏଥିରୁ ଜଣାଯିବ ଯେ ମୌର୍ଯ୍ୟଯୁଗର ଆରମ୍ଭବେଳେ ମଧ୍ୟ-ଭାରତରେ ଜାହାଜ ତିଆରି ଏକ ସମୃଦ୍ଧିଶାଳୀ ଶିଳ୍ପ ଥିଲା । ଜାହାଜସବୁ ଯେ ବ୍ୟବହାର ପାଇଁ ହୋଇଥିଲା ଏହା ସୁସ୍ପଷ୍ଟ । ତେଣୁ ବହୁ ଲୋକ

ସେଗୁଡ଼ିକରେ ଅବଶ୍ୟ ସମୁଦ୍ର ପାର ହେଉଥିବେ । ଏହା ଚିନ୍ତାକଲେ ବିସ୍ମୟ ଓ ଆଗ୍ରହ ଜାତ ହୁଏ ଏବଂ ତା'ପରେ ପୁଣି ଆଜିକାଲି ଆମର କେତେକ ଲୋକ ସମୁଦ୍ର ପାର ହେବାକୁ ଭୟ କରୁଥିବା ଏବଂ ଏହା ତାଙ୍କର ଧର୍ମର ବିରୁଦ୍ଧ ବୋଲି ବିଚାରୁଥିବା କଥା ଭାବିଲେ ଆହୁରି ମଜା ଲାଗେ । ଆମେ ଏହି ଲୋକମାନଙ୍କୁ ଅତୀତର ଅବଶେଷ ବୋଲି କହିପାରିବା ନାହିଁ । କାରଣ ତୁ ତ ଦେଖିଲୁ, ଅତୀତର ଲୋକେ ଆହୁରି ଅଧିକ ବୁଦ୍ଧିମାନ ଥିଲେ । ସୌଭାଗ୍ୟବଶତଃ ଏପରି ଅସମ୍ଭବ ଧାରଣାସବୁ ଏବେ ଅନେକ ପରିମାଣରେ ଦୂର ହୋଇଗଲାଣି ଏବଂ ଅଳ୍ପ କେତେକ ଲୋକ ଏହା ମାନି ଚଳୁଛନ୍ତି ।

ସ୍ୱାଭାବିକ ଭାବରେ ଦକ୍ଷିଣ ଉତ୍ତର ଅପେକ୍ଷା ସମୁଦ୍ର ଆଡ଼କୁ ବେଶି ଦୃଷ୍ଟି ଦେଲା । ଅଧିକାଂଶ ବିଦେଶୀ ବେପାର ଦକ୍ଷିଣ ସହିତ ହୋଇଥିଲା ଏବଂ ତାମିଲ କବିତାମାନଙ୍କରେ "ଯବନ", ମଦ, ପାତ୍ର ଓ ଦ୍ୱୀପମାନଙ୍କ ବିଷୟ ଉଲ୍ଲେଖ ରହିଛି । "ଯବନ" ଶବ୍ଦ ମୁଖ୍ୟତଃ ଗ୍ରୀକ୍‌ମାନଙ୍କୁ ଲକ୍ଷ୍ୟ କରି ଲେଖା ଯାଇଥିଲା; ମାତ୍ର ମୋଟାମୋଟି ଏହା ସମସ୍ତ ବିଦେଶୀଙ୍କ ପ୍ରତି ପ୍ରୟୋଗ କରାଯାଉଥିଲା । ଦ୍ୱିତୀୟ ଓ ତୃତୀୟ ଶତାବ୍ଦୀର ଆନ୍ଧ୍ର ମୁଦ୍ରାମାନଙ୍କରେ ବଡ଼ ଦୁଇ ମାସ୍ତୁଲ ଥିବା ଜାହାଜମାନଙ୍କର ଛବି ଦେଖାଯାଏ । ଏଥିରୁ ପୁରୁଣା ଆନ୍ଧ୍ରମାନେ ଜାହାଜ ତିଆରି ଓ ସମୁଦ୍ର-ବେପାରରେ କିପରି ଆଗ୍ରହ ପ୍ରକାଶ କରୁଥିଲେ, ତାହା ଜଣାପଡ଼େ ।

ତେଣୁ ସାହସପୂର୍ଣ୍ଣ କାର୍ଯ୍ୟରେ ଦକ୍ଷିଣ ହିଁ ଅଗ୍ରସର ହେଲା । ଏହା ଫଳରେ ପୂର୍ବରେ ସମସ୍ତ ଦ୍ୱୀପମାନଙ୍କରେ ଭାରତୀୟ ଉପନିବେଶମାନ ସ୍ଥାପିତ ହେଲା । ୧ମ ଶତାବ୍ଦୀରେ ଉପନିବେଶ କରିବା ପାଇଁ ଏହି ଯାତ୍ରା ଆରମ୍ଭ ହେଲା ଏବଂ ଶହ ଶହ ବର୍ଷ ପର୍ଯ୍ୟନ୍ତ ଏହା ରହିଲା । ମାଳୟ, ଜାଭା, ସୁମାତ୍ରା, କାମ୍ବୋଡ଼ିଆ ଓ ବୋର୍ଣ୍ଣିଓ ସବୁ ଆଡ଼କୁ ସେମାନେ ଯାଇଥିଲେ । ସେଠାରେ ନିଜକୁ ପ୍ରତିଷ୍ଠା କଲେ ଏବଂ ତାଙ୍କ ସହିତ ଭାରତୀୟ ସଂସ୍କୃତି ଓ ଭାରତୀୟ କଳା ମଧ୍ୟ ଗଲା । ବର୍ମା, ଶ୍ୟାମ ଓ ଇଣ୍ଡୋଚାଇନାରେ ବୃହତ୍ ଭାରତୀୟ ଉପନିବେଶମାନ ଥିଲା । ନୂତନ ସହର ଓ ବସତିମାନଙ୍କୁ ସେମାନେ ଯେଉଁ ନାମସବୁ ଦେଲେ, ତାହା ମଧ୍ୟ ଭାରତରୁ ନିଆଯାଇଥିଲା; ଯଥା :—ଅଯୋଧ୍ୟା, ହସ୍ତିନାପୁର, ତକ୍ଷଶୀଳା, ଗାନ୍ଧାର । ଇତିହାସରେ ବାରମ୍ବାର ଏକା କଥା କିପରି ଘଟେ, ଏହା ହିଁ ବିଚିତ୍ର । ଆମେରିକାକୁ ଯେଉଁ ଆଙ୍ଗ୍ଲୋସାକ୍‌ସନମାନେ ଯାଇଥିଲେ, ସେମାନେ ମଧ୍ୟ ସେହିପରି କରିଥିଲେ ଏବଂ ସଂଯୁକ୍ତ ରାଷ୍ଟ୍ର ଆମେରିକାର ସହର ଆଜି ବି ପୁରାତନ ଇଂରେଜ ସହରଗୁଡ଼ିକ ନାମରେ ପ୍ରସିଦ୍ଧ । ଏଥିରେ ସନ୍ଦେହ ନାହିଁ ଯେ ଅନ୍ୟ ଉପନିବେଶ ସ୍ଥାପୟିତାମାନେ ଯେପରି କରନ୍ତି, ସେହିପରି ଏହି ଭାରତୀୟମାନେ ଯେଉଁଠିକୁ ଯାଇଥିଲେ ସେଠାରେ ବଦ୍ ଆଚରଣ କରିଥିଲେ । ସେମାନେ ଏହି ଦ୍ୱୀପର ଲୋକମାନଙ୍କୁ ଅବଶ୍ୟ ଶୋଷଣ କରିଥିବେ ଓ ତାଙ୍କ ଉପରେ ପ୍ରଭୁତ୍ୱ କରିଥିବେ; କିନ୍ତୁ କେତେ ଦିନ ପରେ ଏହି

ଉପନିବେଶ ସ୍ଥାପୟିତା ଓ ପୁରାତନ ଅଧିବାସୀମାନେ ଅବଶ୍ୟ ମିଳାମିଶି ଯାଇଥିବେ; କାରଣ ଭାରତ ସହିତ ଘନିଷ୍ଠ ସମ୍ପର୍କ ରଖିବା କଷ୍ଟକର ଥିଲା । ଏହିସବୁ ପ୍ରାଚ୍ୟ ଦ୍ୱୀପମାନଙ୍କରେ ହିନ୍ଦୁ କୃଷ୍ଟି ଓ ସାମ୍ରାଜ୍ୟ ସ୍ଥାପିତ ହୋଇଥିଲା । ତାପରେ ବୌଦ୍ଧଶାସକମାନେ ଆସିଲେ ଏବଂ ହିନ୍ଦୁ ଓ ବୌଦ୍ଧଙ୍କ ଭିତରେ ପ୍ରଭୁତ୍ୱ ଲାଗି ବଳ କଷାକଷି ଲାଗିଲା । ଏହା ଏକ ଦୀର୍ଘ ଓ ଚିତ୍ତାକର୍ଷକ କାହାଣୀ—ଏହାକୁ ଦୂର ବା ବିଶାଳ ଭାରତର ଇତିହାସ ବୋଲି କୁହାଯାଏ । ଏହି ଭାରତୀୟ ବସତିମାନଙ୍କରେ କିପରି ପ୍ରକାଣ୍ଡ ପ୍ରାସାଦ ଓ ମନ୍ଦିରମାନ ଶୋଭା ପାଉଥିଲା, ତାହା ତାହାର ଭଗ୍ନାବଶେଷମାନଙ୍କରୁ ଦେଖାଯାଏ । ଅନେକ ପ୍ରଧାନ ପ୍ରଧାନ ସହର ଭାରତର ଶିଳ୍ପୀ ଓ କାରିଗରମାନେ ତିଆରି କରିଥିଲେ; ଯଥା.– କାମ୍ବୋଜା, ଶ୍ରୀବିଜୟ, ଆଙ୍ଗକୋର ଓ ମଦଜାପାହିତ ।

ପ୍ରାୟ ୧୪୦୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଏହିସବୁ ଦ୍ୱୀପମାନଙ୍କରେ ହିନ୍ଦୁ ଓ ବୌଦ୍ଧ କୃଷ୍ଟି ତିଷ୍ଠି ରହିଥିଲା । ପରସ୍ପର ବିରୁଦ୍ଧରେ ପ୍ରଭୁତ୍ୱ ପାଇଁ ବିବାଦ ଲାଗୁଥିଲା, ବେଳେ ବେଳେ ଜଣକ ହାତରୁ ଅନ୍ୟ ହାତକୁ ଚାଲି ଯାଉଥିଲା ଏବଂ ସେମାନେ ପରସ୍ପରଙ୍କୁ ବିନଷ୍ଟ ବି କରୁଥିଲେ । ପଞ୍ଚଦଶ ଶତାବ୍ଦୀର ଶେଷରେ ମୁସଲମାନମାନେ କ୍ଷମତା ଲଭ କଲେ ଏବଂ ଅଳ୍ପଦିନ ପରେ ପର୍ତ୍ତୁଗୀଜ୍, ସ୍ପେନବାସୀ, ଡଚ, ଇଂରେଜ ଏବଂ ଶେଷକୁ ଆମେରିକାନମାନେ ଆସିଲେ । ଅବଶ୍ୟ ଚୀନ ଲୋକେ ସର୍ବଦା ପଡ଼ୋଶୀ ହୋଇ ରହିଥିଲେ, ବେଳେ ବେଳେ ହସ୍ତକ୍ଷେପ କରୁଥିଲେ ଓ ଜୟଲଭ ବି କରୁଥିଲେ । ଅନେକ ସମୟରେ ବନ୍ଧୁଭାବରେ ବାସ କରୁଥିଲେ ଓ ପରସ୍ପର ଭିତରେ ଦେଣନେଣ ବି ଚାଲିଥିଲା, ସର୍ବଦା ତାଙ୍କର ବିରାଟ ସଂସ୍କୃତି ଓ ସଭ୍ୟତାରେ ଏମାନଙ୍କୁ ପ୍ରଭାବିତ କରୁଥିଲେ ।

ପୂର୍ବର ଏହି ହିନ୍ଦୁ ଉପନିବେଶମାନଙ୍କର ଅନେକ ବିଷୟ ପ୍ରତି ଆମର ଆଗ୍ରହ ଜନ୍ମେ । ଏକ ଅତି ଉଲ୍ଲେଖଯୋଗ୍ୟ ଘଟଣା ହେଉଛି ଯେ ସେ କାଳରେ ଦକ୍ଷିଣ-ଭାରତର ଏକ ପ୍ରଧାନ ଶାସନଦ୍ୱାରା ଏହିସବୁ ଉପନିବେଶମାନ ସଂଗଠିତ ହୋଇଥିଲା । ପ୍ରଥମେ ଅବଶ୍ୟ ଅନେକ ବ୍ୟକ୍ତିଗତ ଆବିଷ୍କାରକ ଆସିଥିବେ, ତା ପରେ ବେପାର ବୃଦ୍ଧି ସଙ୍ଗେ ସଙ୍ଗେ ନିଜର ଇଚ୍ଛା ଅନୁସାରେ ଅନେକ ପରିବାର ଓ ଗୋଷ୍ଠୀସବୁ ଆସିଥିବେ । କୁହାଯାଏ ଯେ କଳିଙ୍ଗ (ଓଡ଼ିଶା) ଓ ପୂର୍ବ ଉପକୂଳର ଲୋକେ ହିଁ ଏଠି ଯାଇ ପ୍ରଥମେ ବସବାସ କରିଥିଲେ । ସମ୍ଭବତଃ କେତେକ ଲୋକ ବଙ୍ଗଳାରୁ ମଧ୍ୟ ଆସିଥିଲେ । ନିଜ ଦେଶରୁ ତଡ଼ାଖାଇ କେତେକ ଗୁଜରାଟୀ ବି ଏହି ଦ୍ୱୀପମାନଙ୍କୁ ଆସିଥିଲେ ବୋଲି ଗୋଟାଏ ଶ୍ରୁତି ରହିଛି । ମାତ୍ର ଏସବୁ ଖାଲି କଳ୍ପନା । ପଲ୍ଲବ ଦେଶରୁ ହିଁ ଲୋକ-ସ୍ରୋତ ଏଠିକି ଯାଇଥିଲେ—ତାମିଲନାଡ଼ୁର ଦକ୍ଷିଣ ଅଞ୍ଚଳରେ ପଲ୍ଲବବଂଶ ରାଜୁତି କରୁଥିଲେ । ଏହି ପଲ୍ଲବ ସରକାର ମାଲୟରେ ଉପନିବେଶ ସ୍ଥାପନ କରିଥିବାର ଜଣାପଡ଼େ । ସମ୍ଭବତଃ ଉତ୍ତର ଭାରତରୁ ଲୋକେ ମାଡ଼ି ଆସିବାରୁ ଏମାନଙ୍କ ଉପରେ ଚାପ ପଡ଼ିଥିଲା । ଯାହା କାରଣ

ହେଉନା କାହିଁକି ଭାରତରୁ ବହୁତ ଦୂରରେ ବିସ୍ତୃତ ଭାବରେ ବିଭିନ୍ନ ସ୍ଥାନମାନଙ୍କରେ ଉପନିବେଶମାନ ବସାଇବା ପାଇଁ ଯୋଜନା ହୋଇଥିଲା ଓ ପ୍ରାୟ ଏକାବେଳେ ଉପନିବେଶ ସ୍ଥାପିତ ହୋଇଥିଲା । ଏହିସବୁ ଉପନିବେଶ ଇଣ୍ଡୋଚାଇନା, ମାଳୟ, ସୁମାତ୍ରା, ବୋର୍ଣ୍ଣିଓ, ଜାଭା ଓ ଅନ୍ୟ ସ୍ଥାନରେ ଥିଲା । ଏଗୁଡ଼ିକ ପଲ୍ଲବ ଉପନିବେଶ ଏବଂ ଏହାର ଭାରତୀୟ ନାମ ରହିଛି । ଇଣ୍ଡୋଚାଇନାରେ ଏ ବସତିକୁ କାମ୍ବୋଜା କୁହାଯାଉଥିଲା (ବର୍ତ୍ତମାନ କାମ୍ବୋଡ଼ିଆ) । ଏହି ନାମ ଗାନ୍ଧାରର କାବୁଲ ଉପତ୍ୟକାର କାମ୍ବୋଜାରୁ ଆସିଥିଲା ।

୪୦୦/୫୦୦ ବର୍ଷ ପର୍ଯ୍ୟନ୍ତ ଏହି ବସତିଗୁଡ଼ିକରେ ହିନ୍ଦୁଧର୍ମ ପ୍ରଚଳିତ ଥିଲା । ତାପରେ ବୌଦ୍ଧଧର୍ମ କ୍ରମେ ଚାରିଆଡ଼େ ପ୍ରଚଳିତ ହେଲା । ଅନେକ ବିଳମ୍ବରେ ଇସ୍‌ଲାମ ଆସିଲା ଏବଂ ମାଳୟର ଏକାଂଶରେ ବିସ୍ତାର ଲଭିଲା । ଅନ୍ୟ ଅଞ୍ଚଳଟି ବୌଦ୍ଧ ହୋଇ ରହିଲା ।

ମାଳୟ ଦେଶକୁ ସାମ୍ରାଜ୍ୟ ଓ ରାଜ୍ୟସବୁ ଆସିଛି ଏବଂ ଯାଇଛି; କିନ୍ତୁ ଦକ୍ଷିଣ-ଭାରତର ଏହି ଉପନିବେଶ ସ୍ଥାପନ ଉଦ୍ୟମର ବାସ୍ତବିକ ଫଳସ୍ୱରୂପ ପୃଥିବୀର ଏହି ଅଞ୍ଚଳରେ ଭାରତୀୟ ଆର୍ଯ୍ୟସଭ୍ୟତାର ପ୍ରଚଳନ ହେଲା ଏବଂ ଆମେ ଯେଉଁ ସଭ୍ୟତାରେ ଜାତ, ମାଳୟର ଲୋକ କେତେକ ପରିମାଣରେ ସେହି ସଭ୍ୟତାର ସନ୍ତାନ । ସେମାନଙ୍କ ଉପରେ ଅନ୍ୟ ସଭ୍ୟତା ବିଶେଷତଃ ଚୀନ ସଭ୍ୟତାର ଛାପ ପଡ଼ିଥିଲା । ଭାରତୀୟ ଓ ଚୀନ ଏହି ଦୁଇଟି ପ୍ରଭାବଶାଳୀ ପ୍ରଭାବର ଅଦ୍ଭୁତ ସମ୍ମିଶ୍ରଣ ମାଲେସିଆର ବିଭିନ୍ନ ରାଜ୍ୟରେ ଦେଖାଯାଏ । କେତେକରେ ଅଧିକ ଭାରତ ସଭ୍ୟତା ରହିଛି; ଅନ୍ୟଠି ଚୀନ ସଭ୍ୟତା ବେଶି ପରିଲକ୍ଷିତ ହୁଏ । ବର୍ମା, ଶ୍ୟାମ ଓ ଇଣ୍ଡୋଚାଇନାରେ ଚୀନ ପ୍ରଭାବ ଅଧିକ ରହିଛି; କିନ୍ତୁ ମାଳୟରେ ନୁହେଁ । ଜାଭା, ସୁମାତ୍ରା ଓ ଅନ୍ୟ ଦ୍ୱୀପମାନଙ୍କରେ ଭାରତୀୟ ପ୍ରଭାବ ଅଧିକ ସୁସ୍ପଷ୍ଟ—ଏବେ ଇସ୍‌ଲାମ ସେଥିରେ ମିଶ୍ରିତ ହୋଇଛି ।

କିନ୍ତୁ ଭାରତୀୟ ଓ ଚୀନ ସଭ୍ୟତା ଭିତରେ କୌଣସି ସଂଘର୍ଷ ହୋଇ ନ ଥିଲା । ସେଗୁଡ଼ିକ ଭିତରେ ସାମଞ୍ଜସ୍ୟ ନାହିଁ; ତଥାପି ବିନା ଅସୁବିଧାରେ ସମାନ ଭାବରେ ସେଗୁଡ଼ିକ କାର୍ଯ୍ୟ କରିଥିଲା । କି ହିନ୍ଦୁଧର୍ମ, କି ବୌଦ୍ଧଧର୍ମ ଦୁଇଟିଯାକ ଭାରତରୁ ଜାତ ହୋଇଥିଲା । ଏପରି କି ଭାରତରୁ ହିଁ ଚୀନ ତାର ଧର୍ମ ପାଇଥିଲା । କଳାକ୍ଷେତ୍ରରେ ମଧ୍ୟ ମାଲୟସିଆ * ରେ ଭାରତୀୟ ପ୍ରଭାବ ଅଧିକ ଥିଲା । ଇଣ୍ଡୋଚାଇନାରେ ଖୁବ୍ ଚୀନ ପ୍ରଭାବ ଥିଲେ ସୁଦ୍ଧା କାରୁକାର୍ଯ୍ୟ ଆଦି ସମ୍ପୂର୍ଣ୍ଣ ଭାରତୀୟ ଥିଲା । ଏହିସବୁ ରାଜ୍ୟମାନଙ୍କରେ ଚୀନର

*ମାଲୟସିଆ—ଏସିଆର ଦକ୍ଷିଣ-ପୂର୍ବରୁ ଅଷ୍ଟ୍ରେଲିଆ ପର୍ଯ୍ୟନ୍ତ ବିସ୍ତୃତ ଦ୍ୱୀପଗୁଡ଼ିକ ଏହାକୁ ଇଷ୍ଟ-ଇଣ୍ଡିଜ ବା ମାଲୟ ଆର୍କିପେଲେଗୋ କହନ୍ତି ।

ଶାସନପ୍ରଣାଳୀ ଓ ତାଙ୍କ ଜୀବନର ସାଧାରଣ ଦର୍ଶନର ପ୍ରଭାବ ଦେଖି ପଡ଼ୁଥିଲା । ତେଣୁ ଆଜି ଇଣ୍ଡୋଚାଇନା, ବର୍ମା ଓ ଶ୍ୟାମର ଲୋକେ ଭାରତୀୟ ଅପେକ୍ଷା ଚୀନାମାନଙ୍କ ଆଡ଼କୁ ଅଧିକ ଢଳିଛନ୍ତି । ଅବଶ୍ୟ ଜାତି ହିସାବରେ ସେମାନଙ୍କଠାରେ ଅଧିକ ମଙ୍ଗୋଲିଆନ ରକ୍ତ ରହିଛି ଏବଂ ସେଥି ସକାଶେ ସେମାନେ କେତେକ ପରିମାଣରେ ଚୀନାମାନଙ୍କ ପରି ବୋଧ ହୁଅନ୍ତି ।

ଭାରତୀୟ କାରିଗରମାନଙ୍କ ତିଆରି ବଡ଼ ବଡ଼ ମନ୍ଦିରମାନଙ୍କର ଅବଶେଷ ଏବେ ଜାଭାର ବୋରୋବଦୂରରେ ଦେଖାଯାଏ । ବୁଦ୍ଧଙ୍କ ଜୀବନର ସମସ୍ତ କାହାଣୀ ଏହିସବୁ କୋଠାର କାନ୍ଥରେ ଖୋଦିତ ହୋଇଛି ଏବଂ ସେଗୁଡ଼ିକ ଖାଲି ବୁଦ୍ଧଙ୍କର ନୁହେଁ, ସେକାଳର ଭାରତୀୟ କଳାର ବିଚିତ୍ର ଦୃଷ୍ଟାନ୍ତ ପରି ରହିଛି ।

ଭାରତୀୟ ପ୍ରଭାବ ଆହୁରି ଦୂରକୁ ଯାଇଥିଲା । ଏହା ଫିଲିପାଇନ, ଏପରି କି ଫର୍ମୋଜାକୁ ବି ଯାଇଥିଲା—ଏହି ଦୁଇଟିଯାକ ଦେଶ ଏକ ସମୟରେ ସୁମାତ୍ରାର ହିନ୍ଦୁ ଶ୍ରୀବିଜୟ ରାଜ୍ୟର ଅଂଶ ଥିଲା । ଅନେକ ଦିନ ପରେ ସ୍ପେନବାସୀ ଫିଲିପାଇନ ଶାସନ କଲେ ଏବଂ ଏବେ ସେମାନେ ଆମେରିକା ଅଧୀନରେ ରହିଛନ୍ତି । ଫିଲିପାଇନର ରାଜଧାନୀ ହେଉଛି ମାନିଲା । କେତେକ ଦିନ ହେଲା ସେଠାରେ ଏକ ନୂତନ ବ୍ୟବସ୍ଥାପକ ଗୃହ ତିଆରି ହୋଇଛି ଏବଂ ଏହାର ମୁଖଶାଳାରେ ଫିଲିପାଇନ ସଂସ୍କୃତିର ମୂଳାଧାର ପ୍ରତିଫଳିତ କରିବାଇ ଚାରିଗୋଟି ଚିତ୍ର ଖୋଦିତ ହୋଇଛି । ଏଗୁଡ଼ିକ ହେଉଛି—ପୁରାତନ ଭାରତର ଆଇନଦାତା ମନୁ; ଚୀନର ଦାର୍ଶନିକ ଲାଓଜୀ; ଆଉ ଦୁଇଟି ଛବିରେ ଆଙ୍ଗ୍ଲୋ ସାକ୍ସନ ଆଇନ ଓ ନ୍ୟାୟ ଏବଂ ସ୍ପେନର ଛବି ରହିଛି ।

## ୩୭ । ଗୁପ୍ତବଂଶ ଅନ୍ତର୍ଗତ ହିନ୍ଦୁ ସାମ୍ରାଜ୍ୟବାଦ

ଏପ୍ରିଲ ୨୧, ୧୯୩୨

ଦକ୍ଷିଣ-ଭାରତର ଲୋକେ ବିଶାଳ ସମୁଦ୍ର ପାର ହୋଇ ସୁଦୂର ଦେଶମାନଙ୍କରେ ବସତି ଓ ଉପନିବେଶମାନ ସ୍ଥାପନ କରୁଥିବା ବେଳେ ଭାରତର ଉତ୍ତରରେ ଅପୂର୍ବ ଦୃଶ୍ୟମାନ ଖେଳୁଥିଲା । କୁଶାନ ସାମ୍ରାଜ୍ୟ ତାର ଶକ୍ତି ଓ ଶ୍ରେଷ୍ଠତା ହରାଇଲା ଏବଂ ଏହା କ୍ଷୁଦ୍ରତର ହୋଇ ବିଲୀନ ହୋଇଯାଉଥିଲା । ସମଗ୍ର ଉତ୍ତରାଞ୍ଚଳରେ ଛୋଟ ଛୋଟ ରାଜ୍ୟସବୁ ଥିଲା; ଶକ ସିଦିଆନ ଓ ତୁର୍କୀ ବଂଶଧରମାନେ ଏଥିରେ ପ୍ରାୟ ଶାସନ କରୁଥିଲେ । ତୁର୍କୀମାନେ ଉତ୍ତର-ପଶ୍ଚିମ ସୀମାନ୍ତ ପାର ହୋଇ ଭାରତକୁ ଆସିଥିଲେ । ମୁଁ ତତେ କହିଛି, ଏମାନେ ବୌଦ୍ଧ

ଥିଲେ ଏବଂ ଶତ୍ରୁ ଭାବରେ ଭାରତ ଆକ୍ରମଣ କରିବା ପାଇଁ ନୁହେଁ, ଏଠାରେ ବସତି ସ୍ଥାପନ କରିବା ନିମନ୍ତେ ଆସିଥିଲେ । ମଧ୍ୟ-ଏସିଆର ଅନ୍ୟ ପାହାଡ଼ିଆ ଜାତି ନିର୍ଦ୍ଦୟ ଭାବରେ ସେମାନଙ୍କୁ ତଡ଼ି ଦେଇଥିଲେ – ସେମାନଙ୍କୁ ବି ଚୀନା ରାଜ୍ୟ ମାଡ଼ିଆସି ତଡ଼ି ଦେଇଥାଏ । ଭାରତକୁ ଆସି ଏମାନେ ବହୁପରିମାଣରେ ଭାରତୀୟ ଆର୍ଯ୍ୟଜାତି ଓ ପରମ୍ପରା ଗ୍ରହଣକଲେ । ଧର୍ମ, ସଂସ୍କୃତି ଓ ସଭ୍ୟତା ଦିଗରେ ଭାରତ ହିଁ ତାଙ୍କର ପିତୃଦେଶ ଥିଲା । କୁଶାନମାନେ ଅନେକ ପରିମାଣରେ ଇଣ୍ଡୋଆର୍ଯ୍ୟ ପରମ୍ପରା ଅନୁସରଣ କରିଥିଲେ । ବାସ୍ତବିକ ଏହି କାରଣରୁ ହିଁ ସେମାନେ ଦୀର୍ଘକାଳ ପର୍ଯ୍ୟନ୍ତ ଭାରତରେ ରହିପାରିଥିଲେ ଓ ଏଡ଼େ ବିରାଟ ଅଞ୍ଚଳରେ ଶାସନ କରିପାରିଲେ । ସେମାନେ ଭାରତୀୟ ଆର୍ଯ୍ୟଙ୍କ ପରି ଆଚରଣ କରିବାକୁ ଚେଷ୍ଟାକଲେ ଏବଂ ଚାହୁଁଥିଲେ ଯେ ସ୍ଥାନୀୟ ଲୋକେ ବିଦେଶୀ ବୋଲି ତାଙ୍କୁ ନ ଭାବନ୍ତୁ । କେତେକ ପରିମାଣରେ ସେମାନେ କୃତକାର୍ଯ୍ୟ ହେଲେ; ମାତ୍ର ପୂର୍ଣ୍ଣମାତ୍ରାରେ ନୁହେଁ । କାରଣ ବିଶେଷ ଭାବରେ କ୍ଷତ୍ରିୟଙ୍କ ଭିତରେ ଗୋଟାଏ ଭାବ ଥିଲା ଯେ ବିଦେଶୀମାନେ ତାଙ୍କ ଉପରେ ଶାସନ କରୁଛନ୍ତି । ସେମାନେ ବିଦେଶୀ ଶାସନ ଅଧୀନରେ ଉତ୍ତେଜିତ ହୋଇଗଲେ; ତେଣୁ ବିଶୃଙ୍ଖଳା ସୃଷ୍ଟି ହେଲା ଓ ଲୋକଙ୍କ ମନ ଆନ୍ଦୋଳିତ ହେଲା । ଶେଷରେ ଏହି ଅସନ୍ତୁଷ୍ଟ ଲୋକମାନଙ୍କର ଜଣେ ଦକ୍ଷ ନେତା ବାହାରିଲେ ଏବଂ ତାଙ୍କ ଅଧୀନରେ ଆର୍ଯ୍ୟାବର୍ତ୍ତକୁ ମୁକ୍ତ କରିବା ନିମନ୍ତେ ଏମାନେ ଯାହା କହନ୍ତି "ପବିତ୍ର ଯୁଦ୍ଧ" ଆରମ୍ଭ କଲେ ।

ଏହି ନେତାଙ୍କ ନାମ ଚନ୍ଦ୍ରଗୁପ୍ତ । ଏ ଅଶୋକଙ୍କ ପିତାମହ ଚନ୍ଦ୍ରଗୁପ୍ତ ନୁହନ୍ତି । ମୌର୍ଯ୍ୟବଂଶ ସହିତ ଏହାଙ୍କର କୌଣସି ସମ୍ପର୍କ ନ ଥିଲା । ସେ ପାଟଳୀପୁତ୍ର ରାଜାଙ୍କ ଅଧୀନରେ ଏକ ଛୋଟ ରାଜା ଥିଲେ; କିନ୍ତୁ ସେତେବେଳକୁ ଅଶୋକଙ୍କର ବଂଶଧରମାନେ ଅନ୍ଧକାରରେ ଲୀନ ହୋଇ ଯାଇଥିଲେ । ତୋର ମନେରଖିବାର କଥା, ଆମେ ବର୍ତ୍ତମାନ ଖ୍ରୀଷ୍ଟପର ଚତୁର୍ଥ ଶତାବ୍ଦୀ ଅର୍ଥାତ୍ ପ୍ରାୟ ୩୦୮ ଖ୍ରୀଷ୍ଟାବ୍ଦ ବିଷୟ ଆଲୋଚନା କରୁଛେଁ । ଏହା ଅଶୋକଙ୍କ ମୃତ୍ୟୁର ୫୩୪ ବର୍ଷ ପରର ଘଟଣା ।

ଚନ୍ଦ୍ରଗୁପ୍ତ ଉଚ୍ଚାଭିଳାଷୀ ଓ ଦକ୍ଷ ଥିଲେ । ସେ ଉତ୍ତରରେ ଅନ୍ୟ ଆର୍ଯ୍ୟ ସାମନ୍ତରାଜାମାନଙ୍କୁ ଜୟ କରିବାକୁ ଓ ସେମାନଙ୍କୁ ଯେପରି ଏକପ୍ରକାର ରାଷ୍ଟ୍ରସଂଘ ଗଢ଼ିବାକୁ ଚେଷ୍ଟାକଲେ । ପ୍ରସିଦ୍ଧ ଓ ପ୍ରଭାବଶାଳୀ ଲିଚ୍ଛବୀ ସମ୍ପ୍ରଦାୟର କୁମାରୀ ଦେବୀଙ୍କୁ ସେ ବିବାହ କରିଥିଲେ ଏବଂ ଏହିରୂପେ ସେ ସମ୍ପ୍ରଦାୟର ସମର୍ଥନ ପାଇଲେ । ଯତ୍ନ ସହକାରେ ନିଜର କ୍ଷେତ୍ର ପ୍ରସ୍ତୁତ କରିସାରି ଚନ୍ଦ୍ରଗୁପ୍ତ ଭାରତରେ ସମସ୍ତ ବିଦେଶୀ ଶାସକଙ୍କ ବିରୁଦ୍ଧରେ "ପବିତ୍ର ଯୁଦ୍ଧ" ଘୋଷଣା କଲେ । ବିଦେଶୀମାନଙ୍କ ଦ୍ୱାରା ନିଜର କ୍ଷମତା ଓ ପଦବୀରୁ ବଞ୍ଚିତ ହୋଇଥିବା କ୍ଷତ୍ରିୟ ଓ ଆର୍ଯ୍ୟ ଏହି ଯୁଦ୍ଧର ପଶ୍ଚାତରେ ଥିଲେ । ଅନେକ ବର୍ଷ

ଯୁଦ୍ଧ କଲାପରେ ଚନ୍ଦ୍ରଗୁପ୍ତ ଉତ୍ତର-ଭାରତର ଏକାଂଶ ଉପରେ କର୍ତ୍ତୃତ୍ୱ କରିପାରିଲେ । ବର୍ତ୍ତମାନର ଯୁକ୍ତପ୍ରଦେଶ* ଏହାର ଅନ୍ତର୍ଭୁକ୍ତ ଥିଲା । ତାପରେ ସେ ନିଜକୁ ରାଜାଧିରାଜ ବୋଲି ପ୍ରଚାର କଲେ ।

ଏହିରୂପେ ଗୁପ୍ତବଂଶ ଆରମ୍ଭ ହେଲା । ହୁନ୍‌ମାନେ ଆସି ହଇରାଣ କରିବା ପର୍ଯ୍ୟନ୍ତ ପ୍ରାୟ ୨୦୦ ବର୍ଷ କାଳ ଏହା ରହିଲା । ଏହା ଏକପ୍ରକାର ଉଗ୍ର ହିନ୍ଦୁଧର୍ମ ଓ ଜାତୀୟତାର ବେଳ । ତୁର୍କୀ, ପାର୍ଥିଆନ୍ ଓ ଅନ୍ୟ ଅନାର୍ଯ୍ୟ ବିଦେଶୀ ଶାସକମାନଙ୍କର ମୂଳୋତ୍ପାଟନ କରାଗଲା ଏବଂ ବଳପୂର୍ବକ ତଡ଼ି ଦିଆଗଲା । ତେଣୁ ଆମେ ଜାତିଗତ ବିରୋଧିତା କାର୍ଯ୍ୟ କରୁଥିବାର ଦେଖିପାରୁ । ଭାରତୀୟ ଆର୍ଯ୍ୟ ଆଭିଜାତ୍ୟ ଥିବା ଶ୍ରେଣୀ ନିଜ ଜାତିର ଗର୍ବ କରୁଥିଲେ ଏବଂ ଏହି ବର୍ବର ଓ ମ୍ଳେଚ୍ଛମାନଙ୍କୁ ନୀଚ ଦୃଷ୍ଟିରେ ଦେଖୁଥିଲେ । ଗୁପ୍ତମାନେ ଯେଉଁ ଭାରତୀୟ ଆର୍ଯ୍ୟରାଷ୍ଟ୍ର ଓ ଶାସକମାନଙ୍କୁ ଜୟ କରୁଥିଲେ, ସେମାନଙ୍କ ସହ କୋହଳ ବ୍ୟବହାର କରୁଥିଲେ । କିନ୍ତୁ ଆର୍ଯ୍ୟମାନଙ୍କ ପ୍ରତି ଆଦୌ ଦୟା ଦେଖାଉ ନ ଥିଲେ ।

ଚନ୍ଦ୍ରଗୁପ୍ତଙ୍କ ପୁତ୍ର ସମୁଦ୍ରଗୁପ୍ତ ତାଙ୍କ ପିତାଙ୍କ ଅପେକ୍ଷା ଅଧିକ ଉଗ୍ର ଥିଲେ । ସେ ଜଣେ ପ୍ରଧାନ ଯୋଦ୍ଧା ଥିଲେ ଏବଂ ସମ୍ରାଟ୍ ହେବାରୁ ସମଗ୍ର ଦେଶ ଏବଂ ଏପରି କି ଦକ୍ଷିଣରେ ଅଭିଯାନ କରି ଯଶସ୍ୱୀ ହେଲେ । ସେ ଗୁପ୍ତ ସାମ୍ରାଜ୍ୟ ବିସ୍ତାର କଲେ । ଶେଷରେ ଏହା ଭାରତର ବହୁ ଅଞ୍ଚଳରେ ବ୍ୟାପିଗଲା । ଦକ୍ଷିଣରେ ତାଙ୍କର ପ୍ରାଧାନ୍ୟ ନାମକୁ ମାତ୍ର ଥିଲା । ଉତ୍ତରରେ କୁଶାନମାନଙ୍କୁ ସିନ୍ଧୁନଦୀ ଆରପାରିକୁ ତଡ଼ି ଦିଆଯାଇଥିଲା ।

ସମୁଦ୍ରଗୁପ୍ତଙ୍କ ପୁତ୍ର ଦ୍ୱିତୀୟ ଚନ୍ଦ୍ରଗୁପ୍ତ ମଧ୍ୟ ଜଣେ ଖ୍ୟାତନାମା ରାଜା ଥିଲେ ଏବଂ ସେ କାଥିଆବାଡ଼ ଓ ଗୁଜରାଟ ଜୟ କରିଥିଲେ । ଏହା ଦୀର୍ଘକାଳ ପର୍ଯ୍ୟନ୍ତ ଶକ ବା ତୁର୍କୀ ବଂଶ ଅଧୀନରେ ଥିଲା । ସେ ବିକ୍ରମାଦିତ୍ୟ ନାମ ଗ୍ରହଣ କଲେ ଏବଂ ସେହିରୂପେ ପରିଚିତ ହୋଇଛନ୍ତି । କିନ୍ତୁ ସିଜର ପରି ଏହି ନାମ ବି ଅନେକ ଶାସକଙ୍କର ଉପାଧି ହୋଇଥିଲା; ତେଣୁ ଭ୍ରମ ଜାତ କରେ ।

ଦିଲ୍ଲୀରେ କୁତବ୍‌ମିନାର ନିକଟରେ ଏକ ପ୍ରକାଣ୍ଡ ଲୌହଦଣ୍ଡ ଦେଖିବା କଥା ତୋର ମନେଅଛି ତ ? ଏକପ୍ରକାର ବିଜୟସ୍ତମ୍ଭରୂପେ ବିକ୍ରମାଦିତ୍ୟ ଏହି ସ୍ତମ୍ଭ ନିର୍ମାଣ କରିଥିଲେ ବୋଲି କୁହାଯାଏ । ଅତି ସୁନ୍ଦର କାରୁକାର୍ଯ୍ୟ ଏଥିରେ ହୋଇଛି ଏବଂ ଏହାର ଅଗ୍ରଭାଗରେ ପଦ୍ମଫୁଲ ରହିଛି । ଏହା ଗୁପ୍ତ ସାମ୍ରାଜ୍ୟର ସଙ୍କେତ ।

ଗୁପ୍ତଯୁଗ ଭାରତରେ ହିନ୍ଦୁ ସାମ୍ରାଜ୍ୟବାଦର ଯୁଗ । ପୁରାତନ ଆର୍ଯ୍ୟସଂସ୍କୃତି ଓ ସଂସ୍କୃତ ବିଦ୍ୟାର ଖୁବ୍ ପ୍ରଚାର ହୋଇଥିଲା । କୁଶାନ ଓ ଅନ୍ୟ ଗ୍ରୀକ୍‌ମାନେ ଭାରତୀୟ ଜୀବନ

---

* ଏହାର ନାମକରଣ ଏବେ 'ଉତ୍ତର ପ୍ରଦେଶ' ହୋଇଛି ।—ଅନୁବାଦକ

ଓ ସଂସ୍କୃତିରେ ଯେଉଁ ହେଲେନିକ୍ ବା ଗ୍ରୀକ୍ ଓ ମଙ୍ଗୋଲିଆନ ଭାବ ଆଣି ପୂରାଇଥିଲେ, ସେଗୁଡ଼ିକୁ ଉତ୍ସାହିତ କରାଯାଇ ନ ଥିଲା ଏବଂ ପ୍ରକୃତରେ ଭାରତୀୟ ଆର୍ଯ୍ୟପରମ୍ପରାରେ ଘୋର ଦିଆଯାଇ କ୍ଷାନ୍ତସାରରେ ଅନ୍ୟ ସଭ୍ୟତା ପ୍ରତି ଅବହେଳା କରାଗଲା । ସରକାରୀ କଚେରୀ ଭାଷା ହେଲା ସଂସ୍କୃତ; କିନ୍ତୁ ସେତେବେଳେ ସୁଦ୍ଧା ସଂସ୍କୃତ ଲୋକଙ୍କର ସାଧାରଣ ଭାଷା ନ ଥିଲା । ସଂସ୍କୃତ ସହିତ ମିଶ୍ରିତ ଏକପ୍ରକାର ପ୍ରାକୃତ ଭାଷାରେ ସେ କଥାବାର୍ତ୍ତା ହେଉଥିଲେ । ମାତ୍ର ସଂସ୍କୃତ ସେତେବେଳର ପ୍ରଚଳିତ ଭାଷା ନ ଥିଲେ ସୁଦ୍ଧା ଏହା ଜୀବନ୍ତ ଥିଲା । ସଂସ୍କୃତ କବିତା, ନାଟକ ଏବଂ ଭାରତୀୟ ଆର୍ଯ୍ୟକଳାର ଖୁବ୍ ସମୃଦ୍ଧି ହୋଇଥିଲା । ବେଦ ଓ ପୁରାଣକାଳ ପରେ ସଂସ୍କୃତ-ସାହିତ୍ୟର ଇତିହାସରେ ଏହି କାଳ ସମ୍ଭବତଃ ସର୍ବଶ୍ରେଷ୍ଠ ଥିଲା । ପ୍ରସିଦ୍ଧ ଲେଖକ କାଳିଦାସ ଏହି କାଳର ଲୋକ । ବିକ୍ରମାଦିତ୍ୟଙ୍କର ଗୋଟାଏ ପ୍ରସିଦ୍ଧ ରାଜପରିଷଦ ଥିଲା—ସେ କାଳର ଶ୍ରେଷ୍ଠ ଲେଖକ ଓ କଳାବିତ୍‌ମାନଙ୍କୁ ସେ ସେଥିରେ ଆଣି ରଖିଥିଲେ । ତାଙ୍କ ପରିଷଦର ନବରତ୍ନଙ୍କ କଥା ତୁ ଶୁଣି ନାହୁଁ କି ? ଏହି ନଅ ଜଣଙ୍କ ଭିତରେ କାଳିଦାସ ଜଣେ ଥିଲେ ।

ସମୁଦ୍ରଗୁପ୍ତ ପାଟଳୀପୁତ୍ରରୁ ଅଯୋଧ୍ୟାକୁ ତାଙ୍କ ସାମ୍ରାଜ୍ୟର ରାଜଧାନୀ ଉଠାଇ ଆଣିଲେ । ସମ୍ଭବତଃ ଉତ୍ତର ଭାରତୀୟ ଆର୍ଯ୍ୟ ଦୃଷ୍ଟିକୋଣ ଦୃଷ୍ଟିରୁ ଅଯୋଧ୍ୟା ଅଧିକ ଉପଯୋଗୀ ବୋଲି ସେ ବିଚାରିଲେ – ବାଲ୍ମୀକିଙ୍କ ପୁରାଣବର୍ଣ୍ଣିତ ରାମଚନ୍ଦ୍ରଙ୍କ ଯୋଗୁଁ ଏହା ଅମରସ୍ମୃତି ହୋଇ ରହିଛି ।

ଆର୍ଯ୍ୟଧର୍ମ ଓ ହିନ୍ଦୁଧର୍ମ ପୁନରୁଦ୍ଧାର କରୁଥିବା ଗୁପ୍ତମାନେ ବୌଦ୍ଧଧର୍ମ ପ୍ରତି ଅନୁକୂଳ ମତ ପୋଷଣ କରୁ ନ ଥିବା ସ୍ୱାଭାବିକ । ଆଂଶିକ ଭାବରେ ଏହାର କାରଣ ହେଉଛି, ଏହି ଆନ୍ଦୋଳନ ଏକ ଅଭିଜାତ ଶ୍ରେଣୀର ଆନ୍ଦୋଳନ । କ୍ଷତ୍ରିୟ ସାମନ୍ତ ରାଜାମାନେ ଏହାକୁ ସାହାଯ୍ୟ କରୁଥିଲେ ଏବଂ ବୌଦ୍ଧଧର୍ମରେ ଅଧିକ ଗଣତନ୍ତ୍ର ଥିଲା । ଆଉଗୋଟିଏ କାରଣ ହେଉଛି ବୌଦ୍ଧଧର୍ମର ମହାଯାନ ସହ କୁଶାଣ ଓ ଉତ୍ତର-ଭାରତର ଅନ୍ୟ ବିଦେଶୀ ଶାସକମାନେ ମିଶିଥିଲେ; କିନ୍ତୁ ବୌଦ୍ଧଧର୍ମାବଲମ୍ବୀମାନଙ୍କୁ କୌଣସି ଶାସ୍ତି ଦିଆହେଉ ନ ଥିଲା । ବୌଦ୍ଧ ମଠମାନ ରହିଥିଲା ଏବଂ ସେଗୁଡ଼ିକ ମହାନ୍ ବିଦ୍ୟାପୀଠ ହୋଇ ରହିଲା । ସିଂହଳର ଶାସକମାନଙ୍କ ସହ ଗୁପ୍ତଙ୍କର ବନ୍ଧୁତା ସମ୍ପର୍କ ଥିଲା—ସେଠାରେ ବୌଦ୍ଧଧର୍ମ ବୃଦ୍ଧି ପାଉଥିଲା । ସିଂହଳର ରାଜା ମେଘବର୍ଣ୍ଣ ସମୁଦ୍ରଗୁପ୍ତଙ୍କୁ ମୂଲ୍ୟବାନ ଭେଟିସବୁ ପଠାଇଲେ ଏବଂ ସିଂହଳ ଛାତ୍ରଙ୍କ ନିମନ୍ତେ ଗୟାରେ ଏକ ମଠ ସ୍ଥାପନ କଲେ ।

କିନ୍ତୁ ଭାରତରେ ବୌଦ୍ଧଧର୍ମର ପତନ ହେଲା । ମୁଁ ପୂର୍ବରୁ ତୋତେ କହିଛି, ସେ କାଳର ସରକାର ବା ବ୍ରାହ୍ମଣମାନଙ୍କର ବାହ୍ୟ ଚାପ ହେତୁ ଯେ ଏହି ପତନ

ହେଲା ତାହା ନୁହେଁ; ମାତ୍ର ହିନ୍ଦୁଧର୍ମ କ୍ରମେ ଏହାକୁ ନିଜ ସହ ମିଶାଇନେବା ହେତୁ ଏପରି ଘଟିଲା ।

ଏତିକବେଳେ ଚୀନ୍‌ରୁ ଜଣେ ବିଖ୍ୟାତ ପରିବ୍ରାଜକ ଭାରତକୁ ଆସିଥିଲେ—ମୁଁ ତତେ ଆଗରୁ ହୁଏନ୍‌ସାଂଙ୍କ ବିଷୟରେ କହିଥିଲି—ଏ ସେ ନୁହନ୍ତି; ମାତ୍ର ଏହାଙ୍କ ନାମ ହେଉଛି ଫା-ହିଏନ୍ । ସେ ବୌଦ୍ଧ ଧର୍ମଗ୍ରନ୍ଥ ଅନ୍ୱେଷଣ ଲାଗି ବୌଦ୍ଧ ଭାବରେ ଆସିଥିଲେ । ସେ ଲେଖିଯାଇଛନ୍ତି ଯେ ମଗଧର ଲୋକେ ସୁଖୀ ଓ ସମୃଦ୍ଧିଶାଳୀ ଥିଲେ; ନ୍ୟାୟ ବଡ଼ ଉଦାରଭାବରେ ଦିଆଯାଉଥିଲା; କୌଣସି ପ୍ରକାର ମୃତ୍ୟୁଦଣ୍ଡ ନ ଥିଲା । ଗୟା ନଷ୍ଟଭ୍ରଷ୍ଟ ହୋଇଯାଇଥିଲା, କପିଳବାସ୍ତୁ ଏକ ଜଙ୍ଗଲ ହୋଇଯାଇଥିଲା; କିନ୍ତୁ ପାଟଳିପୁତ୍ରର ଲୋକେ "ଧନୀ, ସମୃଦ୍ଧିଶାଳୀ ଓ ସଦାଶୟ" ଥିଲେ । ସେଠାରେ ଅନେକ ସମ୍ପଦଶାଳୀ ଓ ଚିତ୍ତାକର୍ଷକ ବୌଦ୍ଧମଠ ଥିଲା । ପ୍ରଧାନ ରାସ୍ତାମାନଙ୍କ କଡ଼ରେ ଧର୍ମଶାଳାସବୁ ଥିଲା; ସେଠାରେ ପରିବ୍ରାଜକମାନେ ରହୁଥିଲେ ଓ ସରକାରୀ ଖର୍ଚ୍ଚରେ ସେମାନଙ୍କୁ ଖାଦ୍ୟ ଯୋଗାଇ ଦିଆଯାଉଥିଲା । ବଡ଼ ବଡ଼ ସହରମାନଙ୍କରେ ମାଗଣା ହାସପାତାଳସବୁ ଥିଲା ।

ଭାରତରେ ଭ୍ରମଣ କରିସାରି ଫା-ହିଏନ୍ ସିଂହଳ ଗଲେ ଏବଂ ସେଠାରେ ଦୁଇ ବର୍ଷ କଟାଇଲେ । ତାଙ୍କର ଏକ ସାଥି ଟାଓ ଚୀଙ୍ଗ୍ ଭାରତକୁ ଖୁବ୍ ଭଲ ପାଉଥିଲେ ଏବଂ ବୌଦ୍ଧସନ୍ନ୍ୟାସୀମାନଙ୍କର ଦୟାରେ ଏପରି ମୁଗ୍ଧ ହୋଇଥିଲେ ଯେ ଏଠାରେ ରହିବା ନିମନ୍ତେ ସ୍ଥିର କଲେ । ଫା-ହିଏନ୍ ସମୁଦ୍ରରେ ସିଂହଳରୁ ଚୀନକୁ ଫେରିଗଲେ ଏବଂ ଅନେକ ଦୁଃସାହସିକ ଅଭିଯାନ ଓ ଅନେକ ବର୍ଷ ଅନୁପସ୍ଥିତ ରହିବା ପରେ ସେ ନିଜ ଘରେ ପହଞ୍ଚିଲେ ।

ଦ୍ୱିତୀୟ ଚନ୍ଦ୍ରଗୁପ୍ତ ବା ବିକ୍ରମାଦିତ୍ୟ ପ୍ରାୟ ୨୩ ବର୍ଷ ପର୍ଯ୍ୟନ୍ତ ଶାସନ କରିଥିଲେ । ତାଙ୍କ ପରେ ତାଙ୍କ ପୁଅ କୁମାରଗୁପ୍ତ ଦୀର୍ଘ ଚାଳିଶ ବର୍ଷ ରାଜୁତି କଲେ । ତାଙ୍କ ପରେ ସ୍କନ୍ଦଗୁପ୍ତ ୪୫୩ ଖ୍ରୀଷ୍ଟାବ୍ଦରେ ରାଜା ହେଲେ । ତାଙ୍କୁ ଏକ ନୂତନ ବିପଦର ସମ୍ମୁଖୀନ ହେବାକୁ ପଡ଼ିଥିଲା—ଶେଷକୁ ଏହା ବିଶାଳ ଗୁପ୍ତସାମ୍ରାଜ୍ୟକୁ ଭାଙ୍ଗିଦେଲା । ଆଗାମୀ ଚିଠିରେ ମୁଁ ଏ ବିଷୟ ତୋତେ କହିବି ।

ଅଜନ୍ତାର କେତେକ ସୁନ୍ଦର କାନ୍ଥଚିତ୍ର (fresco) ଏବଂ ବଡ଼ ଗୃହ ଓ କ୍ଷୁଦ୍ର ଭଜନାଳୟ ଗୁପ୍ତକାଳୀନ କଳାର ଦୃଷ୍ଟାନ୍ତ । ତୁ ସେଗୁଡ଼ିକ ଦେଖିଲେ ତାହା କିପରି ଚମତ୍କାର ବୁଝିପାରିବୁ । ଦୁର୍ଭାଗ୍ୟର କଥା, ଏହିସବୁ କାନ୍ଥଚିତ୍ର ଧୀରେ ଧୀରେ ଲିଭିଯାଉଛି; କାରଣ ସେଗୁଡ଼ିକ ବେଶୀଦିନ ଖୋଲା ଅବସ୍ଥାରେ ରହିପାରେ ନା ।

ଭାରତରେ ଗୁପ୍ତମାନେ ରାଜୁତି କଲାବେଳେ ପୃଥିବୀର ଅନ୍ୟ ଅଂଶର ଅବସ୍ଥା କ'ଣ ଥିଲା ? ପ୍ରଥମ ଚନ୍ଦ୍ରଗୁପ୍ତ ରୋମ୍ ସମ୍ରାଟ୍ 'କନ୍‌ଷ୍ଟାଇନ ଦି ଗ୍ରେଟ୍'ଙ୍କ ସମସାମୟିକ ଥିଲେ—ସେ କନଷ୍ଟାଣ୍ଟିନୋପଲ ସ୍ଥାପନା କରିଥିଲେ । ଅନ୍ୟ ଗୁପ୍ତମାନଙ୍କ **ଅମଳରେ** ରୋମାନ୍‌ସାମ୍ରାଜ୍ୟ ପୂର୍ବ ଓ ପଶ୍ଚିମ ଭାଗରେ ବିଭକ୍ତ ହୋଇଗଲା ଏବଂ ପଶ୍ଚିମକୁ ଶେଷରେ ଉତ୍ତର 'ବର୍ବର' ଜାତିମାନେ ହରାଇ ଦେଇଥିଲେ । ତେଣୁ ରୋମାନ୍‌ସାମ୍ରାଜ୍ୟ ଦୁର୍ବଳ ହେବାବେଳକୁ ଭାରତରେ ଏକ ଅତ୍ୟନ୍ତ ଶକ୍ତିଶାଳୀ ରାଷ୍ଟ୍ର ଥିଲା –ଏଠାରେ ବଡ଼ ବଡ଼ ସେନାପତି ଓ ବିରାଟ ସେନାବାହିନୀ ଥିଲେ । ବେଳେ ବେଳେ ସମୁଦ୍ରଗୁପ୍ତଙ୍କୁ 'ଭାରତୀୟ ନେପୋଲିୟନ' ବୋଲି କୁହାଯାଉଥିଲା; କିନ୍ତୁ ସେ ଉଚ୍ଚାଭିଳାଷୀ ଥିଲେ ସୁଦ୍ଧା ଭାରତ ସୀମାନ୍ତ ସେପଟକୁ ଯାଇ ନ ଥିଲେ ।

ଗୁପ୍ତକାଳରେ ଉଦ୍ଧତ ସାମ୍ରାଜ୍ୟବାଦ, ଆକ୍ରମଣ ଓ ବିଜୟ ଘଟିଥିଲା । ପ୍ରତ୍ୟେକ ଦେଶର ଇତିହାସରେ ଏପରି ଗୋଟାଏ ଗୋଟାଏ ସାମ୍ରାଜ୍ୟବାଦୀ କାଳ ଦେଖାଯାଉଥିଲେ ମଧ୍ୟ ଶେଷରେ ସେସବୁର ଆଦୌ ଗୁରୁତ୍ୱ ରହେ ନାହିଁ; କିନ୍ତୁ ଗୁପ୍ତ ଅମଳରେ ଭାରତରେ କଳା ଓ ସାହିତ୍ୟର ଯେଉଁ ଅଦ୍ଭୁତ ପୁନରୁଦ୍ଧାର ହୋଇଥିଲା, ସେଥିଯୋଗୁଁ ଏହା ମୂଲ୍ୟବାନ କାଳ ଓ ଭାରତ ଇତିହାସର ଗର୍ବର ସମୟ ରୂପେ ବିଦିତ ।

## ୩୮ । ହୁନ୍‌ମାନେ ଭାରତକୁ ଆସିଲେ

(ମେ ୪, ୧୯୩୨)

ଉତ୍ତର-ପଶ୍ଚିମ ସୀମାନ୍ତ ପାର ହୋଇ ଭାରତରେ ଆଉ ଏକ ନୂତନ ବିପଦ ପହଞ୍ଚିଲା । ଏହା ହେଉଛି ହୁନ୍ ଆତଙ୍କ । ରୋମ ସାମ୍ରାଜ୍ୟ ସମ୍ବନ୍ଧରେ ଆଲୋଚନା କଲାବେଳେ ପୂର୍ବର ଏକ ଚିଠିରେ ମୁଁ ହୁନ୍ ବିଷୟରେ ତୋତେ କିଛି କହିଥିଲି । ଇଉରୋପରେ ଅଟିଲ୍ଲା ତାଙ୍କର ପ୍ରଧାନ ନେତା ଥିଲେ । ସେ ଅନେକ ବର୍ଷ ପର୍ଯ୍ୟନ୍ତ ରୋମ ଓ କନ୍‌ଷ୍ଟାଣ୍ଟିନୋପଲକୁ ଭୟଭୀତ କରି ପକାଇଥିଲେ । ଏହି ଜାତିମାନଙ୍କ ସହିତ ମିଶ୍ରିତ ହୁନମାନେ ପ୍ରାୟ ସେହି ସମୟରେ ଭାରତକୁ ଆସିଥିଲେ । ଏମାନଙ୍କୁ ଶ୍ୱେତ ହୁନ୍ କହନ୍ତି । ଏମାନେ ମଧ୍ୟ ହେଉଛି ମଧ୍ୟ ଏସିଆର ଯାଯାବର ଥିଲେ । ଦୀର୍ଘକାଳ ପର୍ଯ୍ୟନ୍ତ ସେମାନେ ଭାରତ ସୀମାନ୍ତରେ ବୁଲୁଥିଲେ ଏବଂ ସେଠାରେ ଲୋକମାନଙ୍କୁ ଖୁବ୍ ହଇରାଣ କରୁଥିଲେ । ସଂଖ୍ୟା ବୃଦ୍ଧି ହେବାରୁ ଏବଂ ବୋଧହୁଏ ଅନ୍ୟ ପାହାଡ଼ିଆ ଜାତି ସେମାନଙ୍କୁ ତଡ଼ିଦେବାରୁ ସେମାନେ ବିଧିବଦ୍ଧ ଅଭିଯାନ ଆରମ୍ଭ କରିଥିଲେ ।

ଗୁପ୍ତ ବଂଶର ପଞ୍ଚମ ରାଜା ସ୍କନ୍ଦଗୁପ୍ତଙ୍କୁ ହୁନ୍ ଆକ୍ରମଣର ସମ୍ମୁଖୀନ ହେବାକୁ ପଡ଼ିଲା । ସେ ସେମାନଙ୍କୁ ପରାସ୍ତ କରି ବହୁତ ଦୂରକୁ ବିଦା କରିଦେଲେ; କିନ୍ତୁ କେତେ ବର୍ଷ ପରେ ସେମାନେ ପୁନର୍ବାର ଆସିଲେ । କ୍ରମେ ସେମାନେ ଗାନ୍ଧାର ଓ ଉତ୍ତର-ଭାରତର ଅଧିକାଂଶ ସ୍ଥାନରେ ବସ୍ତିଲାଭ କଲେ । ସେମାନେ ବୌଦ୍ଧମାନଙ୍କୁ ଯନ୍ତ୍ରଣା ଦେଲେ ଏବଂ ନାନାପ୍ରକାର ନୃଶଂସତା ଆରମ୍ଭ କଲେ ।

ସେମାନଙ୍କ ବିରୁଦ୍ଧରେ ଅବିଶ୍ରାନ୍ତ ଯୁଦ୍ଧ ଲାଗିଥିଲା; କିନ୍ତୁ ଗୁପ୍ତମାନେ ସେମାନଙ୍କୁ ତଡ଼ିପାରିଲେ ନାହିଁ । ନୂତନ ହୁନ୍ ଦଳସବୁ ଆସିଲେ ଏବଂ ମଧ୍ୟଭାରତରେ ବସ୍ତିଲାଭ କଲେ ଓ ତାଙ୍କର ମୁଖିଆ ତୋରାମାନ ନିଜକୁ ରାଜା ବୋଲି ଘୋଷଣା କଲେ । ସେ ଅତ୍ୟନ୍ତ ଖରାପ ଲୋକ ଥିଲେ । ତାଙ୍କ ପରେ ତାଙ୍କ ପୁଅ ମିହିରଗୁଲ ରାଜା ହେଲେ । ସେ ଅତ୍ୟନ୍ତ ବର୍ବର ଓ କ୍ରୂର ଥିଲେ । କାଶ୍ମୀର-ଇତିହାସ ରାଜତରଙ୍ଗିଣୀର ଲେଖକ କହ୍ଲଣ ବର୍ଣ୍ଣନା କରିଛନ୍ତି ଯେ ଉଚ୍ଚ ଗିରିଶୃଙ୍ଗ ଉପରୁ ନିମ୍ନରେ ଥିବା ଉପତ୍ୟକା ଭିତରକୁ ହାତୀ-ମାନଙ୍କୁ ଫୋପାଡ଼ିବା ମିହିରଗୁଲଙ୍କ ଏକ ଆମୋଦଜନକ କାର୍ଯ୍ୟ ଥିଲା । ତାଙ୍କର ନୃଶଂସତା ହେତୁ ଆର୍ଯ୍ୟାବର୍ତ୍ତରେ ଜାଗରଣ ହେଲା । ଗୁପ୍ତ ବଂଶର ବାଲାଦିତ୍ୟ ଓ ମଧ୍ୟଭାରତର ଶାସକ ଯଶୋଧର୍ମଙ୍କ ନେତୃତ୍ୱରେ ଆର୍ଯ୍ୟମାନେ ହୁନମାନଙ୍କୁ ପରାସ୍ତ କଲେ ଓ ମିହିରଗୁଲଙ୍କୁ ବନ୍ଦୀ କଲେ । କିନ୍ତୁ ବାଲାଦିତ୍ୟ ହୁନମାନଙ୍କ ପରି ନିର୍ଦ୍ଦୟ ନୁହନ୍ତି; ସେ ଉଦାରଚେତା ଥିଲେ । ମିହିରଗୁଲଙ୍କୁ କ୍ଷମାଦେଲେ ଓ ଦେଶ ବାହାରକୁ ଚାଲିଯିବାକୁ କହିଲେ । ମିହିରଗୁଲ କାଶ୍ମୀରରେ ଆଶ୍ରୟ ଗ୍ରହଣ କଲେ ଏବଂ ପରେ ଯେଉଁ ବାଲାଦିତ୍ୟ ତାଙ୍କ ପ୍ରତି ଏପରି ଉଦାରତା ଦେଖାଇଥିଲେ, ତାଙ୍କ ଉପରେ ବିଶ୍ୱାସଘାତକରୂପେ ଆକ୍ରମଣ କଲେ ।

ଯାହାହେଉ, ଅତିଶୀଘ୍ର ଭାରତରେ ହୁନମାନଙ୍କ କ୍ଷମତା ଦୁର୍ବଳ ହୋଇପଡ଼ିଲା । କିନ୍ତୁ ହୁନମାନଙ୍କର ଅନେକ ବଂଶଧର ରହିଗଲେ ଏବଂ କ୍ରମେ ଆର୍ଯ୍ୟମାନଙ୍କ ସହିତ ମିଶିଗଲେ । ମଧ୍ୟଭାରତ ଓ ରାଜପୁତାନାରେ ଥିବା ରାଜପୁତ ଜାତିର କେତେକାଂଶରେ ଶ୍ୱେତ ହୁନ୍ ରକ୍ତ ଥିବା ସମ୍ଭବପର ମନେ ହୁଏ ।

ହୁନମାନେ ଖୁବ୍ ଅଳ୍ପକାଳ—୫୦ ବର୍ଷରୁ କମ୍—ଉତ୍ତର-ଭାରତ ଶାସନ କରିଥିଲେ । ପରେ ସେମାନେ ଶାନ୍ତିପୂର୍ଣ୍ଣ ଭାବରେ ବସତି ସ୍ଥାପନ କଲେ । କିନ୍ତୁ ହୁନ୍ ଯୁଦ୍ଧ ଓ ତାର ନୃଶଂସତା ଭାରତୀୟ ଆର୍ଯ୍ୟମାନଙ୍କ ଉପରେ ଖୁବ୍ ଗୋଟାଏ ଦାଗ ଦେଇଗଲା । ହୁନମାନଙ୍କର ଜୀବନ ଓ ଶାସନ ଚଳାଇବା ପଦ୍ଧତି ଆର୍ଯ୍ୟମାନଙ୍କଠାରୁ ସମ୍ପୂର୍ଣ୍ଣ ପୃଥକ୍ । ଆର୍ଯ୍ୟମାନେ ଅନେକ ପରିମାଣରେ ଏକ ସ୍ୱାଧୀନତାପ୍ରେମୀ ଜାତି । ଲୋକମତ ସମ୍ମୁଖରେ ସେମାନଙ୍କ ରାଜାମାନଙ୍କୁ ମୁଣ୍ଡ ନୁଆଁଇବାକୁ ପଡ଼ୁଥିଲା ଏବଂ ତାଙ୍କର

ଗ୍ରାମପଞ୍ଚାୟତମାନଙ୍କର ବହୁତ କ୍ଷମତା ଥିଲା । କିନ୍ତୁ ହୁନଙ୍କ ଆଗମନ, ବସତିସ୍ଥାପନ ଓ ଭାରତୀୟ ଲୋକଙ୍କ ସହିତ ମିଶିବା ଫଳରେ ଆର୍ଯ୍ୟ ଚାଲିଚଳଣରେ କେତେକ ପାର୍ଥକ୍ୟ ଘଟିଲା ଏବଂ ତାହା ନିମ୍ନଗାମୀ ହେଲା ।

ଗୁପ୍ତବଂଶର ଶେଷ ରାଜା ବାଲାଦିତ୍ୟ ୫୩୦ ଖ୍ରୀଷ୍ଟାବ୍ଦରେ ମଲେ । ମଜାର କଥା ଯେ ଏହି ହିନ୍ଦୁବଂଶର ଶାସକ ବୌଦ୍ଧଧର୍ମ ପ୍ରତି ଆକୃଷ୍ଟ ହେଲେ ଏବଂ ଜଣେ ବୌଦ୍ଧସନ୍ନ୍ୟାସୀ ତାଙ୍କର ଗୁରୁ ଥିଲେ । ଗୁପ୍ତ ଅମଳରେ ବିଶେଷଭାବରେ କୃଷ୍ଣପୂଜାର ପୁନରୁଦ୍ଧାର ହୋଇଥିଲା; କିନ୍ତୁ ଏହା ହୋଇ ସୁଦ୍ଧା ବୌଦ୍ଧଧର୍ମ ସହିତ କେଉଁଠି ବିବାଦ ହେବାର ପରିଲକ୍ଷିତ ହୁଏ ନାହିଁ ।

ଗୁପ୍ତଶାସନର ଦୁଇ ଶହ ବର୍ଷ ପରେ ଉତ୍ତରରେ ଅନେକ ରାଜ୍ୟର ଆବିର୍ଭାବ ଦେଖିବାକୁ ମିଳେ । ଏଗୁଡ଼ିକର କୌଣସି କେନ୍ଦ୍ର କର୍ତ୍ତୃତ୍ୱ ନ ଥିଲା । ଯାହାହେଉ ଦକ୍ଷିଣ-ଭାରତରେ ଏକ ବଡ଼ ରାଷ୍ଟ୍ର ଏବେ ଗଢ଼ି ଉଠିଲା । ରାମଚନ୍ଦ୍ରଙ୍କ ବଂଶଧର ରୂପେ ଦାବୀ କରୁଥିବା ପୁଲକେଶୀନ୍ ନାମକ ଜଣେ ଶାସକ ଦକ୍ଷିଣରେ ଏକ ସାମ୍ରାଜ୍ୟ ସ୍ଥାପନ କଲେ । ଏହାକୁ ଚାଲୁକ୍ୟ ସାମ୍ରାଜ୍ୟ କହନ୍ତି । ଏହି ଦକ୍ଷିଣ ଲୋକେ ପୂର୍ବଦ୍ୱୀପପୁଞ୍ଜର ଭାରତୀୟ ଉପନିବେଶଗୁଡ଼ିକ ସହିତ ଅବଶ୍ୟ ଘନିଷ୍ଠ ଭାବରେ ସଂପୃକ୍ତ ହୋଇଥିବେ ଏବଂ ଏହି ଦ୍ୱୀପପୁଞ୍ଜ ଓ ଭାରତ ଭିତରେ ବରାବର ଗମନାଗମନ ହେଉଥିବ । ଆମେ ମଧ୍ୟ ଦେଖୁ ଯେ ଭାରତୀୟ ଜାହାଜସବୁ ବରାବର ଇରାନ୍‌କୁ ବାଣିଜ୍ୟପଦାର୍ଥ ବୋହିନେଇ ଯାଉଥିଲେ । ଚାଲୁକ୍ୟ ରାଜ୍ୟ ଓ ଇରାନ୍‌ର ସାସାନିଦମାନେ ବିଶେଷଭାବରେ ତାଙ୍କର ଜଣେ ପ୍ରଧାନ ଶାସକ ଦ୍ୱିତୀୟ ଖୁସ୍ରୁଙ୍କ ସହିତ ରାଷ୍ଟ୍ରଦୂତ ରଖିବା ପ୍ରଥା ପରସ୍ପର ଭିତରେ ବ୍ୟବସ୍ଥା କରିଥିଲେ ।

## ୩୯ । ବିଦେଶୀ ବଜାର ଉପରେ ଭାରତର କର୍ତ୍ତୃତ୍ୱ

ମେ ୫, ୧୯୩୨

ଆମେ ବର୍ତ୍ତମାନ ଇତିହାସର ଯେଉଁ ପୁରାତନ ଅଧ୍ୟାୟ ଆଲୋଚନା କରୁଛେଁ, ସେ ସମୟ ପ୍ରାୟ ହଜାର ବର୍ଷରୁ ଅଧିକ ହେବ । ଏହି ସମୟ ପର୍ଯ୍ୟନ୍ତ ଆମେ ଦେଖିପାରୁ ଯେ ପଶ୍ଚିମରେ ଇଉରୋପ ଓ ପଶ୍ଚିମ-ଏସିଆ ଏବଂ ପୂର୍ବରେ ଚୀନଦେଶ ଯାଏ ଭାରତର ବେପାର ବିସ୍ତୃତ ହୋଇଥିଲା । ଏହା କାହିଁକି ଏପରି ହେଲା ? ଭାରତୀୟମାନେ ଯେ ଭଲ ନାବିକ ଓ ଉତ୍ତମ ବଣିକ ଥିଲେ, ଏଥିରେ ସନ୍ଦେହ ନାହିଁ; କିନ୍ତୁ କେବଳ ଏଥିଯୋଗୁଁ

ହୋଇ ନ ଥିଲା, ସେମାନଙ୍କର ହାତ କାରିଗରୀରେ ଖୁବ୍ ନିପୁଣତା ଥିଲା । ମାତ୍ର ଏଥିଯୋଗୁଁ ଯେ କେବଳ ଏହା ହୋଇପାରିଲା ତାହା ନୁହେଁ, ଏହା ସବୁ ସାହାଯ୍ୟ କଲା । କିନ୍ତୁ ରସାୟନବିଦ୍ୟାରେ ବିଶେଷତଃ ରଙ୍ଗ କରିବାରେ ଭାରତର ପ୍ରଗତି ହେତୁ ଭାରତ ସୁଦୂର ବଜାର ନିୟନ୍ତ୍ରଣ କରିବାର ଏକ ମୁଖ୍ୟ କାରଣ ପରି ବୋଧହୁଏ । ସେ କାଳର ଭାରତୀୟମାନେ ଲୁଗାର ପକ୍କା ରଙ୍ଗ କରିବାର ବିଶେଷ ପ୍ରଣାଳୀ ଆବିଷ୍କାର କରିଥିଲେ । ସେମାନେ ମଧ୍ୟ ଉଦ୍ଭିଦରୁ ନୀଳରଙ୍ଗ ପ୍ରସ୍ତୁତ କରିବାର ଏକ ବିଶେଷ ପ୍ରଣାଳୀ ଜାଣିଥିଲେ । ତୁ ଲକ୍ଷ୍ୟ କରିବୁ ଯେ "ଇଣ୍ଡିଗୋ" (ନୀଳ) ନାମ ଇଣ୍ଡିଆ (ଭାରତ)ରୁ ହିଁ ଆସିଛି । ଆହୁରି ମଧ୍ୟ ଆଗକାଳର ଭାରତୀୟମାନେ କପର ଭଲଭାବରେ ଇସ୍ପାତ ତରଳାଇ ହେବ, ତାହା ଜାଣିଥିବା ସମ୍ଭବ । ତେଣୁ ତୀକ୍ଷ୍ଣ ଇସ୍ପାତ ଅସ୍ତ୍ରଶସ୍ତ୍ରମାନ ବି ତିଆରି କରିପାରୁଥିଲେ । ତୋର ମନେଥିବ, ଆଲେକ୍ଜାଣ୍ଡରଙ୍କ ଅଭିଯାନ ସମ୍ପର୍କୀୟ ଇରାନୀ କାହାଣୀମାନଙ୍କରେ ଭଲ ତରବାରି ବା ଛୁରୀ କଥା ଉଲ୍ଲେଖ କରାଯାଇଥିଲାବେଳେ ଏହା ଭାରତରୁ ଆସିଛି ବୋଲି କୁହାଯାଇଛି ।

ଭାରତ ଅନ୍ୟ ଦେଶ ଅପେକ୍ଷା ଏହିସବୁ ରଙ୍ଗ ଓ ଅନ୍ୟ ପଦାର୍ଥମାନ ଭଲ ଭାବରେ କରିପାରୁଥିବାରୁ ବଜାର ଉପରେ କର୍ତ୍ତୃତ୍ୱ କରିବା ତାହା ପକ୍ଷରେ ସ୍ୱାଭାବିକ । କୌଣସି ବ୍ୟକ୍ତି ବା ଦେଶ ହାତରେ ଯଦି ଭଲ ଯନ୍ତ୍ର ଥାଏ କିମ୍ବା ଉନ୍ନତ ବା ଶସ୍ତା ଉପାୟରେ କୌଣସି ପଦାର୍ଥ ସେ ତିଆରି କରିପାରେ, ତେବେ ଶେଷରେ ଅନ୍ୟ କୌଣସି ବ୍ୟକ୍ତି ବା ଦେଶ ଉତ୍ତମ ଯନ୍ତ୍ର ବା ଉତ୍ତମ ପ୍ରଣାଳୀ ଜାଣି ନ ଥିବା ବ୍ୟକ୍ତି ବା ଜାତିକୁ ଅବଶ୍ୟ ତଡ଼ିଦେବ । ଏହି କାରଣରୁ ହିଁ ଗତ ୨୦୦ ବର୍ଷ ଭିତରେ ଇଉରୋପ ଏସିଆ ତୁଳନାରେ ବହୁତ ଆଗକୁ ବଢ଼ିଯାଇଛି । ନୂତନ ଆବିଷ୍କାର ଓ ଉଦ୍ଭାବନ ଫଳରେ ଇଉରୋପ ନୂତନ ଓ ଶକ୍ତିଶାଳୀ ଯନ୍ତ୍ର ଏବଂ ନୂତନ ନିର୍ମାଣଶୈଳୀ ପାଇଲା । ଏହିଗୁଡ଼ିକ ସାହାଯ୍ୟରେ ସେ ପୃଥିବୀର ବଜାର ଦଖଲ କଲା ଏବଂ ଧନୀ ଓ ଶକ୍ତିଶାଳୀ ହୋଇପାରିଲା । ଅନ୍ୟ କାରଣସବୁ ମଧ୍ୟ ତାକୁ ସାହାଯ୍ୟ କରିଥିଲା । କିନ୍ତୁ କ୍ଷଣକାଳ ପାଇଁ ଯନ୍ତ୍ରଜିନିଷଟିର କି ଗୁରୁତ୍ୱ ଅଛି, ତାହା ବିଚାର କରିବା ନିମନ୍ତେ ମୁଁ ତୋତେ କହେ । ଜଣେ ମହାନ୍ ପୁରୁଷ ଥରେ କହିଥିଲେ—ମଣିଷ ହେଉଛି ଏକ ଯନ୍ତ୍ର ତିଆରି କରିବା ପ୍ରାଣୀ । ଆଦିମ କାଳରୁ ବର୍ତ୍ତମାନ ପର୍ଯ୍ୟନ୍ତ ମଣିଷର ଇତିହାସ ଦେଖିଲେ ମନୁଷ୍ୟ ଅଧିକରୁ ଅଧିକ ନିପୁଣ ଯନ୍ତ୍ରର ଇତିହାସ ପରି ମନେହେବ—ପ୍ରଥମେ ପଥର, ତୀର ଓ ପ୍ରସ୍ତର ଯୁଗର ହାତୁଡ଼ିଠାରୁ ରେଲଓ୍ୱେ ଓ ବାଷ୍ପୀୟ କଳ ଏବଂ ଆଜି ପୁଣି ପ୍ରକାଣ୍ଡ ମେସିନ୍ ସବୁ ଦେଖାଦେଇଛି । ବାସ୍ତବିକ ଆମେ ଯେଉଁସବୁ ଜିନିଷ ଦରକାର କରୁଁ, ସେ ପ୍ରତ୍ୟେକଟି ହେଉଛି ଗୋଟିଏ ଯନ୍ତ୍ର । ଯନ୍ତ୍ର ନ ଥିଲେ ଆମେ କେଉଁଠି ପଡ଼ିଥାନ୍ତେ ।

ଯନ୍ତ୍ର ଗୋଟିଏ ଭଲ ଜିନିଷ, ଏହା କାର୍ଯ୍ୟକୁ ହାଲୁକା କରିଦିଏ । କିନ୍ତୁ ଯନ୍ତ୍ରର ଦୁର୍ବ୍ୟବହାର ବି କରାଯାଇପାରେ । କରତ ଗୋଟିଏ ଦରକାରୀ ଯନ୍ତ୍ର; ମାତ୍ର ଶିଶୁ ନିଜକୁ ସେଥିରେ କାଟି ପକାଇପାରେ । ଛୁରୀ ଏକ ଅତ୍ୟନ୍ତ ଦରକାରୀ ପଦାର୍ଥ, ପ୍ରତ୍ୟେକ ସ୍ତ୍ରୀଲୋକ ହାତରେ ରହିବା ଦରକାର; ଅଥଚ ଜଣେ ନିର୍ବୋଧ ବ୍ୟକ୍ତି ଛୁରୀରେ ଅନ୍ୟ ଜଣକୁ ହତ୍ୟା କରି ଦେଇପାରେ । ଏହା ଛୁରୀର ଦୋଷ ନୁହେଁ, ଯେଉଁ ବ୍ୟକ୍ତି ଏହି ଯନ୍ତ୍ରର ଦୁର୍ବ୍ୟବହାର କଲା, ଦୋଷ ହେଉଛି ତାହାର ।

ସେହିପ୍ରକାରେ ଆଧୁନିକ କଳକବ୍ଜା ଭଲ ଜିନିଷ ହୋଇଥିଲେ ସୁଦ୍ଧା ଅନେକ ଢଙ୍ଗରେ ତାହାର ଦୁରୁପଯୋଗ କରାଯାଇଛି ଓ କରାଯାଉଛି । ଜନସାଧାରଣଙ୍କ ଶ୍ରମର ବୋଝ ହାଲୁକା କରିବା ପରିବର୍ତ୍ତେ ଏହାଦ୍ୱାରା ସେମାନଙ୍କର ଦଶା ପୂର୍ବାପେକ୍ଷା ଆହୁରି ଖରାପ ହୋଇଛି । ଏହା ଲକ୍ଷ ଲକ୍ଷ ଲୋକଙ୍କୁ ସୁଖ ଓ ସ୍ୱାଚ୍ଛନ୍ଦ୍ୟ ପହଞ୍ଚାଇବା ପରିବର୍ତ୍ତେ ଦୁର୍ଦ୍ଦଶାରେ ପକାଇଛି । ଏହା ସରକାରୀ ଲୋକଙ୍କ ହାତରେ ଏତେ କ୍ଷମତା ଦେଇଛି ଯେ ସେମାନେ ଯୁଦ୍ଧରେ ଲକ୍ଷ ଲକ୍ଷ ଲୋକ ହତ୍ୟା କରିପାରୁଛନ୍ତି ।

ଦୋଷ ମେସିନ୍‌ର ନୁହେଁ, ମାତ୍ର ଏହାର ଦୁର୍ବ୍ୟବହାରରେ ରହିଛି । ଯେଉଁ ଦାୟିତ୍ୱହୀନ ବ୍ୟକ୍ତିସବୁ ବଡ଼ କଳକବ୍ଜାରୁ ନିଜର ଧନ କମାଇବା ନିମନ୍ତେ ଏହାର ନିୟନ୍ତ୍ରଣ କରୁଛନ୍ତି, ସେହିମାନଙ୍କଦ୍ୱାରା ତାହା ନ ହୋଇ ଯଦି ଲୋକଙ୍କ ତରଫରୁ ଏବଂ ଲୋକଙ୍କ ମଙ୍ଗଳ ସକାଶେ ସାଧାରଣ ଭାବରେ ଏସବୁ ବ୍ୟବହୃତ ହୁଅନ୍ତା, ତେବେ ଏହା ଅଦ୍ଭୁତ ପାର୍ଥକ୍ୟ ଆଣିପାରନ୍ତା ।

ଆଜକାଲି ପରି ନୁହେଁ, ସେକାଳରେ ମାଲତିଆରି-କୌଶଳରେ ଭାରତ ପୃଥିବୀ ଭିତରେ ଆଗୁଆ ଥିଲା । ତେଣୁ ଭାରତୀୟ ଲୁଗା, ଭାରତୀୟ ରଙ୍ଗ ଓ ଅନ୍ୟ ଜିନିଷସବୁ ଦୂର ଦେଶକୁ ଗଲା ଏବଂ ଆଗ୍ରହ ସହକାରେ ଲୋକେ ତାହା ଗ୍ରହଣ କରୁଥିଲେ । ଏହି ବେପାର ହେତୁ ଭାରତକୁ ଧନ ଆସିଲା । ଏହି ବେପାର ଛଡ଼ା ଦକ୍ଷିଣ ଭାରତ ଲଙ୍କାମରିଚ ଓ ଅନ୍ୟ ମସଲାମାନ ମଧ୍ୟ ଯୋଗାଇ ଦେଉଥିଲା । ପୂର୍ବ ଦ୍ୱୀପପୁଞ୍ଜରୁ ମଧ୍ୟ ମସଲା ଆସୁଥିଲା ଏବଂ ଭାରତ ମଧ୍ୟଦେଇ ପଶ୍ଚିମକୁ ଯାଉଥିଲା । ରୋମ ଓ ପାଶ୍ଚାତ୍ୟ ଦେଶରେ ଲଙ୍କାମରିଚର ଖୁବ୍ ଅଧିକ ମୂଲ୍ୟ ହେଉଥିଲା ଏବଂ କୁହାଯାଏ ଯେ ଗୋଥ-ମାନଙ୍କ ମୁଖିଆ ଆଲାରିକ ଯେ କି ୪୧୦ ଖ୍ରୀଷ୍ଟାବ୍ଦରେ ରୋମ ଦଖଲ କରିଥିଲେ, ସେ ସେଠୁ ୩୦୦୦ ପାଉଣ୍ଡ ଲଙ୍କାମରିଚ ନେଇ ଯାଇଥିଲେ । ଏ ସବୁ ଲଙ୍କାମରିଚ ଭାରତରୁ ବା ଭାରତ ମଧ୍ୟ ଦେଇ ଅବଶ୍ୟ ଆସିଥିବ ।

# ୪୦ । ଦେଶ ଓ ସଭ୍ୟତାର ଉତ୍‌ଥାନ ଓ ପତନ

ମେ ୭, ୧୯୩୨

ଦୀର୍ଘକାଳ ହେଲି ଆମେ ଚୀନ୍ କଥା ଆଲୋଚନା କରି ନ ଥାଉଁ । ଚାଲ ପୁନର୍ବାର ସେଠାକୁ ଯିବା ଏବଂ ଆମର କାହାଣୀ ଆରମ୍ଭ କରିବା । ପଶ୍ଚିମରେ ରୋମ୍‌ର ଯେତେବେଳେ ପତନ ହେଉଥିଲା ଏବଂ ଗୁପ୍ତମାନଙ୍କ ଅଧୀନରେ ଭାରତରେ ଜାତୀୟ ପୁନରୁତ୍‌ଥାନ ଚାଲିଥିଲା, ସେତେବେଳେ ଏଠି କ'ଣ ହେଉଥିଲା ତାହା ଦେଖିବା । ରୋମର ଉତ୍‌ଥାନ ବା ପତନ ଚୀନ୍‌କୁ ଆଦୌ ସ୍ପର୍ଶ କରିପାରି ନ ଥିଲା । ଏହି ଦୁଇ ଦେଶ ମଧ୍ୟରେ ଦୂରତା ବହୁତ ବେଶୀ; କିନ୍ତୁ ମୁଁ ତୋତେ ଆଗରୁ କହିଛି ଯେ ଚୀନାମାନେ ମଧ୍ୟ-ଏସିଆର ଜାତିମାନଙ୍କୁ ତଡ଼ିଦେବା ଫଳରେ ବେଳେ ବେଳେ ଇଉରୋପ ଓ ଭାରତରେ ଏହାର ଦୁଃଖଜନକ ପରିଣତି ଘଟିଥିଲି । ଏହିସବୁ ଜାତି ବା ଅନ୍ୟ ଯେଉଁମାନଙ୍କୁ ସେମାନେ ତଡ଼ିଦେଲେ, ସେମାନେ ପଶ୍ଚିମ ଓ ଦକ୍ଷିଣକୁ ଗଲେ । ସେମାନେ ଶାସନ ଓ ରାଷ୍ଟ୍ରସବୁ ଓଲଟ ପାଲଟ କରିଦେଲେ, ବିଶୃଙ୍ଖଳା ଜାତ କଲେ ଏବଂ ଅନେକେ ପୂର୍ବ-ଇଉରୋପ ଓ ଭାରତରେ ବସତି ସ୍ଥାପନ କଲେ ।

ରୋମ୍ ଓ ଚୀନ୍ ମଧ୍ୟରେ ଅବଶ୍ୟ ପ୍ରତ୍ୟକ୍ଷ ସମ୍ପର୍କ ଥିଲି ଏବଂ ଉଭୟ ଦେଶରେ ପରସ୍ପରର ପ୍ରତିନିଧି ରହୁଥିଲେ । ଚୀନ ପୁସ୍ତକମାନଙ୍କରେ ବର୍ଣ୍ଣନା ଅଛି ଯେ ୧୬୬ ଖ୍ରୀ: ରେ ରୋମର ସମ୍ରାଟ ଆନ୍‌ତୁନ୍‌ଙ୍କ ପାଖରୁ ଜଣେ ପ୍ରତିନିଧି ଆସିଥିଲେ । ଏହି ଆନ୍‌ତୁନ ଆଉ କେହି ନୁହନ୍ତି, ମୋର ଏକ ପୂର୍ବ ଚିଠିରେ ମୁଁ ଯେଉଁ ମାର୍କସ ଔରେଲିୟସ୍ ଆଣ୍ଟୋନିୟସ୍‌ଙ୍କ ବିଷୟ ଉଲ୍ଲେଖ କରିଛି, ଏ ହେଉଛନ୍ତି ସେହି ବ୍ୟକ୍ତି ।

ଇଉରୋପରେ ରୋମର ପତନ ଏକ ପ୍ରଧାନ କଥା । ଏହା କେବଳ ଏକ ସହର ବା ସାମ୍ରାଜ୍ୟର ପତନ ନୁହେଁ । ରୋମାନ୍ ସାମ୍ରାଜ୍ୟ ଅନେକ ଦିନ ପର୍ଯ୍ୟନ୍ତ ବସ୍ତୁତଃ କନ୍‌ଷ୍ଟାଣ୍ଟିନୋପଲରେ ରହିଥିଲା ଏବଂ ସାମ୍ରାଜ୍ୟ-ପ୍ରେତ ୧୪୦୦ ବର୍ଷ ବା ସେହିପରି ସମୟ ପର୍ଯ୍ୟନ୍ତ ସମଗ୍ର ୟୁରୋପରେ ଗ୍ରାସିଥିଲା । କିନ୍ତୁ ରୋମର ପତନ ଫଳରେ ଏକ ବିରାଟ ଯୁଗ ଉତ୍ତକାଳ ଶେଷ ହୋଇଗଲା । ପୁରାତନ ଗ୍ରୀସ୍ ଓ ରୋମ୍ ଜଗତର ଅବସାନ ଘଟିଲା । ରୋମର ଧ୍ୱଂସାବଶେଷ ଉପରେ ପଶ୍ଚିମରେ ଏକ ନୂତନ ଜଗତ, ନୂତନ ସଂସ୍କୃତି ଓ ସଭ୍ୟତାର ଉଦୟ ହେଲା । ଆମେ ଶବ୍ଦ ଓ ବାକ୍ୟାବଳୀରେ ଭୁଲ ପଥରେ ଚାଳିତ ହେଉ ଏବଂ ଏକ ଶବ୍ଦ ବ୍ୟବହାର ଦେଖିଲେ ଏହାର ଅର୍ଥ ଏକା ଜିନିଷ ବୋଲି ମନେ କରିନେଉ । ରୋମର ପତନ ପରେ ରୋମ-ପ୍ରଚଳିତ ଭାଷାରେ ପାଶ୍ଚାତ୍ୟ ଇଉରୋପ ନିଜର କଥା ପ୍ରକାଶ କରିବାକୁ ଲାଗିଲା; ମାତ୍ର ଏହି ଭାଷାର ପାଶ୍ଚାତ୍ୟରେ ସ୍ୱତନ୍ତ୍ର ଭାବ ଓ

ସ୍ୱତନ୍ତ୍ର ଅର୍ଥ ରହିଥିଲା । ଲୋକେ କହନ୍ତି ଯେ ଆଜିକାଲିକାର ଇଉରୋପର ରାଜ୍ୟ ସବୁ ଗ୍ରୀସ୍ ଓ ରୋମର ସନ୍ତାନ । ଏହା କେତେକ ପରିମାଣରେ ସତ୍ୟ; କିନ୍ତୁ ତଥାପି ଏହା ଭ୍ରମାତ୍ମକ । କାରଣ ଇଉରୋପର ରାଜ୍ୟଗୁଡ଼ିକର ଉଦ୍ଦେଶ୍ୟ ଗ୍ରୀସ୍ ଓ ରୋମର ଉଦ୍ଦେଶ୍ୟଠାରୁ ସମ୍ପୂର୍ଣ୍ଣ ଭିନ୍ନ । ପୁରାତନ ରୋମ୍ ଓ ଗ୍ରୀସ୍ ଜଗତର ପ୍ରାୟ ସମ୍ପୂର୍ଣ୍ଣରୂପେ ପତନ ହୋଇ ଯାଇଥିଲା । ପ୍ରାୟ ଏକ ହଜାର ବା ତତୋଧିକ ବର୍ଷ ଯେଉଁ ସଭ୍ୟତା ଗଢ଼ାହୋଇଥିଲା, ତାହାର ପରିଣତି ଘଟିଲା ଏବଂ ତାହାର ପତନ ହେଲା । ଏହାପରେ ହିଁ ପଶ୍ଚିମ-ଇଉରୋପର ଅର୍ଦ୍ଧ-ସଭ୍ୟ, ଅର୍ଦ୍ଧ-ବର୍ବର ରାଜ୍ୟଗୁଡ଼ିକ ଇତିହାସ ପୃଷ୍ଠାରେ ଦେଖାଦେଲା ଏବଂ ଧୀରେ ଧୀରେ ନୂତନ ସଂସ୍କୃତି ଓ ସଭ୍ୟତା ଗଢ଼ିଉଠିଲା । ସେମାନେ ରୋମରୁ ବହୁତ କଥା ଶିକ୍ଷା କରିଥିଲେ; ପୁରାତନ ଜଗତରୁ ବହୁତ କଥା ଗ୍ରହଣ କରିଥିଲେ । କିନ୍ତୁ ଶିକ୍ଷାର ରୀତି ବଡ଼ କଷ୍ଟକର ଓ ଶ୍ରମସାଧ୍ୟ ଥିଲା । ଶହ ଶହ ବର୍ଷ ଧରି ଇଉରୋପରେ ସଂସ୍କୃତି ଓ ସଭ୍ୟତା ସୁପ୍ତ ଅବସ୍ଥାରେ ରହିଥିଲା । ଅଜ୍ଞତା ଓ ଧର୍ମାନ୍ଧତା ଘୋଟି ଯାଇଥିଲା, ତେଣୁ ଏହି ଶତାବ୍ଦୀଗୁଡ଼ିକୁ 'ଅନ୍ଧକାର ଯୁଗ' ବୋଲି କୁହାଯାଏ ।

କାହିଁକି ଏପରି ହେଲା ? ପୃଥିବୀ କାହିଁକି ବା ପଛକୁ ଯାଏ; କାହିଁକି ବା ଶହ ଶହ ବର୍ଷ ଶ୍ରମ ଫଳରେ ଅର୍ଜିତ ଜ୍ଞାନ ଅନ୍ତର୍ହିତ ହୋଇଯାଏ ବା ପାସୋର ଯାଏ ? ଏଗୁଡ଼ିକ ଦୁରୂହ ପ୍ରଶ୍ନ । ଜ୍ଞାନୀ ଲୋକଙ୍କର ବି ଏଥିରେ ମୁଣ୍ଡ ଘୂରିଯାଏ । ମୁଁ ସେଗୁଡ଼ିକର ଜବାବ ଦେବାକୁ ଚେଷ୍ଟା କରିବି ନାହିଁ । ଯେଉଁ ଭାରତ ଚିନ୍ତା ଓ କାର୍ଯ୍ୟରେ ଏଡ଼େ ମହାନ୍ ଥିଲା, ତାହାର ଏପରି ଶୋଚନୀୟ ପତନ ହେବ ଏବଂ ଦୀର୍ଘକାଳପର୍ଯ୍ୟନ୍ତ ତାହା ଏକ ଦାସ-ରାଜ୍ୟ ହୋଇ ରହିବା ଟା ଏକ ଆଶ୍ଚର୍ଯ୍ୟ ଜିନିଷ ନୁହେଁ କି ? ଅଥବା ବୈଚିତ୍ର୍ୟମୟ ଅତୀତ ପରିପୂର୍ଣ୍ଣ ଚୀନ ଅବିଶ୍ରାନ୍ତ ଯୁଦ୍ଧର ଶିକାର ହୋଇ ରହିବ ? ସମ୍ଭବତଃ ଯୁଗଯୁଗର ଜ୍ଞାନ ବା ପାଣ୍ଡିତ୍ୟ ଯାହା ମନୁଷ୍ୟ ଅଳ୍ପ ଅଳ୍ପ କରି ସଞ୍ଚୟ କରିଥାଏ, ତାହା ଏକାବେଳକେ ଲୋପ ହୁଏ ନାହିଁ । କିନ୍ତୁ ବେଳେ ବେଳେ ଆମର ଚକ୍ଷୁ ବନ୍ଦ ହୋଇଯାଏ ଏବଂ ଆମେ କିଛି ଦେଖିପାରୁ ନାହିଁ । ଦୁଆର ବନ୍ଦ ଥାଏ, ଅନ୍ଧକାର ମାଡ଼ିଆସେ । କିନ୍ତୁ ବାହାରେ ଓ ଆମ ଚତୁର୍ଦ୍ଦିଗରେ ଆଲୋକ ରହିଥାଏ ଏବଂ ଆମେ ଆମର ଚକ୍ଷୁ ବନ୍ଦ କରିଛୁ କିମ୍ବା ଦ୍ୱାର ରୁଦ୍ଧ କରୁଛୁ ବୋଲି ଯେ ଆଲୋକ ଲିଭିଯାଇଥାଏ, ତାହା ନୁହେଁ ।

କେତେକ ଲୋକ କହନ୍ତି ଯେ ଖ୍ରୀଷ୍ଟଧର୍ମ ଯୋଗୁଁ ଇଉରୋପରେ ଅନ୍ଧକାର ଯୁଗ ରହିଥିଲା । ଏହି ଖ୍ରୀଷ୍ଟଧର୍ମ ଯୀଶୁଙ୍କ ଧର୍ମ ନୁହେଁ; ମାତ୍ର ରୋମ୍ ସମ୍ରାଟ୍ କନ୍‌ଷ୍ଟାଣ୍ଟାଇନ ଖ୍ରୀଷ୍ଟଧର୍ମ ଗ୍ରହଣ କରି ସରକାରୀ ଭାବରେ ଯେଉଁ ଧର୍ମ ପ୍ରଚାର କଲେ, ଏହା ସେହି ଧର୍ମ । ବାସ୍ତବିକ ଏହି ଲୋକମାନେ କହନ୍ତି ଯେ ଚତୁର୍ଥ ଶତାବ୍ଦୀରେ କନଷ୍ଟାଣ୍ଟାଇନ୍‌ଙ୍କର ଖ୍ରୀଷ୍ଟଧର୍ମ ଗ୍ରହଣ ଫଳରେ "ଏକ ହଜାର ବର୍ଷ ଆରମ୍ଭ ହେଲା", "ଯେଉଁଥିରେ ବିବେକ ବାନ୍ଧି ହୋଇଗଲା, ବିଚାର ଅନ୍ୟର ଦାସ ହୋଇଗଲା ଏବଂ ଜ୍ଞାନର କୌଣସି ଉନ୍ନତି ହେଲା ନାହିଁ ।

ଏହାଦ୍ୱାରା ଯେ କେବଳ ଅତ୍ୟାଗ୍ଚର, ଧର୍ମାନ୍ଧତା ଓ ଅସହିଷ୍ଣୁତା ବୃଦ୍ଧି ପାଇଲା, ତାହା ନୁହେଁ; ଲୋକଙ୍କ ପକ୍ଷରେ ବିଜ୍ଞାନ ଓ ଅନ୍ୟ ସକଳ ଉପାୟରେ ଉନ୍ନତ କରିବା କଷ୍ଟକର ହୋଇଗଲା । ଧର୍ମଗ୍ରନ୍ଥସବୁ ପ୍ରଗତି ପଥରେ ଅନ୍ତରାୟ ପ୍ରାୟ ହୋଇଛି । ସେଗୁଡ଼ିକ ଲେଖାହେଲା ବେଳେ ଦୁନିଆ କିପରି ଥିଲା ସେଥିରେ ଲେଖାଥାଏ । ସେକାଳର ଭାବଧାରା ଓ ରୀତିନୀତି ବି ସେଥିରୁ ମିଳେ । ଏହିସବୁ ଭାବଧାରା ବା ରୀତିନୀତି ବିରୁଦ୍ଧରେ କେହି କହିପାରିବ ନାହିଁ; କାରଣ ସେଗୁଡ଼ିକ ପବିତ୍ର ପୁସ୍ତକରେ ଲେଖା ରହିଛି । ତେଣୁ ପୃଥିବୀର ବିଶାଳ ପରିବର୍ତ୍ତନ ହେଲେ ସୁଦ୍ଧା ପରିବର୍ତ୍ତିତ ଅବସ୍ଥା ମୁତାବକେ ଆମର ଭାବଧାରା ବା ରୀତିନୀତିର ପରିବର୍ତ୍ତନ କରିବାକୁ ସୁବିଧା ମିଳେ ନାହିଁ । ଏହାର ଫଳସ୍ୱରୂପ ଆମେ ଅଯୋଗ୍ୟ ହୋଇପଡ଼ୁ ଏବଂ ଗୋଳମାଳ ତ ଲାଗି ରହିଥାଏ ।

ତେଣୁ ଖ୍ରୀଷ୍ଟଧର୍ମ ଇଉରୋପରେ ଏହି ଅନ୍ଧକାର କାଳ ଆଣିଥିଲା ବୋଲି କେତେକ ଲୋକ ଅଭିଯୋଗ କରନ୍ତି । ଆଉ କେତେକ କହନ୍ତି ଯେ, 'ଅନ୍ଧକାର ଯୁଗ'ରେ ଖ୍ରୀଷ୍ଟଧର୍ମ ଓ ଖ୍ରୀଷ୍ଟିୟାନ୍ ପାଦ୍ରୀ ଓ ଧର୍ମ ପୁରୋହିତମାନେ ହିଁ ଜ୍ଞାନର ଆଲୋକ ଜଳାଇ ରଖିଥିଲେ । ସେମାନେ କଳା ଓ ଚିତ୍ରବିଦ୍ୟାର ଉନ୍ନତ କରିଥିଲେ ଏବଂ ମୂଲ୍ୟବାନ ପୁସ୍ତକସବୁ ଯତ୍ନ ସହକାରେ ସେମାନଙ୍କଦ୍ୱାରା ରକ୍ଷିତ ହୋଇଥିଲା ଓ ପୁନର୍ବାର ଲେଖା ହୋଇଥିଲା ।

ଏହିପରି ଲୋକେ ଯୁକ୍ତି କରନ୍ତି । ବସ୍ତୁତଃ ଉଭୟ କଥା ହିଁ ଠିକ୍ । କିନ୍ତୁ ରୋମ୍‌ର ପତନ ପରେ ଯାହାସବୁ ଦୋଷ ଦେଖାଗଲା, ସେଥିଲାଗି ଖ୍ରୀଷ୍ଟଧର୍ମ ଦାୟୀ ବୋଲି କହିବା ଏକ ହାସ୍ୟାସ୍ପଦ କଥା ହେବ । ବାସ୍ତବିକ ଉଲ୍ଲିଖିତ ଦୋଷସବୁ ହେତୁ ରୋମ୍‌ର ପତନ ହେଲା ।

ମୁଁ ବହୁଦୂର ଚାଲିଯାଇଛି । ମୁଁ ତୋତେ କହିବାକୁ ଚାହୁଁଥିଲି ଯେ ଇଉରୋପରେ ଆକସ୍ମିକ ସାମାଜିକ ପତନ ଓ ହଠାତ୍ ପରିବର୍ତ୍ତନ ହୋଇଥିଲାବେଳେ ଚୀନ୍‌ରେ କିମ୍ବା ଭାରତରେ ବି ସେପରି କୌଣସି ଦ୍ରୁତ ପରିବର୍ତ୍ତନ ହୋଇ ନ ଥିଲା । ଆମେ ଦେଖୁ, ଇଉରୋପରେ ଏକ ସଭ୍ୟତା ଶେଷ ପାଇଗଲା ଏବଂ ଆଉ ଏକ ସଭ୍ୟତା ଆରମ୍ଭ ହେଲା । ଏହା ଧୀରେ ବୃଦ୍ଧି ପାଇ ଆଜିର ଅବସ୍ଥାରେ ପହଞ୍ଚିଛି । ଆମେ ଦେଖୁ ଯେ ଚୀନରେ ସେହି ପରିମାଣରେ ଅବିଚ୍ଛିନ୍ନ ଭାବରେ ଉଚ୍ଚ ସଂସ୍କୃତି ଓ ସଭ୍ୟତା ସମାନଭାବରେ ରହିଆସିଛି । ଉତ୍ଥାନ ଓ ପତନ ହୋଇଛି । ଭଲ ରାଜୁତି, ଖରାପ ରଜା ଓ ସମ୍ରାଟ୍ ଆସନ୍ତି ଓ ଯାଆନ୍ତି ଏବଂ ବଂଶସବୁ ପରିବର୍ତ୍ତିତ ହୁଏ; କିନ୍ତୁ ସଂସ୍କୃତିଗତ ପରମ୍ପରା ଛିନ୍ନ ହୁଏ ନାହିଁ । ଏପରିକି ଚୀନ୍ କେତେଗୁଡ଼ିଏ ରାଜ୍ୟରେ ବିଭକ୍ତ ହେଲା ପରେ ପରସ୍ପର ଭିତରେ ବିବାଦ ଲାଗିଥିବା ଅବସ୍ଥାରେ ବି କଳା ଓ ସାହିତ୍ୟ ବୃଦ୍ଧି ପାଇଲା । ସୁନ୍ଦର ଚିତ୍ର ତିଆରି ହୋଇଥିଲା ଏବଂ ସୁନ୍ଦର ପାତ୍ର ଓ ସୁନ୍ଦର କୋଠାବାଡ଼ି ସବୁ ନିର୍ମିତ ହୋଇଥିଲା । ମୁଦ୍ରଣ କାର୍ଯ୍ୟ ପ୍ରଚଳନ

ଥିଲି ଏବଂ ଗୁହାପାନ ଆରମ୍ଭ ହେଲା ଓ କବିତାଗୁଡ଼ିକରେ ଏହାର ବର୍ଣ୍ଣନା କରାଗଲା । ଚୀନ୍‌ରେ କଳାବିଦ୍ୟାର ଯେପରି କ୍ରମାନ୍ୱୟ ଧାରା ରହିଛି, ତାହା କେବଳ ଏକ ଉଚ୍ଚ ସଭ୍ୟତାରେ ସମ୍ଭବ ।

ଭାରତରେ ମଧ୍ୟ ସେହିପରି । ଗ୍ରୀସ୍ ପରି ଏଠି ହଠାତ୍ କିଛି ଅଚଳ ହୋଇ ନ ଥିଲା । ଅବଶ୍ୟ ଭଲ ବେଳ ମନ୍ଦ ବେଳ ଆସିଛି । ଏକ ସମୟରେ ସୁନ୍ଦର ସାହିତ୍ୟ ଓ କଳା ସୃଷ୍ଟି ହୋଇଛି ତ ଅନ୍ୟ ସମୟରେ ଧ୍ୱଂସ ଓ ପତନ ଘଟିଛି । କିନ୍ତୁ ସଭ୍ୟତା ଏକ ଢଙ୍ଗରେ କ୍ରମାନ୍ୱୟରେ ଚାଲିଛି । ଭାରତର ସଭ୍ୟତା ପ୍ରାଚ୍ୟର ଅନ୍ୟ କେତେକ ରାଜ୍ୟରେ ବିସ୍ତାର ଲାଭ କରିଛି । ଯେଉଁ ବର୍ବରମାନେ ଲୁଣ୍ଠନ କରିବା ନିମନ୍ତେ ଆସିଥିଲେ, ଏହା ସେମାନଙ୍କୁ ଶିକ୍ଷା ଦେଇଛି ଓ ନିଜ ଭିତରେ ମିଶାଇ ନେଇଛି ।

ଭାବିବୁ ନାହିଁ ଯେ ପାଶ୍ଚାତ୍ୟ ଦେଶର ନିନ୍ଦା କରି ମୁଁ ଭାରତ ବା ଚୀନର ପ୍ରଶଂସା ଗାଇବାକୁ ଚେଷ୍ଟା କରୁଛି । ଆଜି ଭାରତ ବା ଚୀନ୍‌ର ଅବସ୍ଥା ଯାହା, ଦେଖିଲେ ବଡ଼େଇ କରିବାର କିଛି ନାହିଁ । ଅତୀତର ସମସ୍ତ ଶ୍ରେଷ୍ଠତ୍ୱ ସତ୍ତ୍ୱେ ଦେଶ ହିସାବରେ ଦୁହେଁ ତଳେ ପଡ଼ିଛନ୍ତି, ଜଣେ ଅନ୍ଧ ମଧ୍ୟ ଏହା ଦେଖିପାରିବ । ଅତୀତ ସଂସ୍କୃତି ହଠାତ୍ ଭାଙ୍ଗି ପଡ଼ି ନ ଥିବାର ଅର୍ଥ ନୁହେଁ ଯେ ଖରାପ ଦିଗରେ କୌଣସି ପରିବର୍ତ୍ତନ ହୋଇ ନାହିଁ । ଆମେ ଖୁବ୍ ଉଚ୍ଚରେ ଥିଲେ, ଆଜି ତଳେ ପଡ଼ିଛେ । ଏଥିରୁ ସ୍ପଷ୍ଟ ଯେ ଆମେ ଦୁନିଆରେ ତଳକୁ ଖସିଆସିଛେ । ଆମ ସଭ୍ୟତାର କ୍ରମାନ୍ୱୟ ଧାରା ଲାଗି ଆମେ ସନ୍ତୁଷ୍ଟ ହୋଇପାରୁ; ମାତ୍ର ଆମର ସଭ୍ୟତା ଯେତେବେଳେ ଅଚଳ ଧରିଲାଣି, ସେତେବେଳେ ଆନନ୍ଦ ହେବାର କିଛି ନାହିଁ । ବୋଧହୁଏ ଅତୀତ ସହିତ ଯଦି ସମ୍ବନ୍ଧ ହଠାତ୍ ତୁଟି ଯାଇଥାଆନ୍ତା, ଆମ ପକ୍ଷରେ ଭଲ ହୋଇଥାଆନ୍ତା । ଏହା ହୁଏତ ଆମ୍ଭମାନଙ୍କୁ ଦୋହଲାଇ ଦେଇଥାଆନ୍ତା ଏବଂ ନୂତନ ଜୀବନ ଓ ଜୀବନୀଶକ୍ତି ପ୍ରଦାନ କରିଥାଆନ୍ତା । ହୋଇପାରେ ଆଜି ଭାରତରେ ଓ ପୃଥିବୀରେ ଯେଉଁସବୁ ଘଟଣା ଘଟୁଛି ତାହା ଆମର ପୁରାତନ ଦେଶକୁ ଏକ ନୂତନ ପ୍ରେରଣା ଦେଉଛି ଏବଂ ପୁନର୍ବାର ଯୌବନ ଓ ନୂତନ ଜୀବନରେ ତାକୁ ପରିପୂର୍ଣ୍ଣ କରୁଛି ।

ଅତୀତରେ ଭାରତରେ ବ୍ୟାପକଭାବରେ ଯେଉଁ ଗ୍ରାମ-ପ୍ରଜାତନ୍ତ୍ର ବା ସ୍ୱାୟତ୍ତଶାସିତ ପଞ୍ଚାୟତପ୍ରଥା ପ୍ରଚଳିତ ଥିଲା, ସେଥିରେ ହିଁ ଭାରତର ଶକ୍ତି ଓ କର୍ମକୁଶଳତା ରହିଥିଲା । ଆଜିକାଲି ପରି ସେତେବେଳେ କୌଣସି ବଡ଼ ବଡ଼ ଭୂସ୍ୱାମୀ ଓ ଜମିଦାର ନ ଥିଲେ । ସମଗ୍ର ଗ୍ରାମବାସୀ ବା ପଞ୍ଚାୟତ ବା ଜମିରେ କାର୍ଯ୍ୟ କରୁଥିବା କୃଷକମାନଙ୍କ ଅଧିକାରରେ ଜମିସବୁ ଥିଲା । ଏହି ପଞ୍ଚାୟତଗୁଡ଼ିକ ହାତରେ ପ୍ରଚୁର କ୍ଷମତା ଓ କର୍ତ୍ତୃତ୍ୱ ରହିଥିଲା । ଗ୍ରାମବାସୀମାନେ ଏହାକୁ ନିର୍ବାଚନ କରୁଥିଲେ; ଚେଣ୍ଟ

ଏହି ପ୍ରଥାରେ ଏକପ୍ରକାର ଗଣତନ୍ତ୍ରର ଭିତ୍ତି ରହିଥିଲା । ରାଜାମାନେ ଆସିଲେ, ଗଲେ ବା ପରସ୍ପର ସହିତ ବିବାଦ କରିଥିଲେ; ମାତ୍ର ସେମାନେ ଏହି ଗ୍ରାମବ୍ୟବସ୍ଥା ସ୍ପର୍ଶ କରି ନ ଥିଲେ କିମ୍ବା ସେଥିରେ ହସ୍ତକ୍ଷେପ କରି ନ ଥିଲେ ଅଥବା ପଞ୍ଚାୟତଗୁଡ଼ିକର ସ୍ୱାଧୀନତା କ୍ଷୟ କରିବା ଲାଗି ସାହସ କରି ନ ଥିଲେ; ତେଣୁ ସାମ୍ରାଜ୍ୟଗୁଡ଼ିକର ପରିବର୍ତ୍ତନ ହେଲାବେଳେ ଗ୍ରାମ୍ୟ ବ୍ୟବସ୍ଥାରେ ପ୍ରତିଷ୍ଠିତ ସାମାଜିକ ଗଠନର କୌଣସି ପ୍ରକାର ପରିବର୍ତ୍ତନ ନ ହୋଇ ତାହା ପୂର୍ବପରି ଚାଲିଥିଲା । ସେଉଁ ଅଭିଯାନ, ଯୁଦ୍ଧ ଓ ଶାସନ ପରିବର୍ତ୍ତନର ବିବରଣୀମାନ ରହିଛି, ସେଥିରେ ସମସ୍ତ ଅଧିବାସୀ ଏଗୁଡ଼ିକରେ ସମ୍ପୃକ୍ତ ଥିଲେ ବୋଲି ଆମେ ଭାବିପାରୁ । ଅବଶ୍ୟ ବେଳେ ବେଳେ ବିଶେଷତଃ ଭାରତର ଉତ୍ତରରେ ଏହା ଲୋକମାନଙ୍କ ଉପରେ ପ୍ରଭାବ ପକାଇଛି; କିନ୍ତୁ ମୋଟାମୋଟି କୁହାଯାଇପାରେ ଯେ ଏଥିରେ ସେମାନେ ବିଚଳିତ ହୋଇ ନାହାନ୍ତି ଏବଂ ଉପରର ପରିବର୍ତ୍ତନ ସତ୍ତ୍ୱେ କାର୍ଯ୍ୟ ଚଳାଇ ଯାଇଛନ୍ତି ।

ଭାରତରେ ଦୀର୍ଘକାଳ ପର୍ଯ୍ୟନ୍ତ ସାମାଜିକ ବ୍ୟବସ୍ଥା ବଳବତ୍ତର ରହିବାର ଆଉ ଏକ କାରଣ ଥିଲା । ତାହା ହେଉଛି ମୂଳରୁ ପ୍ରଚଳିତ ଜାତିପ୍ରଥା । ଜାତି ନିୟମ ପରେ ଯେପରି କଠୋର ହୋଇଗଲା, ସେତେବେଳେ ସେପରି ନ ଥିଲା କିମ୍ବା କେବଳ ଜନ୍ମ ଉପରେ ଏହା ନିର୍ଭର କରୁ ନ ଥିଲା । ଏହା ହଜାର ହଜାର ବର୍ଷ ପର୍ଯ୍ୟନ୍ତ ଭାରତୀୟ ଜୀବନକୁ ଏକତ୍ର କରି ରଖିଥିଲା । ପରିବର୍ତ୍ତନ ବା ବିକାଶରେ ବାଧା ଦେଇ ନୁହେଁ, ପରିବର୍ତ୍ତନ ଆଣିବାରେ ସାହାଯ୍ୟ କରିବାଦ୍ୱାରା ଏହା ସମ୍ଭବ ହୋଇପାରିଥିଲା । ଧର୍ମଜୀବନ ପ୍ରତି ପୁରାତନ ଭାରତୀୟ ଦୃଷ୍ଟିକୋଣ ସର୍ବଦା ସହିଷ୍ଣୁତାପ୍ରସୂତ ଓ ପରିବର୍ତ୍ତନମୂଳକ ହୋଇଆସିଛି । ଏହା ହିଁ ଏହାକୁ ଶକ୍ତି ଦାନ କରିଛି । ଯାହାହେଉ କ୍ରମେ ବାରମ୍ବାର ଅଭିଯାନ ଓ ଅନ୍ୟ ଗୋଳମାଳ ହେତୁ ଜାତିପ୍ରଥା କଠୋର ହୋଇଗଲେ ଏବଂ ଏହା ସଙ୍ଗେ ସଙ୍ଗେ ସମସ୍ତ ଭାରତୀୟ ଦୃଷ୍ଟିକୋଣ ଅଧିକ କଠୋର ଓ ଅନୁଦାର ହୋଇପଡ଼ିଲା । ଏହି ପ୍ରକ୍ରିୟା ଚାଲିଲା । ଶେଷକୁ ଭାରତୀୟ ଲୋକେ ବର୍ତ୍ତମାନର ଶୋଚନୀୟ ଅବସ୍ଥାରେ ପଡ଼ିଲେ ଏବଂ ଜାତିପ୍ରଥା ପ୍ରତ୍ୟେକ ପ୍ରକାର ପ୍ରଗତିରେ ଶତ୍ରୁରୂପେ ଛିଡ଼ାହେଲା । ସାମାଜିକ ଗଠନକୁ ଏକତ୍ର କରିବା ପରିବର୍ତ୍ତେ ଏହା ତାକୁ ଖଣ୍ଡ ଖଣ୍ଡ ବିଭାଗ କରି ପକାଇଛି; ଆମକୁ ଦୁର୍ବଳ କରିଛି ଓ ଭାଇ ଭାଇ ବିରୁଦ୍ଧରେ ଯାଉଛି ।

ଏହିରୂପେ ଭାରତର ସାମାଜିକ ବ୍ୟବସ୍ଥା ଦୃଢ଼ କରିବାରେ ଅତୀତରେ ଜାତିପ୍ରଥା ସାହାଯ୍ୟ କରିଥିଲା; କିନ୍ତୁ ଏଥିରେ ବି ପତନର ବୀଜ ରହିଥିଲା । ଅସାମଞ୍ଜସ୍ୟ ଓ ଅନ୍ୟାୟକୁ ସ୍ଥାୟୀ କରିବା ଭିତ୍ତିରେ ଏହା ପ୍ରତିଷ୍ଠିତ ଏବଂ ଏପରି ପ୍ରଚେଷ୍ଟା ଶେଷରେ ନିଶ୍ଚୟ ବ୍ୟର୍ଥ ହେବାର କଥା । ଅସମାନତା ଓ ଅନ୍ୟାୟ ଉପରେ କିମ୍ବା ଏକ ଶ୍ରେଣୀ

ବା ଗୋଷ୍ଠୀ ଅପର ଏକ ଶ୍ରେଣୀ ବା ଗୋଷ୍ଠୀକୁ ଶୋଷଣ କରିବା ଉପରେ ପ୍ରତିଷ୍ଠିତ କୌଣସି ସମାଜ ସ୍ଥାୟୀ ବା ଉପଯୋଗୀ ହୋଇପାରିବ ନାହିଁ । ଆଜି ଏହିସବୁ ଅନ୍ୟାୟ ଶୋଷଣ ହେତୁ ଆମେ ସମଗ୍ର ଦୁନିଆରେ ଏତେ ଗୋଲମାଳ ଓ ଦୁଃଖ ଦେଖିବାକୁ ପାଉ । ପ୍ରତ୍ୟେକ ସ୍ଥାନର ଲୋକେ ଏହା ଉପଲବ୍‌ଧି କରିଛନ୍ତି ଏବଂ ଏଥିରୁ ଉଦ୍ଧାର ପାଇବା ନିମନ୍ତେ କଠିନ ଚେଷ୍ଟା କରିଛନ୍ତି ।

ଭାରତ ସରି ଚୀନରେ ଗ୍ରାମଗୁଡ଼ିକରେ ହିଁ ସାମାଜିକ ବ୍ୟବସ୍ଥା ଦୃଢ଼ ଥିଲା ଏବଂ ଯେଉଁ ଲକ୍ଷ ଲକ୍ଷ କୃଷକ ଜମିର ମାଲିକ ଥିଲେ ଓ ଚାଷ କରୁଥିଲେ, ସେମାନେ ଦେଶର ମେରୁଦଣ୍ଡ ଥିଲେ । ସେଠାରେ କୌଣସି ବଡ଼ ଜମିଦାର ନ ଥିଲେ । ଧର୍ମ କେବେ ଧର୍ମାନ୍ଧତା ଶିକ୍ଷା ଦେଉ ନ ଥିଲା କିମ୍ବା ଅସହିଷ୍ଣୁ ହେଉ ନ ଥିଲା । ପୃଥିବୀରେ ଅନ୍ୟ ସମସ୍ତ ଲୋକଙ୍କ ମଧ୍ୟରେ ସମ୍ଭବତଃ ଚୀନାମାନେ ଧର୍ମ ଦିଗରେ ସେତେ ଧର୍ମାନ୍ଧ ହୋଇ ନାହାନ୍ତି ଏବଂ ଏବେ ମଧ୍ୟ ସେ ଦିଗରେ ଅନ୍ୟମାନଙ୍କ ଅପେକ୍ଷା ସେମାନେ ଖୁବ୍ କମ ଧର୍ମାନ୍ଧ ହୋଇଛନ୍ତି ।

ଆହୁରି ମଧ୍ୟ ତୋର ମନେ ରଖିବାର କଥା ଯେ ଗ୍ରୀସ୍ ବା ରୋମରେ କିମ୍ବା ଆହୁରି ଆଗରୁ ଇଜିପ୍ଟରେ ଯେପରି ଶ୍ରମିକ ଦାସତ୍ୱ ଥିଲା, ଭାରତ ଓ ଚୀନରେ ସେପରି କିଛି ନ ଥିଲା । କେତେକ ଘରୋଇ ଚାକର ଅବଶ୍ୟ ଦାସରୂପେ ଥିଲେ; କିନ୍ତୁ ସାମାଜିକ ବ୍ୟବସ୍ଥାରେ ତାହା କୌଣସି ପାର୍ଥକ୍ୟ ଘଟାଇ ନ ଥିଲା । ସେହି ପ୍ରକାରେ ଏଗୁଡ଼ିକର ବ୍ୟତିରେକେ ମଧ୍ୟ ଏହି ବ୍ୟବସ୍ଥା ଚାଲି ପାରିଥାଆନ୍ତା; କିନ୍ତୁ ପୁରାତନ ଗ୍ରୀସ୍ ବା ରୋମର ସେପରି ନ ଥିଲା । କାରଣ ସେଠାରେ ବହୁସଂଖ୍ୟକ ଦାସ ହିଁ ବ୍ୟବସ୍ଥାର ଏକ ଆବଶ୍ୟକ ଅଂଶ ଥିଲେ ଏବଂ ସମସ୍ତ କାର୍ଯ୍ୟର ପ୍ରକୃତ ବୋଝ ତାଙ୍କ ଉପରେ ପଡ଼ିଥିଲା । ଦାସ ଶ୍ରମିକ ନ ଥିଲେ ଯେଉଁସବୁ ବିଶାଳ ପିରାମିଡ଼ ଇଜିପ୍ଟରେ ରହିଛି, ତାହା କେଉଁଠି ଥାଆନ୍ତା ?

ମୁଁ ଚୀନ ସମ୍ବନ୍ଧରେ ଏହି ଚିଠି ଲେଖା ଆରମ୍ଭ କରିଥିଲି ଏବଂ ସେହି ଦେଶର କାହାଣୀ ଲେଖିବା ପାଇଁ ଇଚ୍ଛା କରିଥିଲି, କିନ୍ତୁ ମୁଁ ଅନ୍ୟ ବିଷୟକୁ ଖସିଗଲି । ଏହା ମୋ ପକ୍ଷରେ କିଛି ଅସାଧାରଣ କଥା ନୁହେଁ । ସମ୍ଭବତଃ ଆଗାମୀ ଚିଠିରେ ଆମେ କେବଳ ଚୀନ ବିଷୟ ବର୍ଣ୍ଣନା କରିବା ।

## ୪୧ । ଟାଙ୍ଗଙ୍କ ଅଧୀନରେ ଚୀନ୍ ବୃଦ୍ଧି ପାଇଲା

ମେ ୭, ୧୯୩୨

ମୁଁ ତୋତେ ଚୀନରେ ହାନବଂଶ, ବୌଦ୍ଧଧର୍ମର ଆଗମନ, ମୁଦ୍ରଣଯନ୍ତ୍ରର ଆବିଷ୍କାର ଏବଂ ସାଧାରଣ କର୍ମଚାରୀ ବାଛିବା ନିମନ୍ତେ ପରୀକ୍ଷାପ୍ରଥାର ପ୍ରଚଳନ ସମ୍ବନ୍ଧରେ

କରିଥିଲା । ଖ୍ରୀଷ୍ଟପର ତୃତୀୟ ଶତାବ୍ଦୀରେ ହାନବଂଶ ଶେଷ ହେଲା ଏବଂ ସାମ୍ରାଜ୍ୟ ତିନୋଟି ରାଷ୍ଟ୍ରରେ ବିଭକ୍ତ ହୋଇଗଲା । ଏହାକୁ "ତିନ ରାଜ୍ୟ" ବିଭକ୍ତ କରିବା ଅମଳ ବୋଲି କୁହାଯାଏ । ଏହା କେତେ ଶହ ବର୍ଷ ପର୍ଯ୍ୟନ୍ତ ତିଷ୍ଠି ରହିଲା, ଶେଷରେ ଚୀନ ପୁନର୍ବାର ଏକତ୍ର ହେଲା ଏବଂ ଟାଙ୍ଗବଂଶ ନାମକ ଏକ ନୂତନ ବଂଶ ଗୋଟିଏ ଶକ୍ତିଶାଳୀ ରାଷ୍ଟ୍ର ପ୍ରତିଷ୍ଠା କଲେ । ଏହା ସପ୍ତମ ଶତାବ୍ଦୀର ଆରମ୍ଭ ବେଳର କଥା ।

କିନ୍ତୁ ଏହି ବିଭାଗ କାଳରେ ହିଁ ଉତ୍ତରରୁ ତାତାରମାନଙ୍କ ଆକ୍ରମଣ ସତ୍ତ୍ୱେ ଚୀନ ସଂସ୍କୃତି ଓ କଳା ବଞ୍ଚି ରହିଥିଲା । ଏ ଦେଶରେ ବିଶାଳ ପୁସ୍ତକାଗାର ଓ ସୁନ୍ଦର ଅଙ୍କିତ ଛବିସବୁ ଥିବାର ଶୁଣାଯାଏ । ଭାରତ ଖାଲି ଯେ ତାହାର ସୁନ୍ଦର ବସ୍ତ୍ର ଓ ଅନ୍ୟ ପଦାର୍ଥ ରପ୍ତାନି କରିଥିଲା, ତାହା ନୁହେଁ; ତାହାର ଚିନ୍ତା, ଧର୍ମ ଓ କଳା ମଧ୍ୟ ସେହି ଦେଶକୁ ଗଲା । ଅନେକ ବୌଦ୍ଧସନ୍ନ୍ୟାସୀ ଭାରତରୁ ଚୀନକୁ ଗଲେ ଏବଂ ସେମାନେ ଭାରତୀୟ କଳାର ପରମ୍ପରା ସେମାନଙ୍କ ସହିତ ନେଇଗଲେ ଏବଂ ଅନେକ ଭାରତୀୟ କଳାବିତ୍ ଓ ନିପୁଣ କାରିଗର ବି ଯାଇଥିବା ସମ୍ଭବ । ଭାରତରୁ ବୌଦ୍ଧଧର୍ମ ଓ ନୂତନ ଭାବଧାରାର ଆଗମନ ଚୀନ ଉପରେ ଖୁବ୍ ପ୍ରଭାବ ପକାଇଲା । ଚୀନ ଅବଶ୍ୟ ଏକ ଅତ୍ୟନ୍ତ ସଭ୍ୟ ଦେଶ ହୋଇ ରହିଥିଲା । ତେଣୁ ଭାରତୀୟ ଧର୍ମ, ଚିନ୍ତା ବା କଳା କିଛି ଏକ ଅନୁନ୍ନତ ରାଜ୍ୟକୁ ଯାଇ ତାହା ଅଧିକାର କରି ନ ଥିଲା । ଏହାକୁ ଚୀନରେ ପୁରାତନ କଳା ଓ ଚିନ୍ତାଧାରର ସମ୍ମୁଖୀନ ହେବାକୁ ପଡ଼ିଲା । ଦୁଇଟିର ପ୍ରଭାବ ଫଳରେ ପରସ୍ପର ଠାରୁ ବିଭିନ୍ନ ବିଷୟର ଉଦ୍ଭବ ହେଲା । ଏଥିରେ ଭାରତର ଅନେକ ଜିନିଷ ରହିଲା; ତଥାପି ଏହା ମୂଳତଃ ଚୀନର ହିଁ ହେଲା ଏବଂ ଚୀନା ଭାବରେ ଗଠିତ ହୋଇଗଲା । ଏହିରୂପେ ଭାରତରୁ ଏହିସବୁ ଚିନ୍ତାସ୍ରୋତ ଆଗମନ ଫଳରେ ଚୀନ୍‌ର କଳା ଓ ମାନସିକ ଜୀବନରେ ଏକ ନୂତନ ପ୍ରେରଣା ଓ ସ୍ଫୂର୍ତ୍ତି ଜାଗରୂକ ହେଲା ।

ସେହିପରି ଭାବରେ ବୌଦ୍ଧଧର୍ମ ଓ ଭାରତୀୟ କଳାର ବାର୍ତ୍ତା ଆହୁରି ପୂର୍ବକୁ କୋରିଆ ଓ ଜାପାନ ପର୍ଯ୍ୟନ୍ତ ଯାଇଥିଲା ଏବଂ ଏହିସବୁ ଦେଶରେ ଏହା କିପରି ପ୍ରଭାବ ପକାଇଥିଲା, ତାହା ଜାଣିଲେ କୌତୁହଳ ଜନ୍ମେ । ପ୍ରତ୍ୟେକ ଦେଶ ନିଜର ବିଶେଷ ଜ୍ଞାନ ସହିତ ଖାପ ଖୁଆଇ ଏହା ଗ୍ରହଣ କରିଥିଲେ; ତେଣୁ ଚୀନ ଓ ଜାପାନରେ ବୌଦ୍ଧଧର୍ମ ବୃଦ୍ଧି ପାଇଥିଲେ ସୁଦ୍ଧା ପ୍ରତ୍ୟେକ ଦେଶରେ ଏହାର ଧରଣ ଭିନ୍ନ ଢଙ୍ଗର । ସମ୍ଭବତଃ ଭାରତରୁ ଯେଉଁ ବୌଦ୍ଧଧର୍ମ ଯାଇଥିଲା, ତାହାର ଏହା ସହିତ ଅନେକ ପାର୍ଥକ୍ୟ ରହିଛି । ଦେଶ-କାଳ-ପାତ୍ର ଅନୁସାରେ କଳାରେ ବି ପାର୍ଥକ୍ୟ ଘଟେ, ପରିବର୍ତ୍ତନ ହୁଏ । ଭାରତରେ ଏକ ଜାତି ହିସାବରେ ଆମେ ଏବେ କଳା ଓ ସୌନ୍ଦର୍ଯ୍ୟ ଭୁଲିଯାଇଛୁ । ଆମେ ଯେ କେବଳ ଦୀର୍ଘକାଳ ହେଲା କୌଣସି ବିରାଟ ସୌନ୍ଦର୍ଯ୍ୟ ସୃଷ୍ଟି କରି ନାହୁଁ, ତାହା ନୁହେଁ;

ମାନ ସୌନ୍ଦର୍ଯ୍ୟକୁ ପସନ୍ଦ କରିବାର ଭାବ ବି ହରାଇବସିଛୁ । ଯେଉଁ ଦେଶ ସ୍ୱାଧୀନ ନୁହେଁ, ସେଥିରେ ସୌନ୍ଦର୍ଯ୍ୟ ଓ କଳା କପରି ବୃଦ୍ଧି ପାଇବ ? ପରାଧୀନତା ଓ ଶୃଙ୍ଖଳାର ଆଚ୍ଛାଦନରେ ଏହା ଲଭିଯାଏ; କିନ୍ତୁ ସ୍ୱାଧୀନତାର ଭାବ ଆସିବା ସଙ୍ଗେ ସଙ୍ଗେ ଆମ ଭିତରେ ସୌନ୍ଦର୍ଯ୍ୟ ଧାରଣା ବି ବଢ଼ୁଛି । ସ୍ୱାଧୀନତା ଆସିଲେ ଆମ ଦେଶରେ କଳା ଓ ସୌନ୍ଦର୍ଯ୍ୟର ପୁନରୁଦ୍ଧାର ହେବ ଏବଂ ମୁଁ ଆଶାକରେ ଯେ ଏଥିରେ ଆମ ଘରେ, ସହର-ମାନଙ୍କରେ ଓ ଜୀବନରେ ଯେଉଁ ଆବର୍ଜନା ରହିଛି, ତାହା ଧୋଇ ହୋଇଯିବ । ଭାରତ ଅପେକ୍ଷା ଚୀନ୍ ଓ ଜାପାନ ଅଧିକ ଭାଗ୍ୟବାନ ଏବଂ ସେମାନେ ଏବେ ସୁଦ୍ଧା ତାଙ୍କର ସୌନ୍ଦର୍ଯ୍ୟ ଓ କଳା ଜ୍ଞାନ ଅନେକ ପରିମାଣରେ ରକ୍ଷା କରିପାରିଛନ୍ତି ।

ଚୀନ୍‌ରେ ବୌଦ୍ଧଧର୍ମ ପ୍ରସାର ହେବାରୁ ସେଠାକୁ ଅଧିକରୁ ଅଧିକ ସଂଖ୍ୟାରେ ଭାରତୀୟ ବୌଦ୍ଧ ସନ୍ନ୍ୟାସୀ ଗଲେ ଏବଂ ଚୀନା ସନ୍ନ୍ୟାସୀମାନେ ଭାରତ ଓ ଅନ୍ୟ ଦେଶରେ ଭ୍ରମଣ କଲେ । ମୁଁ ତୋତେ ଫାହିଆନଙ୍କ କଥା କହିଛି; ତୁ ହୁଏନ୍‌ସାଂଙ୍କ କଥା ମଧ୍ୟ ଜାଣୁ । ଏ ଦୁହେଁ ଭାରତକୁ ଆସିଥିଲେ । ପୂର୍ବସାଗର ପାରହୋଇ ହୁଇଶିଂ ନାମକ ଜଣେ ଚୀନ୍ ସନ୍ନ୍ୟାସୀଙ୍କ ଯାତ୍ରା ସମ୍ବନ୍ଧରେ ବଡ଼ କୌତୂହଳ ଉଦ୍ଦୀପକ ବିବରଣୀ ରହିଛି । ୪୯୯ଖ୍ରୀ: ରେ ସେ ଚୀନ୍ ରାଜଧାନୀକୁ ଆସିଥିଲେ ଏବଂ କୁହାଯାଏ ଯେ ଚୀନ୍‌ର ପୂର୍ବକୁ କେତେ ହଜାର ମାଇଲ ଦୂରରେ ଏକ ଦେଶ ସେ ଦେଖିଲେ ଏବଂ ତାହାର ନାମ ସେ ଫୁସାଙ୍ଗ୍ ଦେଇଥିଲେ । ଚୀନ୍ ଓ ଜାପାନର ପୂର୍ବରେ ପ୍ରଶାନ୍ତ ମହାସାଗର ରହିଛି ଏବଂ ହୁଇଶିଂ ଏହି ସାଗର ପାରି ହୋଇଥିବା ସମ୍ଭବ । ସେ ସମ୍ଭବତଃ ମେକ୍‌ସିକୋ ଯାଇଥିଲେ; କାରଣ ସେତେବେଳେ ବି ମେକ୍‌ସିକୋରେ ଏକ ପୁରାତନ ସଭ୍ୟତା ଥିଲା ।

ଚୀନ୍‌ରେ ବୌଦ୍ଧଧର୍ମର ପ୍ରସାର ଦେଖି ଭାରତୀୟ ବୌଦ୍ଧମାନଙ୍କର ଧର୍ମାଧ୍ୟକ୍ଷ ଦକ୍ଷିଣ-ଭାରତରୁ ଚୀନରେ କ୍ୟାଣ୍ଟନ ପର୍ଯ୍ୟନ୍ତ ଯାତ୍ରା କଲେ । ତାଙ୍କର ନାମ ବା ଉପାଧି ଥିଲା ବୋଧିଧର୍ମ । ସମ୍ଭବତଃ ଭାରତରେ ବୌଦ୍ଧଧର୍ମ ଦୁର୍ବଳ ହୋଇପଡ଼ିବାରୁ ସେ ଚୀନ ଯିବାକୁ ଇଚ୍ଛା କଲେ । ସେ ଜଣେ ବୃଦ୍ଧ ଲୋକ ଓ ୫୨୬ ଖ୍ରୀ:ରେ ଚୀନ୍‌କୁ ଯାଇଥିଲେ । ତାଙ୍କ ସହିତ ଓ ତାଙ୍କ ପରେ ବି ଚୀନ୍‌କୁ ଅନେକ ସନ୍ନ୍ୟାସୀ ଯାଇଥିଲେ । କୁହାଯାଏ ଯେ ଚୀନର କେବଳ ଲୋୟାଙ୍ଗ ପ୍ରଦେଶରେ ସେତେବେଳେ ୩୦୦୦ରୁ ଅଧିକ ଭାରତୀୟ ସନ୍ନ୍ୟାସୀ ଓ ୧୦,୦୦୦ ଭାରତୀୟ ପରିବାର ବାସ କରୁଥିଲେ ।

ଅଳ୍ପଦିନ ପରେ ଭାରତରେ ପୁନର୍ବାର ବୌଦ୍ଧଧର୍ମର ଜାଗରଣ ହେଲା ଏବଂ ବୁଦ୍ଧଙ୍କ ଜନ୍ମସ୍ଥଳୀ ଓ ଏଠାରେ ବୁଦ୍ଧଙ୍କ ପବିତ୍ର ଲେଖାସବୁ ଥିବାରୁ ବୌଦ୍ଧ ସାଧୁମାନେ ଏଠାକୁ ଆସିବାକୁ ଉତ୍ସୁକ ଥିଲେ; କିନ୍ତୁ ଭାରତରୁ ବୌଦ୍ଧଧର୍ମର ଯଶ ଚାଲିଯାଇଛି ଏବଂ ଚୀନ ଆଜି ମୁଖ୍ୟ ବୌଦ୍ଧ ଦେଶ ହୋଇ ରହିଛି ।

୬୧୮ ଖ୍ରୀ. ରେ ସମ୍ରାଟ୍ କାଓ-ସୁ ଟାଙ୍ଗ୍ ବଂଶ ଆରମ୍ଭ କଲେ । ସେ ଯେ ଖାଲି ସମଗ୍ର ଚୀନକୁ ଏକତ୍ର କରିପାରିଥିଲେ ତାହା ନୁହେଁ, ମାତ୍ର ଏକ ବିସ୍ତୃତ ଅଞ୍ଚଳ—ଦକ୍ଷିଣରେ କାମ୍ବୋଡ଼ିଆ ଓ ଆନାମ୍ ଉପରେ ଏବଂ ପଶ୍ଚିମରେ କାସ୍ପିୟାନ ସାଗର ଓ ଇରାନ ପର୍ଯ୍ୟନ୍ତ ନିଜର କର୍ତ୍ତୃତ୍ୱ ବିସ୍ତାର କରିଥିଲେ । କୋରିଆର ଏକ ଅଞ୍ଚଳ ଏହି ବିଶାଳ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ଥିଲା । ସାମ୍ରାଜ୍ୟର ରାଜଧାନୀ ଥିଲା ସିଆନଫୁ । ସଂସ୍କୃତି ଦିଗରୁ ଏହି ସହର ପୂର୍ବ-ଏସିଆରେ ପ୍ରସିଦ୍ଧ । ଜାପାନ ଓ ଦକ୍ଷିଣ-କୋରିଆରୁ ରାଜଦୂତ ଓ କମିଶନ ସବୁ ଏଠାରେ କଳା, ଦର୍ଶନ ଓ ସଭ୍ୟତା ଅଧ୍ୟୟନ କରିବାକୁ ଆସୁଥିଲେ । କୋରିଆ ଏପର୍ଯ୍ୟନ୍ତ ସ୍ୱାଧୀନ ଥିଲା ।

ଟାଙ୍ଗ ସମ୍ରାଟମାନେ ବିଦେଶୀ ବେପାର ଓ ବିଦେଶୀ ଦର୍ଶକଙ୍କର ଆଗମନକୁ ଉତ୍ସାହିତ କରିଥିଲେ । ଚୀନରେ ବସତି କରୁଥିବା ବା ଆସୁଥିବା ବିଦେଶୀମାନଙ୍କ ପାଇଁ ବିଶେଷ ଆଇନମାନ କରାଗଲା । ତାହାହେଲେ ଯେଉଁଠି ସମ୍ଭବ ସେମାନଙ୍କୁ ତାଙ୍କର ନିଜର ନୀତି ଅନୁସାରେ ବିଚାର କରିହେବ । ଆମେ ଦେଖୁ ବିଶେଷ ଭାବରେ ପ୍ରାୟ ତିନି ଶହ ଖ୍ରୀଷ୍ଟାବ୍ଦରେ ଆରବମାନେ କ୍ୟାଣ୍ଟନ ନିକଟରେ ଦକ୍ଷିଣଚୀନରେ ବସତି ବାନ୍ଧିଥିଲେ । ଏହା ଇସ୍ଲାମ୍ ପୂର୍ବରୁ ହୋଇଥିଲା, ଅର୍ଥାତ୍ ପ୍ରଫେଟ୍ ମହମ୍ମଦଙ୍କ ଜନ୍ମ ପୂର୍ବରୁ । ଏହି ଆରବମାନଙ୍କ ସାହାଯ୍ୟରେ ଏକ ଦରିଆପାରି ବେପାର ବୃଦ୍ଧି ହେଲା, ଆରବ ଏବଂ ଚୀନା ଜାହାଜମାନଙ୍କଦ୍ୱାରା ଏହି କାରବାର ଚାଲିଲା ।

ତୁ ଶୁଣିଲେ ଆଶ୍ଚର୍ଯ୍ୟ ହେବୁ ଯେ ଜନଗଣନା ଅର୍ଥାତ୍ କୌଣସି ଦେଶର ଲୋକସଂଖ୍ୟା ଜାଣିବା ପାଇଁ ଅଧିବାସୀମାନଙ୍କୁ ଗଣିବା ପ୍ରଥା ବହୁକାଳରୁ ଚୀନରେ ପ୍ରଚଳିତ ଅଛି । କଥିତ ଅଛି ଯେ ସେଠାରେ ୧୫୬ ଖ୍ରୀ: ରେ ଏକ ଜନଗଣନା ହୋଇଥିଲା । ଏହା ହାନ୍‌ମାନଙ୍କ ଅମଳରେ ହୋଇଥିବ । ମୁଣ୍ଡପିଛା ଗଣତି ନ ହୋଇ ପରିବାରର ହିସାବ ନିଆ ହେଉଥିଲା । ପ୍ରତ୍ୟେକ ପରିବାରରେ ମୋଟାମୋଟି ୫ ଜଣ ଲୋକ ଅଛନ୍ତି ବୋଲି ଧରିନିଆଯାଉଥିଲା । ଏହି ଗଣତି ଅନୁସାରେ ୧୫୬ ଖ୍ରୀ:ରେ ଚୀନର ଲୋକସଂଖ୍ୟା ପ୍ରାୟ ୫,୦୦,୦୦,୦୦୦ ଥିଲା । ଏହା ଅବଶ୍ୟ ଏକଦମ୍ ଠିକଣା ଉପାୟ ନୁହେଁ; ମାତ୍ର ପାଶ୍ଚାତ୍ୟ ଦେଶରେ ବି ଜନଗଣନା ଏକ ନୂଆ ଜିନିଷ । ମୋର ବିଶ୍ୱାସ ପ୍ରାୟ ୧୫୦ ବର୍ଷ ପୂର୍ବେ ସଂଯୁକ୍ତରାଷ୍ଟ୍ର ଆମେରିକାରେ ପ୍ରଥମ ଜନଗଣନା ହୋଇଥିଲା ।

ଟାଙ୍ଗ ରାଜୁତି ଆରମ୍ଭରେ ଖ୍ରୀଷ୍ଟଧର୍ମ ଓ ଇସ୍ଲାମ ଚୀନରେ ଦେଖାଦେଲା । ଯେଉଁ ସମ୍ପ୍ରଦାୟ ଖ୍ରୀଷ୍ଟଧର୍ମ ଆଣିଥିଲେ, ସେମାନଙ୍କୁ ବିଧର୍ମୀ ବୋଲି ଘୋଷଣା କରାଗଲା ଏବଂ ପାଶ୍ଚାତ୍ୟ ଦେଶରୁ ତଡ଼ି ଦିଆଯାଇଥିଲା । ସେମାନଙ୍କୁ ନେଷ୍ଟୋରିଆନ ବୋଲି କୁହାଯାଉଥିଲା । ଖ୍ରୀଷ୍ଟିଆନ ସମ୍ପ୍ରଦାୟଙ୍କ ଭିତରେ ବିବାଦ ଓ ଯୁଦ୍ଧ ସମ୍ବନ୍ଧରେ ମୁଁ ପୂର୍ବରୁ

ଚୋଟେ ଲେଖିଥିଲି । ଏହିପରି ଏକ ବିବାଦର ଫଳସ୍ୱରୂପ ନେଷ୍ଟୋରିଆନମାନଙ୍କୁ ରୋମରୁ ବାହାର କରି ଦିଆଗଲା; କିନ୍ତୁ ସେମାନେ ଚୀନ୍, ଇରାନ୍ ଓ ଏସିଆର ଅନ୍ୟ କେତେକ ଅଞ୍ଚଳରେ ବିସ୍ତାର ଲାଭ କଲେ । ସେମାନେ ଭାରତକୁ ବି ଆସିଲେ ଏବଂ ଏଠାରେ ବି କେତେକ ପରିମାଣରେ କୃତକାର୍ଯ୍ୟ ହେଲେ; କିନ୍ତୁ ପରେ ଖ୍ରୀଷ୍ଟଧର୍ମର ଅନ୍ୟ ଶାଖାସବୁ ଓ ଇସଲାମ ଆସି ସେମାନଙ୍କୁ ଗ୍ରାସ କଲେ ଓ ବର୍ତ୍ତମାନ ଏହାର ଚିହ୍ନ ସୁଦ୍ଧା ନାହିଁ । ଗତବର୍ଷ ମୁଁ ଦକ୍ଷିଣ-ଭାରତ ଯାଇଥିଲାବେଳେ ଏକ ସ୍ଥାନରେ ସେମାନଙ୍କର ଏକ ଶ୍ରେଣୀ ବିଷୟ ଦେଖି ଅତ୍ୟନ୍ତ ଆଶ୍ଚର୍ଯ୍ୟ ହୋଇଥିଲି । ତୋର ମନେ ଅଛି ତ ? ସେମାନଙ୍କର ଧର୍ମଯାଜକ ଏକ ଗୃହାଭୋଜରେ ଆମର ଅଭ୍ୟର୍ଥନା କରିଥିଲେ । ସେ ବୃଦ୍ଧଟି ବଡ଼ ସୁନ୍ଦର ଲୋକ ।

ଚୀନରେ ଖ୍ରୀଷ୍ଟଧର୍ମ ପହଞ୍ଚିବାକୁ କେତେ ସମୟ ଲାଗିଗଲା; କିନ୍ତୁ ଇସଲାମ୍ ବଡ଼ ଜଲଦି ଆସିଲା । ବାସ୍ତବିକ୍ ନେଷ୍ଟୋରିଆନ୍‌ଙ୍କ କେତେକ ବର୍ଷ ପୂର୍ବରୁ ଓ ପ୍ରଫେଟ୍‌ଙ୍କ ଜୀବନକାଳ ଭିତରେ ଏହା ଆସିଥିଲା । ଚୀନ ସମ୍ରାଟ୍ ଇସଲାମ୍ ଓ ନେଷ୍ଟୋରିଆନ୍ ଉଭୟ ପ୍ରତିନିଧିଙ୍କ ପ୍ରତି ଭଦ୍ର ଆଚରଣ କରିଥିଲେ ଏବଂ ସେମାନଙ୍କର କଥା ମନଯୋଗ ସହିତ ଶୁଣିଥିଲେ । ସେ ସେମାନଙ୍କର ଦୃଷ୍ଟିକୋଣ ପସନ୍ଦ କଲେ ଓ ନିରପେକ୍ଷ ଭାବରେ ସେମାନଙ୍କୁ ଅନୁଗ୍ରହ ଦେଖାଇଥିଲେ । କାଣ୍ଟନରେ ଏକ ମସଜିଦ୍ ନିର୍ମାଣ ନିମନ୍ତେ ଆରବମାନଙ୍କୁ ଅନୁମତି ଦିଆଯାଇଥିଲା । ୧୩୦୦ ବର୍ଷ ବିତିଗଲେ ସୁଦ୍ଧା ଏହି ମସ୍‌ଜିଦ୍ ଏବେ ବି ରହିଛି ଏବଂ ପୃଥିବୀରେ ଏହା ଏକ ପୁରାତନ ମସଜିଦ୍ ।

ସେହିପରି ଟାଙ୍ଗ ସମ୍ରାଟ୍ ଖ୍ରୀଷ୍ଟିଆନ ଗୀର୍ଜା ଓ ଧର୍ମପୀଠ ନିର୍ମାଣ କରିବାକୁ ଅନୁମତି ଦେଲେ । ଚୀନ ସମ୍ରାଟଙ୍କର ଏପରି ସହନଶୀଳ ମନୋଭାବ ସହ ସେ କାଳର ଇଉରୋପର ଅସହିଷ୍ଣୁତା ମଧ୍ୟରେ ପାର୍ଥକ୍ୟ ସ୍ପଷ୍ଟ ପରିଲକ୍ଷିତ ହୁଏ ।

କଥିତ ଅଛି ଯେ ଚୀନାମାନଙ୍କଠାରୁ ଆରବୀମାନେ କାଗଜ ତିଆରି ବିଦ୍ୟା ଶିଖିଲେ ଏବଂ ତାପରେ ସେମାନେ ଇଉରୋପକୁ ଏହା ଶିଖାଇଲେ । ୭୫୧ ଖ୍ରୀ:ରେ ମଧ୍ୟ-ଏସିଆର ତୁର୍କୀସ୍ଥାନରେ ଚୀନା ଓ ମୁସଲମାନ ଆରବୀମାନଙ୍କ ଭିତରେ ଏକ ଯୁଦ୍ଧ ହୋଇଥିଲା । ଆରବମାନେ କେତେ ଚୀନାଙ୍କୁ ବନ୍ଦୀ କଲେ ଏବଂ ଏହି ବନ୍ଦୀମାନେ କାଗଜ ତିଆରି କୌଶଳ ସେମାନଙ୍କୁ ଶିଖାଇଲେ ।

ଟାଙ୍ଗବଂଶ ୩୦୦ ବର୍ଷ କାଳ ଅର୍ଥାତ୍ ୯୦୭ ଖ୍ରୀ: ପର୍ଯ୍ୟନ୍ତ ରହିଥିଲା । କେତେକଙ୍କ କଥାନୁସାରେ ଏହି ତିନି ଶହ ବର୍ଷ ଚୀନର ସର୍ବାପେକ୍ଷା ସମୃଦ୍ଧିକାଳ- । ସେତେବେଳେ ସେଠାରେ କେବଳ ସଂସ୍କୃତି ଯେ ଉଚ୍ଚ ସୋପାନରେ ଥିଲା ତାହା

ନୁହେଁ, ସାଧାରଣ ଲୋକ ବି ଭଲରେ ଥିଲେ । ଚୀନାମାନେ ସେତେବେଳେ ସେଉଁସବୁ ଜିନିଷ ଜାଣିଥିଲେ, ସେଥିରୁ ଅନେକ କଥା ପାଶ୍ଚାତ୍ୟ ଦେଶର ଲୋକେ ବହୁତ ଦିନ ପରେ ଜାଣିପାରିଲେ । କାଗଜ କଥା ଆଗରୁ କହିଛି । ଆଉ ଗୋଟିଏ ଜିନିଷ ହେଉଛି ବାରୁଦ । ଖୁବ୍ ଭଲ ଇଞ୍ଜିନିଅର ଥିଲେ ଏବଂ ସାଧାରଣତଃ ପ୍ରାୟ ପ୍ରତ୍ୟେକ କଥାରେ ଚୀନବାସୀ ଇଉରୋପଠାରୁ ବହୁତ ଆଗରେ ଥିଲେ । ଏତେ ଆଗୁଆ ଥିବା ଲୋକେ ସେପରି ନ ରହିଲେ ବା କାହିଁକି ଏବଂ ଇଉରୋପକୁ ବିଜ୍ଞାନ ଓ ଆବିଷ୍କାରରେ ନେତୃତ୍ୱ ନ ଦେଲେ ବା କାହିଁକି ? କିନ୍ତୁ ଜଣେ ଯୁବକ ବୃଦ୍ଧ ଲୋକକୁ ଅତିକ୍ରମ କରିଗଲେ ପରି ଇଉରୋପ ସେଗୁଡ଼ିକ ଗ୍ରହଣ କରିଗଲା ଏବଂ ଅନ୍ତତଃ କେତେ ବିଷୟରେ ଅତିଶୀଘ୍ର ଚୀନଠାରୁ ଅଗ୍ରଗାମୀ ହୋଇଗଲା । ଦେଶମାନଙ୍କର ଇତିହାସରେ କାହିଁକି ଯେ ଏପରି ଘଟେ, ତାହା ଚିନ୍ତା କରିବା ଦାର୍ଶନିକମାନଙ୍କ ପକ୍ଷରେ କଷ୍ଟକର । ମୁଁ ତ ଏପର୍ଯ୍ୟନ୍ତ ଦାର୍ଶନିକ ହୋଇ ନାହିଁ; ତେଣୁ ଏ ପ୍ରଶ୍ନ ତୋତେ ବିଚଳିତ କରିବ ନାହିଁ—ମୁଁ ବି ମୁଣ୍ଡ ଘୂରାଇବି ନାହିଁ ।

ଏହି କାଳରେ ଚୀନର ଶ୍ରେଷ୍ଠତ୍ୱ ସ୍ୱାଭାବିକରୂପେ ଏସିଆର ଅନ୍ୟ ଅଞ୍ଚଳ ଉପରେ ଖୁବ୍ ପ୍ରଭାବ ପକାଇଲା, କଳା ଓ ସଭ୍ୟତାରେ ନେତୃତ୍ୱ ପାଇଁ ସମଗ୍ର ଏସିଆ ଚୀନକୁ ଅନାଇ ରହିଲା । ଗୁପ୍ତସାମ୍ରାଜ୍ୟର ପତନ ପରେ ଭାରତର ନକ୍ଷତ୍ର ଆଉ ଅତି ଉଜ୍ଜ୍ୱଳଭାବରେ ପ୍ରଜ୍ୱଳିତ ହେଉ ନ ଥିଲା । ସାଧାରଣତଃ ଯେପରି ହୁଏ, ସେପରି ଚୀନର ପ୍ରଗତିଶୀଳ ସଭ୍ୟତା ଫଳରେ ଅତ୍ୟଧିକ ବିଳାସ ଓ ଅଳସ ଭାବ ଦେଖାଗଲା । ତାପରେ ଶାସନର ବାଁଭଙ୍ଗିର ଗୁଳିଲା ଓ ଲୋକଙ୍କ ଉପରେ ଅତ୍ୟଧିକ ଟିକସ ବସାଇବା ଦରକାର ହେଲା; ତେଣୁ ଟାଙ୍ଗ ରାଜୁତିରେ ଲୋକେ ବିରକ୍ତ ହୋଇ ଉଠିଲେ ଏବଂ ସେ ବଂଶକୁ ନିପାତ କରିଦେଲେ ।

## ୪୨ । କୋରିଆ ଓ ଜାପାନ୍

ମେ ୮, ୧୯୩୨

ଆମେ ପୃଥିବୀର ବିବରଣୀ ଯେତେ ଆଲୋଚନା କରିବା, ସେତେ ଅଧିକ ଦେଶ ବିଷୟ ଜାଣିବା । ତେଣୁ ଏବେ ଆମକୁ ଚୀନର ନିକଟ ପଡ଼ୋଶୀ ଏବଂ ଅନେକ ଭାବରେ ଚୀନ ସଭ୍ୟତାରୁ ଜାତ କୋରିଆ ଓ ଜାପାନ ପ୍ରତି ଦୃଷ୍ଟି ପକାଇବାକୁ ହେବ । ଏହା ଏସିଆର ଶେଷ ସୀମାରେ ଅବସ୍ଥିତ—ସୁଦୂର ପ୍ରାଚ୍ୟ—ବହୁଦୂରକୁ ବିରାଟ ପ୍ରଶାନ୍ତ ମହାସାଗର ଅବସ୍ଥିତ । ଏଟୁଡ଼ିକର ଆମେରିକା ମହାଦେଶ ସହିତ କୌଣସି ସମ୍ପର୍କ

ନ ଥିଲା; କେବଳ ଚୀନ ପରି ଏକ ବିଶାଳ ଦେଶ ସହିତ ସେମାନଙ୍କର ଏକମାତ୍ର ସମ୍ପର୍କ ଥିଲା । ଚୀନରୁ ଓ ଚୀନ ଜରିଆରେ ସେମାନେ ତାଙ୍କର ଧର୍ମ, କଳା ଓ ସଭ୍ୟତା ପାଇଥିଲେ । ଚୀନ ପ୍ରତି ଜାପାନ ଓ କୋରିଆର ଋଣ ଅତି ବେଶୀ ଏବଂ ସେମାନେ ଭାରତ ପାଖରେ ମଧ୍ୟ କିଞ୍ଚିତ୍ ଋଣୀ; କିନ୍ତୁ ଭାରତରୁ ସେମାନେ ଯାହା ପାଇଥିଲେ, ତାହା ଚୀନ ଜରିଆରେ ଓ ଚୀନା ଭାବରେ ରଞ୍ଜିତ ହୋଇ ଯାଇଥିଲା ।

କୋରିଆ ଓ ଜାପାନ ଉଭୟ ଦେଶ ଯେପରି ଅବସ୍ଥାରେ ଥିଲେ, ସେଥିରେ ଏସିଆ ବା ଅନ୍ୟ ଦେଶର ବଡ଼ ଘଟଣାମାନଙ୍କ ସହିତ ତାଙ୍କର କିଛି ସମ୍ପର୍କ ନ ଥିଲା । ସେଗୁଡ଼ିକ ଘଟଣାକେନ୍ଦ୍ରରୁ ବହୁତ ଦୂରରେ ରହିଥିଲେ । କେତେକ ପରିମାଣରେ ବିଶେଷତଃ ଜାପାନ ଏଥିଲାଗି ବଡ଼ ସୌଭାଗ୍ୟବାନ୍ । ଆଧୁନିକ କାଳ ପର୍ଯ୍ୟନ୍ତ ତାଙ୍କର କୌଣସି ଇତିହାସ ନ ଥିଲା କହିଲେ ଚଳେ । ଏସିଆର ଅବଶିଷ୍ଟ ଅଞ୍ଚଳର ଘଟଣାବଳୀ ବୁଝିବାରେ ଏହା ବିଶେଷ କିଛି ପାର୍ଥକ୍ୟ ଘଟାଇବ ନାହିଁ; କିନ୍ତୁ ଆମେ ଏଥିପ୍ରତି ଅବହେଳା ଦେଖାଇବା ନାହିଁ । ଯେହିପରି ଆମେ ମାଲୟସିଆ ଓ ପୂର୍ବଦ୍ୱୀପପୁଞ୍ଜର ଅତୀତ କାହାଣୀକୁ ଗ୍ରହଣୀୟ ନାହିଁ । ବିଶ୍ୱର କ୍ଷୁଦ୍ର ରାଜ୍ୟ କୋରିଆଟିକୁ ଆଜି ପ୍ରାୟ ସମସ୍ତେ ଭୁଲି ଯାଇଛନ୍ତି । ଜାପାନ ତାକୁ ଗ୍ରାସ କରିଛି ଏବଂ ତା ସାମ୍ରାଜ୍ୟର ଅନ୍ତର୍ଭୁକ୍ତ କରିଛି । କିନ୍ତୁ କୋରିଆ ଏବେ ସୁଦ୍ଧା ସ୍ୱାଧୀନତାର ସ୍ୱପ୍ନ ଦେଖୁଛି ଓ ସ୍ୱାଧୀନତା ଲାଗି ସଂଗ୍ରାମ କରୁଛି । ଜାପାନ କଥା ଏବେ ଅଧିକ ପ୍ରସିଦ୍ଧ ଏବଂ ତାର ଚୀନ ଉପରେ ଆକ୍ରମଣ ବିବରଣୀ ସମ୍ବାଦପତ୍ରରେ ପୂର୍ଣ୍ଣ ହୋଇଛି । ମୁଁ ଏହା ଲେଖିଲାବେଳେ ବି ମାଞ୍ଚୁରିଆରେ ଏକ ପ୍ରକାର ଯୁଦ୍ଧ ଲାଗିଛି । ତେଣୁ କୋରିଆ ଓ ଜାପାନର ଅତୀତ ବିଷୟରେ ଆମେ କିଛି ଜାଣିଲେ ଭଲ ହେବ ଏବଂ ଏହା ବର୍ତ୍ତମାନ କଥା ବୁଝିବାରେ ଆମକୁ ସାହାଯ୍ୟ କରିବ ।

ପ୍ରଥମେ ମନେ ରଖିବାର କଥା ହେଉଛି; ଦୀର୍ଘକାଳ ପର୍ଯ୍ୟନ୍ତ ଏହି ରାଜ୍ୟଗୁଡ଼ିକ ବିଚ୍ଛିନ୍ନ ହୋଇ ରହିଥିଲା । ବାସ୍ତବିକ ଆଲୌକିକଭାବରେ ବିଚ୍ଛିନ୍ନ ହୋଇ ରହିଥିଲା ଓ ଆକ୍ରମଣରୁ ମୁକ୍ତ ଥିଲା । ତାକୁ ଆକ୍ରମଣ କରିବାର କେତେକ ଚେଷ୍ଟା ଇତିହାସରେ ଦେଖାଯାଏ; ମାତ୍ର କୌଣସିଟି ସଫଳ ହୋଇ ନ ଥିଲା । ଆଜି ସୁଦ୍ଧା ତାର ଆଭ୍ୟନ୍ତରୀଣ ଗୋଳମାଳ ହିଁ ପ୍ରଧାନ ହୋଇଛି । କେତେକାଳ ପର୍ଯ୍ୟନ୍ତ ପୃଥିବୀର ଅନ୍ୟ ଅଂଶଠାରୁ ଜାପାନ ସମ୍ପୂର୍ଣ୍ଣଭାବରେ ନିଜକୁ କାଟି ଦେଇଥିଲା । କୌଣସି ଜାପାନୀ ପକ୍ଷରେ ନିଜ ଦେଶ ବାହାରକୁ ଯିବା କିମ୍ବା ବିଦେଶୀ ଏପରିକି ଚୀନାମାନଙ୍କ ପକ୍ଷରେ ସେ ଦେଶରେ ପ୍ରବେଶ କରିବା ପ୍ରାୟ ସମ୍ଭବ ନ ଥିଲା । ଇଉରୋପର ବିଦେଶୀ ଓ ଖ୍ରୀଷ୍ଟିୟାନ ପାଦ୍ରୀମାନଙ୍କ ହାତରୁ ନିଜକୁ ରକ୍ଷା କରିବା ନିମନ୍ତେ ଏହା କରାଯାଇଥିଲା । ଏହା ଏକ ବିପଜ୍ଜନକ ଓ ନିର୍ବୋଧ କାର୍ଯ୍ୟ; କାରଣ ସେହିପରି ମନର ଜାତିକୁ ବନ୍ଦୀ କରିଲେ ଏବଂ ଭଲ ହେଉ

ବା ମନ୍ଦ ହେଉ ସମସ୍ତ ପ୍ରକାର ବାହ୍ୟ ପ୍ରଭାବରୁ ବଞ୍ଚିତ ହୋଇଗଲେ । ତାପରେ ହଠାତ୍ ଜାପାନ ତାର ଦ୍ୱାର ଉନ୍ମୁକ୍ତ କରିଦେଲା ଏବଂ ଇଉରୋପରୁ ଯାହା ଶିଖିବାର କଥା, ତାହା ଶିଖିବା ନିମନ୍ତେ ଧାଇଁଲା । ଏପରି ଦ୍ରୁତବେଗରେ ଜାପାନ ଶିକ୍ଷାକଲା ଯେ ଏକ ବା ଦୁଇ ପୁରୁଷ ଭିତରେ ବାହାରକୁ ଦେଖିବାକୁ ଏହା ଯେକୌଣସି ଇଉରୋପୀୟ ରାଜ୍ୟ ତୁଲ୍ୟ ହୋଇଗଲା ଏବଂ ଏପରି କି ସେମାନଙ୍କଠାରୁ ସମସ୍ତ କୁଅଭ୍ୟାସ ବି ଅନୁକରଣ କଲା । ଗତ ୭୦ ବର୍ଷ ଭିତରେ ଏସବୁ ଘଟିଗଲା ।

ଚୀନାମାନଙ୍କର ଅନେକ ବର୍ଷ ପରେ କୋରିଆର ଇତିହାସ ଆରମ୍ଭ ହେଲା ଏବଂ କୋରିଆର ବହୁପରେ ଜାପାନ ଇତିହାସର ଆରମ୍ଭ । ଗତ ବର୍ଷ ମୋର ଏକ ଚିଠିରେ କିତ୍‌ସେ ନାମକ ଚୀନର ଜଣେ ନିର୍ବାସିତ ବ୍ୟକ୍ତି ଚୀନରେ ବଂଶ ପରିବର୍ତ୍ତନ ପସନ୍ଦ ନ କରି କିପରି ୫,୦୦୦ ଅନୁଚରଙ୍କ ସହ ପୂର୍ବ ଆଡ଼କୁ ଯାତ୍ରା କରିଥିଲେ, ତାହା ଲେଖିଥିଲି । ସେ କୋରିଆରେ ବସତି କଲେ । ଏହାକୁ ସେ "ଚୋସେନ୍" "ପ୍ରାତଃ ନିସ୍ତବ୍ଧତାର ଭୂମି" ବୋଲି ନାମ ଦେଲେ । ଏହା ଖ୍ରୀଷ୍ଟପୂର୍ବ ୧୧୨୨ରେ ହୋଇଥିଲା । କିତ୍‌ସେ ଆସିବାରୁ ଚୀନର କଳା ଓ ହସ୍ତଶିଳ୍ପ, କୃଷି, ରେଶମ ତିଆରି ଆଦି ଆସିଲା । ପ୍ରାୟ ୯୦୦ ବର୍ଷରୁ ଅଧିକକାଳ ପର୍ଯ୍ୟନ୍ତ କିତ୍‌ସେଙ୍କ ବଂଶଧରମାନେ ଚୋସେନ୍ ଶାସନ କଲେ । ବରାବର ଚୀନରୁ ଲୋକ ଆସୁଥାଆନ୍ତି ଏବଂ ଚୋସେନରେ ବସତି କରନ୍ତି । ଏହିରୂପେ ଚୀନ ସହିତ ଘନିଷ୍ଠ ସମ୍ପର୍କ ହୋଇଥିଲା ।

ଚୀନରେ ସି-ହ୍ୱାଂ-ଟି ସମ୍ରାଟ୍ ଥିଲାବେଳେ ଏକ ବଡ଼ ଚୀନାଦଳ କୋରିଆ ଆସିଲେ । ତୋର ମନେ ଥିବ, ଏହି ଚୀନ ସମ୍ରାଟ୍ ଅଶୋକଙ୍କ ସମସାମୟିକ ଥିଲେ । ଏହି ଲୋକ ହିଁ ନିଜକୁ "ପ୍ରଥମ ସମ୍ରାଟ୍" ବୋଲି ଆଖ୍ୟା ଦେଲେ ଏବଂ ସବୁ ପୁରୁଣା ପୁସ୍ତକ ପୋଡ଼ି ଦେଇଥିଲେ । ସି-ହ୍ୱାଂ-ଟିଙ୍କ ନିର୍ମମ ବ୍ୟବହାରରେ ବିତାଡ଼ିତ ହୋଇ ଅନେକ ଚୀନା କୋରିଆରେ ଆଶ୍ରୟ ଗ୍ରହଣ କଲେ ଓ ସେଠାରୁ କିତ୍‌ସେଙ୍କ ଦୁର୍ବଳ ବଂଶଧରମାନଙ୍କୁ ତଡ଼ିଦେଲେ । ଏହା ପରେ ୮୦୦ ବର୍ଷରୁ ଅଧିକକାଳ ପର୍ଯ୍ୟନ୍ତ "ଚୋସେନ" କେତେଗୁଡ଼ିଏ ରାଜ୍ୟରେ ବିଭକ୍ତ ହୋଇଗଲା । ଏହିସବୁ ରାଜ୍ୟ ଅନେକ ସମୟରେ ପରସ୍ପର ଭିତରେ ବିବାଦ କରୁଥିଲେ । ଏହି ରାଜ୍ୟମାନଙ୍କ ଭିତରୁ ଗୋଟିଏ ପରେ ସାହାଯ୍ୟ ପାଇଁ ଚୀନକୁ କହିଲା—ଏହା ବିପଜ୍ଜନକ ଅନୁରୋଧ । ସାହାଯ୍ୟ ଆସିଲା; କିନ୍ତୁ ତାହା ଆଉ ଫେରିଯିବାକୁ ଅସ୍ୱୀକାର କଲା । ଶକ୍ତିଶାଳୀ ରାଜ୍ୟମାନଙ୍କର ଏହି ହେଉଛି ରୀତି । ଚୀନ ରହିଲା ଏବଂ "ଚୋସେନର" କେତେକ ଅଂଶ ନିଜ ସାମ୍ରାଜ୍ୟ ସହିତ ମିଶାଇଲା । କେତେ ଶହ ବର୍ଷ ପର୍ଯ୍ୟନ୍ତ "ଚୋସେନ"ର ଅବଶିଷ୍ଟାଂଶ ମଧ୍ୟ ଚୀନରେ ହାଙ୍ଗ ସମ୍ରାଟମାନଙ୍କର କର୍ତ୍ତୃତ୍ୱ ସ୍ୱୀକାର କରିଥିଲା ।

୯୩୫ ଖ୍ରୀ:ରେ "ସୁେକନ" ଏକ ମିଳିତ ସ୍ୱାଧୀନ ରାଜ୍ୟ ହେଲା । ଓ୍ୱାଙ୍ଗକେନ୍ ଏହା ସ୍ଥାପନ କରିବାରେ କୃତକାର୍ଯ୍ୟ ହୋଇଥିଲେ ଏବଂ ୪୫୦ ବର୍ଷ ପର୍ଯ୍ୟନ୍ତ ତାଙ୍କର ଉତ୍ତରାଧିକାରୀମାନେ ଏହି ରାଜ୍ୟ ଶାସନ କରିପାରିଥିଲେ ।

ଦୁଇ ବା ତିନୋଟି ପରିଚ୍ଛେଦରେ କୋରିଆ ଇତିହାସ—୨୦୦୦ ବର୍ଷରୁ ଅଧିକ କାଳର ବିବରଣୀ ମୁଁ ତୋତେ ଲେଖିଲି । କୋରିଆର ଚୀନକୁ ମହାନ୍ ଋଣ କଥା ଜାଣି ଲାଭ କଅଣ ? ଚୀନରୁ ଲିଖନକଳା କୋରିଆକୁ ଆସିଲା । ଏକ ହଜାର ବର୍ଷ ପର୍ଯ୍ୟନ୍ତ ସେମାନେ ଚୀନା ଅକ୍ଷର ବ୍ୟବହାର କରୁଥିଲେ । ତୋର ମନେଥିବ, ଏଗୁଡ଼ିକ ଅକ୍ଷର ନୁହେଁ; କେବଳ ଭାବ, ଶବ୍ଦ ଓ ବାକ୍ୟାଂଶ ଏଥିରେ ପ୍ରତିଫଳିତ ହୁଏ । ତାପରେ ନିଜ ଭାଷା ଉପଯୋଗୀ ବିଶେଷ ଅକ୍ଷର ସେମାନେ ଏଥିରୁ ବାହାର କଲେ ।

ଚୀନ ଦେଇ ବୌଦ୍ଧଧର୍ମ ଆସିଲା ଏବଂ ଚୀନରୁ କନ୍‌ଫୁସିଅସ ଦର୍ଶନ ବି ଆସିଲା । ଭାରତରୁ କଳାର ପ୍ରଭାବ ଚୀନ ଦେଇ କୋରିଆ ଓ ଜାପାନକୁ ଗଲା । କୋରିଆ ସୁନ୍ଦର କଳାକାର୍ଯ୍ୟ ବିଶେଷତଃ ସ୍ଥପତିବିଦ୍ୟା ଜାତକଲା । ତାର ଗୃହନିର୍ମାଣ-କଳା ଚୀନାମାନଙ୍କର ପ୍ରତିବିମ୍ବ ଥିଲା । ଜାହାଜ ତିଆରରେ ମଧ୍ୟ ଖୁବ୍ ଉନ୍ନତି କରିଗଲା । ବାସ୍ତବିକ ଏକ ସମୟରେ କୋରିଆ ଲୋକଙ୍କର ଏକ ଶକ୍ତିଶାଳୀ ନୌବାହିନୀ ଥିଲା । ସେମାନେ ଏଥିରେ ଜାପାନ ଉପରେ ଆକ୍ରମଣ କରିଥିଲେ ।

ସମ୍ଭବତଃ ବର୍ତ୍ତମାନ ଜାପାନୀଙ୍କ ପୂର୍ବପୁରୁଷମାନେ କୋରିଆ ବା "ସୁେକନ"ରୁ ଆସିଥିଲେ । ସେମାନଙ୍କ ଭିତରୁ କେତେକ ଦକ୍ଷିଣରୁ ବା ମାଲୟସିଆରୁ ଆସିଥାଇପାରନ୍ତି । ତୁ ଜାଣୁ, ଜାପାନୀମାନେ ଏକ ମଙ୍ଗୋଲିଆନ ଜାତି । ଜାପାନରେ "ଆଇନସ୍" ନାମକ କେତେକ ଲୋକ ଏବେ ସୁଦ୍ଧା ରହିଛନ୍ତି, ଯେଉଁମାନଙ୍କୁ ସେ ଦେଶର ମୂଳ ଅଧିବାସୀ ବୋଲି ଧରାଯାଏ । ଏ ଲୋକଗୁଡ଼ିକ ସୁନ୍ଦର ଏବଂ ଟିକିଏ ଅଧିକ ଲୋମଯୁକ୍ତ, ସାଧାରଣ ଜାପାନୀଠାରୁ ସମ୍ପୂର୍ଣ୍ଣ ଭିନ୍ନ ଧରଣର । ଆଇନସ୍‌ମାନଙ୍କୁ ଏ ଦ୍ୱୀପର ଉତ୍ତରାଞ୍ଚଳକୁ ତଡ଼ି ଦିଆହୋଇଛି ।

୨୦୦ ଖ୍ରୀ. ବେଳକୁ ଜିଙ୍ଗୋ ନାମକ ଏକ ସାମ୍ରାଜ୍ଞୀ ୟାମାଟୋ ରାଷ୍ଟ୍ରର ମୁଖିଆ ଥିଲେ । ୟାମାଟୋ ଜାପାନର ମୂଳ ନାମ ଅଥବା ଯେଉଁ ଅଞ୍ଚଳରେ ଏହିସବୁ ଅନ୍ୟ ଦେଶବାସୀ ଆସି ବସତି କରିଥିଲେ, ତାହାର ନାମ ଥିଲା । ଏହି ମହିଳାଙ୍କ ନାମକୁ ଲକ୍ଷ୍ୟ କର—ଜିଙ୍ଗୋ ତାଙ୍କ ନାମ । ଜାପାନର ଜଣେ ଆଦିମ ଶାସକଙ୍କ ନାମ ସହିତ ଏହାର ବିଚିତ୍ର ସମ୍ମିଶ୍ରଣ ଥିଲା । 'ଜିଙ୍ଗୋ' ଶବ୍ଦର ଇଂରାଜୀରେ ଏକ ନିର୍ଦ୍ଦିଷ୍ଟ ଅର୍ଥ ହୋଇଯାଇଛି । ଏହାର ଅର୍ଥ ଏକ ଆସ୍ଫାଳନକାରୀ ଓ ଗର୍ବୀ ସାମ୍ରାଜ୍ୟବାଦୀ ଅଥବା ଆମେ ଏହାକୁ କେବଳ

ସାମ୍ରାଜ୍ୟବାଦୀ କହିପାରୁଁ; କାରଣ ପ୍ରତ୍ୟେକ ସାମ୍ରାଜ୍ୟବାଦୀ କେତେକ ପରିମାଣରେ ଆସ୍ଫାଳନକାରୀ ଓ ଗର୍ବୀ ହୁଅନ୍ତି। ଜାପାନ ଏହି ସାମ୍ରାଜ୍ୟବାଦୀ ରୋଗ ବା ଜିଙ୍ଗୋଇଜମ୍ ରୋଗଗ୍ରସ୍ତ ବୋଲି ଧରିଯାଏ। ଏବଂ ଏବେ କାଳରେ କୋରିଆ ଓ ଚୀନ ପ୍ରତି ଏହା ବଡ଼ ଖରାପ ବ୍ୟବହାର କରିଛି; ତେଣୁ ତାହାର ପ୍ରଥମ ଐତିହାସିକ ଶାସକଙ୍କ ନାମ ଜିଙ୍ଗୋ ହେବା ଏକ ବିଚିତ୍ର କଥା।

ୟାମାତୋ କୋରିଆ ସହିତ ଘନିଷ୍ଠ ସମ୍ପର୍କ ରଖିଥିଲି ଏବଂ କୋରିଆ ଜରିଆରେ ଚୀନ ସଭ୍ୟତା ୟାମାତୋରେ ପହଞ୍ଚିଲି। ୪୦୦ ଖ୍ରୀ.ରେ କୋରିଆ ଜରିଆରେ ଚୀନର ଲିଖିତ ଭାଷା ମଧ୍ୟ ଏଠିକି ଗଲି। ବୌଦ୍ଧଧର୍ମ ମଧ୍ୟ ସେହିପରି ଆସିଲି। ୫୫୨ ଖ୍ରୀ:ରେ ପାକ୍‌ଚେର ଶାସକ (କୋରିଆ ଯେଉଁ ତିନୋଟି ରାଜ୍ୟରେ ବିଭକ୍ତ ହୋଇଥିଲି, ପାକ୍‌ଚେ ସେଥିରୁ ଗୋଟିଏ) ୟାମାତୋ ଶାସକଙ୍କ ନିକଟକୁ ବୁଦ୍ଧଙ୍କର ଏକ ସୁବର୍ଣ୍ଣ ପ୍ରତିମୂର୍ତ୍ତି ଏବଂ କେତେକ ପବିତ୍ର ଧର୍ମଗ୍ରନ୍ଥ ସହ କେତେକ ବୌଦ୍ଧ ପ୍ରଚାରକଙ୍କୁ ପଠାଇଥିଲେ।

ଜାପାନର ପୁରାତନ ଧର୍ମ ନାମ ଥିଲି ସିଣ୍ଟୋ। ଏହା ଏକ ଚୀନା ଶବ୍ଦ। ଏହାର ଅର୍ଥ ହେଉଛି—"ଭଗବାନଙ୍କ ମାର୍ଗ"। ଏହା ପ୍ରକୃତିପୂଜା ଓ ପୂର୍ବପୁରୁଷ ପୂଜାର ଏକ ମିଶ୍ରଣ। ଏହା ଭବିଷ୍ୟତ ଜୀବନ ବା ରହସ୍ୟ ଓ ସମସ୍ୟା ବିଷୟରେ ବିଶେଷ କିଛି ମୁଣ୍ଡ ଘୂରାଇ ନାହିଁ। ଏହା ଏକ ଯୋଦ୍ଧା ଜାତିଙ୍କର ଧର୍ମ। ଜାପାନୀମାନେ ଚୀନାମାନଙ୍କର ଏତେ ନିକଟ ହୋଇ ଓ ତାଙ୍କ ସଭ୍ୟତାଠାରେ ଏତେ ପରିମାଣରେ ଋଣୀ ହୋଇ ସୁଦ୍ଧା ଚୀନା-ମାନଙ୍କଠାରୁ ସମ୍ପୂର୍ଣ୍ଣ ଭିନ୍ନ ଧରଣର। ଚୀନାମାନେ ମୁଖ୍ୟତଃ ଏକ ଶାନ୍ତିପ୍ରିୟ ଜାତି। ସେମାନଙ୍କର ସଭ୍ୟତା ଓ ଜୀବନର ଦର୍ଶନ ଶାନ୍ତିପ୍ରିୟ ଅଟେ। ଅନ୍ୟ ପକ୍ଷରେ ଜାପାନୀ-ମାନେ ଏକ ଲଢୁଆ ଜାତି ହୋଇଅଛନ୍ତି। ଜଣେ ସୈନିକର ପ୍ରଧାନ ଗୁଣ ହେଉଛି, ତାହାର ନେତା ଓ ସାଥିମାନଙ୍କ ପ୍ରତି ଅନୁରକ୍ତି ପ୍ରଦର୍ଶନ। ଜାପାନୀମାନଙ୍କର ଏହା ଗୋଟିଏ ଗୁଣ ଏବଂ ଏଥିରୁ ସେମାନେ ଅଧିକ ଶକ୍ତି ପାଇଛନ୍ତି। ସିଣ୍ଟୋ ଏହି ନୀତି ଶିକ୍ଷା ଦେଲି—"ଦେବତାମାନଙ୍କୁ ସମ୍ମାନ କର ଏବଂ ତାଙ୍କ ବଂଶଧରମାନଙ୍କ ପ୍ରତି ଭକ୍ତି ଦେଖାଅ।" ତେଣୁ ଜାପାନରେ ଆଜିପର୍ଯ୍ୟନ୍ତ ସିଣ୍ଟୋ ବିଦ୍ୟମାନ ଓ ତାହା ସହିତ ବୌଦ୍ଧଧର୍ମ ମଧ୍ୟ ରହିଛି।

ଏହା କିଅଣ ଗୋଟିଏ ସଦ୍‌ଗୁଣ ? ନିଜର ଏକ ସାଥି କୌଣସି ଉଦ୍ଦେଶ୍ୟ ପ୍ରତି ଅନୁରକ୍ତି ଦେଖାଇବା ଅବଶ୍ୟ ଏକ ସଦ୍‌ଗୁଣ; କିନ୍ତୁ ସିଣ୍ଟୋ ଓ ଅନ୍ୟ ଧର୍ମସବୁ ସର୍ବଦା ଆମର ଭକ୍ତିଭାବର ଫାଇଦା ଉଠାଇବାର ଚେଷ୍ଟାକରି ଆସିଛନ୍ତି, ଯଦ୍ଦ୍ୱାରା ଆମ ଉପରେ ଶାସନ କରୁଥିବା କେତେକ ଲୋକଙ୍କର ମଙ୍ଗଳ ହୋଇଛି। ଏହା ଜାପାନ, ରୋମ ଓ ଅନ୍ୟ

ସବର୍ଣ୍ଣ ଏକ କର୍ତ୍ତୃତ୍ୱକୁ ମାନି ଚଳିବା ଶିକ୍ଷା ଧର୍ମଦ୍ୱାରା ପ୍ରଚଳିତ ହେଲା ଏବଂ ଏହା ଫଳରେ କି କ୍ଷତି ଘଟିଲା ତା ପରେ ଦେଖିବା ।

ନୂତନ ବୌଦ୍ଧଧର୍ମ ଯେତେବେଳେ ଆସିଲା, ତା ସହିତ ପୁରାତନ ସିଣ୍ଟୋ ଧର୍ମର କେତେକ ବିବାଦ ଲାଗିଲା; ମାତ୍ର ଅଳ୍ପ କେତେକ ଦିନ ପରେ ଦୁଇ ଧର୍ମ ପାଖାପାଖି ହୋଇ ରହିଗଲେ ଏବଂ ସେହିପରି ଭାବରେ ଆଜିପର୍ଯ୍ୟନ୍ତ ରହିଛନ୍ତି । ଦୁଇ ଧର୍ମ ଭିତରୁ ସିଣ୍ଟୋ ଏବେ ସୁଦ୍ଧା ଅଧିକ ଲୋକପ୍ରିୟ ଏବଂ ଏହା ଲୋକଙ୍କୁ ବାଧ୍ୟତା ଓ ଭକ୍ତି ଦେଖାଇବା ଶିକ୍ଷା ଦେଉଥିବାରୁ ଶାସକଶ୍ରେଣୀ ଏହାକୁ ଉତ୍ସାହିତ କରନ୍ତି । ବୌଦ୍ଧଧର୍ମ ସ୍ୱଳ୍ପଭାବରେ ଏକ ଅଧିକ ବିପଜ୍ଜନକ ଧର୍ମ; କାରଣ ତାର ସ୍ଥାପୟିତା ଜଣେ ବିଦ୍ରୋହୀ ଥିଲେ ।

ବୌଦ୍ଧଧର୍ମର ଆରମ୍ଭ ସହିତ ଜାପାନର ଶିଳ୍ପକଳାର ଇତିହାସ ଆରମ୍ଭ । ଜାପାନ ବା ୟାମାଟୋ ତାପରେ ଚୀନ ସହିତ ପ୍ରତ୍ୟକ୍ଷ ସମ୍ପର୍କ ବୃଦ୍ଧି କରିବାକୁ ଆରମ୍ଭ କଲା । ଚୀନକୁ ବିଶେଷତଃ ଟାଙ୍ଗ ଅମଳରେ ବରାବର ରାଜଦୂତ ଯାଉଥିଲେ । ସେତେବେଳେ ନୂତନ ରାଜଧାନୀ ସି-ଆନ-ଫୁ ସମଗ୍ର ପୂର୍ବ-ଏସିଆରେ ପ୍ରସିଦ୍ଧ ଥିଲା । ପ୍ରକୃତରେ ଜାପାନୀମାନେ ବା ୟାମାଟୋର ଲୋକେ ନାରା ନାମକ ଏକ ନୂତନ ରାଜଧାନୀ ସ୍ଥାପନ କଲେ ଏବଂ ଏହାକୁ ସି-ଆନ-ଫୁଂର ଅବିକଳ ନକଲ କରିବାକୁ ଚେଷ୍ଟାକଲେ । ଜାପାନୀମାନଙ୍କର ଅନ୍ୟମାନଙ୍କୁ ନକଲ ଓ ଅନୁକରଣ କରିବାର ଏକ ଅଦ୍ଭୁତ ଶକ୍ତି ଥିବାର ବରାବର ଦେଖାଯାଏ ।

ଜାପାନ ଇତିହାସରେ ବଡ଼ ବଡ଼ ପରିବାରଙ୍କ ଭିତରେ ପରସ୍ପର ସହିତ ବିବାଦ ଓ କ୍ଷମତା ପାଇଁ ସଂଗ୍ରାମ ଦେଖାଯାଏ । ଅନ୍ୟତ୍ର ମଧ୍ୟ ପୂର୍ବକାଳରେ ତା ଏହିପରି ଦେଖିବା । ଏହିସବୁ ପରିବାର ଭିତରେ ପୁରାତନ ସମ୍ପ୍ରଦାୟ ଧାରଣା ରହିଥାଏ । ତେଣୁ ଜାପାନ ଇତିହାସ ମୁଖ୍ୟତଃ କୁଟୁମ୍ବ-କଳହର କାହାଣୀ । ସେମାନଙ୍କର ସମ୍ରାଟ ମିକାଡ଼ୋଙ୍କୁ ଏକ ସବଂଶକ୍ତିମାନ, ଏକଚ୍ଛତ୍ର ଓ ଅର୍ଦ୍ଧ-ଐଶ୍ୱରିକ ଏବଂ ସୂର୍ଯ୍ୟବଂଶଧର ବୋଲି ଧରାଯାଏ । ସିଣ୍ଟୋ ଓ ପୂର୍ବପୁରୁଷପୂଜା ସମ୍ରାଟର ଏକଚ୍ଛତ୍ରତା ଗ୍ରହଣ କରିବାକୁ ଲୋକଙ୍କୁ ସାହାଯ୍ୟ କରିଛି ଏବଂ ଦେଶର ଶକ୍ତିଶାଳୀ ଲୋକଙ୍କଠାରେ ବଶ୍ୟତା ସ୍ୱୀକାର କରିବାକୁ ଶିଖାଇଛି । କିନ୍ତୁ ସମ୍ରାଟ୍ ନିଜେ ଅନେକ ସମୟରେ ଜାପାନର ଏକ ପୁତ୍ତଳ ରୂପେ ରହିଥାଆନ୍ତି, କୌଣସି ପ୍ରକୃତ କ୍ଷମତା ତାଙ୍କର ନ ଥାଏ । କେତେକ ବଡ଼ ପରିବାର ବା ସମ୍ପ୍ରଦାୟ ଯେଉଁମାନେ ରାଜା ଓ ସମ୍ରାଟଙ୍କୁ ନିଜର ରୁଚି ମୁତାବକ ବାଛନ୍ତି, ସେମାନଙ୍କ ହାତରେ ହିଁ କ୍ଷମତା ଓ କର୍ତ୍ତୃତ୍ୱ ରହିଛି ।

ଇତିହାସରୁ ଦେଖାଯାଏ ଯେ ସୋଗା (Soga) ପରିବାର ନାମକ ପ୍ରଥମ ବିରାଟ ଜାପାନୀ ପରିବାର ରାଷ୍ଟ୍ର ନିୟନ୍ତ୍ରଣ କରୁଥିଲେ । ସେମାନେ ବୌଦ୍ଧ ଥିବାରୁ ଏହା ବି

ରାଜପରିବାର ଓ ରାଷ୍ଟ୍ରର ଧର୍ମରୂପେ ପ୍ରଚଳିତ ହେଲା । ଶୋଟୁକୁ ତୈସି ନାମକ ତାଙ୍କର ଜଣେ ନେତା ଜାପାନ ଇତିହାସରେ ଜଣେ ଶ୍ରେଷ୍ଠ ବ୍ୟକ୍ତି । ସେ ଜଣେ ନିଷ୍ଠାପର ବୌଦ୍ଧ ଏବଂ କଳାବିତ୍ ହିସାବରେ ତାଙ୍କର ଖୁବ୍ ଦକ୍ଷତା ଥିଲା । ଚୀନର କନ୍‌ଫୁସିଅସ ଶାସ୍ତ୍ର-ମାନଙ୍କରୁ ସେ ନିଜର ଭାବ ଗ୍ରହଣ କରିଥିଲେ ଏବଂ ବଳପ୍ରୟୋଗ ନ କରି ଏକ ନୈତିକ ଭିତ୍ତି ଉପରେ ଶାସନ ଗଢ଼ିବାକୁ ଚେଷ୍ଟା କରିଥିଲେ । ସେତେବେଳେ ଜାପାନରେ ଅନେକ ଜାତି ଥିଲେ, ସାମନ୍ତମାନେ ପ୍ରାୟ ସ୍ୱାଧୀନ ଥିଲେ ଏବଂ ସେମାନେ ପରସ୍ପର ସହିତ ଲଢ଼ୁଥିଲେ ଓ କୌଣସି କର୍ତ୍ତୃତ୍ୱ ମାନୁ ନ ଥିଲେ । ସମ୍ରାଟ ଏତେବଡ଼ ଉପାଧି ଥିବା ସତ୍ତ୍ୱେ ସେ ଏକ ବଡ଼ ସମ୍ପ୍ରଦାୟ ମୁଖିଆ ଛଡ଼ା ଆଉ କିଛି ନ ଥିଲେ । ଶୋଟୁକୁ ତୈସି ଏହା ପରିବର୍ତ୍ତନ କରି କେନ୍ଦ୍ର ସରକାରକୁ ମଜବୁତ୍ କରିବା ନିମନ୍ତେ ଲାଗିପଡ଼ିଲେ । ସେ ବିଭିନ୍ନ ଜାତିର ମୁଖିଆ ଓ ସାମନ୍ତମାନଙ୍କୁ 'ପରାଧୀନ' ବା ସମ୍ରାଟର ଅଧୀନସ୍ଥ କଲେ । ଏହା ପ୍ରାୟ ୬୦୦ ଖ୍ରୀଷ୍ଟାବ୍ଦର କଥା ।

ଶୋଟୁକୁ ତୈସିଙ୍କ ମୃତ୍ୟୁ ପରେ ସୋଗା ପରିବାରକୁ ତଡ଼ି ଦିଆଗଲା । ଅଳ୍ପକାଳ ପରେ ଜାପାନ ଇତିହାସରେ ଆଉ ଜଣେ ପ୍ରସିଦ୍ଧ ପୁରୁଷ ଦେଖାଦେଲେ । ତାଙ୍କର ନାମ ଥିଲା କାକାତୋମିନୋ କାମାତୋରି । ସେ ଶାସନରେ ନାନାପ୍ରକାର ପରିବର୍ତ୍ତନ କଲେ ଓ ଚୀନ ଶାସନ ପଦ୍ଧତିର ଅନୁକରଣ କଲେ । କିନ୍ତୁ ସାଧାରଣ କର୍ମଚାରୀ ନିଯୁକ୍ତ କରିବା ଲାଗି ଚୀନରେ ଯେ ପରୀକ୍ଷାପ୍ରଥା ପ୍ରଚଳନ ଅଛି, ତାହା ସେ ଅନୁକରଣ କରି ନ ଥିଲେ, ଏହା ଚୀନର ବିଶେଷତ୍ୱ । ଏବେ ସମ୍ରାଟ୍ ଏକ ସମ୍ପ୍ରଦାୟର ମୁଖିଆ ଅପେକ୍ଷା ଆଉ କିଛି ଅଧିକ ହୋଇଗଲେ ଏବଂ କେନ୍ଦ୍ର ସରକାର ଶକ୍ତିଶାଳୀ ହେଲା ।

ଏହି କାଳ ଭିତରେ ନାରା ରାଜଧାନୀ ହେଲା; ମାତ୍ର ଏହା ଅଳ୍ପ କାଳ ପାଇଁ । ୭୯୪ ଖ୍ରୀ. ରେ କୋଓ୍ୟାକୁ ରାଜଧାନୀ କରାଗଲା ଏବଂ ପ୍ରାୟ ୧୧୦୦ ବର୍ଷ ପର୍ଯ୍ୟନ୍ତ ଏହା ସେହିପରି ରହିଥିଲା । ଶେଷରେ ଅତି ଅଳ୍ପ ଦିନ ହେଲା ଟୋକିଓ ରାଜଧାନୀ ହେବାରୁ ଏହା ଗଲା । ଟୋକିଓ ଏକ ବିଶାଳ ଆଧୁନିକ ନଗର; କିନ୍ତୁ ଜାପାନର ଆତ୍ମାର ପରିଚୟ କିଛିତ କୋଓ୍ୟାରେ ମିଳେ ଓ ଏକହଜାର ବର୍ଷର ସ୍ମୃତି ସେଠାରେ ରହିଛି ।

କାକାତୋମି ବା କାମାତୋରି ଫୁଜିଓ୍ୱାର ପରିବାରର ପ୍ରତିଷ୍ଠାତା ହେଲେ । ଏହି ପରିବାର ଜାପାନ ଇତିହାସରେ ପ୍ରଧାନ ଭାଗ ନେଇଥିଲେ । ୨୦୦ ବର୍ଷ ସେମାନେ ଶାସନ କଲେ । ସମ୍ରାଟମାନଙ୍କୁ କେବଳ ପୁତୁଳ କରିଥିଲେ ଏବଂ ତାଙ୍କ କୁଟୁମ୍ବରେ ବିବାହ କରିବାକୁ ସମ୍ରାଟମାନଙ୍କୁ ବାଧ୍ୟ କରିଥିଲେ । ଅନ୍ୟ ପରିବାରର ଦକ୍ଷ ଲୋକଙ୍କୁ ଭୟ କରି ସେମାନଙ୍କୁ ଧର୍ମଯାଜକ ହେବାକୁ ବାଧ୍ୟ କଲେ ।

ନାର ରାଜଧାନୀ ଥିଲାବେଳେ ଚୀନ ସମ୍ରାଟ ଜାପାନୀ ଶାସକଙ୍କୁ ଏକ ବାର୍ତ୍ତା ପଠାଇଥିଲେ । ସେଥିରେ "ତାଇ-ନିହ୍-ପୁଙ୍ଗ-ନେ୍"ର ସମ୍ରାଟ୍ ବୋଲି ତାଙ୍କୁ ସମ୍ବୋଧନ କରିଥିଲେ । ଏହାର ଅର୍ଥ "ମହାନ୍-ସୂର୍ଯ୍ୟ-ଉଦୟ-ରାଜ୍ୟ" । ଜାପାନୀମାନେ ଏହି ନାମଟିକୁ ପସନ୍ଦ କଲେ । ଏହା ୟାମାତୋ ଅପେକ୍ଷା ଅଧିକ ଚିତ୍ତାକର୍ଷକ ମନେହେଲା; ତେଣୁ ସେମାନେ ନିଜ ଦେଶକୁ "ଡାଇନିପନ" ଅର୍ଥାତ୍ "ଉଦିତ ସୂର୍ଯ୍ୟର ଭୂମି" ବୋଲି କହିବାକୁ ଆରମ୍ଭ କଲେ ଏବଂ ଜାପାନିଙ୍କ ଭିତରେ ଏହି ନାମ ଏବେ ପ୍ରଚଳିତ । ଏକ ବିଚିତ୍ର ଢଙ୍ଗରେ ନିପନରୁ ଜାପାନ ନାମ ଆସିଲା । ୭୦୦ ବର୍ଷ ପରେ ମାର୍କୋପୋଲୋ ନାମକ ଜଣେ ବିଖ୍ୟାତ ଇଟାଲୀୟ ପରିବ୍ରାଜକ ଚୀନକୁ ଆସିଥିଲେ । ସେ କେବେହେଲେ ଜାପାନକୁ ଯାଇ ନାହାନ୍ତି; କିନ୍ତୁ ସେ ତାଙ୍କର ଯାତ୍ରା ସମ୍ବନ୍ଧରେ ଲିଖିତ ପୁସ୍ତକରେ ଏହି ସମ୍ପର୍କରେ ଲେଖିଯାଇଛନ୍ତି । ସେ ନିହ୍-ପୁଙ୍ଗ କକ୍ ନାମ ଶୁଣିଥିଲେ । ଏହାକୁ "ଚିପାଙ୍ଗ" ବୋଲି ସେ ତାଙ୍କ ବହିରେ ଲେଖିଥିଲେ ଏବଂ ଏଥିରୁ ଜାପାନ ଶବ୍ଦ ଆସିଲା ।

ମୁଁ ତୋତେ ହୁଏତ କହିଥିବି ଆମ ଦେଶକୁ ଭାରତ ଓ ହିନ୍ଦୁସ୍ଥାନ ବୋଲି କିପରି ଡାକନ୍ତି ! ବୃଦ୍ଧିଆ କାମ ଇଣ୍ଡସ ବା ସିନ୍ଧୁନଦୀରୁ ଆସିଛି; ସୁତରାଂ ଏହା ଭାରତର ନଦୀ । ସିନ୍ଧୁରୁ ଗ୍ରୀକ୍‌ମାନେ ଆମ ଦେଶକୁ ଇଣ୍ଡୋସ ଆଖ୍ୟା ଦେଲେ ଏବଂ ସେଥିରୁ ଭାରତ ହେଲା । ସିନ୍ଧୁରୁ ମଧ୍ୟ ଇରାନୀମାନେ ହିନ୍ଦୁ ବାହାର କଲେ ଓ ସେହିଠାରୁ ହିନ୍ଦୁସ୍ଥାନ ହେଲା ।

## ୪୩ । ହର୍ଷବର୍ଦ୍ଧନ ଓ ହୁଏନ୍‌ସାଂ

ମେ ୧୧, ୧୯୩୨

ଆମେ ପୁଣି ଭାରତକୁ ଫେରିଯିବା । ହୁନ୍‌ମାନେ ପରାଜିତ ହୋଇଛନ୍ତି ଓ ସେମାନଙ୍କୁ ତଡ଼ି ଦିଆଯାଇଛି; ତଥାପି ଏଠି ସେଠି ଅନେକ ଥିଲେ । ବାଲାଦିତ୍ୟଙ୍କ ପରେ ଗୁପ୍ତବଂଶ ଲୋପ ହେଲା । ଉତ୍ତର-ଭାରତରେ ଅନେକ ରାଜ୍ୟ ଓ ରାଷ୍ଟ୍ର ରହିଥିଲା । ଦକ୍ଷିଣରେ ପୁଲକେଶୀନ ଚାଲୁକ୍ୟ ସାମ୍ରାଜ୍ୟ ସ୍ଥାପନ କରିଥିଲେ ।

କ୍ଷୁଦ୍ର କନୌଜ ସହର କାନପୁରଠାରୁ ବେଶୀ ଦୂର ନୁହେଁ । କାନପୁର ଏବେ ଏକ ବିରାଟ ସହର । କଳକାରଖାନା ଓ କଳଧୂଆଁ ରେ ଏହା ବିକୃତ ହୋଇଯାଇଛି; ମାତ୍ର କନୌଜ ଏକ ସୁନ୍ଦର ସ୍ଥାନ, ଗୋଟିଏ ଗ୍ରାମଠାରୁ ପ୍ରାୟ ବଡ଼ ନୁହେଁ । କିନ୍ତୁ ମୁଁ ଯେଉଁ

କାଳର କଥା କହୁଛୁ, ଯେତେବେଳେ କନୌଜ ଏକ ପ୍ରଧାନ ରାଜଧାନୀ ଥିଲା । କବି, କଳାବନ୍ତ ଓ ଦାର୍ଶନିକମାନଙ୍କ ପାଇଁ ଏହା ପ୍ରସିଦ୍ଧ ଥିଲା ଏବଂ କାନପୁର ସେତେବେଳକୁ ସୃଷ୍ଟି ହୋଇ ନ ଥିଲା ଓ ଅନେକ ଶହ ବର୍ଷ ପର୍ଯ୍ୟନ୍ତ ଏହା ଜଣା ନ ଥିଲା ।

କନୌଜ ହେଉଛି ଆଧୁନିକ ନାମ । ପ୍ରକୃତ ନାମ ହେଉଛି କାନ୍ୟକୁବ୍‌ଜ । ଗଳ୍ପ ଅଛି ଯେ ଜଣେ ପୁରାକାଳର ଋଷି ଏକ ସୁନ୍ଦରୀର ଆଶାରେ କ୍ରୋଧାନ୍ୱିତ ହୋଇ ରାଜାର ଶହେ ଝିଅଙ୍କୁ ଅଭିଶାପ ଦେଲେ ଓ ସେମାନଙ୍କୁ କୁଜା କରିଦେଲେ । ସେହିଦିନଠାରୁ ସେମାନେ ଯେଉଁ ସହରରେ ବାସ କରୁଥିଲେ, ତାହାର ନାମ କାନ୍ୟକୁବ୍‌ଜ ରଖାଗଲା ।

ଆମେ ସଂକ୍ଷେପରେ କନୌଜ ବୋଲି କହିବା । ହୂନ୍‌ମାନେ କନୌଜର ରାଜାଙ୍କୁ ବଧ କଲେ ଓ ତାଙ୍କର ସ୍ତ୍ରୀ ରାଜଶ୍ରୀଙ୍କୁ ବନ୍ଦୀ କଲେ । ତେଣୁ ରାଜଶ୍ରୀଙ୍କ ଭାଇ ରାଜ୍ୟବର୍ଦ୍ଧନ ହୂନମାନଙ୍କ ସହିତ ଯୁଦ୍ଧକରି ନିଜ ଭଉଣୀଙ୍କୁ ଉଦ୍ଧାର କରିବାକୁ ଆସିଲେ । ସେମାନଙ୍କୁ ପରାସ୍ତ କଲେ; ମାତ୍ର ବିଶ୍ୱାସଘାତକ ରୂପେ ତାଙ୍କୁ ହତ୍ୟା କରାଗଲା । ତାଙ୍କର ସାନଭାଇ ହର୍ଷବର୍ଦ୍ଧନ ନିଜର ଭଉଣୀ ରାଜଶ୍ରୀଙ୍କୁ ଖୋଜିବା ନିମନ୍ତେ ବାହାରିଲେ । ବିଚାରୀ ବାଳକାଟି ପର୍ବତ ଭିତରକୁ ପଳାଇ ଯାଇଥିଲା ଏବଂ ନାନା କଷ୍ଟ ସହି ଶେଷକୁ ନିଜର ଜୀବନ ହରାଇବାକୁ ସ୍ଥିର କରିଥିଲା । କଥିତ ଅଛି ଯେ ସେ ସତୀ ହେଉଥିବା ଅବସ୍ଥାରେ ହର୍ଷ ତାଙ୍କୁ ଦେଖିଲେ ଏବଂ ଉଦ୍ଧାର କଲେ ।

ନିଜର ଭଉଣୀକୁ ଉଦ୍ଧାର କରିସାରିଲା ପରେ ଯେଉଁ ଗୌଡ଼ ରାଜା ତାଙ୍କର ଭାଇଙ୍କୁ ବିଶ୍ୱାସଘାତକରୂପେ ବଧ କରିଥିଲା, ତାକୁ ଶାସ୍ତି ଦେବା ନିମନ୍ତେ ହର୍ଷ ବାହାରିଲେ । ସେ ଯେ ଖାଲି ତାଙ୍କୁ ଶାସ୍ତି ଦେଲେ ତାହା ନୁହେଁ, ମାତ୍ର ସମଗ୍ର ଉତ୍ତରଭାରତ, ବଙ୍ଗୋପସାଗର, ଆରବସାଗର ପର୍ଯ୍ୟନ୍ତ ଏବଂ ଦକ୍ଷିଣରେ ବିନ୍ଧ୍ୟପର୍ବତ ପର୍ଯ୍ୟନ୍ତ ସେ ଜୟ କରିବାରେ ସମର୍ଥ ହେଲେ । ବିନ୍ଧ୍ୟ ସେପାରିରେ ଚାଲୁକ୍ୟ ସାମ୍ରାଜ୍ୟ ଥିଲା ଏବଂ ସେମାନେ ହର୍ଷଙ୍କୁ ରୋକିଦେଲେ ।

ହର୍ଷବର୍ଦ୍ଧନ କନୌଜକୁ ତାଙ୍କର ରାଜଧାନୀ କଲେ । ସେ ନିଜେ ଜଣେ କବି ଓ ନାଟ୍ୟକାର ଥିବାରୁ ତାଙ୍କ ପାଖରେ ଅନେକ କବି ଓ କଳାବନ୍ତ ଆଣି ରଖିଥିଲେ ଏବଂ କନୌଜ ଏକ ପ୍ରସିଦ୍ଧ ସହର ହୋଇଗଲା । ହର୍ଷ ବୌଦ୍ଧ ଥିଲେ । ଏକ ପୃଥକ ଧର୍ମଭାବରେ ବୌଦ୍ଧଧର୍ମ ଭାରତରେ ବଡ଼ ଦୁର୍ବଳ ହୋଇ ପଡ଼ିଥିଲା; ବ୍ରାହ୍ମଣମାନେ ଏହାକୁ ଗ୍ରାସ କରି ଦେଇଥିଲେ । ଭାରତରେ ହର୍ଷ ହିଁ ଶେଷ ଓ ପ୍ରଧାନ ବୌଦ୍ଧ ଶାସକ ବୋଲି ଜଣାଯାଏ ।

ହର୍ଷଙ୍କ ରାଜୁତିକାଳରେ ଆମର ପୁରାତନ ବନ୍ଧୁ ହୁଏନ୍‌ସାଂ * ଭାରତକୁ ଆସିଥିଲେ ଏବଂ ସେ ତାଙ୍କର ଭ୍ରମଣ-ବୃତ୍ତାନ୍ତ ପୁସ୍ତକରେ ଯାହା ଲେଖି ଯାଇଛନ୍ତି, ସେଥିରୁ ଭାରତ ଓ ମଧ୍ୟ-ଏସିଆର ବହୁତ କଥା ଜାଣିବାକୁ ମିଳେ । ସେ ଭାରତରୁ ଫେରିଲାବେଳେ ମଧ୍ୟ-ଏସିଆ ପାରହୋଇ ଯାଇଥିଲେ । ସେ ଜଣେ ଧାର୍ମିକ ବୌଦ୍ଧ ଥିଲେ ଏବଂ ବୌଦ୍ଧତୀର୍ଥସବୁ ଦର୍ଶନ କରିବାକୁ ଓ ବୌଦ୍ଧମୂର୍ତ୍ତି ସଙ୍ଗରେ ନେବା ନିମନ୍ତେ ସେ ଆସିଥିଲେ । ସେ ଗୋବି ମରୁଭୂମି ପାର ହୋଇ ଆସିଲେ । ବାଟରେ ତାସକନ୍ଦ, ସମରକନ୍ଦ, ବାଲ୍‌ଖ, ଖୋଟାନ ଓ ୟାର୍କନ୍ଦ ଆଦି ପ୍ରସିଦ୍ଧ ସହର ଦେଖିଥିଲେ । ସମଗ୍ର ଭାରତରେ ସେ ଭ୍ରମଣ କଲେ । ସମ୍ଭବତଃ ସେ ସିଂହଳକୁ ବି ଯାଇଥିଲେ । ତାଙ୍କର ପୁସ୍ତକରେ ସେ ଯେଉଁସବୁ ଦେଶ ଭ୍ରମଣ କରିଥିଲେ, ସେଠାକାର ପ୍ରକୃତ ବିବରଣ ଅତି ଅଦ୍ଭୁତ ଓ ଚିତ୍ତାକର୍ଷକ ଭାବରେ ବର୍ଣ୍ଣିତ ଅଛି । ଭାରତର ବିଭିନ୍ନ ଅଞ୍ଚଳର ଲୋକମାନଙ୍କର ଚରିତ୍ରଚିତ୍ରଣ ଏପରି ଅଦ୍ଭୁତଭାବରେ କରାଯାଇଛି. ଯାହା ଆଜି ମଧ୍ୟ ସତ୍ୟ ପରି ମନେହୁଏ । ସେ ବିଚିତ୍ର ଗଳ୍ପସବୁ ଶୁଣିଥିଲେ ଏବଂ ବୁଦ୍ଧ ଓ ବୋଧିସତ୍ତ୍ୱ ସମ୍ବନ୍ଧରେ ଅସଂଖ୍ୟ ଗଳ୍ପ ଲିପିବଦ୍ଧ କରି ଯାଇଛନ୍ତି । ଗୋଟିଏ ଗଳ୍ପରେ ଜଣେ ଅତି ଜ୍ଞାନୀ ଲୋକ କିପରି ନିଜ ପେଟ ଚାରିକଡ଼ରେ ତମ୍ବାପଟି ବାନ୍ଧି ବୁଲୁଥିବାର ବର୍ଣ୍ଣନା ଅଛି, ତାହା ମୁଁ ତୋତେ ଆଗରୁ କହିଛି ।

ସେ ଭାରତରେ ଅନେକ ବର୍ଷ କଟାଇଲେ । ବିଶେଷତଃ ବିରାଟ ନାଳନ୍ଦା ବିଶ୍ୱବିଦ୍ୟାଳୟରେ ଅନେକ ଦିନ ଥିଲେ । ଏହା ପାଟଳିପୁତ୍ରରୁ ବେଶୀ ଦୂର ନୁହେଁ । ନାଳନ୍ଦା ଏକ ଧର୍ମପୀଠ ଓ ବିଶ୍ୱବିଦ୍ୟାଳୟର ସମିଶ୍ରଣ ଥିଲା ଏବଂ କୁହାଯାଏ ଯେ ଏଠାରେ ୧୦୦୦୦ ଛାତ୍ର ଓ ସନ୍ନ୍ୟାସୀ ବାସ କରୁଥିଲେ । ଏହା ବୌଦ୍ଧଶିକ୍ଷାର ପ୍ରଧାନ କେନ୍ଦ୍ର ଥିଲା ଓ ଏହାର ପ୍ରତିଦ୍ୱନ୍ଦୀ ରୂପେ ବାରାଣସୀ ବ୍ରାହ୍ମଣଶିକ୍ଷାର କେନ୍ଦ୍ରସ୍ଥଳ ଥିଲା ।

ମୁଁ ତୋତେ ଥରେ କହିଥିଲି ଯେ ଭାରତ ଚନ୍ଦ୍ରଭୂମି ବା ଇନ୍ଦୁଲାଣ୍ଡ ନାମରେ ଜଣାଥିଲା । ହୁଏନ୍‌ସାଂ ମଧ୍ୟ ଏ ବିଷୟରେ ଲେଖିଛନ୍ତି ଏବଂ ଏହି ନାମ କିପରି ଉପଯୋଗୀ, ତାହା ବର୍ଣ୍ଣନା କରିଛନ୍ତି । ବୋଧହୁଏ ଚୀନ ଭାଷାରେ ଚନ୍ଦ୍ରର ନାମ ହେଉଛି ଇନ୍-ତୁ; ତେଣୁ ତୋ ପକ୍ଷରେ ଏହି ଚୀନା ନାମ ଗ୍ରହଣ କରିବା ଖୁବ୍ ସହଜ । †

---

* ଇଉରୋପର ଡାକ ନାମ ହେଉଛି ଇନ୍ଦୁ ।

† ହୁଏନ୍‌ସାଂଙ୍କୁ ଉତ୍ସେନ୍‌ସାଙ୍ଗ, ଓ୍ୱାନ୍‌ଚ୍ୱାଙ୍ଗ ବା ୟୁଏନ୍‌ସାଙ୍ଗ ବି କହନ୍ତି ।

ହୁଏନ୍‌ସାଂ ୬୨୯ ଖ୍ରୀଷ୍ଟାବ୍ଦରେ ଭାରତକୁ ଆସିଥିଲେ । ସେ ଚୀନରୁ ତାଙ୍କର ଯାତ୍ରା ଆରମ୍ଭ କଲାବେଳକୁ ତାଙ୍କୁ ୨୬ ବର୍ଷ ହୋଇଥିଲା । ପୁରାତନ ଚୀନ ବିବରଣୀରୁ ଜଣାଯାଏ ଯେ ସେ ସୁନ୍ଦର ଓ ଡେଙ୍ଗା ଥିଲେ । ତାଙ୍କର ବର୍ଣ୍ଣ ମନୋହର ଓ ଚକ୍ଷୁ ବିଚକ୍ଷଣ ଥିଲା । ତାଙ୍କର ଚେହେରା ଗମ୍ଭୀର ଓ ସମ୍ମାନାସ୍ପଦ ଏବଂ ତାଙ୍କ ଲକ୍ଷଣରୁ ମାଧୁର୍ଯ୍ୟ ଓ ଉଜ୍ଜ୍ୱଳତା ପ୍ରକାଶ ପାଉଥିଲା । ·· ସେ ପୃଥିବୀର ଚତୁର୍ଦ୍ଦିଗରେ ପରିବେଷ୍ଟିତ ମହାନ୍ ସାଗର ପରି ବିରାଟ ଥିଲେ ଏବଂ ଜଳ ମଧ୍ୟରୁ ଯେଉଁ ପଦ୍ମ ଉଠେ, ତାହା ପରି ସ୍ଥିର ଓ ଉଜ୍ଜ୍ୱଳ ଥିଲେ ।

ବୌଦ୍ଧଭିକ୍ଷୁଙ୍କ କେଶରୀ ପୋଷାକ ପିନ୍ଧି ସେ ଏକାକୀ ତାଙ୍କର ବିରାଟ ଯାତ୍ରା ଆରମ୍ଭ କଲେ । ଅବଶ୍ୟ ଚୀନ ସମ୍ରାଟ୍ ଅନୁମତି ଦେବା ନିମନ୍ତେ ଅସ୍ୱୀକାର କରିଥିଲେ । ସେ ଗୋବି ମରୁଭୂମି ପାରହେଲେ, ଅନେକ ବିପଦରୁ ବଡ଼ କଷ୍ଟରେ ଉତୁରିଲେ ଏବଂ ଶେଷରେ ମରୁଭୂମିର ଶେଷାଂଶରେ ତୁର୍ଫାନ ରାଜ୍ୟରେ ପହଞ୍ଚିଲେ । ଏହି ମରୁଭୂମି ରାଜ୍ୟଟି ଏକ ଅଦ୍ଭୁତ ସଂସ୍କୃତିର କ୍ଷୁଦ୍ର ଝରଣା ଥିଲା । ଏହା ବର୍ତ୍ତମାନ ଏକ ମୃତ ସ୍ଥାନ । ଏଠାରେ ପୁରାତନ ତତ୍ତ୍ୱବିତ୍‌ମାନେ ପ୍ରାଚୀନ ଭଗ୍ନାବଶେଷ ଖୋଳି ବାହାର କରିବାରେ ଲାଗିଛନ୍ତି । କିନ୍ତୁ ସପ୍ତମ ଶତାବ୍ଦୀରେ ଯେତେବେଳେ ହୁଏନସାଂ ଏହା ମଧ୍ୟଦେଇ ଗଲେ, ସେତେବେଳେ ଏହା ଏକ ଜୀବନ୍ତ ଓ ଉଚ୍ଚ ସଂସ୍କୃତିପରିପୂର୍ଣ୍ଣ ସ୍ଥାନ ଥିଲା । ଏହି ସଂସ୍କୃତି ଭାରତ, ଚୀନ, ଇରାନ୍ ଏବଂ ଏପରି କି ଇଉରୋପର ବି ଏକ ଅଲୌକିକ ମିଳନ ଥିଲା । ବୌଦ୍ଧଧର୍ମର ବୃଦ୍ଧି ହେଲା ଏବଂ ସଂସ୍କୃତି ଜରିଆରେ ଭାରତୀୟ ପ୍ରଭାବ ପରିଲକ୍ଷିତ ହେଲା; ତଥାପି ଚୀନ ଓ ଇରାନରୁ ଅଧିକ ଭାବରେ ଜୀବନର ରୀତିନୀତି ଏମାନେ ଶିକ୍ଷା କରିଥିଲେ । ଏହାଙ୍କ ଭାଷା ମଙ୍ଗୋଲିଆନ ନ ଥିଲା; ମାତ୍ର ଇଣ୍ଡୋ-ଇଉରୋପୀୟାନ ଭାଷା ପ୍ରଚଳିତ ଥିଲା । ଏହାର ଅନେକ ପରିମାଣରେ ଇଉରୋପର କେଲ୍‌ଟିକ୍ ଭାଷା ସହିତ ସାମଞ୍ଜସ୍ୟ ଥିଲା । ଆହୁରି ବିଚିତ୍ର କଥା ଯେ ପଥରର କାନ୍ଥଚିତ୍ରମାନଙ୍କରେ ଇଉରୋପୀୟ ଛବି-ମାନଙ୍କର ସାମଞ୍ଜସ୍ୟ ଅଛି । ଏହି କାନ୍ଥଚିତ୍ରମାନଙ୍କରେ ବୁଦ୍ଧ, ବୋଧିସତ୍ତ୍ୱ, ଦେବ ଓ ଦେବୀଙ୍କର ଚିତ୍ର ଅତ୍ୟନ୍ତ ସୁନ୍ଦର । ଅନେକ ସ୍ଥଳରେ ଦେବୀମାନଙ୍କୁ ଭାରତୀୟ ପୋଷାକ ବା ଗ୍ରୀସ୍‌ର ଶିରସ୍ତ୍ରାଣ ଓ ପୋଷାକ ଭୂଷିତ କରାଯାଇଛି । ଫରାସୀ ସମାଲୋଚକ ଏମ୍ ଗ୍ରାଉସେ କହିଛନ୍ତି, "ଏହା ହିନ୍ଦୁ ମୃଦୁତା, ହେଲେନିକ୍ କମନୀୟତା ଓ ଚୀନା ମୋହନୀଶକ୍ତିର ସୁନ୍ଦର ମିଶ୍ରଣ ।"

ତୁର୍ଫାନ ଏବେ ସୁଦ୍ଧା ରହିଛି ଏବଂ ତୁ ମାନଚିତ୍ରରେ ଏହା ଦେଖିପାରିବୁ । କିନ୍ତୁ ଏହାର କୌଣସି ଗୁରୁତ୍ୱ ନାହିଁ । କେତେକାଳ ପୂର୍ବେ ୭ମ ଶତାବ୍ଦୀରେ କିପରି ଉଚ୍ଚ

ସଂସ୍କୃତି-ସ୍ରୋତ ବୋହିଯାଇ ଏଠାରେ ପହଞ୍ଚିଲା ଏବଂ ଏକ ସୁଲଳିତ ଭାବ ଜାତ କଲା ଆଶ୍ଚର୍ଯ୍ୟ ଲାଗେ ।

ତୁର୍ଫାନରୁ ପରିବ୍ରାଜକ ହୁଏନ୍‌ସାଂ କୁଚାକୁ ଆସିଲେ । ଏହା ସେତେବେଳେ ମଧ୍ୟ ଏସିଆର ଆଉ ଏକ ପ୍ରସିଦ୍ଧ କେନ୍ଦ୍ର । ଏକ ଉଚ୍ଚ ଓ ବିଚକ୍ଷଣ ସଭ୍ୟତା ଏଠାରେ ଥିଲା । ବିଶେଷଭାବରେ ଏଠାକାର ସଙ୍ଗୀତଜ୍ଞମାନଙ୍କର ଗୁଣ ଓ ନାରୀମାନଙ୍କର ମୋହିନୀଶକ୍ତି ପାଇଁ ଏହା ଖ୍ୟାତି ଲଭିଥିଲା । ଏହାର ଧର୍ମ ଓ କଳା ଭାରତରୁ ଆସିଥିଲା; ସଂସ୍କୃତି ଓ ବାଣିଜ୍ୟ ଇରାନଠାରୁ ଗ୍ରହଣ କରିଥିଲା ଏବଂ ଏହାର ଭାଷା ସଂସ୍କୃତ, ପୁରାତନ ପାରସୀ, ଲାଟିନ୍ ଓ କେଲଟିକ୍ ସହ ସଂପୃକ୍ତ ଥିଲା ଆଉ ଏକ ମନୋମୁଗ୍ଧକର ସମ୍ମିଶ୍ରଣ ।

ଏହିରୂପେ ହୁଏନ୍‌ସାଂ ତୁର୍କ୍ ମଧ୍ୟ ଦେଇ ଯାତ୍ରାକଲେ । ସେଠାରେ ଶ୍ରେଷ୍ଠ ଖାଁ ଜଣେ ବୌଦ୍ଧ ଥିଲେ । ସେ ମଧ୍ୟ-ଏସିଆର ଅଧିକ ଭାଗରେ ନିଜର କର୍ତ୍ତୃତ୍ୱ ବିସ୍ତାର କରିଥିଲେ । ସେଠାରୁ ସେ ସମରକନ୍ଦକୁ ଆସିଲେ । ଏହା ଆଲେକ୍‌ଜାଣ୍ଡରଙ୍କ ସ୍ମୃତି ସେନି ଏକ ପ୍ରସିଦ୍ଧ ପୁରାତନ ସହରରୂପେ ରହିଥିଲା । ଆଲେକ୍‌ଜାଣ୍ଡର ପ୍ରାୟ ହଜାରେ ବର୍ଷ ଆଗେ ଏହା ମଧ୍ୟ ଦେଇ ଅତିକ୍ରମ କରିଥିଲେ । ତା'ପରେ ଆସିଲେ ବାଲ୍‌ଖ ଏବଂ ତାପରେ ସେ କାବୁଲ ନଦୀର ଉପତ୍ୟକା ଦେଇ କାଶ୍ମୀର ଓ ଭାରତକୁ ଆସିଲେ ।

ଏତେବେଳେ ଚୀନରେ ଟାଙ୍ଗ ବଂଶର ଆରମ୍ଭ । ତାଙ୍କର ରାଜଧାନୀ ସି-ଆନ-ଫୁ କଳା ଓ ଶିକ୍ଷାର ଏକ କେନ୍ଦ୍ର ଥିଲା ଏବଂ ଚୀନ ସଭ୍ୟତା ପୃଥିବୀରେ ଅଗ୍ରଗାମୀ ଥିଲା । ତୋର ମନେ ରଖିବା ଉଚିତ୍ ଯେ ହୁଏନସାଂ ଏହି ଅତି ଉଚ୍ଚ ସଭ୍ୟ ଦେଶରୁ ଆସିଥିଲେ; ତେଣୁ ତାଙ୍କର ତୁଳନା ନିଶ୍ଚୟ ଉନ୍ନତ ଧରଣର । ଏହି ହେତୁ ଭାରତୀୟ ଅବସ୍ଥା ସମ୍ବନ୍ଧରେ ତାଙ୍କର ମତ ମହତ୍ତ୍ୱପୂର୍ଣ୍ଣ ଓ ମୂଲ୍ୟବାନ । ସେ ଭାରତୀୟ ଲୋକ ଓ ଶାସନକୁ ପ୍ରଶଂସା କରିଛନ୍ତି । ସେ କହିଛନ୍ତି, "ସାଧାରଣ ଲୋକେ ସ୍ୱାଭାବିକ ରୂପେ ହାଲୁକା ମନୋଭାବାପନ୍ନ ହେଲେ ସୁଦ୍ଧା ସେମାନେ ଅକପଟ ଓ ସମ୍ମାନାସ୍ପଦ । ଟଙ୍କା ପଇସା ବ୍ୟାପାରରେ ସେମାନେ କୃପଣ ନୁହନ୍ତି; ନ୍ୟାୟ ଦେବାରେ ସେମାନେ ବଡ଼ ବିଚାରବନ୍ତ ......ସେମାନଙ୍କର ଚରିତ୍ରରେ ଶଠତା ବା ଦଗାବାଜି ଆଦୌ ନାହିଁ ଏବଂ ସେମାନେ ନିଜର ଶପଥ ଓ ପ୍ରତିଶ୍ରୁତି ବଡ଼ ବିଶ୍ୱାସର ସହିତ ରକ୍ଷା କରନ୍ତି । ସେମାନଙ୍କର ଶାସନ ନିୟମରେ ଯେପରି ଅଲୌକିକ ସରଳତା ଦେଖାଯାଏ, ସେହିପରି ଆଚରଣରେ ଅତ୍ୟନ୍ତ ଭଦ୍ରତା ଓ ମାଧୁରୀ ରହିଛି । ଅପରାଧୀ ବା ଉପଦ୍ରବକାରୀଙ୍କ ସଂଖ୍ୟା ଖୁବ୍ କମ୍ ଏବଂ କେବଳ ବେଳେ ବେଳେ ସେମାନେ ଗୋଳମାଳ କରନ୍ତି ।

ସେ ଆହୁରି କହିଛନ୍ତି, "ସରକାରୀ ଶାସନ ଯେପରି ଉଦାରନୀତି ଉପରେ ପ୍ରତିଷ୍ଠିତ, ଶାସନକାର୍ଯ୍ୟ ମଧ୍ୟ ସେହିପରି ସରଳ.....ଲୋକଙ୍କୁ ବେଠିରେ ଲଗାଯାଏ

ନାହିଁ ।" "ସେହିପରି ଲୋକଙ୍କ ଉପରେ କରଭାର ଲଘୁ ଆକାରରେ ଥାଏ ଏବଂ ସେମାନଙ୍କଠାରୁ ସାମାନ୍ୟ ଭାବରେ ବ୍ୟକ୍ତିଗତ ସେବା ନିଆଯାଏ । ପ୍ରତ୍ୟେକ ଲୋକ ନିଜର ସାଂସାରିକ ଜିନିଷସବୁ ଶାନ୍ତିରେ ରଖିଥାଆନ୍ତି ଏବଂ ନିଜ ପେଟପାଇଁ ମାଟିଚାଷ ସମସ୍ତେ କରନ୍ତି । ଯେଉଁମାନେ ରାଜକୀୟ ଭୂମିଚାଷ କରନ୍ତି, ସେମାନେ ଶସ୍ୟର ଏକଷଷ୍ଠାଂଶ କର ରୂପେ ଦିଅନ୍ତି । ଯେଉଁ ବଣିକମାନେ ବାଣିଜ୍ୟରେ ଲାଗିଥାଆନ୍ତି, ସେମାନେ ନିଜ କାରବାର ସଂକ୍ରାନ୍ତରେ ଆସନ୍ତି ଓ ଯାଆନ୍ତି ଏବଂ ଏହିପରି ଚାଲିଥାଏ ।"

ହୁଏନ୍‌ସାଂ ଦେଖିଲେ ଯେ ଲୋକଙ୍କର ଶିକ୍ଷା ସଗଠିତ ହୋଇଥିଲା ଏବଂ ବହୁତ ଆଗରୁ ଆରମ୍ଭ ହୋଇଥିଲା । ପ୍ରଥମପାଠ ଶିକ୍ଷା ହେଲା ପରେ ବାଳକ ବା ବାଳିକାକୁ ସାତ ବର୍ଷ ବୟସରେ ପଞ୍ଚଶାସ୍ତ୍ର ଅଧ୍ୟୟନ ଆରମ୍ଭ କରିବାକୁ ପଡ଼ୁଥିଲା । "ଶାସ୍ତ୍ର ବୋଇଲେ ଆଜିକାଲି କେବଳ ଧର୍ମପୁସ୍ତକ ବୁଝାଉଛି; କିନ୍ତୁ ସେକାଳରେ ଏହାର ଅର୍ଥ ସମସ୍ତ ପ୍ରକାର ଜ୍ଞାନ; ତେଣୁ ପାଞ୍ଚଟି ଶାସ୍ତ୍ର ହେଉଛି —(୧) ବ୍ୟାକରଣ (୨) କଳା ଓ ହସ୍ତକାରିଗରୀର ବିଜ୍ଞାନ, (୩) ଆୟୁର୍ବେଦ, (୪) ନ୍ୟାୟ, (୫) ଦର୍ଶନ । ବିଶ୍ୱବିଦ୍ୟାଳୟମାନଙ୍କରେ ଏହିସବୁ ବିଷୟ ପଢ଼ାଯାଉଥିଲା ଏବଂ ସାଧାରଣତଃ ୩୦ ବର୍ଷ ବୟସରେ ଏହା ପୂର୍ତ୍ତି ହେଉଥିଲା । ମୋର ମନେହୁଏ, ବହୁ ଲୋକ ଏତେ ବୟସ ହେବା ଆଗରୁ ପାଠ ସମାପ୍ତ କରୁଥିବେ; କିନ୍ତୁ ପ୍ରାଥମିକ ଶିକ୍ଷା ଅଧିକ ଭାବରେ ବିସ୍ତୃତ ଥିଲା; କାରଣ ସନ୍ନ୍ୟାସୀ ଓ ପୁରୋହିତମାନେ ହିଁ ଶିକ୍ଷକ ଥିଲେ ଏବଂ ସେମାନଙ୍କ ସଂଖ୍ୟା କିଛି କମ୍ ନ ଥିଲା । ଭାରତୀୟ ଲୋକଙ୍କର ଶିକ୍ଷା ପ୍ରତି ପ୍ରେମ ଦେଖି ହୁଏନସାଂ ବଡ଼ ଚକିତ ହୋଇଥିଲେ ଏବଂ ସେ ତାଙ୍କର ପୁସ୍ତକସାରା ଏହି କଥାର ଉଲ୍ଲେଖ କରିଯାଇଛନ୍ତି ।

ହୁଏନ୍ ପ୍ରୟାଗର ବିରାଟ କୁମ୍ଭମେଳାର ଏକ ବର୍ଣ୍ଣନା କରିଯାଇଛନ୍ତି । ତୁ ପୁଣି ଥରେ ସେ ମେଳା ଦେଖିଲାବେଳେ ୧୩୦୦ ବର୍ଷ ପୂର୍ବେ ହୁଏନ୍‌ସାଂଙ୍କ ଆଗମନ କଥା ଚିନ୍ତା କରିବୁ ଏବଂ ସ୍ମରଣ କରିବୁ ଯେ ସେତେବେଳେ ସୁଦ୍ଧା ଏହି ମେଳା ବୈଦିକ ଯୁଗରୁ ଚାଲି ଆସିଥିଲା । ଏହି ଅତି ପୁରାକାଳର ମେଳା ସହିତ ତୁଳନା କଲେ ଆମର ଏଲାହାବାଦ ସହର କାଲିକା ପରି ମନେହୁଏ । ପ୍ରାୟ ୪୦୦ ବର୍ଷରୁ କମ ହେବ ଆକବର ଏହା ସ୍ଥାପନା କରିଥିଲେ । ପ୍ରୟାଗ ଆହୁରି ଅଧିକ ପୁରାତନ, ଗଙ୍ଗା ଯମୁନାର ସଙ୍ଗମସ୍ଥଳୀକୁ ହଜାର ହଜାର ବର୍ଷ ହେଲା ବର୍ଷକୁ ବର୍ଷ ଲକ୍ଷ ଲକ୍ଷ ଲୋକ ଆକୃଷ୍ଟ ହୋଇ ଆସୁଛନ୍ତି ।

ହର୍ଷ ବୌଦ୍ଧ ହୋଇ ସୁଦ୍ଧା ଏହି ପ୍ରସିଦ୍ଧ ହିନ୍ଦୁମହୋତ୍ସବ ଦେଖିବାକୁ ଯାଇଥିବା କଥା ହୁଏନ୍‌ସାଂ କହିଯାଇଛନ୍ତି । ତାଙ୍କ ତରଫରୁ ଏକ ରାଜକୀୟ ଘୋଷଣାଦ୍ୱାରା "ପଞ୍ଚ ଇଣ୍ଡି" ( Five Indies )ର ସମସ୍ତ ଗରିବ ଓ ଦରକାରୀ ଲୋକଙ୍କୁ ଏବଂ ଏହି ମେଳାରେ ତାଙ୍କର ଅତିଥି ହେବା ନିମନ୍ତେ ନିମନ୍ତ୍ରଣ କରାଯାଉଥିଲା । ଜଣେ ସମ୍ରାଟ୍ ପକ୍ଷରେ ମଧ୍ୟ ଏହା ଏକ ଅତିସାହସିକ ସମ୍ବର୍ଦ୍ଧନା । ଅନେକେ ଯେ ଆସୁଥିଲେ, ସେକଥା

କହିବାର ଆବଶ୍ୟକତା ନାହିଁ । କଥିତ ଅଛି ଯେ ହର୍ଷଙ୍କ ଅତିଥିରୂପେ ପ୍ରତିଦିନ ଏକଲକ୍ଷ ଲୋକଙ୍କୁ ଖାଇବାକୁ ଦିଆଯାଉଥିଲା । ଏହି ମେଳାରେ ପାଞ୍ଚ ବର୍ଷରେ ଥରେ ହର୍ଷ ତାଙ୍କର ରାଜକୋଷର ବଳକା ଧନସବୁ ବାଣ୍ଟି ଦେଉଥିଲେ । ସୁନା, ହୀରା, ରେଶମ— ପ୍ରକୃତରେ ତାଙ୍କ ପାଖରେ ଯାହା ଥିଲା ଦାନ କରୁଥିଲେ । ଏପରି କି ସେ ନିଜର ମୁକୁଟ ଓ ଦାମିକା ଲୁଗାପଟା ବାଣ୍ଟି ଦେଇଥିଲେ ଏବଂ ନିଜ ଭଉଣୀ ରାଜଶ୍ରୀଙ୍କଠାରୁ ଏକ ପୁରୁଣା ସାଧାରଣ ପୋଷାକ ନେଇ ପିନ୍ଧିଥିଲେ ।

ପବିତ୍ର ବୌଦ୍ଧଭାବରେ ହର୍ଷ ଖାଇବା ନିମନ୍ତେ ପଶୁବଧ ବନ୍ଦ କରିଥିଲେ । ସମ୍ଭବତଃ ବ୍ରାହ୍ମଣମାନେ ଏଥିରେ ବେଶି ଆପତ୍ତି ଉଠାଇ ନ ଥିଲେ; କାରଣ ବୁଦ୍ଧଙ୍କ ଆଗମନଠାରୁ ସେମାନେ ଦିନକୁଦିନ ଅଧିକ ନିରାମିଷାଶୀ ହୋଇ ଯାଇଥିଲେ ।

ହୁଏନ୍‌ଙ୍କ ପୁସ୍ତକରେ ଆହୁରି ଏଣ୍ଡୁତେଣ୍ଡୁ ଅନେକ ରୋଚକ ବିଷୟ ରହିଛି, ଯାହା ଶୁଣିଲେ ତୋର ଆଗ୍ରହ ଜାତ ହୋଇପାରେ । ସେ କହନ୍ତି ଯେ ଭାରତରେ କୌଣସି ବ୍ୟକ୍ତି ବେମାର ପଡ଼ିଲେ ସେ ତତ୍‌କ୍ଷଣାତ୍ ସାତଦିନ ଉପବାସ ଆରମ୍ଭ କରୁଥିଲା । ଅଧିକାଂଶ ଲୋକ ଏହି ଉପବାସ ଭିତରେ ଆରୋଗ୍ୟ ହୋଇଯାନ୍ତି । କିନ୍ତୁ ଯଦି ବେମାର ରହିଯାଏ, ତେବେ ଔଷଧ ଗ୍ରହଣ କରନ୍ତି । ସେହି କାଳରେ ବେମାର ବି ବେଶୀ ହୋଇ ନ ଥିବ କିମ୍ବା ଡାକ୍ତରଙ୍କର ବି ଏତେ ଲୋଡ଼ା ନ ଥିବ ।

ସେତେବେଳର ଭାରତରେ ଆଉ ଏକ ହୃଦୟଗ୍ରାହୀ ଲକ୍ଷଣ ହେଉଛି ଯେ ବିଦ୍ୱାନ ଓ ଶିକ୍ଷିତ ଲୋକଙ୍କୁ ଶାସକ ଓ ସାମରିକ କର୍ତ୍ତୃପକ୍ଷ ବଡ଼ ଭକ୍ତି ଓ ସମ୍ମାନ ଦେଖାଉଥିଲେ । ଭାରତ ଓ ଚୀନରେ ଶିକ୍ଷା ଓ ସଂସ୍କୃତିକୁ ସମ୍ମାନ ଦେଖାଇବା, ମାତ୍ର ପାଶବିକ ବଳ ବା ଧନସମ୍ପଦକୁ ବଡ଼ପଣିଆ ନ ଦେବା ନିମନ୍ତେ ଜାଣିଶୁଣି ଉଦ୍ୟମ କରାଗଲା ଏବଂ ଅନେକ ପରିମାଣରେ ଲୋକେ ସେଥିରେ କୃତକାର୍ଯ୍ୟ ହୋଇଥିଲେ ।

ଭାରତରେ ଅନେକ ବର୍ଷ କଟାଇଲା ପରେ ହୁଏନ୍‌ସାଂ ନିଜ ଗୃହକୁ ଫେରିଲେ । ପୁନର୍ବାର ଉତ୍ତର-ପର୍ବତ ପାର ହୋଇଗଲେ । ସେ ସିନ୍ଧୁନଦୀରେ ବୁଡ଼ି ଯାଉ ଯାଉ ବଞ୍ଚିଥିଲେ ଏବଂ ତାଙ୍କର ଅନେକ ମୂଲ୍ୟବାନ୍ ପୁସ୍ତକ ଭାସି ଯାଇଥିଲା । କିନ୍ତୁ ତଥାପି ସେ ଅନେକ ହସ୍ତଲେଖା ସଙ୍ଗରେ ନେଇ ଯାଇଥିଲେ ଏବଂ ଏଗୁଡ଼ିକୁ ଚୀନ ଭାଷାରେ ଅନୁବାଦ କରିବା ନିମନ୍ତେ ତାଙ୍କୁ ଅନେକ ବର୍ଷ ଲାଗିଲା । ସି-ଆନ୍-ଫୁଠାରେ ଟାଙ୍ଗ୍ ସମ୍ରାଟ୍ ତାଙ୍କୁ ଅତ୍ୟନ୍ତ ଆଗ୍ରହର ସହିତ ସ୍ୱାଗତ କରିଥିଲେ ଏବଂ ଏହି ସମ୍ରାଟ୍ ହିଁ ଭ୍ରମଣବୃତ୍ତାନ୍ତ ଲେଖିବା ନିମନ୍ତେ ତାଙ୍କୁ ପ୍ରେରଣା ଦେଇଥିଲେ ।

ମଧ୍ୟ ଏସିଆରେ ହୁଏନ୍ ତୁର୍କୀମାନଙ୍କୁ ଭେଟି ତାଙ୍କ ସମ୍ବନ୍ଧରେ ଲେଖି ଯାଇଛନ୍ତି—ଏହି ନୂତନ ଜାତି ପରବର୍ତ୍ତୀ ବର୍ଷମାନଙ୍କରେ ପଶ୍ଚିମକୁ ଯାଇ ଅନେକ

ରାଜ୍ୟର ଶାସନ ଓଲଟ ପାଲଟ କରିଦେଇଥିଲେ । ମଧ୍ୟ-ଏସିଆର ବୌଦ୍ଧ ଧର୍ମପୀଠମାନଙ୍କର ସେ ବର୍ଣ୍ଣନା କରି ଯାଇଛନ୍ତି । ବାସ୍ତବିକ ଇରାନ୍, ଇରାକ୍ ବା ମେସୋପଟାମିଆ, ଖୋରାସନ, ମୋସୁଲ—ସିରିଆର ସୀମାନ୍ତ ପର୍ଯ୍ୟନ୍ତ ବୌଦ୍ଧ ଧର୍ମପୀଠ ଦେଖାଯାଏ । ଇରାନୀ ଲୋକଙ୍କ ସମ୍ବନ୍ଧରେ ହୁଏନ୍ ଲେଖିଛନ୍ତି, "ସେମାନେ ବିଦ୍ୟା ପ୍ରତି ଖାତିର କରନ୍ତି ନାହିଁ; ମାତ୍ର କଳା କାର୍ଯ୍ୟରେ ସମ୍ପୂର୍ଣ୍ଣରୂପେ ମନ ଦିଅନ୍ତି । ସେମାନେ ଯାହା ତିଆରି କରନ୍ତି, ପଡ଼ୋଶୀ ରାଜ୍ୟମାନଙ୍କରେ ତାହାର ମୂଲ୍ୟ ଖୁବ୍ ବେଶୀ ।

ସେତିକାଳରେ ଅଦ୍ଭୁତ ପରିବ୍ରାଜକସବୁ ଥିଲେ । ପୁରାକାଳର ବିଶାଳ ଯାତ୍ରା ସହ ତୁଳନା କଲେ ଆଫ୍ରିକା ଭିତରକୁ ବା ଉତ୍ତର ବା ଦକ୍ଷିଣ-ମେରୁକୁ ଏବେ ଯାତ୍ରା କରିବାଟା ଅତି ତୁଚ୍ଛ କଥା ପରି ମନେହୁଏ । ବର୍ଷ ବର୍ଷ ଧରି ପର୍ବତ ଓ ମରୁଭୂମି ପାର ହୋଇ ଓ ସମସ୍ତ ବନ୍ଧୁଙ୍କଠାରୁ ସମ୍ପୂର୍ଣ୍ଣଭାବେ ବିଚ୍ଛିନ୍ନ ହୋଇ ସେମାନେ ଯାତ୍ରା କରୁଥିଲେ । ସମ୍ଭବତଃ ବେଳେ ବେଳେ ସେ ଫିକିଏ ଘରକୁ ଯିବା ପାଇଁ ଇଚ୍ଛା କରୁଥିଲେ; ମାତ୍ର ତାଙ୍କପରି ମର୍ଯ୍ୟାଦାପୂର୍ଣ୍ଣ ବ୍ୟକ୍ତିଙ୍କ ପକ୍ଷରେ ଏକଥା କହିବା ସହଜ ନୁହେଁ । ଯାହାହେଉ ଜଣେ ପରିବ୍ରାଜକଙ୍କ ବିବରଣୀରୁ ତାଙ୍କ ମନର କହିତ୍ ପରିଚୟ ପାଇପାରୁ । ସୁଦୂର ଭୂମିରେ ଛୁଡ଼ାହୋଇ ସେ ନିଜ ଘର କଥା ଚିନ୍ତା କରିଥିଲେ ଏବଂ ସେଥିଲାଗି ବ୍ୟାକୁଳ ହୋଇ ଉଠିଥିଲେ । ଏହି ବ୍ୟକ୍ତିଙ୍କ ନାମ ସୁଙ୍ଗୟୁନ ଏବଂ ସେ ହୁଏନ୍‌ସାଂଙ୍କର ଶହେ ବର୍ଷ ପୂର୍ବରୁ ଭାରତକୁ ଆସିଥିଲେ । ସେ ଭାରତର ଉତ୍ତର-ପଶ୍ଚିମରେ ଗାନ୍ଧାରରେ ପାର୍ବତ୍ୟ ଅଞ୍ଚଳରେ ଥିଲେ । ସେ କହନ୍ତି ଯେ, "ମୃଦୁ ବାୟୁସଞ୍ଚାଳନ, ପକ୍ଷୀର ଗୁଞ୍ଜନ, ବୃକ୍ଷମାନଙ୍କ ବସନ୍ତକାଳୀନ ସୌନ୍ଦର୍ଯ୍ୟ, ଅସଂଖ୍ୟ ପୁଷ୍ପ ଉପରେ ପ୍ରଜାପତିମାନଙ୍କର ପକ୍ଷ ସଞ୍ଚାଳନ—ସୁଙ୍ଗୟୁନ ଏକ ସୁଦୂର ଦେଶରେ ଏହି କମନୀୟ ଦୃଶ୍ୟ ଦେଖିବା ମାତ୍ରେ ତାଙ୍କ ମନରେ ଗୃହଚିନ୍ତା ପ୍ରବେଶ କଲା ଏବଂ ତାଙ୍କର ଏପରି ବିମର୍ଷପୂର୍ଣ୍ଣ ପ୍ରତିକ୍ରିୟା ହେଲା ଯେ ସେ ଗୁରୁତର ରୋଗରେ ପୀଡ଼ିତ ହୋଇପଡ଼ିଲେ ।"

## ୪୪ । ଦକ୍ଷିଣ-ଭାରତର ଅନେକ ରାଜା ଓ ଯୋଦ୍ଧା ଏବଂ ଜଣେ ମହାପୁରୁଷ

ମେ ୧୩, ୧୯୩୨

ରାଜା ହର୍ଷ ୬୪୮ ଖ୍ରୀ : ରେ ମଲେ; କିନ୍ତୁ ତାଙ୍କର ମୃତ୍ୟୁପୂର୍ବରୁ ଭାରତର ଉତ୍ତର-ପଶ୍ଚିମ ସୀମାନ୍ତରେ ବେଲୁଚିସ୍ଥାନରେ ଏକ କ୍ଷୁଦ୍ର ମେଘ ଦେଖାଦେଲା—ଯେଉଁ

ଭୟଙ୍କର ଝଡ଼ ପଶ୍ଚିମ-ଏସିଆ, ଉତ୍ତର-ଆଫ୍ରିକା ଓ ଦକ୍ଷିଣ-ଇଉରୋପକୁ ଘୋଟିଦେଲା, ଏହି ମେଘ ତାହାର ପୂର୍ବାଭାସ ମାତ୍ର । ଆରବରେ ଏକ ନୂତନ ଭବିଷ୍ୟଦ୍ ବକ୍ତା ଆବିର୍ଭାବ ହେଲେ, ତାଙ୍କ ନାମ ହେଉଛି ମହମ୍ମଦ । ସେ ଇସଲାମ୍ ନାମକ ଏକ ନୂତନ ଧର୍ମ ପ୍ରଚାର କରିଥିଲେ । ନୂତନଧର୍ମର ଉଚ୍ଛ୍ୱାସରେ ଅନୁପ୍ରାଣିତ ହୋଇ ଓ ନିଜ ଉପରେ ପୂର୍ଣ୍ଣ ବିଶ୍ୱାସ ସ୍ଥାପନ କରି ଆରବମାନେ ମହାଦେଶ ପାର ହୋଇ ଚାଲିଲେ । ଯିବା ସଙ୍ଗେ ସଙ୍ଗେ ବିଜୟ ବି କରୁଥିଲେ । ଏହା ଏକ ଅଦ୍ଭୁତ କାର୍ଯ୍ୟ ଏବଂ ଏହି ଯେଉଁ ନୂତନ ଶକ୍ତି ପୃଥିବୀକୁ ଆସିଲା ଏବଂ ଏତେ ଅଧିକ ପାର୍ଥକ୍ୟ ଘଟାଇଲା, ତାହା ଆମେ ଅବଶ୍ୟ ପରୀକ୍ଷା କରିବା । କିନ୍ତୁ ତାହା ବିଚାର କରିବା ପୂର୍ବରୁ ଆମେ ଦକ୍ଷିଣ-ଭାରତକୁ ଯିବା ଏବଂ ସେକାଳରେ ଏହା କିପରି ଥିଲା, ତାହା ଜାଣିବାକୁ ଚେଷ୍ଟା କରିବା । ହର୍ଷଙ୍କ ଅମଳରେ ଆରବର ମୁସଲମାନମାନେ ବେଲୁଚିସ୍ଥାନ ଆସିଥିଲେ ଏବଂ ଅଳ୍ପଦିନ ପରେ ସେମାନେ ସିନ୍ଧୁ ଦଖଲ କଲେ; କିନ୍ତୁ ସେଇଠାରେ ହିଁ ସେମାନେ ରହିଗଲେ ଏବଂ ଆହୁରି ୩୦୦ ବର୍ଷ ପର୍ଯ୍ୟନ୍ତ ଭାରତ ଉପରେ କୌଣସି ମୁସଲମାନ ଆକ୍ରମଣ ହୋଇ ନ ଥିଲା । ଏହି ଆକ୍ରମଣ ଆରବମାନେ କରି ନ ଥିଲେ; ମାତ୍ର ମଧ୍ୟ-ଏସିଆର ଯେଉଁ ଜାତିସବୁ ଇସଲାମ ଧର୍ମ ଗ୍ରହଣ କଲେ, ସେମାନଙ୍କ ଭିତରୁ କେତେକ ଏହା କରିଥିଲେ ।

ଆମେ ଦକ୍ଷିଣକୁ ଯିବା । ପଶ୍ଚିମରେ ଓ କେନ୍ଦ୍ରରେ ବିଶେଷଭାବରେ ମହାରାଷ୍ଟ୍ର ଦେଶ ସହିତ ଓ ବାଦାମୀ ରାଜଧାନୀ ରୂପେ ଚାଲୁକ୍ୟ ରାଜ୍ୟ ରହିଥିଲା । ହୁଏନ୍‌ସାଂ ମହାରାଷ୍ଟ୍ରବାସୀଙ୍କର ପ୍ରଶଂସା କରିଛନ୍ତି ଏବଂ ତାଙ୍କର ସାହସର ଖୁବ୍ ବର୍ଣ୍ଣନା କରିଛନ୍ତି । ସେମାନେ "ଯୁଦ୍ଧପ୍ରିୟ ଓ ସ୍ୱାଭିମାନୀ, ଅନୁଗ୍ରହପ୍ରତି କୃତଜ୍ଞ ଏବଂ ଅନ୍ୟାୟ ବିରୁଦ୍ଧରେ ପ୍ରତିହିଂସା ପ୍ରିୟ ।" ଚାଲୁକ୍ୟମାନେ ଉତ୍ତରରେ ହର୍ଷ, ଦକ୍ଷିଣରେ ପଲ୍ଲବ ଓ ପୂର୍ବରେ କଳିଙ୍ଗ (ଓଡ଼ିଶା) ଅଧିକାର କଲେ । ସେମାନଙ୍କର ଶକ୍ତି ବୃଦ୍ଧି ପାଇଲା ଏବଂ ଏକ ସାଗରରୁ ଅନ୍ୟ ସାଗର ପର୍ଯ୍ୟନ୍ତ ବିସ୍ତୃତ ହେଲା । ତାପରେ ରାଷ୍ଟ୍ରକୂଟମାନେ ସେମାନଙ୍କୁ ତଡ଼ିଦେଲେ ।

ତେଣୁ ଦକ୍ଷିଣରେ ବିଶାଳ ସାମ୍ରାଜ୍ୟ ଓ ରାଜ୍ୟସବୁ ବୃଦ୍ଧି ପାଇଲା । ବେଳେ ବେଳେ ସେଗୁଡ଼ିକ ପରସ୍ପର ସମଶକ୍ତିସମ୍ପନ୍ନ ଥିଲେ । କେତେବେଳେ ବା ଗୋଟିଏ ଶକ୍ତିଶାଳୀ ହୋଇ ଅନ୍ୟମାନଙ୍କୁ ହଟାଇ ଦେଉଥିଲା । ପାଣ୍ଡ୍ୟରାଜାଙ୍କ ଅମଳରେ ମଦୁରା ସଂସ୍କୃତିର ଏକ ବିରାଟ କେନ୍ଦ୍ର ଥିଲା ଏବଂ ତାମିଲ ଭାଷାର କବି ଓ ଲେଖକମାନେ ସେଠାରେ ଏକତ୍ର ହେଉଥିଲେ । ଅଧିକାଂଶ ତାମିଲ ସାହିତ୍ୟ ଖ୍ରୀଷ୍ଟିଆନ ଯୁଗ ଆରମ୍ଭରୁ ହୋଇଛି । ପଲ୍ଲବ-ମାନଙ୍କର ରାଜଧାନୀ ଥିଲା କାଞ୍ଚିପୁର୍—ଆଧୁନିକ କାଞ୍ଜିଭରମ୍ । ଏହା ମଧ୍ୟ ଦିନେ ଖୁବ୍ ଖ୍ୟାତି ଲଭିଥିଲା । ଏହିମାନେ ହିଁ ମାଲୟସିଆରେ ଉପନିବେଶ ସ୍ଥାପନ କରିବାରେ ଅଧିକ-ଭାବରେ ଦାୟୀ ।

ପରେ ଚୋଳସାମ୍ରାଜ୍ୟ ଶକ୍ତିଶାଳୀ ହେଲା ଏବଂ ନବମ ଶତାବ୍ଦୀର ମଧ୍ୟବେଳକୁ ଦକ୍ଷିଣରେ ଏହା ପ୍ରାଧାନ୍ୟ ବିସ୍ତାର କରୁଥିଲା । ଏହା ଏକ ନୌଶକ୍ତିସମ୍ପନ୍ନ ଦେଶ ଏବଂ ଏହାର ବିରାଟ ନୌବାହିନୀ ରହିଥିଲା । ତାହା ସାହାଯ୍ୟରେ ବଙ୍ଗୋପସାଗର ଓ ଆରବ-ସାଗରରେ ଏମାନେ ଯାଉଥିଲେ । କାବେରୀ ନଦୀର ମୁହାଣସ୍ଥ କାବେରୀପଟ୍ଟନମ୍ ଏହାର ପ୍ରଧାନ ବନ୍ଦର ଥିଲା । ବିଜୟାଳୟ ଏହାର ପ୍ରଥମ ଶାସକ ଥିଲେ । ସେମାନେ ଉତ୍ତରକୁ ବିସ୍ତାର କରିବାକୁ ଲାଗିଲେ । ମାତ୍ର ଶେଷରେ ହଠାତ୍ ରାଷ୍ଟ୍ରକୂଟବାସୀ ସେମାନଙ୍କୁ ପରାସ୍ତ କଲେ; କିନ୍ତୁ ରାଜରାଜଙ୍କ ଅଧୀନରେ ସେମାନେ ଶୀଘ୍ର ଏଥିରୁ ମୁକ୍ତ ପାଇଲେ । ସେ ଚୋଳଙ୍କୁ ତାଙ୍କର ଭାଗ୍ୟ ଫେରାଇ ଆଣି ଦେଇଥିଲେ । ଏହା ଦଶମ ଶତାବ୍ଦୀର ଶେଷ ହେବାର ପାଖାପାଖି । ଠିକ୍ ସେତିକବେଳକୁ ଉତ୍ତର-ଭାରତରେ ମୁସଲମାନ ଆକ୍ରମଣ ହେଉଥାଏ । ଅବଶ୍ୟ ସୁଦୂର ଉତ୍ତରରେ ଯାହାସବୁ ଘଟିଥିଲା, ତାହା ରାଜରାଜଙ୍କ ଉପରେ ପ୍ରଭାବ ପକାଇ ନ ଥିଲା ଏବଂ ସେ ତାଙ୍କର ସାମ୍ରାଜ୍ୟବାଦୀ କାର୍ଯ୍ୟ ଚଳାଇଲେ । ସେ ସିଂହଳ ଜୟ କଲେ ଏବଂ ଚୋଳମାନେ ସେଠାରେ ୭୦ ବର୍ଷ ପର୍ଯ୍ୟନ୍ତ ଶାସନ କଲେ । ତାଙ୍କ ପୁତ୍ର ରାଜେନ୍ଦ୍ର ଭାରି ଉଦ୍ଧତ ଓ ଯୁଦ୍ଧପ୍ରିୟ ଥିଲେ । ସେ ଦକ୍ଷିଣ-ବର୍ମା ବିଜୟ କଲେ । ଏଥିଲାଗି ଜାହାଜରେ ଯୁଦ୍ଧହାତୀମାନଙ୍କୁ ନେଇ ଯାଇଥିଲେ । ସେ ଉତ୍ତର-ଭାରତକୁ ମଧ୍ୟ ଆସିଥିଲେ ଏବଂ ବଙ୍ଗଳାର ରାଜାଙ୍କୁ ପରାସ୍ତ କରିଥିଲେ । ଏହିରୂପେ ଚୋଳ, ସାମ୍ରାଜ୍ୟ ଅତ୍ୟନ୍ତ ବିସ୍ତୃତ ହୋଇଥିଲା । ଗୁପ୍ତମାନଙ୍କ ପରେ ଏହାହିଁ ସବୁଠାରୁ ବିଶାଳ ଥିଲା; କିନ୍ତୁ ଏହା ବେଶୀଦିନ ତିଷ୍ଠି ପାରିଲା ନାହିଁ । ରାଜେନ୍ଦ୍ର ଜଣେ ବଡ଼ ଯୋଦ୍ଧା ଥିଲେ; କିନ୍ତୁ ସେ ନିଷ୍ଠୁର ଥିବା ପରି ବୋଧହୁଏ ଏବଂ ଜିତିଥିବା ଦେଶଗୁଡ଼ିକୁ ଆପଣାର କରିବା ନିମନ୍ତେ ସେ କିଛି କରି ନ ଥିଲେ । ସେ ୧୦୧୩ ଠାରୁ ୧୦୪୪ ପର୍ଯ୍ୟନ୍ତ ରାଜୁତି କରିଥିଲେ ଏବଂ ତାଙ୍କ ମୃତ୍ୟୁ ପରେ ଚୋଳ ସାମ୍ରାଜ୍ୟ ଭାଙ୍ଗି ପଡ଼ିଲା । ଅନେକ ଅଧୀନସ୍ଥ ରାଜ୍ୟ ବିଦ୍ରୋହ କଲେ ।

ଯୁଦ୍ଧରେ ସଫଳତା ଛଡ଼ା ଚୋଳମାନେ ସମୁଦ୍ର-ବାଣିଜ୍ୟ ସକାଶେ ବହୁଦିନରୁ ପ୍ରସିଦ୍ଧ ଥିଲେ । ସେମାନଙ୍କର ସୁନ୍ଦର ସୂତାଜାତ ଜିନିଷର ଚାହିଦା ଖୁବ୍ ବଢ଼ିଥିଲା ଏବଂ କାବେରୀପଟ୍ଟନମ୍ ବନ୍ଦର ଏକ ଖୁବ୍ କାରବାରସ୍ଥଳୀ ଥିଲା । ସେଠାରୁ ଜାହାଜସବୁରେ ବାଣିଜ୍ୟ ପଦାର୍ଥ ଦୂର ସ୍ଥାନକୁ ଯାଉଥିଲା ଓ ଆସୁଥିଲା । ସେଠାରେ ଯବନ ବା ଗ୍ରୀକ୍-ମାନଙ୍କର ଏକ ବସତି ଥିଲା । ମହାଭାରତରେ ବି ଚୋଳମାନଙ୍କର ନାମ ଉଲ୍ଲେଖ ରହିଛି ।

ଯେତେ ସଂକ୍ଷେପରେ ସମ୍ଭବ ଦକ୍ଷିଣ-ଭାରତ ଇତିହାସର କେତେ ଶହ ବର୍ଷର ବିବରଣୀ ମୁଁ ତୋତେ କହିବାକୁ ଚେଷ୍ଟା କରିଛି । ସମ୍ଭବତଃ ଏପରି ସଂକ୍ଷେପ କରିବାର ଚେଷ୍ଟାଦ୍ୱାରା ତୁ କେବଳ ଗୋଳମାଳରେ ପଡ଼ିବୁ । କିନ୍ତୁ ବିଭିନ୍ନ ରାଜ୍ୟ ଓ ବଂଶର ଆବର୍ତ୍ତନ

ଭିତରେ ଆମେ ନିଜକୁ ହଜାଇ ଦେଇପାରିବା ନାହିଁ । ଆମକୁ ସାରା ଜଗତର କଥା ବିଚାର କରିବାକୁ ହେବ ଏବଂ ଯଦି ଏହାର ଏକ କ୍ଷୁଦ୍ର ଅଂଶ ଆମର ବାସଭୂମି ହେଉ ପଛକେ ଅଧିକ ସମୟ ନେଇଯାଏ, ତାହାହେଲେ ଆମେ ଅନ୍ୟ ଅଂଶ ବିଷୟରେ କିଛି ଜାଣିପାରିବା ନାହିଁ ।

କିନ୍ତୁ ରାଜା ଓ ସେମାନଙ୍କର ବିଜୟ ଛଡ଼ା ଆହୁରି ଅଧିକ ଗୁରୁତର ହେଉଛି, ସେହିକାଳର ସଂସ୍କୃତି ଓ କଳାର ବିବରଣୀ । କଳା ଦୃଷ୍ଟିରୁ ଦେଖିଲେ ଉତ୍ତରାଞ୍ଚଳ ଅପେକ୍ଷା ଦକ୍ଷିଣରେ ଅଧିକ ଅବଶେଷ ରହିଛି । ଉତ୍ତରର ଅଧିକାଂଶ ସ୍ମୃତିସ୍ତମ୍ଭ, କୋଠା ଓ ମୂର୍ତ୍ତିସବୁ ଯୁଦ୍ଧରେ ଓ ମୁସଲମାନ ଆକ୍ରମଣବେଳେ ଧ୍ୱଂସ ହୋଇ ଯାଇଥିଲା । ଦକ୍ଷିଣରେ ମୁସଲମାନମାନେ ଆସିଲାବେଳେ ସୁଦ୍ଧା ଏଗୁଡ଼ିକ ରକ୍ଷାପାଇ ଯାଇଥିଲା । ଉତ୍ତରରେ ଅସଂଖ୍ୟ ସୁନ୍ଦର ସ୍ମୃତିସ୍ତମ୍ଭ ଧ୍ୱଂସ ହେବା ଏକ ଦୁର୍ଭାଗ୍ୟର କଥା । ଯେଉଁ ମୁସଲମାନମାନେ ସେଠାକୁ ଆସିଲେ, ମନେରଖ ଏମାନେ ଆରବ ନୁହନ୍ତି, ମଧ୍ୟ-ଏସିଆରୁ ଆସିଥିଲେ । ତାଙ୍କ ଭିତରେ ନିଜ ଧର୍ମ ପ୍ରତି ଗୋଟାଏ ଜିଦ୍ ଥିଲା ଏବଂ ସେମାନେ ମୂର୍ତ୍ତି ଭାଙ୍ଗିବାକୁ ଚାହୁଁଥିଲେ । କିନ୍ତୁ ଧ୍ୱଂସ କରିବାର ସମ୍ଭବତଃ ଆଉ ଏକ କାରଣ ହେଉଛି ଯେ ପୁରାତନ ମନ୍ଦିରମାନଙ୍କୁ ଦୁର୍ଗ ଓ ଯୁଦ୍ଧସ୍ଥାନ ରୂପେ ବ୍ୟବହାର କରୁଥିଲେ । ଦକ୍ଷିଣର ଅନେକ ମନ୍ଦିର ଏବେ ସୁଦ୍ଧା ଦୁର୍ଗ ପରି ମନେହୁଏ, ଯେଉଁଠି ଲୋକେ ଆକ୍ରମଣ ବେଳେ ନିଜକୁ ରକ୍ଷା କରିପାରନ୍ତି । ତେଣୁ ପୂଜା ବ୍ୟତୀତ ଏହି ମନ୍ଦିରଦ୍ୱାରା ଆହୁରି ଅନେକ ଉଦ୍ଦେଶ୍ୟ ସାଧିତ ହେଉଥିଲା । ଏହିଗୁଡ଼ିକ ହିଁ ଗ୍ରାମ ସ୍କୁଲ, ଗ୍ରାମର ମିଳନସ୍ଥଳ, ପଞ୍ଚାୟତଘର ବା ପାର୍ଲିମେଣ୍ଟ ଏବଂ ଶେଷରେ ଯଦି ଦରକାର ପଡ଼େ, ତେବେ ଶତ୍ରୁ ବିରୁଦ୍ଧରେ ଆତ୍ମରକ୍ଷା ନିମନ୍ତେ ଦୁର୍ଗରୂପେ କାମ କରୁଥିଲା । ଏହି ରୂପେ ଗ୍ରାମର ସମସ୍ତ ଜୀବନ ମନ୍ଦିରକୁ କେନ୍ଦ୍ର କରିଥିଲା ଏବଂ ଏପରି ଅବସ୍ଥାରେ ପୁରୋହିତ ଓ ବ୍ରାହ୍ମଣମାନେ ପ୍ରତ୍ୟେକ ବିଷୟରେ ପ୍ରଭୁତ୍ୱ କରିବା ସ୍ୱାଭାବିକ; ମାତ୍ର ମନ୍ଦିର-ଗୁଡ଼ିକ ଦୁର୍ଗ ରୂପରେ ଯେତେବେଳେ ବ୍ୟବହୃତ ହେଉଥିଲା, ସେତେବେଳେ ମୁସଲମାନ ଆକ୍ରମଣକାରୀମାନେ ସେଗୁଡ଼ିକ ନ ଭାଙ୍ଗନ୍ତେ ବା କାହିଁକି !

ଏହି କାଳ ଭିତରେ ପଲ୍ଲବଶାହିକ ରାଜରାଜ ତାଞ୍ଜୋରଠାରେ ଏକ ସୁନ୍ଦର ମନ୍ଦିର ତିଆରି କରିଥିଲେ । ବାଦାମୀଠାରେ ଓ କାଞ୍ଚିଭରମ୍‌ଠାରେ ମଧ୍ୟ ସୁନ୍ଦର ମନ୍ଦିରମାନ ଅଛି । ସେହିକାଳର ମନ୍ଦିରଗୁଡ଼ିକ ଭିତରେ ଏଲୋରାର କୈଳାସ ମନ୍ଦିର ହିଁ ସର୍ବାପେକ୍ଷା ଆଶ୍ଚର୍ଯ୍ୟଜନକ । ଶକ୍ତ ପାହାଡ଼ରୁ ଗୁହା କାଟି ଏହା କରାଯାଇଥିଲା ଓ ଅଷ୍ଟ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଆରମ୍ଭ ହୋଇଥିଲା । ଏଠାରେ ଯେଉଁ ସୁନ୍ଦର ପିତ୍ତଳ ମୂର୍ତ୍ତି ସବୁ ରହିଛି, ସେମାନଙ୍କ ମଧ୍ୟରେ ନଟରାଜ ଶିବଙ୍କର ଜୀବନ୍ତ ତାଣ୍ଡବନୃତ୍ୟ ଖୁବ୍ ପ୍ରସିଦ୍ଧ ।

ଚୋଳରାଜା ପ୍ରଥମ ରାଜେନ୍ଦ୍ର, ଚୋଳପୁରମ୍‌ଠାରେ ଏକ ଅପୂର୍ବ ଜଳସେଚନ କାର୍ଯ୍ୟ ତିଆରି କରିଥିଲେ । ଷୋହଳ ମାଇଲ ଲମ୍ବ ଶକ୍ତ ବନ୍ଧ ମିସ୍ତ୍ରିମାନଙ୍କ ଦ୍ୱାରା ବାନ୍ଧିଥିଲେ । ଶହେବର୍ଷ ପରେ ଆରବ ପରିବ୍ରାଜକ ଅଲବେରୁନି ଏଠାକୁ ଆସିଥିଲେ ଏବଂ ସେ ବିସ୍ମିତ ହୋଇ ଯାଇଥିଲେ । ସେଗୁଡ଼ିକ ସମ୍ବନ୍ଧରେ ସେ ଲେଖିଛନ୍ତି —"ଆମ ଲୋକେ ଏଗୁଡ଼ିକ ଦେଖି ବିସ୍ମିତ; ଏହା ବର୍ଣ୍ଣନା କରିବାକୁ ଅକ୍ଷମ, ତିଆରି କରିବା ତ ଦୂରର କଥା ।" ମୁଁ ଏହି ଚିଠିରେ କେତେକ ରାଜା ଓ ବଂଶର ନାମ ଦେଇଛି । ସେମାନେ ତାଙ୍କର କ୍ଷୁଦ୍ର ଜୀବନକାଳରେ ଯଶ ଅର୍ଜନ କଲେ, ତାପରେ ଲୋପ ପାଇଗଲେ ଏବଂ ଲୋକମନରୁ ପାଶୋର ହୋଇଗଲେ । କିନ୍ତୁ ସମସ୍ତ ରାଜା ଓ ସମ୍ରାଟଙ୍କ ଅପେକ୍ଷା ଦକ୍ଷିଣରେ ଜଣେ ଖୁବ୍ ଅସାଧାରଣ ଲୋକ ଜାତ ହେଲେ ଯେ କି ଭାରତର ଜୀବନରେ ଏକ ପ୍ରଧାନ ଭାଗ ଗ୍ରହଣ କଲେ । ଏହି ଯୁବକଙ୍କର ନାମ ହେଉଛି ଶଙ୍କରାଚାର୍ଯ୍ୟ । ସମ୍ଭବତଃ ସେ ଅଷ୍ଟମ ଶତାବ୍ଦୀର ଶେଷବେଳକୁ ଜନ୍ମ ହୋଇଥିଲେ । ସେ ଅଦ୍ଭୁତ ଧୀଶକ୍ତିସମ୍ପନ୍ନ ବ୍ୟକ୍ତି ଥିଲେ ପରି ମନେହୁଏ । ସେ ହିନ୍ଦୁଧର୍ମର ପୁନରୁଦ୍ଧାର କରିବାରେ ଲାଗିଲେ, ଅଥବା ହିନ୍ଦୁଧର୍ମକୁ ଏକ ବିଶେଷ ତାର୍କିକ ଆକାରରେ ପ୍ରକାଶ କଲେ । ଏହାକୁ ଶୈବ-ଶିବଙ୍କ ପୂଜା ବୋଲି କୁହାଯାଏ । ସେ ନିଜର ଧୀଶକ୍ତି ଓ ଯୁକ୍ତିବଳରେ ବୌଦ୍ଧଧର୍ମ ବିରୁଦ୍ଧରେ ଲଢ଼ିଲେ । ବୌଦ୍ଧସଙ୍ଘ ପରି ଏକ ସନ୍ନ୍ୟାସୀସଙ୍ଘ ସ୍ଥାପନ କଲେ ଏବଂ ସବୁ ଜାତିର ଲୋକ ଏଥିରେ ଯୋଗ ଦେଇ ପାରୁଥିଲେ । ଏହି ସନ୍ନ୍ୟାସୀମାନଙ୍କ ପାଇଁ ସେ ଚାରୋଟି କେନ୍ଦ୍ର ସ୍ଥାପନ କଲେ । ଭାରତର ଚାରିକୋଣ—ଉତ୍ତର, ପଶ୍ଚିମ, ପୂର୍ବ, ଦକ୍ଷିଣରେ ଏହା ଅବସ୍ଥିତ ଥିଲା । ସେ ସମଗ୍ର ଭାରତରେ ଭ୍ରମଣ କରିଥିଲେ ଏବଂ ଯେଉଁଠିକୁ ଗଲେ ସେଠାରେ ଜୟଲାଭ କଲେ । ସେ ଏକ ବିଜୟୀରୂପେ ବାରାଣସୀ ଆସିଥିଲେ; କିନ୍ତୁ ସେ ମନ ଓ ଯୁକ୍ତିରେ ବିଜୟୀ ଥିଲେ । ଶେଷରେ ହିମାଳୟର କେଦାରନାଥକୁ ସେ ଯାଇଥିଲେ । ସେଠାରେ ପ୍ରକାଣ୍ଡ ତୁଷାରରାଶିର ଆରମ୍ଭ ହେଲା ଓ ସେହିଠାରେ ସେ ପ୍ରାଣତ୍ୟାଗ କଲେ । ମଲାବେଳକୁ ତାଙ୍କର ବୟସ ମୋଟେ ୩୨ ବା ସେଥିରୁ ଅଳ୍ପ କିଛି ବେଶୀ ହୋଇଥିଲା ।

ଶଙ୍କରାଚାର୍ଯ୍ୟଙ୍କ କାର୍ଯ୍ୟ ବିବରଣୀ ଅଲୌକିକ । ବୌଦ୍ଧଧର୍ମ ତ ଉତ୍ତରରୁ ଦକ୍ଷିଣକୁ ତଡ଼ି ଦିଆ ଯାଇଥିଲା, ଏବେ ଭାରତରୁ ଅନ୍ତର୍ହିତ ହୋଇଗଲା । ହିନ୍ଦୁଧର୍ମ ଏବଂ ତାର ଏକ ଆକାର ରୂପେ ପରିଚିତ ଶୈବଧର୍ମ ହିଁ ସମଗ୍ର ଦେଶରେ ପ୍ରଧାନ ହୋଇଉଠିଲା । ଶଙ୍କରଙ୍କ ପୁସ୍ତକ-ମନ୍ତବ୍ୟ ଓ ଯୁକ୍ତିଦ୍ୱାରା ସମଗ୍ର ଦେଶରେ ଚିନ୍ତାରାଜ୍ୟରେ ଏକ ଆଲୋଡ଼ନ ଖେଳିଗଲା । ସେ ଯେ କେବଳ ବ୍ରାହ୍ମଣଶ୍ରେଣୀର ବଡ଼ ନେତା ହୋଇଥିଲେ ତାହା ନୁହେଁ, ମାତ୍ର ଜନସାଧାରଣଙ୍କ ମନରାଜ୍ୟ ଅଧିକାର କରିଥିଲେ ପରି ମନେହୁଏ । ଜଣେ ଲୋକ ପକ୍ଷରେ ନିଜର ପ୍ରଭାବଶାଳୀ ଧୀମତ୍ତା ଯୋଗୁଁ ଏକ ଶ୍ରେଷ୍ଠ ନେତା ହେବା ଏବଂ ଇତିହାସ ଉପରେ ଓ ଲକ୍ଷ ଲକ୍ଷ ଲୋକଙ୍କ ଉପରେ ନିଜର ପ୍ରଭାବ ପକାଇବା ଏକ ଅସାଧାରଣ

ବିଷୟ । ଇତିହାସରେ ବଡ଼ ଯୋଦ୍ଧା ଓ ବିଜେତାମାନଙ୍କର ନାମ ଦେଖାଯାଏ । ସେମାନେ ହୁଏତ ଲୋକପ୍ରିୟ ହୁଅନ୍ତି ଅଥବା ଘୃଣିତ ହୁଅନ୍ତି । କେତେବେଳେ ବା ସେମାନେ ଇତିହାସକୁ ନୂତନ ରୂପ ଦିଅନ୍ତି । ଧାର୍ମିକ ନେତାମାନେ ଲକ୍ଷ ଲକ୍ଷ ଲୋକଙ୍କୁ ଗତିଶୀଳ କରିଛନ୍ତି ଏବଂ ନବୀନ ଉତ୍ସାହ ଖେଳାଇ ଦେଇଛନ୍ତି; ମାତ୍ର ଏସବୁ କେବଳ ବିଶ୍ୱାସ ଉପରେ ପ୍ରତିଷ୍ଠିତ ହୋଇଛି; ଭାବପ୍ରବଣ ଲୋକମାନଙ୍କ ହୃଦୟକୁ ସ୍ପର୍ଶ କରିଛି ।

ଲୋକଙ୍କର ମନ ଓ ଧୀଶକ୍ତି ପ୍ରତି ଆହ୍ୱାନ ଏତେଦୂର ଯିବା କଷ୍ଟକର । ଦୁର୍ଭାଗ୍ୟବଶତଃ ଅଧିକାଂଶ ଲୋକ ଚିନ୍ତା କରନ୍ତି ନାହିଁ । ସେମାନେ ବୋଧ କରନ୍ତି ଏବଂ ନିଜର ବୋଧଶକ୍ତି ଅନୁସାରେ କାର୍ଯ୍ୟ କରନ୍ତି । ଅଥଚ ଶଙ୍କର ମନ, ଧୀଶକ୍ତି ଓ ବିବେକବୁଦ୍ଧି ଆହ୍ୱାନ କରିଥିଲେ । କୌଣସି ପୁରାତନ ପୁସ୍ତକଲିଖିତ ନିର୍ଦ୍ଦିଷ୍ଟ ଧର୍ମମତର ପୁନରାବୃତ୍ତି ସେ କରି ନ ଥିଲେ । ତାଙ୍କର ଯୁକ୍ତି ଭୁଲ୍ କି ଠିକ୍ ସେତେବେଳେ ଗୌଣ ଥିଲା । ଏକ ବୌଦ୍ଧିକ ବିଚାର ଦୃଷ୍ଟିରୁ ସେ ଧାର୍ମିକ ସମସ୍ୟା ଆଲୋଚନା କରିବା ଯେପରି ଆଗ୍ରହପ୍ରଦ, ସେଥିରୁ ଅଧିକ କୌତୂହଳପ୍ରଦ ହେଉଛି ଏଥିରେ ସଫଳତା ହାସଲ କରିବା । ଏଥିରୁ ସେକାଳର ଶାସକଶ୍ରେଣୀଙ୍କର ମନ କିଛିତ୍ ପରିମାଣରେ ଜଣାପଡ଼େ ।

ହିନ୍ଦୁ ଦାର୍ଶନିକ ଚାର୍ବାକଙ୍କ ବିଷୟରେ ଜାଣିଲେ ତୋର ଆଗ୍ରହ ହେବ । ସେ ନିରୀଶ୍ୱରବାଦୀ ଅର୍ଥାତ୍ କହୁଥିଲେ ଯେ ଭଗବାନ ନାହାନ୍ତି । ଆଜି ଅନେକ ଲୋକ ଏପରି ଅଛନ୍ତି, ବିଶେଷତଃ ରୁଷରେ ଲୋକେ ଭଗବାନଙ୍କଠାରେ ବିଶ୍ୱାସ କରନ୍ତି ନାହିଁ । ଆମେ ସେ ପ୍ରଶ୍ନ ଏଠି ବିଚାର କରିବା ନାହିଁ । କିନ୍ତୁ ପୂର୍ବକାଳରେ ଭାରତରେ ଲେଖା ଓ ଚିନ୍ତାର ଯେ ସ୍ୱାଧୀନତା ରହିଥିଲା, ତାହା ହିଁ ଅତି କୌତୂହଳପ୍ରଦ ବିଷୟ । ଯାହା କହନ୍ତି ସେତେବେଳେ ବିବେକର ସ୍ୱାଧୀନତା ଥିଲା । ଏବକାଳ ପର୍ଯ୍ୟନ୍ତ ଇଉରୋପରେ ଏପରି ଅଧିକାର ନ ଥିଲା ଏବଂ ଆଜି ସୁଦ୍ଧା କେତେକ କଟକଣା ରହିଛି ।

ଶଙ୍କରଙ୍କ କ୍ଷୁଦ୍ର ଅଥଚ କ୍ରିୟାଶୀଳ ଜୀବନକାଳରେ ଆଉ ଏକ ଜିନିଷ ହେଉଛି ଭାରତର ସଂସ୍କୃତିଗତ ଏକତା । ସମସ୍ତ ପୁରାତନ ଇତିହାସରେ ମଧ୍ୟ ଏହା ସ୍ୱୀକାର କରିଛନ୍ତି । ତୁ ଜାଣୁ ଭୌଗୋଳିକ ଦୃଷ୍ଟିରେ ଭଣା ଅଧିକେ ଭାରତ ଏକତାବଦ୍ଧ । ରାଜନୈତିକ ଭାବରେ ଆମେ ଦେଖିଛୁଁ, ଏହା ଅନେକ ସମୟରେ ବିଭକ୍ତ ହୋଇଯାଇଛି । ଯଦିଓ ବେଳେ ବେଳେ ଏକ କେନ୍ଦ୍ର କର୍ତ୍ତୃତ୍ୱ ଅଧୀନରେ ପ୍ରାପ୍ତ ରହିଆସିଛି, କିନ୍ତୁ ଆଦିମ କାଳରୁ ସଂସ୍କୃତି ଦୃଷ୍ଟିରେ ଏହା ଏକ ହୋଇ ରହିଛି । କାରଣ ତାର ପୃଷ୍ଠଭୂମିକା, ପରମ୍ପରା, ଧର୍ମ, ଯୋଦ୍ଧା ଓ ଯୋଦ୍ଧ୍ରୀ, ପୁରାଣ ସବୁ ଏକା; ଏକା ଭାଷା (ସଂସ୍କୃତ) ପ୍ରଚଳିତ ଏବଂ ସମସ୍ତ ଦେଶରେ ଚାରିଆଡ଼େ ଏକା ତୀର୍ଥସ୍ଥାନ ବିସ୍ତୃତ ହୋଇଛି, ଏକାପରି ଗ୍ରାମପଞ୍ଚାୟତ ଓ ଏକ ଆଦର୍ଶ ଏବଂ ରାଜନୀତି

ରହିଛି । ସାଧାରଣ ଭାରତୀୟ ପକ୍ଷରେ ସମଗ୍ର ଭାରତବର୍ଷ ଏକପ୍ରକାର ପୁଣ୍ୟଭୂମି । ଆଉ ପୃଥିବୀର ଅନ୍ୟ ଅଂଶମାନଙ୍କରେ ଅଧିକ ଭାବରେ ମ୍ଳେଚ୍ଛ ଓ ବର୍ବରମାନେ ବାସ କରୁଛନ୍ତି । ଏହିରୂପେ ଏକ ସାଧାରଣ ଭାରତୀୟ ଚେତନା ଜାଗ୍ରତ ହେଲା ଏବଂ ଏହା ଦେଶର ରାଜନୈତିକ ବିଭକ୍ତିକୁ ବି ଆଂଶିକଭାବରେ ବିସ୍ମୃକ କରିଦେଲା । ବିଶେଷ ଭାବରେ ଏହା ଏପରି ଥିଲା ଯେ କ୍ରମରେ ଯାହା କିଛି ପରିବର୍ତ୍ତନ ହେଉନା କାହିଁକି, ଗ୍ରାମପଞ୍ଚାୟତ ଶାସନ ବ୍ୟବସ୍ଥା ଚାଲି ଆସୁଥିଲା । କେନ୍ଦ୍ରସ୍ଥଳୀ ବା ଶଙ୍କର ନିଜର ମଠ ବା ତାଙ୍କର ମତାବଲମ୍ବୀ ସନ୍ନ୍ୟାସୀମାନଙ୍କର ହେଡ୍‌କ୍ୱାର୍ଟର ଲାଗି ଭାରତର ଚାରିକୋଣ ଯେ ସ୍ଥିର କରିଥିଲେ, ସେଥିରୁ ଭାରତକୁ ଗୋଟିଏ ସାଂସ୍କୃତିକ ଅଙ୍ଗରୂପେ ସେ ଦେଖୁଥିଲେ ବୋଲି ଜଣାପଡ଼େ । ଅତି ଅଳ୍ପକାଳ ଭିତରେ ସେ ସମଗ୍ର ଦେଶରେ ନିଜର ଅଭିଯାନରେ ଯେଉଁ ଅପୂର୍ବ ସାଫଲ୍ୟ ଲାଭ କଲେ, ସେଥିରୁ ବୌଦ୍ଧିକ ସାସ୍କୃତିକ ସ୍ରୋତସବୁ ଭାରତର ଏକ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ପର୍ଯ୍ୟନ୍ତ କିପରି ଦ୍ରୁତଗତିରେ ପ୍ରବାହିତ ହେଉଥିଲା, ତାହା ଜଣାପଡ଼େ ।

ଶଙ୍କର ଶୈବଧର୍ମ ପ୍ରଚାର କରିଥିଲେ ଏବଂ ଏହା ବିଶେଷ ଭାବରେ ଦକ୍ଷିଣରେ ବିସ୍ତାର ଲାଭ କଲା । ସେଠାରେ ଅନେକ ପୁରାତନ ଶୈବମନ୍ଦିର ରହିଛି । ଉତ୍ତରରେ ଗୁପ୍ତଙ୍କ ଅମଳରେ ବୈଷ୍ଣବଧର୍ମ ଓ କୃଷ୍ଣପୂଜାର ବହୁଳ ପ୍ରଚାର କରାଯାଉଥିଲା । ହିନ୍ଦୁଧର୍ମର ଏହି ଦୁଇ ଶାଖାର ମନ୍ଦିରଗୁଡ଼ିକ ପରସ୍ପରଠାରୁ ସମ୍ପୂର୍ଣ୍ଣ ଭିନ୍ନ ।

ଏହି ଚିଠିଟି ଦୀର୍ଘ ହୋଇପଡ଼ୁଛି; କିନ୍ତୁ ମଧ୍ୟଯୁଗର ଭାରତୀୟ ଅବସ୍ଥା ସମ୍ବନ୍ଧରେ ମୋତେ ଆହୁରି କିଛି କହିବାକୁ ପଡ଼ିବ । ସେଥିପାଇଁ ଏହା ପର ଚିଠି ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ହେବ ।

## ୪୫ । ମଧ୍ୟଯୁଗରେ ଭାରତ

ମେ ୧୪, ୧୯୩୨

ଅଶୋକଙ୍କ ପିତାମହ ଚନ୍ଦ୍ରଗୁପ୍ତ ମୌର୍ଯ୍ୟଙ୍କର ପ୍ରଧାନମନ୍ତ୍ରୀ ଚାଣକ୍ୟ ବା କୌଟିଲ୍ୟଙ୍କ ଲିଖିତ ଅର୍ଥଶାସ୍ତ୍ର ପୁସ୍ତକ ବିଷୟରେ ମୁଁ ତୋତେ କହିଥିଲି, ତୋର ମନେଥିବ । ଏହି ପୁସ୍ତକରେ ସେକାଳର ଲୋକ ଓ ଶାସନପ୍ରଣାଳୀ ସମ୍ବନ୍ଧରେ ନାନା କଥା ବର୍ଣ୍ଣିତ ଅଛି । ଏହା ଖ୍ରୀ : ପୂ : ୪ର୍ଥ ଶତାବ୍ଦୀର ଭାରତ ପ୍ରତି ଦୃଷ୍ଟିପାତ କରିବାକୁ ସମର୍ଥ ହେବା ନିମନ୍ତେ ପ୍ରାୟ ଏକ ଖୋଲା ଦ୍ୱାର ପରି ମନେହୁଏ । ରାଜା ବା ତାଙ୍କ

ବିଜୟ୍ୱର ଅତିରଞ୍ଜିତ ବିବରଣୀ ଅପେକ୍ଷା ଶାସନ ବିଷୟରେ ବିସ୍ତୃତ ଭାବରେ ବର୍ଣ୍ଣିତ ଏପରି ପୁସ୍ତକମାନ ଅଧିକ ସାହାଯ୍ୟକାରୀ ।

ଅତି ଏକ ପୁସ୍ତକରୁ ମଧ୍ୟଯୁଗରେ ଭାରତର ଅବସ୍ଥା ବିଷୟରେ ଆମେ କିଛିଏ ଧାରଣା କରିପାରୁଁ । ଏହା ହେଉଛି ଶୁକ୍ରାଚାର୍ଯ୍ୟଙ୍କ ନୀତିସାର । ଏହା ଅର୍ଥଶାସ୍ତ୍ର ପରି ସେତେ ଉତ୍ତମ ବା ସାହାଯ୍ୟକାରୀ ନୁହେଁ; ମାତ୍ର ଏହାର ସାହାଯ୍ୟରେ କେତେକ ପ୍ରସ୍ତର-ଖୋଦିତ ଲେଖା ଓ ଅନ୍ୟ ବିବରଣୀ ସାହାଯ୍ୟରେ ଆମେ ଖ୍ରୀଷ୍ଟପର ୯ମ ବା ୧୦ମ ଶତାବ୍ଦୀ ଜାଣିବା ନିମନ୍ତେ ଚେଷ୍ଟା କରିବା ।

ନୀତିସାର କହେ, "ବର୍ଣ୍ଣ କରିଆରେ ବା ପୂର୍ବପୁରୁଷଙ୍କ କରିଆରେ ବ୍ରାହ୍ମଣର ଉପଯୋଗୀ ତେଜ କେବେହେଁ ଜାତ ହୁଏ ନାହିଁ ।" ଏହି ପୁସ୍ତକମତ ଅନୁଯାୟୀ ଜନ୍ମଦ୍ୱାରା ଜାତିବିଭାଗ ନ ହୋଇ କାର୍ଯ୍ୟଦକ୍ଷତା ଅନୁସାରେ ହେବା ଉଚିତ । ପୁନର୍ବାର ଏଥିରେ ଅଛି, "ସରକାରୀ କାର୍ଯ୍ୟରେ ନିଯୁକ୍ତ ନିମନ୍ତେ ଶ୍ରମ କରିବାର ଶକ୍ତି, ଚରିତ୍ର ଓ ଦକ୍ଷତାର ବିଚାର କରିବାକୁ ହେବ—ଜାତି ବା ପରିବାର ଦୃଷ୍ଟିରୁ ନୁହେଁ ।" ରାଜା ନିଜର ମତାନୁସାରେ ରାଜ୍ୟ କରିପାରିବେ ନାହିଁ; ମାତ୍ର ଅଧିକାଂଶ ଲୋକଙ୍କର ମତାନୁସାରେ ତାଙ୍କୁ କାର୍ଯ୍ୟ କରିବାକୁ ପଡ଼ିବ । "ଯେପରି ଅନେକ ସୂତାରେ ତିଆରି ଦଉଡ଼ି ଏକ ସିଂହକୁ ଟାଣିନେବା ନିମନ୍ତେ ଖୁବ୍ ଶକ୍ତ; ସେହିପରି ରାଜା ଅପେକ୍ଷା ସାଧାରଣ ଜନମତ ଆହୁରି ଅଧିକ ପ୍ରଭାବଶାଳୀ ।"

ଏଗୁଡ଼ିକ ଅତି ସୁନ୍ଦର ନୀତିବାକ୍ୟ । ସିଦ୍ଧାନ୍ତ ଭାବରେ ଆଜି ବି ଏହା ଉତ୍ତମ ପରି ମନେହୁଏ; କିନ୍ତୁ ପ୍ରକୃତରେ ଦେଖିବାକୁ ଗଲେ ବ୍ୟବହାରରେ ଏହା ବେଶୀ ଦୂର ଯାଇ ନାହିଁ । ମନୁଷ୍ୟ ନିଜର ଦକ୍ଷତା ଓ ଯୋଗ୍ୟତାଦ୍ୱାରା ଉଠିପାରେ; କିନ୍ତୁ ସେ ଦକ୍ଷତା ବା ଯୋଗ୍ୟତା ପାଇବ କିପରି ? ଏକ ବାଳକ ବା ବାଳିକା ଖୁବ୍ ଫୁର୍ତ୍ତି ହୋଇ ପାରିଥାଏ ଏବଂ ତାକୁ ଯଦି ଉପଯୁକ୍ତ ଶିକ୍ଷା ଦିଆଯାଏ, ତାହାହେଲେ ସେ ଏକ ଚତୁର ଓ କର୍ମକୁଶଳ ବ୍ୟକ୍ତି ହୋଇପାରେ, କିନ୍ତୁ ଯଦି ତାହାର ବିଦ୍ୟା ବା ଶିକ୍ଷା ନିମନ୍ତେ କୌଣସି ବ୍ୟବସ୍ଥା ନ କରାଯାଏ, ତେବେ ସେ ବିଚାରୀ କଣ କରିବ ?

ସେହି ପ୍ରକାରେ ସାଧାରଣ ଜନମତ ବୋଇଲେ କ'ଣ ? କାହାର ମତ ସାଧାରଣ ମତ ବୋଲି ଧରାଯିବ ? ସମ୍ଭବତଃ ନୀତିସାରର ଲେଖକ ବହୁସଂଖ୍ୟକ ଶୂଦ୍ର ମଜୁରିଆମାନଙ୍କର କିଛି ଗୋଟିଏ ମତ ଦେବାର ଅଛି ବୋଲି ବିଚାର କରି ନ ଥିଲେ । ସେମାନଙ୍କୁ ପ୍ରାୟ ଗଣ୍ୟ କରାଯାଉ ନ ଥିଲା । ବୋଧହୁଏ ସାଧାରଣ ଜନମତ ବୋଇଲେ ଉଚ୍ଚ ଓ ଶାସକ ଶ୍ରେଣୀର ହିଁ ମତ ବୋଲି ବୁଝାଉଥିଲା ।

ତଥାପି ମଧ୍ୟଯୁଗରେ ଭାରତୀୟ ରାଜନୀତିରେ ଲକ୍ଷ୍ୟ କରିବାର କଥା ଯେ ପୂର୍ବକାଳ ପରି ସେଥିରେ ରାଜାର ଏକଚ୍ଛତ୍ର ବା ଐଶ୍ୱରିକ ଦାବୀର କୌଣସି ସ୍ଥାନ ନ ଥିଲା ।

ତାପରେ ମଧ୍ୟକାଳୀନ ରାଜାର ବ୍ୟବସ୍ଥା ପରିଷଦ ଓ ମନ୍ତ୍ରିବିଭାଗ, ପାର୍କ ଓ ଜଙ୍ଗଲ ପରିଚାଳନା ପାଇଁ ଉଚ୍ଚ କର୍ମଚାରୀ ନିଯୁକ୍ତ, ସହର ଓ ଗ୍ରାମ୍ୟ ଜୀବନର ସଙ୍ଗଠନ, ପୋଲ, ଘାଟ, ପାନ୍ଥଶାଳା, ରାସ୍ତା ଓ କୌଣସି ସହର ଗ୍ରାମ ପକ୍ଷରେ ଅତ୍ୟନ୍ତ ଦରକାରୀ ନର୍ଦ୍ଦମା ତିଆରି ଇତ୍ୟାଦି ବିଷୟରେ ମଧ୍ୟ ବର୍ଣ୍ଣନା ରହିଛି ।

ଗ୍ରାମ ବ୍ୟାପାରରେ ଗ୍ରାମପଞ୍ଚାୟତର ପୂର୍ଣ୍ଣ କର୍ତ୍ତୃତ୍ୱ ଥିଲା ଏବଂ ରାଜକର୍ମଚାରୀମାନେ ପଞ୍ଚମାନଙ୍କୁ ଖୁବ୍ ସମ୍ମାନ ଦେଖାଉଥିଲେ । ପଞ୍ଚାୟତ ହିଁ ଜମି ବାଣ୍ଟୁଥିଲା, ଟିକସ ସଂଗ୍ରହ କରୁଥିଲା ଏବଂ ତାପରେ ଗ୍ରାମ ତରଫରୁ ସରକାରଙ୍କୁ ଟିକସ ଦେଉଥିଲା । ଏକ ବଡ଼ ପଞ୍ଚାୟତ ବା ମହାସଭା ଥିଲା ପରି ମନେହୁଏ । ଏହା ସବୁ ଶ୍ରେଷ୍ଠ ପଞ୍ଚାୟତଗୁଡ଼ିକର କାର୍ଯ୍ୟ ପରିଦର୍ଶନ କରୁଥିଲା ଏବଂ ଦରକାର ହେଲେ ସେଥିରେ ହସ୍ତକ୍ଷେପ କରୁଥିଲା । ଏ ପଞ୍ଚାୟତ-ଗୁଡ଼ିକର ମଧ୍ୟ ବିଚାର କରିବାର କ୍ଷମତା ଥିଲା ଓ ବିଚାରପତି ଭାବରେ ଲୋକଙ୍କର ମକଦ୍ଦମା ବିଚାର କରୁଥିଲା ।

ଦକ୍ଷିଣ-ଭାରତର କେତେକ ପୁରାତନ ପ୍ରସ୍ତରଖୋଦିତ ଲେଖାରୁ ପଞ୍ଚାୟତର ସଭ୍ୟମାନେ କିପରି ନିର୍ବାଚିତ ହେଉଥିଲେ ଓ ତାଙ୍କର ଯୋଗ୍ୟତା ବା ଅଯୋଗ୍ୟତା ବିଷୟରେ କେତେକ କଥା ଆମେ ଜାଣିପାରୁଁ । ଯଦି କୌଣସି ସଭ୍ୟ ସାଧାରଣପାଣ୍ଠି ଖର୍ଚ୍ଚର ହିସାବ ନ ଦିଏ, ତେବେ ତାଙ୍କୁ ଅଯୋଗ୍ୟ ବୋଲି ବିବେଚନା କରାଯାଏ । ଆଉ ଏକ ମର୍ଯ୍ୟାଦାର ନିୟମ ହେଉଛି ଯେ କୌଣସି ସଭ୍ୟଙ୍କ ନିକଟସମ୍ପର୍କୀୟ ଲୋକଙ୍କୁ ଚାକିରି ଦିଆଯାଉ ନ ଥିଲା । ଏହା ଯଦି ଆଜି ଆମର ସମସ୍ତ କାଉନ୍‌ସିଲ, ଆସେମ୍ବ୍ଲି ଓ ମ୍ୟୁନିସି-ପାଲିଟିରେ ପ୍ରୟୋଗ କରାଯାଆନ୍ତା, ତେବେ କେଡ଼େ ଭଲ ନ ହୁଅନ୍ତା !

ଏହି କମିଟିର ସଭ୍ୟରୂପେ ଜଣେ ସ୍ତ୍ରୀଲୋକର ନାମ ବି ଉଲ୍ଲେଖ ରହିଛି; ତେଣୁ ଏଥିରୁ ବୋଧ ହେଉଛି, ଏ ସବୁ ପଞ୍ଚାୟତଗୁଡ଼ିକରେ ଓ ତାର କମିଟିରେ ସ୍ତ୍ରୀଲୋକମାନେ ବି ରହିପାରୁଥିଲେ ।

ପଞ୍ଚାୟତର ନିର୍ବାଚିତ ସଭ୍ୟମାନଙ୍କଦ୍ୱାରା କମିଟିଗୁଡ଼ିକ ଗଠିତ ହେଉଥିଲା ଓ ପ୍ରତ୍ୟେକ କମିଟି ଏକବର୍ଷ ରହୁଥିଲା । ଯଦି କୌଣସି ସଭ୍ୟ ବଦ୍‌ଆଚରଣ କରେ, ତେବେ ତାକୁ ସଙ୍ଗେ ସଙ୍ଗେ ବାହାର କରି ଦିଆଯାଉଥିଲା ।

ଗ୍ରାମ ସ୍ୱାୟତ୍ତଶାସନପ୍ରଥା ହିଁ ଆର୍ଯ୍ୟ ରାଜନୀତିର ମୂଳଭିତ୍ତି ଥିଲା । ଏହା ହିଁ ଏହାକୁ ଶକ୍ତିଦାନ କରୁଥିଲା । ଗ୍ରାମ୍ୟସଭା ନିଜର ସ୍ୱାଧୀନତା ଲାଗି ଏପରି ବ୍ୟଗ୍ର ଥିଲେ ଯେ କୌଣସି ସୈନିକ ରାଜାର ଅନୁମତି ବ୍ୟତୀତ କୌଣସି ଗ୍ରାମରେ ପ୍ରବେଶ କରିପାରିବେ ନାହିଁ ବୋଲି ନିୟମ ଧାର୍ଯ୍ୟ କରା ହୋଇଥିଲା । ନୀତିସାର କହେ, ଯେତେବେଳେ କୌଣସି କର୍ମଚାରୀ ବିରୁଦ୍ଧରେ ପ୍ରଜାମାନେ ଆପତ୍ତି କରିବେ, ସେତେବେଳେ ରାଜା 'କର୍ମଚାରୀଙ୍କ ପକ୍ଷ ନୁହେଁ; ମାତ୍ର ପ୍ରଜାଙ୍କ ପକ୍ଷ ନେବା ଉଚିତ୍' ଏବଂ ଯଦି ବହୁତ ସଂଖ୍ୟକ ଲୋକ ଆପତ୍ତି କରନ୍ତି, ତେବେ ସେ କର୍ମଚାରୀଙ୍କୁ ବରଖାସ୍ତ କରି ଦିଆଯାଉଥିଲା; କାରଣ ନୀତିସାର କହେ "ପଦବୀ-ମଦରେ ଉନ୍ମତ୍ତ ନ ହୁଏ କିଏ ?" ଆଜି ଆମ ଦେଶରେ ବିଶେଷ ଭାବରେ ଯେଉଁସବୁ କର୍ମଚାରୀ ବଦ୍‌ଆଚରଣ ଓ କୁଶାସନ କରୁଛନ୍ତି, ତାଙ୍କ ପ୍ରତି ଏଗୁଡ଼ିକ ନୀତିବାକ୍ୟ ।

ବଡ଼ ବଡ଼ ସହରମାନଙ୍କରେ ଯେଉଁଠି ଅଧିକ କାରିଗର ଓ ବଣିକ ଥାଆନ୍ତି ସେଠାରେ ସଂଘମାନ ଗଢ଼ାହେଲା । ଏହିରୂପେ କାରିଗର ସଂଘ, ବ୍ୟାଙ୍କିଙ୍ଗ୍ କରପୋରେସନ୍ ଓ ବାଣିଜ୍ୟ ସମିତି ଆଦି ଥିଲା । ଅବଶ୍ୟ ଧର୍ମସଂଘମାନ ଥିଲା । ଏହିସବୁ ଅନୁଷ୍ଠାନ ବହୁ ପରିମାଣରେ ଆଭ୍ୟନ୍ତରୀଣ ସମସ୍ୟା ନିୟନ୍ତ୍ରଣ କରୁଥିଲା ।

ରାଜା ଲୋକଙ୍କ ଉପରେ ଏପରି ଟିକସ ଧାର୍ଯ୍ୟ କରିବ ବୋଲି ସ୍ଥିର ଥିଲା, ଯେଉଁଥିରେ ଲୋକଙ୍କର କ୍ଷତି ହେବ ନାହିଁ କିମ୍ବା ତାଙ୍କୁ ବାଧିବ ନାହିଁ । ଯେପରି ମାଳୀ ମାଳ ଗୁନ୍ଥିଲାବେଳେ ଜଙ୍ଗଲର ଗଛମାନଙ୍କରୁ ଫୁଲ ଓ ପତ୍ର ସଂଗ୍ରହ କରେ, ସେହିପରି ଟିକସ ବସାଇବାକୁ ହେବ; କୋଇଲା ପୋଡ଼ାଳିବାଲା ପରି ନୁହେଁ ।

ଭାରତର ମଧ୍ୟଯୁଗ ସମ୍ବନ୍ଧରେ ଆମେ ଏହିପରି ଏଣ୍ଟୁ ତେଣ୍ଟୁ ସମ୍ବାଦ ପାଉଁ । ପୁସ୍ତକରେ ଲିଖିତ ତଥ୍ୟ ଅନୁଯାରେ କେତେଦୂର କାର୍ଯ୍ୟ ହେଉଥିଲା, ତାହା ଜାଣିବା କଷ୍ଟକର । ପୁସ୍ତକରେ ସୁନ୍ଦର ସୁନ୍ଦର ତଥ୍ୟ ଓ ଆଦର୍ଶ ଲେଖିଦେବା ଖୁବ୍ ସହଜ; କିନ୍ତୁ ତାକୁ କାର୍ଯ୍ୟରେ ପରିଣତ କରିବା ଅଧିକ କଷ୍ଟକର । ଯାହାହେଉ ଲୋକେ ସମ୍ପୂର୍ଣ୍ଣଭାବରେ ତାଙ୍କର ଆଦର୍ଶବାଦ ବା ଧାରଣାକୁ କାର୍ଯ୍ୟକାରୀ ନ କରିଥିଲେ ସୁଦ୍ଧା ସେ ସମୟରେ ତାଙ୍କର ଆଦର୍ଶ ଜାଣିବାରେ ପୁସ୍ତକ ଆମ୍ଭମାନଙ୍କୁ ସାହାଯ୍ୟ କରେ । ଆମେ ଦେଖୁଁ ଯେ ରାଜାମାନେ ଏକଛତ୍ର ଶାସକ ନ ଥିଲେ । ନିର୍ବାଚିତ ପଞ୍ଚାୟତଦ୍ୱାରା ତାଙ୍କର କ୍ଷମତା ରୋକ ଦିଆଯାଇଥିଲା । ଗ୍ରାମ ଓ ସହରମାନଙ୍କରେ ଏକ ଉନ୍ନତ ଧରଣର ସ୍ୱାୟତ୍ତଶାସନ ପ୍ରଚଳିତ ଥିଲା ଏବଂ କେନ୍ଦ୍ର ସରକାର ଏଥିରେ ପ୍ରାୟ ହସ୍ତକ୍ଷେପ କରୁ ନ ଥିଲେ ।

ଲୋକଙ୍କ ଆଦର୍ଶବାଦ ବା ସ୍ୱାୟତ୍ତ ଶାସନ ବୋଇଲେ କ'ଣ ? ଭାରତର ସମସ୍ତ ସାମାଜିକ ଗଠନ ଜାତିପ୍ରଥା ଉପରେ ପ୍ରତିଷ୍ଠିତ ଥିଲା । ନୀତି ହିସାବରେ ହୁଏ ତ ଏଥିରେ କଠୋରତା ନ ଥିଲା ଏବଂ ନୀତିସାର ଯେପରି କହୁଛି ଯୋଗ୍ୟତା ବା ଦକ୍ଷତାର ବିଚାର କରାଯାଉଥିଲା । ମାତ୍ର ବାସ୍ତବରେ ଏହାର ଅର୍ଥ କିଛି ନୁହେଁ । ଶାସକଶ୍ରେଣୀ ବା ଜାତି ଥିଲେ ବ୍ରାହ୍ମଣ ବା କ୍ଷତ୍ରିୟ । ବେଳେ ବେଳେ ସେମାନଙ୍କ ଭିତରେ ପ୍ରଭୁତ୍ୱ ଲାଗି ବିବାଦ ହେଉଥିଲା । ଅନେକ ସମୟରେ ସେମାନେ ଏକତ୍ର ଶାସନ କରୁଥିଲେ ଓ ଏକତ୍ର ମିଳିମିଶି ଚଳୁଥିଲେ । ଅନ୍ୟମାନଙ୍କୁ ସେମାନେ ଦବାଇ ରଖୁଥିଲେ । କ୍ରମେ ବେପାର ବାଣିଜ୍ୟ ବୃଦ୍ଧି ସଙ୍ଗେ ସଙ୍ଗେ ବଣିକଶ୍ରେଣୀ ଧନ ଓ ଶ୍ରେଷ୍ଠତା ଅର୍ଜନ କଲେ ଏବଂ ସେମାନଙ୍କର ଗୁରୁତ୍ୱ ବଢ଼ିବାରୁ ସମିତିଗୁଡ଼ିକ ପରିଚାଳନା କରିବା ନିମନ୍ତେ ତାଙ୍କୁ କେତେକ ବିଶେଷ ସୁବିଧା ଓ ସ୍ୱାଧୀନତା ଦିଆଗଲା; କିନ୍ତୁ ଏହା ହୋଇ ସୁଦ୍ଧା ରାଷ୍ଟ୍ରକ୍ଷମତାରେ ତାଙ୍କର ପ୍ରକୃତ କିଛି ଭାଗ ନ ଥିଲା । ଦରିଦ୍ର ଶୂଦ୍ରମାନେ ବରାବର ପତିତ ଭାବରେ ରହୁଥିଲେ । ତାଙ୍କ ତଳକୁ ଆହୁରି ପୁଣି ଲୋକ ରହୁଥିଲେ ।

ବେଳେ ବେଳେ ନୀଚ ଜାତିର କେହି କେହି ଲୋକ ଧନଅର୍ଜନ କରିଥିଲେ । ଶୂଦ୍ରମାନେ ରାଜା ହୋଇଥିବାର ମଧ୍ୟ ଶୁଣାଯାଏ; କିନ୍ତୁ ଏହା ବିରଳ ଘଟିଥିଲା । ସାମାଜିକ ଭାବରେ ଜାଗରଣର ଏକ ପ୍ରଣାଳୀ ହେଉଛି ଯେ ଏକ ଅଧୀନସ୍ଥ ନିମ୍ନ ଜାତିକୁ ଏକ ପାହାଚ ଉପରକୁ ଉଠାଇ ଦେବା । ହିନ୍ଦୁଧର୍ମରେ ତଳ ସ୍ତରରେ ନୂତନ ସମ୍ପ୍ରଦାୟକୁ ଅନେକ ସମୟରେ ମିଶାଇ ନିଆ ଯାଉଥିଲା; ସେମାନେ ଆସ୍ତେ ଆସ୍ତେ ଉପରକୁ ଉଠୁଥିଲେ ।

ତେଣୁ ଯଦିଓ ପାଶ୍ଚାତ୍ୟ ଦେଶ ପରି ଭାରତରେ ଶ୍ରମଦାସତ୍ୱ ନ ଥିଲା, ତଥାପି ଆମର ସମଗ୍ର ସାମାଜିକ ଗଠନର କ୍ରମଧାରା ଅନୁସାରେ ଏକ ଶ୍ରେଣୀ ଅନ୍ୟ ଶ୍ରେଣୀ ଉପରେ ଶାସନ କରୁଥିଲା । ତଳେ ପଡ଼ିଥିବା ଲକ୍ଷ ଲକ୍ଷ ଲୋକ ଶୋଷିତ ହେଉଥିଲେ ଏବଂ ଉପରେ ଥିବା ଲୋକଙ୍କର ସମସ୍ତ ଦାଉ ତାଙ୍କୁ ସହ୍ୟ କରିବାକୁ ପଡ଼ୁଥିଲା । ଉପରେ ଥିବା ଲୋକେ ଏହି ପ୍ରଥାକୁ ସ୍ଥାୟୀ କରିବା ନିମନ୍ତେ ଯତ୍ନଶୀଳ ଥିଲେ ଏବଂ ତଳେ ପଡ଼ିଥିବା ଦରିଦ୍ର ଲୋକଙ୍କୁ ବିଦ୍ୟା ଅର୍ଜନ ବା ଶିକ୍ଷାର ସୁବିଧା ନ ଦେଇ ନିଜ ହାତରେ କ୍ଷମତା ରଖୁଥିଲେ । ଗ୍ରାମପଞ୍ଚାୟତରେ କୃଷକମାନଙ୍କର କିଛି ହାତ ଥିଲା ଏବଂ ସେମାନଙ୍କୁ ଅବଜ୍ଞା କରାଯାଇ ପାରୁ ନଥିଲା; କିନ୍ତୁ କେତେକ ଚତୁର ବ୍ରାହ୍ମଣ ଏହି ପଞ୍ଚାୟତଗୁଡ଼ିକ ଉପରେ ପ୍ରାଧାନ୍ୟ କରୁଥିବା ଖୁବ୍ ସମ୍ଭବ ।

ଆର୍ଯ୍ୟମାନେ ଭାରତକୁ ଆସିବା କାଳରୁ ଏହି ପୁରାତନ ଆର୍ଯ୍ୟ ରାଜନୀତି ଚଳିଥିଲା ପରି ମନେହୁଏ । ଆମେ ଯେଉଁ ମଧ୍ୟଯୁଗ କଥା କହୁଛୁ, ସେତେବେଳେ ସେମାନେ ଦ୍ରାବିଡ଼ମାନଙ୍କର ସମ୍ପର୍କରେ ଆସିଥିଲେ; କିନ୍ତୁ ଆସ୍ତେ ଆସ୍ତେ ଅଧୋଗତି ଓ ଦୁର୍ବଳତା

ଆସିଲା ପରେ ବୋଧହେଲା । ସମ୍ଭବତଃ ଏହା ପୁରୁଣା ହୋଇପଡ଼ିଥିଲା ଏବଂ ବୋଧହୁଏ ବାହାରୁ ବାରମ୍ବାର ଅଭିଯାନ ଏହାକୁ ନଷ୍ଟ କରିପକାଇଥିଲା ।

ପୂର୍ବକାଳରେ ଭାରତ ଗଣିତଶାସ୍ତ୍ର ଲାଗି ପ୍ରସିଦ୍ଧ ଥିଲା ଏବଂ ଲୀଳାବତୀ ନାମକ ଜଣେ ମହିଳା ସେଥିପାଇଁ ପ୍ରସିଦ୍ଧ । କଥିତ ଅଛି ଯେ ଲୀଳାବତୀ ଓ ତାଙ୍କର ପିତା ଭାସ୍କରାଚାର୍ଯ୍ୟ ଏବଂ ସମ୍ଭବତଃ ଆଉ ଜଣେ ଲୋକ ବ୍ରହ୍ମଗୁପ୍ତ ପ୍ରଥମେ ଦଶମିକ ପ୍ରଥା ବାହାର କରିଥିଲେ । ବୀଜଗଣିତ (Algebra) ଭାରତରୁ ବାହାରିଛି ବୋଲି କୁହାଯାଏ । ଭାରତରୁ ଏହା ଆରବକୁ ଗଲା ଏବଂ ଆରବରୁ ଇଉରୋପକୁ ଗଲା । ଆରବୀୟ ଭାଷାରୁ ଆଲଜେବ୍ରା ଶବ୍ଦ ହୋଇଛି ।

## ୪୭ । ଐଶ୍ୱର୍ଯ୍ୟଶାଳୀ ଆଙ୍କୋର ଏବଂ ଶ୍ରୀବିଜୟ

ମେ ୧୭, ୧୯୩୨

ଆମେ ଏବେ ସୁଦୂର ଭାରତ ପ୍ରତି ଟିକିଏ ନଜର ପକାଇବା । ଦକ୍ଷିଣ-ଭାରତରୁ ଲୋକେ ଆସି ମାଲୟସିଆ ଓ ଇଣ୍ଡୋଚୀନରେ ବସତି ଓ ଉପନିବେଶ ସ୍ଥାପନ କଥା ଦେଖିବା । ଏହିସବୁ ବସତି କିପରି ଜାଣିଶୁଣି ସଂଗଠିତ କରାଗଲା, ସେ ବିଷୟରେ ମୁଁ ତୋତେ ଆଗରୁ କହିଛି । ସେଗୁଡ଼ିକ ଯେ କୌଣସିମତେ ଆପଣାଛାଏଁ ହୋଇନଥିବ । ଅନେକ ସ୍ଥାନରେ ଏକ ସମୟରେ ଜାଣିଶୁଣି ଉପନିବେଶ ସ୍ଥାପନ କରିବା ନିମନ୍ତେ ଅବଶ୍ୟ ସମୁଦ୍ର ପାର ହୋଇ ବାରମ୍ବାର ଯାତ୍ରା କରାହୋଇଥିବ ଏବଂ ସମୁଦ୍ର ଉପରେ ଯଥେଷ୍ଟ ପ୍ରଭୁତ୍ୱ ରହିଥିବ । ମୁଁ ତୋତେ କହିଛି ଯେ ଖ୍ରୀଷ୍ଟଯୁଗର ପ୍ରଥମ ଓ ଦ୍ୱିତୀୟ ଶତାବ୍ଦୀରେ ଏହି ଉପନିବେଶ ଆରମ୍ଭ ହେଲା । ସେଗୁଡ଼ିକ ହିନ୍ଦୁ ଉପନିବେଶ ଏବଂ ଦକ୍ଷିଣ-ଭାରତୀୟ ନାମକରଣ ଦିଆଯାଇଥିଲା । କେତେକ ଶତାବ୍ଦୀ ପରେ ବୌଦ୍ଧଧର୍ମ କ୍ରମବିସ୍ତାର ଲଭିଲା; ଶେଷରେ ପ୍ରାୟ ସମଗ୍ର ହିନ୍ଦୁ ମାଲୟସିଆ ବୌଦ୍ଧ ହୋଇଗଲା ।

ଆମେ ପ୍ରଥମେ ଇଣ୍ଡୋଚୀନକୁ ଯିବା । ଏଠାର ପ୍ରଥମ ଉପନିବେଶ ନାମ ହେଉଛି ଚମ୍ପା ଏବଂ ଏହା ଅନ୍ନମ ପ୍ରଦେଶ ଭିତରେ ଥିଲା । ତୃତୀୟ ଶତାବ୍ଦୀରେ ଏଠାରେ ପଣ୍ଡୁରଙ୍ଗମ ସହର ବୃଦ୍ଧି ପାଇବାର ଆମେ ଦେଖୁଁ । ଦୁଇ ଶହ ବର୍ଷ ପରେ ପ୍ରଧାନ କାମ୍ବୋଜା ନଗର ବୃଦ୍ଧି ପାଇଲା । ଏଥିରେ ପଥରର ବିଶାଳ ପ୍ରାସାଦ ଓ ମନ୍ଦିର ଆଦି ପରିପୂର୍ଣ୍ଣ ଥିଲା । ଏହିସବୁ ଭାରତୀୟ ଉପନିବେଶରେ ବିରାଟ ସୌଧମାନ ଗଢ଼ା ହେବାର ତୁ ଦେଖିବୁ । କାରିଗର ଓ ରାଜମିସ୍ତ୍ରୀ ଅବଶ୍ୟ ଭାରତରୁ ଅଣା ହୋଇଥିବେ

ଏବଂ ସେମାନ ନିର୍ମାଣକାର୍ଯ୍ୟରେ ଭାରତୀୟ ରୀତି ଅନୁସାରେ କାର୍ଯ୍ୟ କରିଥିବେ । ବିଭିନ୍ନ ରାଜ୍ୟ ଓ ଦ୍ୱୀପପୁଞ୍ଜ ଭିତରେ କୋଠା ତିଆରି ନିମନ୍ତେ ଖୁବ୍ ପ୍ରତିଯୋଗିତା ଲାଗିଥିଲା ଏବଂ ଏହି ପ୍ରତିଯୋଗିତା ଫଳରେ ଉଚ୍ଚଦରର କଳାଗତ ଉନ୍ନତି ହେଲା ।

ଏହିସବୁ ବସତିରେ ବାସକରୁଥିବା ଲୋକେ ସ୍ୱାଭାବିକଭାବରେ ସମୁଦ୍ରବାସୀ ଜାତି । ସେମାନେ ଓ ତାଙ୍କର ପୂର୍ବପୁରୁଷମାନେ ଏହି ସ୍ଥାନକୁ ସମୁଦ୍ର ପାରି ହୋଇ ଆସିଥିଲେ; ଚତୁର୍ଦ୍ଦିଗରେ ସମୁଦ୍ର ଥିଲା । ସମୁଦ୍ରବାସୀ ଲୋକେ ସହଜରେ ବେପାର ବାଣିଜ୍ୟ କରନ୍ତି; ଏମାନେ ମଧ୍ୟ ବେପାର ଓ ବାଣିଜ୍ୟ କରିପାରୁଥିଲେ । ସେମାନଙ୍କର ଜାହାଜ ସମୁଦ୍ର ପାର କରି ବିଭିନ୍ନ ଦ୍ୱୀପପୁଞ୍ଜକୁ, ପଶ୍ଚିମରେ ଭାରତକୁ ଓ ପୂର୍ବରେ ଚୀନକୁ ବୋହି ନେଉଥିଲେ । ମାଲୟସିଆରେ ବିଭିନ୍ନ ରାଜ୍ୟସବୁ ଏହିରୂପେ ଅଧିକ ଭାବରେ ବଣିକଶ୍ରେଣୀ ଦ୍ୱାରା ନିୟନ୍ତ୍ରିତ ହେଉଥିଲା । ଅନେକ ସମୟରେ ଏହିସବୁ ରାଜ୍ୟ ଭିତରେ ବିବାଦ, ଭୀଷଣ ଯୁଦ୍ଧ ଓ ହତ୍ୟାକାଣ୍ଡ ହେଉଥିଲା । ବେଳେ ବେଳେ ହିନ୍ଦୁରାଷ୍ଟ୍ର ବୌଦ୍ଧରାଷ୍ଟ୍ର ବିରୁଦ୍ଧରେ ଯୁଦ୍ଧ କରୁଥିଲେ; କିନ୍ତୁ ସେ କାଳରେ ଏହିସବୁ ଯୁଦ୍ଧ ବେପାର ପ୍ରତିଯୋଗିତା ଉଦ୍ଦେଶ୍ୟରେ ପ୍ରକୃତରେ ଲାଗୁଥିଲା, ଠିକ୍ ଯେପରି ଆଜିକାଲି ପ୍ରଧାନ ଶକ୍ତିମାନଙ୍କ ଭିତରେ ନିଜ ତିଆରି ମାଲର ବିକ୍ରୀ ପାଇଁ ଯୁଦ୍ଧ ଘଟେ ।

ତିନି ଶହ ବର୍ଷ ବା ଅଧିକ କାଳ ପର୍ଯ୍ୟନ୍ତ ଅଷ୍ଟମ ଶତାବ୍ଦୀ ଯାଏ ଇଣ୍ଡୋଚୀନରେ ତିନୋଟି ବିଭିନ୍ନ ହିନ୍ଦୁରାଷ୍ଟ୍ର ଥିଲା । ୯ମ ଶତାବ୍ଦୀରେ ଜୟବର୍ମନ ନାମକ ଏକ ପ୍ରଧାନ ଶାସକ ବାହାରିଲେ । ସେ ଏଗୁଡ଼ିକୁ ଏକତ୍ର କଲେ ଓ ଏକ ବିଶାଳ ସାମ୍ରାଜ୍ୟ ଗଠନ କଲେ । ସମ୍ଭବତଃ ସେ ଜଣେ ବୌଦ୍ଧ ଥିଲେ । ସେ ଆଙ୍କୋରରେ ନିଜର ରାଜଧାନୀ ତିଆରି ଆରମ୍ଭ କରିଥିଲେ ଏବଂ ତାଙ୍କର ଉତ୍ତରାଧିକାରୀ ଯଶୋବର୍ମନ୍ ଏହାକୁ ପୂର୍ଣ୍ଣ କରିଥିଲେ । ଏହି କାମ୍ବୋଡ଼ିଆ ସାମ୍ରାଜ୍ୟ ପ୍ରାୟ ଚାରି ଶହ ବର୍ଷ କାଳ ରହିଥିଲା । ସାମ୍ରାଜ୍ୟ-ମାନଙ୍କ ପରି ଏହା ଆଡ଼ମ୍ବରପୂର୍ଣ୍ଣ ଓ କ୍ଷମତାଶାଳୀ ବୋଲି ମନେ କରାଯାଉଥିଲା । ଆଙ୍କୋରଥମ୍ ରାଜକୀୟ ସହରଟି ସମଗ୍ର ପ୍ରାଚ୍ୟରେ 'ଐଶ୍ୱର୍ଯ୍ୟଶାଳୀ ଆଙ୍କୋର" ରୂପେ ଜଣାଥିଲା; ଏହି ନଗରରେ ଦଶଲକ୍ଷରୁ କିଛି ଅଧିକ ଲୋକ ବାସ କରୁଥିଲେ । ସିଜରଙ୍କ ଅମଳର ରୋମ ସହରର ଲୋକସଂଖ୍ୟା ଅପେକ୍ଷା ଏହା ଅଧିକ । ଏହା ନିକଟରେ ଆଙ୍କୋରବଟର ପ୍ରସିଦ୍ଧ ମନ୍ଦିର ଅବସ୍ଥିତ । ୧୩ଶ ଶତାବ୍ଦୀରେ କେତେକ ଦିଗରୁ କାମ୍ବୋଡ଼ିଆ ଉପରକୁ ଆକ୍ରମଣ ହେଲା । ପୂର୍ବରେ ଅନ୍ନମବାସୀ ଆକ୍ରମଣ କଲେ, ପଶ୍ଚିମରୁ ସ୍ଥାନୀୟ ପାହାଡ଼ିଆ ଜାତି ଆକ୍ରମଣ ଚଳାଇଲେ । ଉତ୍ତରରେ ମଙ୍ଗୋଲମାନେ ଶାନ ଲୋକଙ୍କୁ ଦକ୍ଷିଣକୁ ତଡ଼ି ଦେଇଥିଲେ ଏବଂ ସେମାନେ ପଳାଇଯିବାର ଆଉ କିଛି ବାଟ ନ ପାଇ କାମ୍ବୋଡ଼ିଆକୁ ଆକ୍ରମଣ କଲେ । ଏହି ଅବିରତ ଯୁଦ୍ଧ ହେତୁ ନିଜକୁ ରକ୍ଷା କରିବା ଲାଗି ଚେଷ୍ଟାରେ ରାଜ୍ୟ ବଡ଼ କ୍ଳାନ୍ତ ହୋଇପଡ଼ିଲା । ତଥାପି ଆଙ୍କୋର ସହର ପ୍ରାଚ୍ୟରେ

ଏକ ଅଦ୍ଭୁତ ସହରରୂପେ ରହିଥିଲା । ୧୨୯୭ ଖ୍ରୀ : ରେ କାମ୍ବୋଡ଼ିଆ ରାଜାଙ୍କ ପାଖକୁ ପ୍ରେରିତ ହୋଇଥିବା ଜଣେ ଚୀନ ପ୍ରତିନିଧି ଏଠାର ବିଚିତ୍ର କୋଠାବାଡ଼ିର ଏକ ସୁନ୍ଦର ବର୍ଣ୍ଣନା କରିଯାଇଛନ୍ତି ।

କିନ୍ତୁ ହଠାତ୍ ଆଙ୍କୋର ଏକ ନିଦାରୁଣ ବିପତ୍ତିରେ କଷ୍ଟଭୋଗ କଲା । ୧୩୦୦ ଖ୍ରୀ : ରେ କାଦୁଅ ଜମାହେବାରୁ ମେକଙ୍ଗ ନଦୀର ମୁହାଣ ବନ୍ଦ ହୋଇଗଲା । ନଦୀପାଣି ସମୁଦ୍ରକୁ ବୋହି ଯାଇପାରିଲା ନାହିଁ ଏବଂ ପାଣି ପଛକୁ ଫେରି ସହରର ଚତୁର୍ଦ୍ଦିଗରୁ ସମସ୍ତ ଅଞ୍ଚଳକୁ ବନ୍ୟାପ୍ଲାବିତ କଲା, ଉର୍ବର କ୍ଷେତସବୁ ଅଦରକାରୀ ସନ୍ତସନ୍ତିଆ ଭୂମି ହୋଇଗଲା । ସହରର ଅଧିକ ଲୋକ ଅନାହାର-ଦୁଃଖ ଭୋଗିବାକୁ ଲାଗିଲେ । ସେମାନେ ସେଠାରେ ରହି ନପାରି, ସହର ଛାଡ଼ି ଅନ୍ୟତ୍ର ପଳାଇଯିବାକୁ ବାଧ୍ୟ ହେଲେ । ଏହିରୂପେ "ଐଶ୍ୱର୍ଯ୍ୟଶାଳୀ ଆଙ୍କୋର" ଲୋପ ପାଇଲା ଏବଂ ଜଙ୍ଗଲ ପରିପୂର୍ଣ୍ଣ ହୋଇଗଲା । ସୁନ୍ଦର କୋଠାବାଡ଼ିରେ କ୍ଷଣକାଳ ଲାଗି ବନ୍ୟଜନ୍ତୁ ସବୁ ବାସ କଲେ, ଶେଷରେ ଏହି ଜଙ୍ଗଲ ହେତୁ ପ୍ରାସାଦଗୁଡ଼ିକ ଜୀର୍ଣ୍ଣଶୀର୍ଣ୍ଣ ହେଲା ।

କାମ୍ବୋଡ଼ିଆ ରାଷ୍ଟ୍ର ଏହିସବୁ ବିପଦ ବେଶୀକାଳ ସହ୍ୟ କରିପାରିଲା ନାହିଁ । ଏହାର କ୍ରମେ ପତନ ହେଲା ଏବଂ ସାମୟିକ ଭାବରେ କେବେ କେବେ ଶ୍ୟାମର ଅନ୍ତର୍ଭୁକ୍ତ ହେଲା ଓ କେବେ କେବେ ଆନ୍ନାମ୍‌ଦ୍ୱାରା ଶାସିତ ହେଲା; କିନ୍ତୁ ଏବେ ସୁଦ୍ଧା ଆଙ୍କୋରଭଟର ବିରାଟ ମନ୍ଦିରର ଭଗ୍ନାବଶେଷ ରହିଛି । ପୂର୍ବକାଳରେ ଏହି ସହର ଉନ୍ନତ ଥିଲା, ସୁଦୂର ଦେଶମାନଙ୍କରୁ ବଣିକମାନେ ମାଲ ଘେନି ଆସୁଥିଲେ ଏବଂ ଏହି ସହରର ନାଗରିକ ଓ ଶିଳ୍ପୀମାନଙ୍କଦ୍ୱାରା ତିଆରି ହୋଇଥିବା ସୁନ୍ଦର ଜିନିଷସବୁ ଅନ୍ୟ ଦେଶକୁ ଯାଉଥିଲା ।

ସମୁଦ୍ର ସେପାରିରେ ଇଣ୍ଡୋଚୀନ୍‌ର ଅନତିଦୂରରେ ସୁମାତ୍ରା ଦ୍ୱୀପ ରହିଛି । ଏଠାରେ ମଧ୍ୟ ଦକ୍ଷିଣ-ଭାରତର ପଲ୍ଲବଗଣ ଖ୍ରୀଷ୍ଟଜନ୍ମର ପ୍ରଥମ ବା ୨ୟ ଶତାବ୍ଦୀରେ ଆଦିମ ଉପନିବେଶ ସ୍ଥାପନ କରିଥିଲେ । ଏଗୁଡ଼ିକ କ୍ରମେ ବୃଦ୍ଧି ପାଇଲା । ଆଗେ ମାଲୟ ପେନିନ୍‌ସୁଲ ସୁମାତ୍ରା ରାଷ୍ଟ୍ରର ଏକ ଅଂଶ ହୋଇଗଲା ଏବଂ ପରେ ଦୀର୍ଘକାଳ ପର୍ଯ୍ୟନ୍ତ, ସୁମାତ୍ରା ଓ ମାଲୟ ପେନିନ୍‌ସୁଲର ଇତିହାସ ପରସ୍ପର ସହିତ ଘନିଷ୍ଠ ଭାବରେ ସଂପୃକ୍ତ । ଶ୍ରୀବିଜୟ ଏହି ରାଜ୍ୟର ରାଜଧାନୀ ଥିଲା । ଏହା ସୁମାତ୍ରା ପର୍ବତରେ ଅବସ୍ଥିତ ଏବଂ ପାଲେମ୍ବଙ୍ଗ ନଦୀର ମୁହାଣ ନିକଟରେ ଏକ ବନ୍ଦର ଅଛି । ପଞ୍ଚମ ଓ ଷଷ୍ଠ ଶତାବ୍ଦୀ ବେଳକୁ ବୌଦ୍ଧଧର୍ମ ସୁମାତ୍ରାର ଏକ ପ୍ରଧାନ ଧର୍ମ ହୋଇପଡ଼ିଲା । ବାସ୍ତବିକ କ୍ରିୟାଶୀଳ ଭାବରେ ବୌଦ୍ଧଧର୍ମର ପ୍ରଚାର କରିବାରେ ସୁମାତ୍ରା ନେତୃତ୍ୱ ନେଇଥିଲା ଏବଂ ଶେଷରେ ହିନ୍ଦୁ-ମାଲୟସିଆର ଅଧିକାଂଶ ଅଞ୍ଚଳକୁ ବୌଦ୍ଧଧର୍ମରେ ଦୀକ୍ଷିତ କରାଇବାରେ କୃତକାର୍ଯ୍ୟ ହେଲା; ତେଣୁ ଏହି ସୁମାତ୍ରା ସାମ୍ରାଜ୍ୟକୁ ଶ୍ରୀବିଜୟର ବୌଦ୍ଧସାମ୍ରାଜ୍ୟ ବୋଲି କୁହାଯାଏ ।

ଶ୍ରୀବିଜୟ କ୍ରମେ ବଡ଼ ହେବାରେ ଲାଗିଲା । ଶେଷରେ ଖାଲି ସୁମାତ୍ରା, ମାଲୟ ନୁହେଁ, ବୋର୍ଣ୍ଣିଓ, ଫିଲିପାଇନ୍‌ସ, ଜାଭାର ଅଧେ, ଫର୍ମୋଜା ଦ୍ୱୀପର ଅଧେ, ସିଂହଳ ଏବଂ କ୍ୟାଣ୍ଟନ ନିକଟରେ ଚୀନର ଦକ୍ଷିଣରେ ଏକ ବନ୍ଦର ବି ଏହାର ଅନ୍ତର୍ଭୁକ୍ତ ହେଲା । ସମ୍ଭବତଃ ସିଂହଳକୁ ସମ୍ମୁଖୀନ ହୋଇ ଭାରତର ଦକ୍ଷିଣ ସୀମାନ୍ତରେ ଏକ ବନ୍ଦର ବି ଏହାର ଅନ୍ତର୍ଭୁକ୍ତ ଥିଲା । ତେଣୁ ତୁ ଦେଖିପାରିବୁ, ଏହା ଏକ ବିସ୍ତୃତ ସାମ୍ରାଜ୍ୟ ଥିଲା, ସମଗ୍ର ମାଲୟସିଆ ପର୍ଯ୍ୟନ୍ତ ବ୍ୟାପିଥିଲା । ଏହିସବୁ ଭାରତୀୟ ଉପନିବେଶରେ ବ୍ୟବସାୟ, ବେପାର ଓ ଜାହାଜ ତିଆରି ମୁଖ୍ୟ ପେଷା ଥିଲା । ସେ କାଳର ଚୀନା ଓ ଆରବୀୟ ଲୋକମାନଙ୍କ ବିବରଣୀରୁ ଜଣାପଡ଼େ, ସୁମାତ୍ରା ରାଜ୍ୟ ଅଧୀନରେ ଅନେକ ବନ୍ଦର ଓ ନୂତନ ଉପନିବେଶ ଥିଲା । ଏ ସଂଖ୍ୟା କ୍ରମେ ବୃଦ୍ଧି ପାଉଥିଲା ।

ଆଜି ବ୍ରିଟିଶ ସାମ୍ରାଜ୍ୟ ସମଗ୍ର ଦୁନିଆରେ ବିସ୍ତୃତ ଏବଂ ପ୍ରତ୍ୟେକ ସ୍ଥାନରେ ଏହାର ଭଲ ଭଲ ସମୁଦ୍ର ବନ୍ଦର କୋଇଲା ନେବା ଷ୍ଟେସନ ରହିଛି; ଯଥା – ଜିବ୍ରାଲଟର, ସୁଏଜ କେନାଲ ( ଏହା ପ୍ରଧାନତଃ ବ୍ରିଟିଶ ଅଧିକାରରେ ), ଏଡ଼େନ, କଲମ୍ବୋ, ସିଙ୍ଗାପୁର, ହଂକଙ୍ଗ ଇତ୍ୟାଦି । ଗତ ୩୦୦ ବର୍ଷ ଭିତରେ ବ୍ରିଟିଶ ଏକ ବେପାରୀ ଜାତି ହୋଇଛନ୍ତି ଏବଂ ସମୁଦ୍ରଶକ୍ତି ଉପରେ ତାଙ୍କର ବେପାର ଓ ଶକ୍ତି ନିର୍ଭର କରୁଛି । ସେହି ହେତୁ ସମଗ୍ର ପୃଥିବୀରେ ସୁବିଧାଜନକ ସୁଦୂର ସ୍ଥାନମାନଙ୍କରେ ତାଙ୍କର ବନ୍ଦର ଓ କୋଇଲାଘାଟୀ ଦରକାର ପଡ଼ୁଛି । ଶ୍ରୀବିଜୟ ସାମ୍ରାଜ୍ୟ ମଧ୍ୟ ଏକ ନୌଶକ୍ତି ଥିଲା ଏବଂ ବେପାର ଉପରେ ପ୍ରତିଷ୍ଠିତ ଥିଲା । ତେଣୁ ଦେଖିବୁ ଯେଉଁଠି ଟିକିଏ ସୁବିଧା ମିଳିଛି, ସେଠାରେ ଏମାନେ ବନ୍ଦର କରିଛନ୍ତି । ବାସ୍ତବିକ ସୁମାତ୍ରା ରାଷ୍ଟ୍ରର ବସତିମାନଙ୍କର ଏକ ବିଶେଷ ଲକ୍ଷଣ ହେଉଛି, ଏଗୁଡ଼ିକ ଘାଟୀସ୍ଥଳରେ ଅବସ୍ଥିତ; ଅର୍ଥାତ୍ ସେଗୁଡ଼ିକ ଏପରି ଭାବରେ ରହିଛନ୍ତି ଯେପରି ଉଭୟପାର୍ଶ୍ୱସ୍ଥ ସମୁଦ୍ର ଉପରେ କର୍ତ୍ତୃତ୍ୱ ଜାରି କରିପାରିବେ ।

ଆଜି ଯେଉଁ ସିଙ୍ଗାପୁର ଏକ ପ୍ରଧାନ ନଗର ହୋଇଛି, ତାହା ମୂଳରୁ ସୁମାତ୍ରାର ଉପନିବେଶ ଥିଲା । ତୁ ଲକ୍ଷ୍ୟ କରିପାରିବୁ, ସିଙ୍ଗାପୁର (ସିଂହପୁର) ନାଁଟି ଏକ ଭାରତୀୟ ନାମ । ସିଙ୍ଗାପୁରକୁ ସମ୍ମୁଖୀନ ଜଳ ପ୍ରଣାଳୀର ଠିକ୍ ବିପରୀତ ଦିଗରେ ସୁମାତ୍ରା ଲୋକଙ୍କର ଆଉ ଏକ ବସତି ଥିଲା । ବେଳେ ବେଳେ ସେମାନେ ପ୍ରଣାଳୀ ଉପରେ ଲୁହା ଜଞ୍ଜିର ବିସ୍ତାର କରିଦେଉଥିଲେ ଏବଂ ସେହିଭାବରେ ଅତ୍ୟଧିକ କର ନ ଦେବା ପର୍ଯ୍ୟନ୍ତ ସମସ୍ତ ଜାହାଜ ସେ ବାଟ ଦେଇ ଯିବା ବନ୍ଦ କରିଦେଉଥିଲେ ।

ତେଣୁ ଶ୍ରୀବିଜୟ ସାମ୍ରାଜ୍ୟ ବ୍ରିଟିଶ ସାମ୍ରାଜ୍ୟଠାରୁ କୌଣସି ଅଂଶରେ ନ୍ୟୂନ ନ ଥିଲା, ବରଂ ଏହା ତାହାପେକ୍ଷା ଅନେକ ଶ୍ରେଷ୍ଠ ଥିଲା । ବ୍ରିଟିଶ ସାମ୍ରାଜ୍ୟ ଯେତେକାଳ ରହିବାର ସମ୍ଭାବନା ଅଛି, ତାହାପେକ୍ଷା ଅଧିକ କାଳ ରହିଥିଲା । ଏକାଦଶ ଶତାବ୍ଦୀରେ

ଠିକ୍ ଯେତେବେଳେ ଦକ୍ଷିଣ-ଭାରତର ଚୋଳ ସାମ୍ରାଜ୍ୟ ବୃଦ୍ଧି ପାଉଥିଲା, ସେହି କାଳ ହିଁ ଏମାନଙ୍କର ସର୍ବାପେକ୍ଷା ଅଧିକ ଉନ୍ନତିର କାଳ; କିନ୍ତୁ ଏହା ଚୋଳ ସାମ୍ରାଜ୍ୟ ଅପେକ୍ଷା ବହୁତ ସାନ ରହିଥିଲା । ଉଭୟଙ୍କ ଭିତରେ ଅନେକ କାଳ ପର୍ଯ୍ୟନ୍ତ ବନ୍ଧୁତ୍ୱ ସମ୍ପର୍କ ଥିଲା; ମାତ୍ର ଉଭୟ ଆକ୍ରମଣଶୀଳ ସମୁଦ୍ରଯାତ୍ରୀ ଜାତି ଥିଲେ ଏବଂ ଶକ୍ତିଶାଳୀ ନୌବାହିନୀ ଓ ବିସ୍ତୃତ ବେପାର ସମ୍ପର୍କ ଥିଲା । ୧୧ଶ ଶତାବ୍ଦୀର ପ୍ରଥମ ଭାଗରେ ଦୁହିଙ୍କ ଭିତରେ ବିବାଦ ହୋଇ ଏକ ଯୁଦ୍ଧ ଲାଗିଲା । ଚୋଳ ରାଜା ପ୍ରଥମ ରାଜେନ୍ଦ୍ର ଏକ ଦଶଆପାଖି ସେନା ପଠାଇଲେ । ତାହା ଶ୍ରୀବିଜୟଙ୍କୁ ହରାଇଦେଲା; ମାତ୍ର ଶ୍ରୀବିଜୟ ଶୀଘ୍ର ଏ ଆଘାତ ପାର ହୋଇଗଲା ।

ଏକାଦଶ ଶତାବ୍ଦୀର ଆରମ୍ଭରେ ଚୀନ୍ ସମ୍ରାଟ ସୁମାତ୍ରା ରାଜାଙ୍କୁ କେତେକ ପିତ୍ତଳଘଣ୍ଟି ଦାନ ଦେଇଥିଲେ । ତାହା ବଦଳରେ ସୁମାତ୍ରା ରାଜା ତାଙ୍କ ନିକଟକୁ ମୁକ୍ତା, ହାତୀଦାନ୍ତ ଓ ସଂସ୍କୃତ ପୁସ୍ତକ ପଠାଇଥିଲେ । କଥିତ ଅଛି ଯେ ଆହୁରି ମଧ୍ୟ ଏକ ସୁବର୍ଣ୍ଣ ପାତ୍ରରେ "ଭାରତୀୟ ଅକ୍ଷରରେ" ଖୋଦିତ ଚିଠି ପଠାଯାଇଥିଲା । ୨ୟ ଶତାବ୍ଦୀର ପ୍ରଥମ ଭାଗରୁ ଆରମ୍ଭ ହୋଇ ୫ମ ବା ୬ଷ୍ଠ ଶତାବ୍ଦୀ ପର୍ଯ୍ୟନ୍ତ ଦୀର୍ଘକାଳ ଶ୍ରୀବିଜୟ ଉନ୍ନତିଲାଭ କଲା । ସେତେବେଳେ ଏହା ବୌଦ୍ଧ ହୋଇଗଲା ଏବଂ ତାପରେ ଧୀରେ ଧୀରେ ଓ ବରାବର ୧୧ଶ ଶତାବ୍ଦୀ ପର୍ଯ୍ୟନ୍ତ ଏହା ବୃଦ୍ଧି ପାଇଲା । ଆହୁରି ୩୦୦ ବର୍ଷ ପର୍ଯ୍ୟନ୍ତ ବିରାଟ ସାମ୍ରାଜ୍ୟ ରୂପେ ମାଲୟସିଆରେ ବେପାର ଓ ବାଣିଜ୍ୟ ନିୟନ୍ତ୍ରଣ କରି ଏହା ରହିଥିଲା । ଶେଷରେ ୧୩୭୭ ଖ୍ରୀ. ରେ ଆଉ ଗୋଟିଏ ପୁରାତନ ପଲ୍ଲବ-ଉପନିବେଶ ତାକୁ ପରାସ୍ତ କରିଥିଲା ।

ଶ୍ରୀବିଜୟ ସାମ୍ରାଜ୍ୟ ସିଂହଳରୁ ଚୀନରେ କ୍ୟାଣ୍ଟନ ପର୍ଯ୍ୟନ୍ତ ବିସ୍ତୃତ ହେବା କଥା ମୁଁ ତୋତେ କହିଛି । ଏହି ରାଜ୍ୟମାନଙ୍କ ମଧ୍ୟରେ ଥିବା ଅଧିକାଂଶ ଦ୍ୱୀପ ଏହାର ଅନ୍ତର୍ଭୁକ୍ତ ଥିଲା; କିନ୍ତୁ ଗୋଟିଏ ଚ୍ଛୋଟ ଦ୍ୱୀପକୁ ଏହା ଅଧୀନସ୍ଥ କରିପାରି ନ ଥିଲା । ଏହା ହେଉଛି ଜାଭାର ପୂର୍ବଭାଗ । ଏହା ସ୍ୱାଧୀନ ରାଜ୍ୟରୂପେ ରହିଥିଲା । ଏହା ଏକ ହିନ୍ଦୁରାଜ୍ୟ ଓ ବୌଦ୍ଧଧର୍ମ ଗ୍ରହଣ କରିବାକୁ ଅସ୍ୱୀକାର କଲା; ତେଣୁ ପଶ୍ଚିମ ଜାଭା ଶ୍ରୀବିଜୟ ଅଧୀନରେ ଥିବାବେଳେ ପୂର୍ବ-ଜାଭା ସ୍ୱାଧୀନ ଥିଲା । ପୂର୍ବ-ଜାଭାର ଏହି ହିନ୍ଦୁରାଷ୍ଟ୍ର ବି ଏକ ବାଣିଜ୍ୟ ରାଷ୍ଟ୍ର ଥିଲା ଏବଂ ବେପାର ଉପରେ ଏହାର ସମୃଦ୍ଧି ନିର୍ଭର କରୁଥିଲା । ଏହା ସିଙ୍ଗାପୁର ପ୍ରତି ଈର୍ଷାପୂର୍ଣ୍ଣ ଦୃଷ୍ଟି ପକାଇଥିବ; କାରଣ ସୁନ୍ଦର ଅବସ୍ଥିତି ନିମନ୍ତେ ଏହା ବି ଏକ ପ୍ରଧାନ ବେପାରକେନ୍ଦ୍ର ହୋଇଥିଲା । ଏହିରୂପେ ଶ୍ରୀବିଜୟ ଓ ପୂର୍ବ-ଜାଭା ଭିତରେ ପ୍ରତିଦ୍ୱନ୍ଦ୍ୱିତା ଥିଲା ଏବଂ ଏହା ବିକଟ ଶତ୍ରୁତାରେ ପରିଣତ ହେଲା । ୧୨ଶ ଶତାବ୍ଦୀ ପରଠାରୁ ଜାଭା ରାଜ୍ୟ ଶ୍ରୀବିଜୟକୁ ଦବାଇ ବୃଦ୍ଧି ପାଇଲା ଏବଂ ମୁଁ ଶେଷରେ

କରିଥିଲା, ୧୪ଶ ଶତାବ୍ଦୀରେ ଅର୍ଥାତ୍ ୧୩୭୭ ଖ୍ରୀ: ରେ ଏହା ଶ୍ରୀବିଜୟ୍କୁ ସମ୍ପୂର୍ଣ୍ଣରୂପେ ପରାସ୍ତ କରିଦେଲା । ଏହି ଯୁଦ୍ଧ ଭୀଷଣ ହୋଇଥିଲା ଏବଂ ଏହାଦ୍ୱାରା ଅନେକ ଧ୍ୱଂସ ଘଟିଥିଲା । ଏହିପରି ଭାବରେ ମାଲୟ୍ସିଆ ମଧ୍ୟ ବିଶାଳ ସାମ୍ରାଜ୍ୟସବୁ—ଶ୍ରୀବିଜୟ୍ ସାମ୍ରାଜ୍ୟ—ଲୋପ ହୋଇଗଲା ଏବଂ ଏହାର ଧ୍ୱଂସାବଶେଷ ଉପରେ ମାଦଯାପାହିତ ନାମକ ନୂତନ ସାମ୍ରାଜ୍ୟ ମୁଣ୍ଡ ଟେକିଲା ।

ଶ୍ରୀବିଜୟ୍ ସହିତ ଯୁଦ୍ଧରେ ପୂର୍ବ-ଜାଭା ଅତ୍ୟନ୍ତ ନିଷ୍ଠୁରତା ଓ ବର୍ବରତା ଦେଖାଇଥିବା ସତ୍ତ୍ୱେ ସେ କାଳର ଅନେକ ପୁସ୍ତକରୁ ଜଣାପଡ଼େ ଯେ ଜାଭାରେ ଏହି ହିନ୍ଦୁ ରାଷ୍ଟ୍ରର ଏକ ଉଚ୍ଚ ଧରଣର ସଭ୍ୟତା ଥିଲା । କୋଠା ନିର୍ମାଣ ବିଶେଷତଃ ମନ୍ଦିର ନିର୍ମାଣ କାର୍ଯ୍ୟରେ ଏହା ଉତ୍କର୍ଷ ଲାଭ କରିଥିଲା । ସେଠାରେ ୫୦୦ରୁ ଅଧିକ ମନ୍ଦିର ଥିଲା ଏବଂ ଏଥିରେ ପୃଥିବୀର ପଥର କାରିଗରିରେ ସର୍ବାପେକ୍ଷା ସୁନ୍ଦର ଓ ଅଧିକ କଳାନିପୁଣତାର ପରିଚୟ ମିଳେ । ୭ମ ଶତାବ୍ଦୀ ଓ ୧୦ ଶତାବ୍ଦୀର ମଧ୍ୟଭାଗରେ ଅର୍ଥାତ୍ ୬୫୦ରୁ ୯୫୦ ଖ୍ରୀ: ଭିତରେ ଅଧିକାଂଶ ବିଶାଳ ମନ୍ଦିର ନିର୍ମାଣ ହୋଇଥିଲା । ଏହିସବୁ ବିରାଟ ମନ୍ଦିର ନିର୍ମାଣ ନିମନ୍ତେ ଜାଭାକୁ ଭାରତ ଓ ଅନ୍ୟ ପଡ଼ୋଶୀ ରାଜ୍ୟମାନଙ୍କରୁ ବହୁସଂଖ୍ୟକ କାରିଗର (ମିସ୍ତ୍ରୀ) ଆସିଥିବେ । ଏକ ପରବର୍ତ୍ତୀ ଚିଠିରେ ଆମେ ଜାଭା ଓ ମାଦାଯାପାହିତର ଭାଗ୍ୟ ଆଲୋଚନା କରିବା ।

ମୁଁ ଏଠାରେ ଉଲ୍ଲେଖ କରିପାରେ, ଏହି ଆଦିମ ପଲ୍ଲବ-ଉପନିବେଶ ଜରିଆରେ ଜାଭା ଫିଲିପାଇନ୍ ଉଭୟ ଭାରତରୁ ଲିଖନ-କଳା ଶିକ୍ଷା କରିଥିଲେ । ଦୁର୍ଭାଗ୍ୟବଶତଃ ସ୍ପେନ ଫିଲିପାଇନର ଅନେକ ପୁରାତନ ହସ୍ତଲେଖା ସବୁ ନଷ୍ଟ କରି ଦେଇଥିଲା ।

ମନେରଖିବା ଦରକାର, ଇସ୍‌ଲାମର ଜନ୍ମତ ପୂର୍ବରୁ ଆଦିମକାଳରୁ ଏହିସବୁ ଦ୍ୱୀପପୁଞ୍ଜରେ ଆରବମାନଙ୍କର ଉପନିବେଶ ଥିଲା । ସେମାନେ ବଡ଼ ବେପାରୀ ଏବଂ ଯେଉଁଠି ବେପାର କରିବାର ସୁଯୋଗ ଦେଖିଛନ୍ତି, ଆରବମାନେ ସେଠିକି ଯାଇଛନ୍ତି ।

## ୪୭ । ରୋମ ପୁନର୍ବାର ଅନ୍ଧକାର ଭିତରକୁ ଗଲା

ମେ ୧୯—୧୯୩୨

ବେଳେ ବେଳେ ବିସ୍ମୃତ, ଅତୀତ ଇତିହାସ ସମ୍ବନ୍ଧରେ ତୋତେ ଠିକ୍ ପଥରେ ମୁଁ ଚାଳନା କରିପାରୁ ନାହିଁ । ମୁଁ ନିଜେ ପଥ ଆସ୍ପଷ୍ଟ ହୋଇଯାଏ, ତାହାହେଲେ ତୋତେ କିପରି ଠିକ୍ ବାଟ ଦେଖାଇପାରିବି ? କିନ୍ତୁ ପୁନର୍ବାର ଭାବେ, ବୋଧହୁଏ ମୁଁ

ତୋତେ କିଛିଏ ସାହାଯ୍ୟ କରିପାରେ; ତେଣୁ ଏହି ଚିଠିସବୁ ଲେଖୁଛି । ଏଗୁଡ଼ିକ ନିଶ୍ଚୟ ମୋର ବି ପ୍ରଧାନ ସହାୟକ ହୋଇଛି । ମୁଁ ଯେତେବେଳେ ଏହା ଲେଖେ ଓ ତୋ କଥା ଭାବେ, ସେତେବେଳେ ମୋ ନିଜ ବାହାସ୍ଥଳୀର ୧୧୬ ଡିଗ୍ରୀ ଉତ୍ତାପରେ ମୁଁ ଯେ ବସିଛି ଏବଂ ଗରମ ଲୁହ ଯେ ବୋହୁଛି, ତାହା ଭୁଲିଯାଏଁ । ବେଳେ ବେଳେ ମୁଁ ବରେଲି ଜିଲ୍ଲା ଜେଲରେ ଯେ ଅଛି, ତାହା ବି ଭୁଲିଯାଏଁ ।

ଗତ ଚିଠିରେ ଆମେ ମାଲୟସିଆର ବର୍ଣ୍ଣନା ବେଳେ ୧୪ଶ ଶତାବ୍ଦୀର ଶେଷ ପର୍ଯ୍ୟନ୍ତ ଆସିଥିଲେ; ଅଥଚ ଉତ୍ତର-ଭାରତରେ ରାଜା ହର୍ଷଙ୍କ ଅମଳ—୭ମ ଶତାବ୍ଦୀଠାରୁ ଦୂରକୁ ଆମେ ଯାଇ ନ ଥାଉଁ । ଆମକୁ ଇଉରୋପର ଆହୁରି ଅଧିକ କାଳର କଥା ଆଲୋଚନା କରିବାକୁ ହେବ । ପ୍ରତ୍ୟେକ ସ୍ଥାନରେ ଏକ ନିର୍ଦ୍ଦିଷ୍ଟ ସମୟ ପର୍ଯ୍ୟନ୍ତ ଆଲୋଚନା କରିବା ବଡ଼ କଠିନ । ମୁଁ ତାହା କରିବାକୁ ଚେଷ୍ଟା କରିଛି; କିନ୍ତୁ ଆଙ୍କୋର ଓ ଶ୍ରୀବିଜୟଙ୍କ କଥା ପରି ଦେଲେ ବେଳେ କାହାଣୀ ଶେଷ କରିବାକୁ କେତେଶହ ବର୍ଷ ଆଗକୁ ମାଡ଼ିଯାଇଛି । କିନ୍ତୁ ମନେରଖ, କାମ୍ବୋଡ଼ିଆ ସାମ୍ରାଜ୍ୟ ଓ ଶ୍ରୀବିଜୟ ସାମ୍ରାଜ୍ୟ ପୂର୍ବରେ ସମୃଦ୍ଧି ଥିବା ସମୟରେ ଭାରତ, ଚୀନ ଓ ଇଉରୋପରେ ନାନାପ୍ରକାର ପରିବର୍ତ୍ତନ ଘଟିଥିଲା । ପୁଣି ସ୍ମରଣ ରଖ ଯେ ମୋର ଗତ ଚିଠିରେ କେତୋଟି ମାତ୍ର ପୃଷ୍ଠାରେ ଇଣ୍ଡୋଚୀନ ଓ ମାଲୟସିଆର ୧୦୦୦ ବର୍ଷର ଇତିହାସ ବର୍ଣ୍ଣିତ ଅଛି । ଏହି ରାଜ୍ୟଗୁଡ଼ିକ ଏସିଆ ଓ ଇଉରୋପୀୟ ଇତିହାସର ପ୍ରଧାନ ସ୍ରୋତଠାରୁ ବିଛିନ୍ନ; ତେଣୁ ଏଗୁଡ଼ିକ ପ୍ରତି ବିଶେଷ ନଜର ଦିଆଯାଇ ନାହିଁ । କିନ୍ତୁ ଏଗୁଡ଼ିକର ବଡ଼ କୃତିତ୍ୱପୂର୍ଣ୍ଣ ଓ ଦୀର୍ଘ ଇତିହାସ ରହିଛି । ବାଣିଜ୍ୟ, କଳା ଏବଂ ବିଶେଷତଃ କାରିଗରିରେ କରିଥିବା ଉନ୍ନତିର ଇତିହାସ ପ୍ରଣିଧାନଯୋଗ୍ୟ । ଭାରତୀୟଙ୍କ ପକ୍ଷରେ ଏହି କାହାଣୀ ବିଶେଷ ଆଗ୍ରହପ୍ରଦ; କାରଣ ସେଗୁଡ଼ିକ ଭାରତରେ ପ୍ରାୟ ଏକ ଅଂଶ ଥିଲା । ଭାରତରୁ ଲୋକେ ପୂର୍ବସାଗର ପାରି ହୋଇ ଏଠାକୁ ଭାରତୀୟ ସଂସ୍କୃତି, ସଭ୍ୟତା, କଳା ଓ ଧର୍ମ ନେଇଥିଲେ ।

ଯଦିଓ ମାଲୟସିଆରେ ଆମେ ଆଗକୁ ଯାଇଛେ, ତଥାପି ଆମେ ପ୍ରକୃତରେ ସପ୍ତମ ଶତାବ୍ଦୀରେ ରହିଛେ । ଆରବରେ ଇସ୍‌ଲାମର ଆଗମନ ଏବଂ ଏତଦ୍ଦ୍ୱାରା ଇଉରୋପ ଓ ଏସିଆରେ ଯେଉଁ ବିରାଟ ପରିବର୍ତ୍ତନମାନ ଘଟିଲା, ସେସବୁ ଆମେ ଏପର୍ଯ୍ୟନ୍ତ ବିଚାର କରି ନାହୁଁ । ଆମକୁ ଇଉରୋପୀୟ ଘଟଣାର ଗତି ଅନୁସରଣ କରିବାକୁ ପଡ଼ିବ ।

ଇଉରୋପ ପ୍ରତି ନଜର ପକାଇବା ପାଇଁ କିଛିଏ ପଛକୁ ଫେରିଯିବା । ତୋର ମନେଥିବ, ବସ୍‌ଫରସ ସମୁଦ୍ରକୂଳରେ ଯେଉଁଠି ବିଜାଣ୍ଟିୟମ୍ ଥିଲା, ସେଠି ରୋମସମ୍ରାଟ

କନଷ୍ଟାଣ୍ଟାଇନ କନଷ୍ଟାଣ୍ଟିନୋପଲ ନଗର ସ୍ଥାପନା କରିଥିଲେ । ଏହି ନୂତନ ନଗରକୁ ସେ ପୁରାତନ ରୋମରୁ ସାମ୍ରାଜ୍ୟର ରାଜଧାନୀ ଉଠାଇନେଲେ । ଅଳ୍ପଦିନ ପରେ ରୋମ ସାମ୍ରାଜ୍ୟ ଦୁଇ ଭାଗରେ ବିଭକ୍ତ ହୋଇଗଲେ; ପଶ୍ଚିମ ଭାଗର ରାଜଧାନୀ ହେଲା ରୋମ ଏବଂ ପୂର୍ବୀୟ ସାମ୍ରାଜ୍ୟର ରାଜଧାନୀ ହେଲା କନଷ୍ଟାଣ୍ଟିନୋପଲ । ପୂର୍ବୀୟ ସାମ୍ରାଜ୍ୟକୁ କେତୁତ ଅସୁବିଧା ଓ ଅନେକ ଶତ୍ରୁର ସମ୍ମୁଖୀନ ହେବାକୁ ପଡ଼ିଲା; କିନ୍ତୁ ଆଶ୍ଚର୍ଯ୍ୟର କଥା, ତୁର୍କମାନେ ଏହାକୁ ଶେଷରେ ଧ୍ୱଂସ କରିବା ପର୍ଯ୍ୟନ୍ତ ଶତାବ୍ଦୀ ପରେ ଶତାବ୍ଦୀ ୧୧୦୦ ବର୍ଷ କାଳ ଏହା ନିଜର ଟେକ ରଖି ଆସିଥିଲା ।

ପଶ୍ଚିମ ସାମ୍ରାଜ୍ୟର ଏପରି ପ୍ରତିଷ୍ଠା ନ ଥିଲା । ରୋମାନ୍ ଖୁବ୍ ମର୍ଯ୍ୟାଦା ଓ ରୋମ ପର ରାଜକୀୟ ସହର ଥିବା ସତ୍ତ୍ୱେ ଏବଂ ଦୀର୍ଘକାଳ ପର୍ଯ୍ୟନ୍ତ ପାଶ୍ଚାତ୍ୟ ଜଗତରେ ଏହା ପ୍ରାଧାନ୍ୟ ଲାଭ କରିଥିବା ସତ୍ତ୍ୱେ ଅତ୍ୟନ୍ତ ଦ୍ରୁତଗତିରେ ଏହାର ପତନ ଘଟିଥିଲା । ଉତ୍ତରାଞ୍ଚଳର କୌଣସି ଜାତିର ଆକ୍ରମଣରୁ ଏହା ନିଜକୁ ରକ୍ଷା କରି ପାରିଲାନାହିଁ । ଆଲାରିକ୍ ଗୋଥ୍ ଇଟାଲି ଭିତରକୁ ଅଗ୍ରସର ହେଲେ ଏବଂ ୪୧୦ ଖ୍ରୀ ରେ ରୋମ ଦଖଲ କଲେ । ପରେ ଭାଣ୍ଡାଲମାନେ ଆସି ରୋମ ଆକ୍ରମଣ କଲେ । ଭାଣ୍ଡାଲ ହେଉଛନ୍ତି ଏକ ଜର୍ମାନୀ ଜାତି । ସେମାନେ ଫ୍ରାନ୍ସ ଓ ସ୍ପେନ ଅତିକ୍ରମ କରି ଆଫ୍ରିକାରେ ପ୍ରବେଶ କଲେ ଓ ସେଠାରେ କାର୍ଥେଜର ଧ୍ୱଂସାବଶେଷ ଉପରେ ଏକ ରାଜ୍ୟ ସ୍ଥାପନ କରିଥିଲେ । ସମୁଦ୍ର ପାରହୋଇ ପୁରାତନ କାର୍ଥେଜକୁ ଆସି ସେମାନେ ରୋମ ଅଧିକାର କଲେ । ଏହା ପିଉନିକ୍ ଯୁଦ୍ଧରେ ରୋମାନ ବିଜୟର ପ୍ରତିଶୋଧ ହେଲା ପରି ମନେହୁଏ ।

ହୁନ୍‌ମାନେ ମଧ୍ୟ ଏସିଆ ବା ମଙ୍ଗୋଲିଆରୁ ଆସିଥିଲେ ଏବଂ ଏତିକିବେଳକୁ ସେମାନେ କ୍ଷମତାଶାଳୀ ହୋଇଗଲେ । ଏମାନେ ଏକ ଯାଯାବର ଜାତି ଓ ଡାନିଉବ୍ ନଦୀର ପୂର୍ବରେ ଏବଂ ପୂର୍ବୀୟ ରୋମାନ୍ ସାମ୍ରାଜ୍ୟ ଉତ୍ତର ଓ ପଶ୍ଚିମରେ ବସତି ସ୍ଥାପନ କରିଥିଲେ । ନେତା ଆଟିଲାଙ୍କ ଅଧୀନରେ ଏମାନେ ବଡ଼ ଉଦ୍ଧତ ହୋଇପଡ଼ିଲେ ଏବଂ କନଷ୍ଟାଣ୍ଟିନୋପଲ ସମ୍ରାଟ୍ ଓ ସରକାର ସବଦା ଏମାନଙ୍କୁ ଭୟ କରୁଥିଲେ । ଆଟିଲା ଏମାନଙ୍କୁ ଧମକ ଚମକ ଦେଖାଇ ବହୁ ପରିମାଣରେ ଧନ ଏମାନଙ୍କଠାରୁ ଆଦାୟ କରିଥିଲେ । ପୂର୍ବୀୟ ସାମ୍ରାଜ୍ୟକୁ ଯଥେଷ୍ଟଭାବରେ ଅବମାନନା କରିସାରି ଆଟିଲା ପଶ୍ଚିମ ସାମ୍ରାଜ୍ୟ ଉପରେ ଆକ୍ରମଣ କରିବାର ସ୍ଥିର କଲେ । ସେ ଗଲ୍ ଆକ୍ରମଣ କଲେ ଏବଂ ଦକ୍ଷିଣ-ଫ୍ରାନ୍ସର ଅନେକ ସହର ଧ୍ୱଂସ କଲେ । ସାମ୍ରାଜ୍ୟ ଫୌଜ ତାଙ୍କ ସହିତ ଲଢ଼େଇ କରିପାରି ନ ଥାନ୍ତେ; କିନ୍ତୁ ଜର୍ମାନୀ ଜାତିମାନେ ରୋମାନଙ୍କ ଭାଷାରେ "ବର୍ବରମାନେ"— ଏହି ହୁନ୍ ଅଭିଯାନରେ ଭୀତିଗ୍ରସ୍ତ ହୋଇଗଲେ; ତେଣୁ ଫ୍ରାଙ୍କ୍ ଓ ଗୋଥ୍‌ମାନେ ସାମ୍ରାଜ୍ୟ ସେନାରେ ଯୋଗ ଦେଲେ ଏବଂ ସେମାନେ ଏକାଠି ହୋଇ ଟ୍ରଇମ୍‌ଠାରେ ଏକ ବିରାଟ

ଯୁଦ୍ଧରେ ଅଟିଲାଙ୍କ ଅଧୀନସ୍ଥ ହୁନ୍‌ଙ୍କ ସମ୍ପୂର୍ଣ୍ଣ ପରାଜୟ ହେଲେ । ଏହି ଯୁଦ୍ଧରେ ୧,୫୦,୦୦୦ରୁ ଅଧିକ ଲୋକ ମରିଥିବାର କୁହାଯାଏ । ଏଥିରେ ଅଟିଲା ପରାସ୍ତ ହେଲେ ଏବଂ ମଙ୍ଗୋଲିଆନ୍ ହୁନ୍ ପଛକୁ ହଟିଲେ । ଏହା ୪୫୧ ଖ୍ରୀଷ୍ଟାବ୍ଦର କଥା । କିନ୍ତୁ ଅଟିଲା ପରାସ୍ତ ହେଲେ ସୁଦ୍ଧା ଯୁଦ୍ଧ କରିବାକୁ ପ୍ରସ୍ତୁତ ଥିଲେ । ସେ ଇଟାଲୀ ଗଲେ ଏବଂ ଉତ୍ତରରେ ଅନେକ ସହର ପୋଡ଼ିଦେଲେ ଓ ଲୁଟ୍‌କଲେ । ଅଳ୍ପଦିନ ପରେ ସେ ମରିଗଲେ ସୁଦ୍ଧା ନିଷ୍ଠୁରତା ଓ ନୃଶଂସତାର ଏକ ସ୍ଥାୟୀ ଅଖ୍ୟାତି ରଖି ଯାଇଛନ୍ତି । ଆଜିସୁଦ୍ଧା ହୁନ୍ ଅଟିଲା ନିର୍ମମ ଧ୍ୱଂସର ପ୍ରତୀକ ପରି ସ୍ମୃତି ପଥରେ ରହିଛନ୍ତି । ତାଙ୍କ ମୃତ୍ୟୁ ପରେ ହୁନ୍‌ମାନେ ଶାନ୍ତ ହୋଇଗଲେ, ସେଠାରେ ବସତି ସ୍ଥାପନ କଲେ ଏବଂ ଅନ୍ୟ ଅଧିବାସୀଙ୍କ ସହିତ ମିଶିଗଲେ । ତୋର ମନେଥାଇପାରେ, ମୋଟାମୋଟି ଏହି ସମୟକୁ ଶ୍ୱେତ ହୁନ୍‌ମାନେ ଭାରତକୁ ଆସିଥିଲେ ।

୪୦ ବର୍ଷ ପରେ ଥିଓଡୋରିକ ନାମକ ଆଉ ଜଣେ ଗୋଥ ରୋମ୍‌ର ରାଜା ହେଲେ ଏବଂ ଏହା ହିଁ ପଶ୍ଚିମ ସାମ୍ରାଜ୍ୟର ପ୍ରାୟ ଶେଷ କଲା । ପରେ ପୂର୍ବୀୟ ସମ୍ରାଟ୍ ଜଷ୍ଟିନିଅନ ତାଙ୍କ ସାମ୍ରାଜ୍ୟରେ ଇଟାଲୀକୁ ଅନ୍ତର୍ଭୁକ୍ତ କରିବା ଉଦ୍ୟମରେ ସଫଳ ହୋଇଥିଲେ । ସେ ଇଟାଲୀ ଓ ସିସିଲି ଉଭୟ ଦଖଲ କଲେ; ମାତ୍ର ଶୀଘ୍ର ସେଗୁଡ଼ିକ ଏଥିରୁ ବିଚ୍ଛିନ୍ନ ହୋଇଗଲେ ଏବଂ ନିଜକୁ ରକ୍ଷାକରିବା ନିମନ୍ତେ ପୂର୍ବୀୟ ସାମ୍ରାଜ୍ୟକୁ ଅନେକ କଷ୍ଟ କରିବାକୁ ପଡ଼ିଥିଲା ।

ଯେତେବେଳେ ଯେଉଁ ଜାତି ଆକ୍ରମଣ କଲା, ତା ଆଗରେ ସୁପ୍ରସିଦ୍ଧ ରୋମ୍ ଓ ତାହାର ସାମ୍ରାଜ୍ୟ ଏତେ ଶୀଘ୍ର ଓ ଏତେ ସହଜରେ ପତନ ହୋଇଯିବା ଆଶ୍ଚର୍ଯ୍ୟର କଥା ନୁହେଁ କି ? ହୁଏତ କେହି ମନେକରିପାରେ ଯେ ରୋମ୍ ଖଣ୍ଡ ଖଣ୍ଡ ହୋଇ ଯାଇଥିଲା କିମ୍ବା ଏକ ଫମ୍ପା ଖୋଳପା ମାତ୍ର ଥିଲା । ସମ୍ଭବତଃ ଏହା ଠିକ୍ । ଦୀର୍ଘକାଳ ପର୍ଯ୍ୟନ୍ତ ରୋମର ମର୍ଯ୍ୟାଦା ହିଁ ତାର ଶକ୍ତି ଥିଲା । ତାର ଅତୀତ ଇତିହାସ ଯୋଗୁଁ ଅନ୍ୟ ଦେଶର ଲୋକେ ତାହାକୁ ପୃଥିବୀର ନେତା ରୂପେ ଭାବି ଆସୁଥିଲେ ଏବଂ ଏକ କୁସଂସ୍କାରଜନିତ ଭୟ ହେତୁ ସେମାନେ ତା' ପ୍ରତି ମର୍ଯ୍ୟାଦା ଦେଖାଉଥିଲେ । ତେଣୁ ବାହ୍ୟ ଦୃଷ୍ଟିରେ ରୋମ୍ ଏକ ଶକ୍ତିଶାଳୀ ସାମ୍ରାଜ୍ୟ ରୂପେ ରହିଥିଲା. କିନ୍ତୁ ବାସ୍ତବିକ ତାହାର ପଶ୍ଚାତରେ କୌଣସି ଶକ୍ତି ନ ଥିଲା । ବାହ୍ୟତଃ ବିସ୍ତୃତ୍ ଧତା ଥିଲା ଓ ତାର ଥିଏଟର, ରଙ୍ଗମଞ୍ଚ ଓ ବଜାର-ମାନଙ୍କରେ କଳରୋଳ ହେଉଥିଲା । କିନ୍ତୁ ନିଶ୍ଚିତ ଭାବରେ ଏହା ପତନୋନ୍ମୁଖ ହେଉଥିଲା । କେବଳ ଦୁର୍ବଳତା ଯୋଗୁଁ ଯେ ହେଲା, ତାହା ନୁହେଁ; ମାତ୍ର ଜନସାଧାରଣଙ୍କ ଦାରିଦ୍ର୍ୟ ଓ ଦୁର୍ଦ୍ଦଶା ଉପରେ ସେ ଯେଉଁ ଧନିକମାନଙ୍କର ସଭ୍ୟତା ସ୍ଥାପନ କଲା, ସେଥିଯୋଗୁ ହେଲେ । ମୁଁ ମୋର ଏକ ଚିଠିରେ ଦରିଦ୍ର ଲୋକଙ୍କ ବିଦ୍ରୋହ ବିଷୟରେ ଏବଂ ଯେଉଁ ବିରାଟ ଦାସ-ବିଦ୍ରୋହ ନିର୍ମମ ଭାବରେ ଦମନ କରି ଦିଆହୋଇଥିଲା, ସେ ବିଷୟ ତୋତେ

ଲେଖିଛି । ରୋମର ସାମାଜିକଗଠନ ଉପରେ ଦୂଷିତ ଥିଲା, ତାହା ଏହି ବିଦ୍ରୋହସବୁ ଦର୍ଶାଇଦିଏ । ଏହା ତ ଭାଙ୍ଗି ପଡ଼ୁଥିଲା ଏବଂ ତାହା ସଙ୍ଗେ ସଙ୍ଗେ ଗୋଥ୍ ଓ ଅନ୍ୟ ଉତ୍ତରାଞ୍ଚଳ ଜାତିଙ୍କ ଆଗମନ ଏହି ପ୍ରକ୍ରିୟାରେ ସାହାଯ୍ୟ କଲା ଓ ତାଙ୍କୁ ପ୍ରାୟ ଆଦୌ ବିରୋଧର ସମ୍ମୁଖୀନ ହେବାକୁ ପଡ଼ି ନ ଥିଲା । ରୋମାନ କୃଷକ ଦୁର୍ଦ୍ଦଶାଗ୍ରସ୍ତ ହୋଇ ଅଧୀର ହୋଇ ପଡ଼ିଥିଲା ଏବଂ ଯେ କୌଣସି ପରିବର୍ତ୍ତନ ସ୍ୱାଗତ କରିଥିଲା । ଦରିଦ୍ର ଶ୍ରମିକ ଓ ଦାସମାନଙ୍କର ଅବସ୍ଥା ଆଗରୁ ଖରାପ ଥିଲା ।

ପଶ୍ଚିମ ରୋମାନ ସାମ୍ରାଜ୍ୟ ଲୋପ ହେବା ସଙ୍ଗେ ସଙ୍ଗେ ଗୋଥ୍, ଫ୍ରାଙ୍କ୍ ଓ ଅନ୍ୟ ପାଶ୍ଚାତ୍ୟ ଜାତି ପ୍ରାଧାନ୍ୟ ଲାଭ କରିଥିବାର ଆମେ ଦେଖୁ । ମୁଁ ଏସବୁ ନାମ କହି ତୋତେ ବ୍ୟସ୍ତ କରିବ ନାହିଁ । ଆଜିର ଜର୍ମାନ୍, ଫରାସୀ ଇତ୍ୟାଦି ପଶ୍ଚିମ ଇଉରୋପର ଜାତିମାନଙ୍କର ଏମାନେ ହେଉଛନ୍ତି ପୂର୍ବପୁରୁଷ । ଧୀରେ ଧୀରେ ଇଉରୋପରେ ଏହିସବୁ ରାଜ୍ୟ ଗଠିତ ହେବାର ଓ ତା ସଙ୍ଗେ ସଙ୍ଗେ ସଭ୍ୟତା ଅତି ନିମ୍ନସ୍ତରର ଥିବା ମଧ୍ୟ ଦେଖିଲେ । ସୁପ୍ରସିଦ୍ଧ ରୋମର ପତନ ସଙ୍ଗେ ସଙ୍ଗେ ରୋମର ଆଡ଼ମ୍ବର ଓ ବିଳାସ ଲୋପ ପାଇଲା ଏବଂ ରୋମରେ ଯେଉଁ ପୁରୁଣା ସଭ୍ୟତା ଚାଲି ଆସିଥିଲା, ତାହା ପ୍ରାୟ ଦିନକ ଭିତରେ ଧ୍ୱଂସ ପାଇଗଲେ । ଏହାର ମୂଳ ଅନେକ ଦିନରୁ ପଚି ଯାଇଥିଲା । ଏହିରୂପେ ପ୍ରକୃତରେ ମାନବ ଜାତି ପଛକୁ ଗତି କରିବାର ଏକ ଅଦ୍ଭୁତ ଦୃଷ୍ଟାନ୍ତ ଆମେ ଦେଖୁ । ଭାରତ, ଇଜିପ୍ଟ, ଚୀନ୍, ଗ୍ରୀସ୍, ରୋମ୍ ଓ ଅନ୍ୟତ୍ର ଏହା ଦେଖାଯାଏ । ଜ୍ଞାନ ଓ ଅଭିଜ୍ଞତା ଶ୍ରମ ସହକାରେ ସଞ୍ଚିତ ହେଲା ପରେ ଏବଂ ସଂସ୍କୃତି ଓ ସଭ୍ୟତା ଗଢ଼ା ହେଲା ପରେ ଗତିରୋଧ ଘଟେ । ଖାଲି ଗତିରୋଧ ନୁହେଁ, ପଛକୁ ବି ଫେରିବାକୁ ପଡେ଼ । ଅତୀତ ଉପରେ ଏକ ଆବରଣ ଥିଲାପରି ମନେହୁଏ ଏବଂ ଯଦିଓ ସାମୟିକ ଭାବରେ ଆମେ ଏଥିରେ କହିଁଭି ସଙ୍କେତ ପାଉଁ, ତଥାପି ଜ୍ଞାନ ଓ ଅଭିଜ୍ଞତାର ପାହାଡ଼ ପୁନର୍ବାର ଅତିକ୍ରମ କରିବାକୁ ପଡ଼େ । ସମ୍ଭବତଃ ପ୍ରତ୍ୟେକ ଥର ଲୋକ ଯେତିକି ଆଗକୁ ଯାଏ, ତାର ପରବର୍ତ୍ତୀ ଆରୋହଣ ସେତିକି ସହଜ ହୋଇପଡ଼େ । ଗୌରୀଶଙ୍କର ଶୃଙ୍ଗ ଅଭିଯାନ ଯେତିକି ହେଉଛି ପ୍ରତ୍ୟେକ ପରବର୍ତ୍ତୀ ଅଭିଯାନରେ ଶିଖରଟି ସେତେ ନିକଟତର ହେଉଛି ଏବଂ ହୁଏତ ଅଳ୍ପକାଳ ଭିତରେ ସର୍ବୋଚ୍ଚ ଶୃଙ୍ଗକୁ ଜୟ କରାଯାଇପାରେ ।

ଏହିରୂପେ ଇଉରୋପର ଚାରିଆଡ଼େ ଅନ୍ଧକାର ଦେଖାଗଲା । ଅନ୍ଧକାର ଯୁଗ ଆରମ୍ଭ ହେଲା, ଜୀବନ କଠୋର ଓ ଜଟିଳ ହୋଇପଡ଼ିଲା ଏବଂ ପ୍ରାୟ କୌଣସି ଶିକ୍ଷା ପ୍ରଚଳନ ନ ଥିଲା ଏବଂ ଯୁଦ୍ଧ ହିଁ ଏକମାତ୍ର ବୃତ୍ତି ବା ଆମୋଦର ବିଷୟ ଥିଲା । ସକ୍ରେଟିସ୍ ଓ ପ୍ଲେଟୋଙ୍କ ଯୁଗ ବହୁକାଳରୁ ଗ୍ଭଲିଗଲା ପରି ବାସ୍ତବିକ ମନେହେଲା ।-

ପଶ୍ଚିମ-ବିଭାଗରେ ଏତିକି । ଚାଲ ଏବେ ପୂର୍ବୀୟ ସାମ୍ରାଜ୍ୟ ପ୍ରତି ଦୃଷ୍ଟି ଦେବା । ତୋର ମନେଥିବ, କନଷ୍ଟାଣ୍ଟାଇନ ଖ୍ରୀଷ୍ଟଧର୍ମକୁ ରାଜଧର୍ମରୂପେ ପ୍ରବର୍ତ୍ତନ କରିଥିଲେ । ତାଙ୍କର ଜଣେ ଉତ୍ତରାଧିକାରୀ ସମ୍ରାଟ ଜୁଲିଆନ ଖ୍ରୀଷ୍ଟଧର୍ମ ଗ୍ରହଣ କରିବାକୁ ଅସ୍ୱୀକାର କଲେ । ସେ ପୁରାତନ ଦେବଦେବୀ ପୂଜା କରିବାକୁ ଚାହୁଁଥିଲେ । କିନ୍ତୁ ସେ କୃତକାର୍ଯ୍ୟ ହୋଇପାରିଲେ ନାହିଁ; କାରଣ ପୁରାତନ ଦେବତାଙ୍କ କାଳ ପୂରି ଯାଇଥିଲା ଏବଂ ଖ୍ରୀଷ୍ଟଧର୍ମ ଖୁବ୍ ଶକ୍ତିଶାଳୀ ଥିଲା । ଖ୍ରୀଷ୍ଟିଆନମାନେ ଜୁଲିଅନଙ୍କୁ ଧର୍ମଦ୍ରୋହୀ ଜୁଲିଅନ ବୋଲି ଆଖ୍ୟା ଦେଇଥିଲେ ଏବଂ ସେହି ଉପାଧିରେ ସେ ଇତିହାସରେ ପରିଚିତ ।

ଜୁଲିଅନଙ୍କ ପରେ ଆଉ ଜଣେ ସମ୍ରାଟ ଆସିଲେ । ସେ ଆଦୌ ତାଙ୍କ ପରି ନ ଥିଲେ । ତାଙ୍କ ନାମ ହେଉଛି, ଥିଓଡୋସିଅସ ଏବଂ ତାଙ୍କୁ "ଗ୍ରେଟ୍" (ମହାନ୍) ବୋଲି କହନ୍ତି । ମୋର ମନେହୁଏ, ପୁରାତନ ମନ୍ଦିର ଓ ଦେବଦେବୀ ମୂର୍ତ୍ତିମାନଙ୍କୁ ଧ୍ୱଂସ କରିବାରେ ସେ ଖୁବ୍ ଲାଗିଥିବାରୁ ତାଙ୍କୁ ଏପରି କୁହାଯାଏ । ଯେଉଁମାନେ ଖ୍ରୀଷ୍ଟିଆନ ନୁହନ୍ତି, ସେ କେବଳ ତାଙ୍କର ଦୃଢ଼ ବିରୋଧୀ ନ ଥିଲେ, ତାଙ୍କ ଚିନ୍ତାଧାରା ଅନୁସାରେ ଯେଉଁ ଖ୍ରୀଷ୍ଟିଆନମାନେ ରକ୍ଷଣଶୀଳ ଥିଲେ, ତାଙ୍କ ପ୍ରତି ମଧ୍ୟ ସମାନ ପରିମାଣରେ ସେ ଉଗ୍ରଭାବ ଦେଖାଉଥିଲେ । ସେ ପସନ୍ଦ କରୁ ନ ଥିବା କୌଣସି ମତ ବା ଧର୍ମ ସହ୍ୟ କରୁ ନ ଥିଲେ । ଅଲକ୍ଷଣ କ୍ରମରେ ଥିଓଡୋସିଅସ୍ ପୂର୍ବ ଓ ପଶ୍ଚିମ ସାମ୍ରାଜ୍ୟକୁ ଯୋଗ କରିଦେଲେ ଏବଂ ଉଭୟର ସମ୍ରାଟ ହୋଇଥିଲେ । ଏହା ଘଟିଲା ୩୯୨ ଖ୍ରୀ:ରେ, ରୋମ ଉପରେ ବର୍ବର ଆକ୍ରମଣର ପୂର୍ବ କଥା ।

ଖ୍ରୀଷ୍ଟଧର୍ମ ବିସ୍ତାର ଲଭିଲା । ବର୍ତ୍ତମାନ ଆଉ ଖ୍ରୀଷ୍ଟିଆନଙ୍କ ବିରୁଦ୍ଧରେ ସଂଗ୍ରାମ ଲାଗୁ ନ ଥିଲା । ଖ୍ରୀଷ୍ଟୀୟ ସମ୍ପ୍ରଦାୟମାନେ ପରସ୍ପର ବିରୁଦ୍ଧରେ ଲଢ଼ାଇ କରୁଥିଲେ ଏବଂ ସେମାନଙ୍କ ଭିତରେ ସହିଷ୍ଣୁ ଭାବର ଅଭାବ ଦେଖିଲେ ଆଶ୍ଚର୍ଯ୍ୟ ଲାଗେ । ସମଗ୍ର ଉତ୍ତର-ଆଫ୍ରିକା ଓ ପଶ୍ଚିମ-ଏସିଆ ତଥା ଇଉରୋପରେ ଅନେକ ଯୁଦ୍ଧକ୍ଷେତ୍ର ହୋଇଥିଲା, ଯେଉଁଠି ଖ୍ରୀଷ୍ଟିୟାନମାନେ ନାଙ୍କର ଖ୍ରୀଷ୍ଟୀୟ ଭାଇଙ୍କୁ ମାଡ଼, ପ୍ରହାର ଇତ୍ୟାଦି ପ୍ରବର୍ତ୍ତାଇବାର ଭଦ୍ର ପ୍ରଣାଳୀରେ ପ୍ରକୃତ ଧର୍ମ ଶିଖାଇବାର ଚେଷ୍ଟା କରିଥିଲେ ।

୫୨୭ ଠାରୁ ୫୬୫ ଖ୍ରୀ: ପର୍ଯ୍ୟନ୍ତ ଜଷ୍ଟିନିଅନ କନଷ୍ଟାଣ୍ଟିନୋପଲର ସମ୍ରାଟ ଥିଲେ । ମୁଁ ତୋତେ ଆଗରୁ କହିଛି, ସେ ଇଟାଲୀରୁ ଗୋଥ୍‌ମାନଙ୍କୁ ତଡ଼ିଦେଲେ ଏବଂ କେତେକ କାଳ ପର୍ଯ୍ୟନ୍ତ ଇଟାଲୀ ଓ ସିସିଲି ପୂର୍ବୀୟ ସାମ୍ରାଜ୍ୟର ଅଂଶ ହୋଇଥିଲା । ପରେ ଗୋଥ୍‌ମାନେ ଇଟାଲୀ ପୁନର୍ବାର ଦଖଲ କଲେ ।

କନଷ୍ଟାଣ୍ଟିନୋପଲରେ ଜଷ୍ଟିନିଅନ ସୁନ୍ଦର ସାଙ୍କ୍ଟା ସୋଫିଆର ଧର୍ମ-ମନ୍ଦିର ନିର୍ମାଣ କଲେ । ବିଜାଣ୍ଟାଇନ ଗୀର୍ଜାମାନଙ୍କ ଭିତରେ ଏହା ଏବେ ସୁଦ୍ଧା ସବୁଠାରୁ ସୁନ୍ଦର । ସେ ମଧ୍ୟ ପ୍ରଚଳିତ ଆଇନସବୁ ଦକ୍ଷ ଓକିଲମାନଙ୍କ ଦ୍ୱାରା ଏକତ୍ର ଓ ବ୍ୟବସ୍ଥିତ କଲେ । ପୂର୍ବୀୟ ରୋମ ସାମ୍ରାଜ୍ୟ ଓ ଏହାର ସମ୍ରାଟ୍‌ଗୁଡ଼ିକଙ୍କ ସମ୍ବନ୍ଧରେ କିଛି ଜାଣିବାର ବହୁତ ପୂର୍ବରୁ ମୁଁ ଏହି ଆଇନ ପୁସ୍ତକରୁ ଜଷ୍ଟିନିଅନଙ୍କ ନାମ ଜାଣିଥିଲି । ଏହି ପୁସ୍ତକର ନାମ 'ଇନ୍‌ଷ୍ଟିଚିଉଟ୍‌ସ୍ ଅଫ୍ ଜଷ୍ଟିନିଅନ' ଏବଂ ମୋତେ ଏହା ପଢ଼ିବାକୁ ହୋଇଥିଲା; ମାତ୍ର ଯଦିଚ ଜଷ୍ଟିନିଅନ କନ୍‌ଷ୍ଟାଣ୍ଟିନୋପଲରେ ଗୋଟିଏ ବିଶ୍ୱବିଦ୍ୟାଳୟ ସ୍ଥାପନ କରିଥିଲେ, ଏଥେନ୍‌ସରେ ପ୍ଲେଟୋ ଯେଉଁ ସ୍କୁଲ ବା ପୁରାତନ ଦର୍ଶନ ବିଦ୍ୟାଳୟ ସ୍ଥାପନ କରିଥିଲେ ଏବଂ ଯାହା ୧୦୦୦ ବର୍ଷ ପର୍ଯ୍ୟନ୍ତ ଚଳିଥିଲା, ତାହା ବନ୍ଦ କରିଥିଲେ । କୌଣସି ନିର୍ଦ୍ଦିଷ୍ଟ ମତ ପୋଷଣ କରୁଥିବା ଧର୍ମପକ୍ଷରେ ଦର୍ଶନ ଏକ ବିପଜ୍ଜନକ ଜିନିଷ; ଏହା ଲୋକଙ୍କ ମନରେ ଚିନ୍ତାଚେଷ୍ଟା ଜାଗ୍ରତ କରାଏ ।

ଆମେ ୬ଷ୍ଠ ଶତାବ୍ଦୀରେ ପହଞ୍ଚିଲେ । ରୋମ ଓ କନଷ୍ଟାଣ୍ଟିନୋପଲ କ୍ରମେ ପରସ୍ପରଠାରୁ ବିଚ୍ଛିନ୍ନ ହେଉଛନ୍ତି; ଉତ୍ତରର ଜର୍ମାନ ଜାତି ରୋମ ଦଖଲ କରିଛନ୍ତି; କନଷ୍ଟାଣ୍ଟିନୋପଲ ରୋମାନ ବୋଲି ପରିଚିତ ଥିଲେ ସୁଦ୍ଧା ଏହା ଗ୍ରୀକ୍ ସାମ୍ରାଜ୍ୟର କେନ୍ଦ୍ର ହୋଇଛି, ରୋମ ଖଣ୍ଡ ଖଣ୍ଡ ହୋଇପଡ଼ୁଛି ଏବଂ ଏହାର ଯଶବେଳେ ଯେଉଁ-ମାନଙ୍କୁ "ବର୍ବର" ବୋଲି ଆଖ୍ୟା ଦିଆଯାଇଥିଲା, ସେହି ବିଜେତାମାନେ ଏହାର ସଭ୍ୟତାକୁ ଏକ ନୀଚ ସ୍ତରକୁ ନେଇଯାଉଛନ୍ତି; କନ୍‌ଷ୍ଟାଣ୍ଟିନୋପଲ ପୁରାତନ ପରମ୍ପରା ଏକପ୍ରକାର ରଖିଛି, ମାତ୍ର ସଭ୍ୟତାର ସ୍ତର ତଳକୁ ଖସିଛି; ଖ୍ରୀଷ୍ଟୀୟ ସମ୍ପ୍ରଦାୟ ପ୍ରଭୁତ୍ୱ ନିମନ୍ତେ ପରସ୍ପର ମଧ୍ୟରେ ଯୁଦ୍ଧ କରୁଛନ୍ତି ଏବଂ ପୂର୍ବୀୟ ଖ୍ରୀଷ୍ଟଧର୍ମ ଯାହାକି ତୁର୍କୀସ୍ଥାନ, ଚୀନ ଓ ଆବିସିନିଆ ପର୍ଯ୍ୟନ୍ତ ବିସ୍ତାର ଲାଭ କରିଥିଲା, ତାହା କନ୍‌ଷ୍ଟାଣ୍ଟିନୋପଲ ଓ ରୋମ ଉଭୟରୁ ବିଚ୍ଛିନ୍ନ ହୋଇଗଲେ । ଅନ୍ଧକାର ଯୁଗ ଆରମ୍ଭ ହେଲା । ଏପର୍ଯ୍ୟନ୍ତ ସେହି ପୁରାତନ ଶିକ୍ଷା ଚଳୁଥିଲା—ଅର୍ଥାତ୍ ଗ୍ରୀକ୍ ବା ପୁରାତନ ଲାଟିନ୍ ଶିକ୍ଷା ଯାହାକି ଗ୍ରୀକ୍‌ରୁ ପ୍ରେରଣା ଲାଭ କରିଥିଲା । କିନ୍ତୁ ଦେବଦେବୀ ଓ ଦର୍ଶନ ସମ୍ବଳିତ ଏହି ପୁରାତନ ଗ୍ରୀକ୍ ପୁସ୍ତକମାନ ସେହି ଆଦିକାଳର ଧାର୍ମିକ ଭକ୍ତ ଓ ଅସହିଷ୍ଣୁ ଖ୍ରୀଷ୍ଟୀୟମାନଙ୍କ ଦୃଷ୍ଟିରେ ଉପଯୁକ୍ତ ସାହିତ୍ୟ ବୋଲି ବିଚାର କରାଯାଉ ନ ଥିଲା । ତେଣୁ ସେଗୁଡ଼ିକୁ ଉତ୍ସାହିତ କରାଗଲା ନାହିଁ ଏବଂ ଶିକ୍ଷା ଓ ଅନେକ କଳା କ୍ଷତିଗ୍ରସ୍ତ ହେଲା ।

ମାତ୍ର ଶିକ୍ଷା ଓ କଳା ରକ୍ଷାକରିବା ନିମନ୍ତେ ଖ୍ରୀଷ୍ଟଧର୍ମ ମଧ୍ୟ କିଛି ସହାୟତା କରିଥିଲା । ବୌଦ୍ଧସଂଘ ପରି ଖ୍ରୀଷ୍ଟିୟାନ୍ ମଠମାନ ସ୍ଥାପିତ ହୋଇଥିଲା ଏବଂ ଦ୍ରୁତବେଗରେ ପ୍ରସାର ଲଭିଥିଲା । ବେଳେ ବେଳେ ଏହି ମଠମାନଙ୍କରେ ପୁରାତନ ଶିକ୍ଷା ସ୍ଥାନ ପାଇଥିଲା । ଏଠାରେ ହିଁ ଏକ ନୂତନ କଳାର ଶୁଭ ଦିଆଯାଇଥିଲା, ଯାହା

ଅନେକ ଶତାବ୍ଦୀ ପରେ ତାର ସମସ୍ତ ସୌନ୍ଦର୍ଯ୍ୟ ପ୍ରକାଶ କରି ବାହାରିଥିଲା । ଏହି ମଠର ମହନ୍ତମାନେ କ୍ଷୀଣ ଭାବରେ ଶିକ୍ଷା ଓ କଳାର ଆଲୋକ ଜଳାଇ ରଖିଥିଲେ; ଏହା ଲିଭିବାକୁ ନ ଦେଇ ସେମାନେ ଏକ ସେବା କରିଛନ୍ତି । କିନ୍ତୁ ଏହି ଆଲୋକ ଏକ ସଙ୍କୀର୍ଣ୍ଣ ସ୍ଥାନରେ ସୀମାବଦ୍ଧ ଥିଲା, ବାହାରେ ଚାରିଆଡ଼େ ଅନ୍ଧକାର ରହିଥିଲା ।

ଖ୍ରୀଷ୍ଟଧର୍ମର ଏହି ଆଦିକାଳରେ ଆଉ ଏକ ବିଚିତ୍ର ପ୍ରବୃତ୍ତି ଦେଖାଗଲା ! ଧାର୍ମିକ ଉନ୍ମାଦନାରେ ମତ୍ତ ହୋଇ ଅନେକ ଲୋକ ମନୁଷ୍ୟବସତିର ବହୁ ଦୂରରେ ମରୁଭୂମି ଓ ନିରାଞ୍ଜନ ସ୍ଥାନକୁ ଚାଲିଗଲେ ଏବଂ ସେଠାରେ ଜଙ୍ଗଲୀ ଭାବରେ ରହିଲେ । ସେମାନେ ନିଜକୁ ଯନ୍ତ୍ରଣା ଦେଉଥିଲେ ଏବଂ ଆଦୌ ଗାଧୋଉ ନ ଥିଲେ ଓ ସାଧାରଣତଃ ଯେତେ ପାରନ୍ତି ସେତେ କଷ୍ଟ ସହ୍ୟ କରିବାକୁ ଚେଷ୍ଟା କରୁଥିଲେ । ଏହା ବିଶେଷତଃ ଇଜିପ୍ଟରେ ହେଉଥିଲା । ଏଠାରେ ମରୁଭୂମିରେ ଏପରି ଅନେକ ସାଧୁ ରହୁଥିଲେ । ସେମାନଙ୍କର ଏକ ପ୍ରକାର ଧାରଣା ଥିଲା ଯେ ଯେତେ ଅଧିକ କଷ୍ଟ ଭୋଗିବେ ଓ ଯେତେ କମ ଗାଧୋଇବେ, ତେତେ ଅଧିକ ପବିତ୍ର ହେବେ । ଜଣେ ତପସ୍ୱୀ ଏକ ସ୍ତମ୍ଭର ଅଗ୍ରଭାଗରେ ଅନେକ ବର୍ଷ ପର୍ଯ୍ୟନ୍ତ ବସିଥିଲେ । ଏହି ତପସ୍ୱୀମାନେ କ୍ରମେ ଲୋପ ପାଇଗଲେ; କିନ୍ତୁ ଦୀର୍ଘକାଳ-ପର୍ଯ୍ୟନ୍ତ ନିଷ୍ଠାପର ଖ୍ରୀଷ୍ଟୀୟମାନେ ବିଶ୍ୱାସ କରୁଥିଲେ ଯେ କିଛି ଭୋଗ କରିବା ଗୋଟାଏ ପାପ । ଏହି କଷ୍ଟ ସହ୍ୟ କରିବାର ଧାରଣା ଖ୍ରୀଷ୍ଟୀୟାନ ମନୋବୃତ୍ତିକୁ ରଞ୍ଜିତ କରିଥିଲା । ଆଜି ଇଉରୋପରେ ଏସବୁ ନାହିଁ । ବାସ୍ତବିକ ପ୍ରତ୍ୟେକ ଲୋକ ଆଜି ସେଠାରେ ଉନ୍ମତ୍ତ-ଭାବରେ ଏଣେ ତେଣେ ଧାଇଁଛନ୍ତି ଏବଂ ସମସ୍ତର ଉପଭୋଗ କରିବା ଲାଗି ବ୍ୟସ୍ତ । ଏହି ଦୌଡ଼ିବା ଫଳରେ କ୍ଳାନ୍ତ ଓ ଆଳସ୍ୟ ପହଞ୍ଚେ; ଶାନ୍ତ ଉପଭୋଗ ଅନେକ ସମୟରେ ଘଟେ ନାହିଁ ।

ଭାରତରେ ଆଜିସୁଦ୍ଧା ବେଳେବେଳେ ଇଜିପ୍ଟରେ ଖ୍ରୀଷ୍ଟୀୟ ତପସ୍ବୀମାନଙ୍କ ପରି କେତେକ ପରିମାଣରେ କେତେକ ଲୋକ ଆଚରଣ କରୁଥିବାର ଆମେ ଦେଖୁଁ । ସେମାନେ ଗୋଟିଏ ବାହୁ ଟେକି ରଖିଥାନ୍ତି; ଶେଷରେ ହାତଟି ଶୁଖିଯାଇ ଅଚଳ ହୋଇଯାଏ କିମ୍ବା କଣ୍ଟା ଉପରେ ବସିରହନ୍ତି ଅଥବା ଏହିପରି ଅନେକ ଅସଙ୍ଗତ ଓ ନିର୍ବୋଧ କାମସବୁ କରନ୍ତି । ମୋର ମନେହୁଏ, କେତେ ଲୋକ ଅଜ୍ଞ ଲୋକଙ୍କ ମନ ଆକର୍ଷଣ କରିବା ପାଇଁ ଓ ତାଙ୍କଠାରୁ ଟଙ୍କା ମାରିବା ପାଇଁ ଏହା କରନ୍ତି, ଅନ୍ୟ କେତେକ ବୋଧହୁଏ ମନେ-କରନ୍ତି ଯେ, ଏହା କଲେ ସେମାନେ ଅଧିକ ପୁଣ୍ୟବନ୍ତ ହୋଇପାରିବେ ସତେକି ତୁମର ଶରୀରକୁ କୌଣସି ଭଲ କାମ ନିମନ୍ତେ ଅନୁପଯୁକ୍ତ କରିବା ସର୍ବଦା ବାଞ୍ଛନୀୟ ।

ବୁଦ୍ଧଙ୍କ ଏକ କାହାଣୀ ମନେ ପଡ଼ୁଛି । ଏଥିଲାଗି ଆମକୁ ଆମର ପୁରାତନ ବନ୍ଧୁ ହୁଏନ୍‌ତ୍ସାଂଙ୍କ ପାଖକୁ ଯିବାକୁ ପଡ଼ିବ । ବୁଦ୍ଧଙ୍କର ଜଣେ ଯୁବକ ଶିଷ୍ୟ ତପସ୍ୟା କରୁଥିଲେ ।

ବୁଦ୍ଧ ତାଙ୍କୁ ପଚାରିଲେ, "ହେ ପ୍ରିୟ ଯୁବକ ! ତୁମେ ଯେତେବେଳେ ସାଧାରଣ ଲୋକ ହିସାବରେ ଥିଲ, ସେତେବେଳେ ବୀଣା ବଜାଇବା ଜାଣିଥିଲ କି ?" ସେ ଉତ୍ତର ଦେଲେ, "ଜାଣିଥିଲି ।" ବୁଦ୍ଧ କହିଲେ, "ଅଚ୍ଛା, ମୁଁ ତାହାହେଲେ ଏଥି ସହିତ ଏକ ତୁଳନା କରିବି । ବୀଣାର ତାର ସବୁ ଅତି କଷି ହୋଇଥିଲେ ତାହାର ଠିକ୍ ସ୍ୱର ଧରେ ନା, ସେଗୁଡ଼ିକ ଅତି ହୁଗୁଳା ହୋଇଥିଲେ ସ୍ୱରର ସାମଞ୍ଜସ୍ୟ ବା ମାଧୁର୍ଯ୍ୟ ରହେ ନା; କିନ୍ତୁ ଯେତେବେଳେ ବୀଣା ବେଶୀ କଷି ହୋଇ ନ ଥାଏ କିମ୍ବା ଢିଲା ହୋଇ ନ ଥାଏ, ସେତେବେଳେ ତାରରୁ ମଧୁର ସଙ୍ଗୀତ ବାହାରେ ।" ବୁଦ୍ଧ ପୁଣି କହିଲେ, "ଶରୀର ବିଷୟରେ ବି ସେହିପରି କୁହାଯାଇପାରେ । ଯଦି ଏହାକୁ କଠିନ ଭାବରେ ବ୍ୟବହାର କରାଯାଏ, ତେବେ ଏହା ଅବସନ୍ନ ହୋଇପଡ଼େ ଏବଂ ମନ କିଛି ଶୁଣିବା ଅବସ୍ଥାରେ ନ ଥାଏ । ଯଦି ଖୁବ୍ କୋମଳ ବ୍ୟବହାର କରାଯାଏ, ତେବେ ଅନୁଭବ ଗୋଳମାଳ ଧରିଯାଏ ଓ ଇଚ୍ଛାଶକ୍ତି ଦୁର୍ବଳ ହୋଇପଡ଼େ ।"

## ୪୮ । ଇସ୍‌ଲାମର ଆଗମନ

ମେ ୨୧, ୧୯୩୨

ଆମେ ଅନେକ ଦେଶର ଇତିହାସ ଓ ଅନେକ ରାଜ୍ୟ ଏବଂ ସାମ୍ରାଜ୍ୟର ଉତ୍ଥାନ ଓ ପତନ ବିଷୟ ବିଚାର କରିଛେଁ; କିନ୍ତୁ ଆରବ ଦେଶର ଇତିହାସ ଆମେ ଏପର୍ଯ୍ୟନ୍ତ ଆଲୋଚନା କରିନାହେଁ, କେବଳ ନାବିକ ଓ ବେପାରୀ ଭାବରେ ଏହି ଦେଶରୁ ପୃଥିବୀର ସୁଦୂର ଅଞ୍ଚଳକୁ ସେମାନେ ଯାଉଥିବା ବିଷୟ ଜାଣିଛେ । ମାନଚିତ୍ର ଦେଖ । ପଶ୍ଚିମରେ ଇଜିପ୍ଟ, ଉତ୍ତରରେ ସିରିଆ ଓ ଇରାକ୍ ଏବଂ ଟିକିଏ ପୂର୍ବକୁ ପର୍ସିଆ ବା ଇରାନ; ଉତ୍ତର-ପଶ୍ଚିମର ଟିକିଏ ଦୂରକୁ ଏସିଆ ମାଇନର ଓ କନଷ୍ଟାଣ୍ଟିନୋପଲ୍ ଅବସ୍ଥିତ । ଗ୍ରୀସ ବେଶୀ ଦୂର ନୁହେଁ ଏବଂ ଭାରତ ମଧ୍ୟ ସମୁଦ୍ରର ଠିକ୍ ଆର ପାରିରେ । ଚୀନ ଓ ସୁଦୂର ପ୍ରାଚ୍ୟକୁ ଛାଡ଼ିଦେଲେ ପୁରାତନ ସଭ୍ୟତା ଦୃଷ୍ଟିରେ ଆରବ ଠିକ୍ ମଧ୍ୟସ୍ଥଳରେ ଅବସ୍ଥିତ । ଇରାକରେ ଟାଇଗ୍ରୀସ୍ ଓ ଇଉଫ୍ରେଟିସ୍ ଉପରେ, ଇଜିପ୍ଟରେ ଆଲେକ୍‌ଜାଣ୍ଡ୍ରିଆ, ସିରିଆରେ ଡାମାସ୍କସ୍ ଓ ଏସିଆ ମାଇନରରେ ଏଣ୍ଟିଓକ୍ ଆଦି ବଡ଼ ବଡ଼ ସହର ହୋଇଥିଲା । ଆରବମାନେ ଏକ ପରିବ୍ରାଜକ ଓ ବେପାରୀ ଜାତି ଏବଂ ସେମାନେ ନିଶ୍ଚୟ ଏହିସବୁ ସହରକୁ ଘନ ଘନ ଯାଉଥିବେ । ତଥାପି ଇତିହାସରେ ଆରବ ସେପରି ଉଲ୍ଲେଖଯୋଗ୍ୟ ଭାଗ ନେଇ ନାହିଁ । ପଡ଼ୋଶୀ ରାଜ୍ୟ ପରି ସେଠାରେ ଉଚ୍ଚଧରଣର ସଭ୍ୟତା ଥିଲା ପରି ମନେ ହୁଏ ନାହିଁ । ଏହା ଅନ୍ୟ ରାଜ୍ୟ ଜୟ କରିବାକୁ ଚେଷ୍ଟା କରି ନାହିଁ କିମ୍ବା ଏହା ଦଖଲ କରିବା କିଛି ସହଜ ନ ଥିଲା ।

ଆରବ ଏକ ମରୁଭୂମିରାଜ୍ୟ ଏବଂ ମରୁଭୂମି ଓ ପର୍ବତ ଲୋକଙ୍କୁ ମଜଭୁତ କରିଦିଏ । ସ୍ୱାଧୀନତାକାମୀ ଲୋକଙ୍କୁ ସହଜରେ ଦବାଇ ଦିଆଯାଇ ପାରେ ନା । ଏହା ଏକ ଧନୀରାଜ୍ୟ ନୁହେଁ ଏବଂ ବିଦେଶୀ ବିଜେତା ଓ ସାମ୍ରାଜ୍ୟ-ବାଦୀମାନଙ୍କୁ ଆକୃଷ୍ଟ କଲାପରି ଏଠାରେ କିଛି ନ ଥିଲା । ମକ୍‌କା ଓ ଏଥ୍ରିବ ନାମକ ଦୁଇଟି ମାତ୍ର ଶ୍ରେଷ୍ଠ ସହର ସମୁଦ୍ରକୂଳରେ ଥିଲା । ବାକୀ ମରୁଭୂମିରେ ହିଁ ବସତି ଥିଲା ଏବଂ ରାଜ୍ୟର ଲୋକେ ପ୍ରଧାନତଃ ବେଦୁଇନ୍ ବା ବାଡ୍ଡ଼ ଅର୍ଥାତ୍ 'ମରୁଭୂମିବାସୀ' ଥିଲେ । ଦ୍ରୁତଗାମୀ ଓଟ ଓ ସୁନ୍ଦର ଘୋଡ଼ା ହିଁ ତାଙ୍କର ଚିରନ୍ତନ ସହଚର ଥିଲେ ଏବଂ ଏପରିକି ଗଧର ଅଦ୍ଭୁତ ସହନଶକ୍ତି ହେତୁ ତାହା ମଧ୍ୟ ଏକ ବିଶ୍ୱସ୍ତ ସଖା ହୋଇଥିଲା । ଅନ୍ୟ ଦେଶରେ ଗଧ ସହିତ ତୁଳନା କଲେ ଯେପରି ଏକ ଗାଳି ବୋଲି ମନେ କରାଯାଏ, ଏ ଦେଶରେ ସେପରି ନୁହେଁ । କାରଣ ମରୁଭୂମି ରାଜ୍ୟରେ ଜୀବନ ବଡ଼ କଠିନ ଏବଂ ଅନ୍ୟସ୍ଥଳ ଅପେକ୍ଷା ଶକ୍ତି ଓ ଧୈର୍ଯ୍ୟଶୀଳତା ଏଠାରେ ଅମୂଲ୍ୟ ଗୁଣ ।

ଏହି ମରୁପ୍ରାନ୍ତରର ଲୋକେ ଗର୍ବୀ, ଅଭିମାନୀ ଓ କଳହପ୍ରିୟ । ସେମାନେ ନିଜର ସମ୍ପ୍ରଦାୟ ଓ ପରିବାରରେ ବାସ କରନ୍ତି ଏବଂ ଅନ୍ୟ ସମ୍ପ୍ରଦାୟ ଓ ପରିବାର ସହିତ ଝଗଡ଼ା କରନ୍ତି । ବର୍ଷକରେ ଥରେ ସେମାନେ ପରସ୍ପର ସହିତ ସନ୍ଧି କରନ୍ତି ଏବଂ ମକ୍‌କାକୁ ତୀର୍ଥଯାତ୍ରା କରନ୍ତି । ସେଠାରେ ଅନେକ ଦେବତାଙ୍କ ପ୍ରତିମୂର୍ତ୍ତି ରହିଛି । ସର୍ବୋପରି ସେମାନେ ଏକ ପ୍ରକାଣ୍ଡ କଳା ପଥର "କାବା" ପୂଜା କରନ୍ତି ।

ଏହା ଏକପ୍ରକାର ଯାଯାବର ଦଳପତି-ଚାଳିତ ଜୀବନ—ମଧ୍ୟ-ଏସିଆ ଓ ଅନ୍ୟ ସ୍ଥାନର ଆଦିମ ଅଧିବାସୀମାନେ ବସତି ସ୍ଥାପନ କରି ନାଗରିକ ଜୀବନ ଓ ସଭ୍ୟତା ଲୋପ-କରିବା ପୂର୍ବରୁ ଏହି ପ୍ରକାର ଜୀବନ କଟାଉଥିଲେ । ଆରବ ଚତୁଃପାର୍ଶ୍ୱରେ ଯେଉଁସବୁ ବିଶାଳ ସାମ୍ରାଜ୍ୟ ହେଉଥିଲା, ତାହାର ଉପନିବେଶ ରୂପେ ଆରବ ପ୍ରାୟ ରହିଥିଲା; କିନ୍ତୁ ଏହା ନାମକୁ ମାତ୍ର ହେଉଥିଲା । ଏକ ଯାଯାବର ମରୁଭୂମି ଜାତିଙ୍କୁ କରଗତ କରିବା ବା ଶାସନ କରିବା କିଛି ସହଜ କଥା ନୁହେଁ ।

ତୋର ବୋଧହୁଏ ମନେଥିବ ଯେ ଥରେ ସିରିଆର ପାମିରରେ ଏକ କ୍ଷୁଦ୍ର ଆରବ ରାଜ୍ୟ ଉଠିଲା ଏବଂ ଖ୍ରୀଷ୍ଟୀୟ ୩ୟ ଶତାବ୍ଦୀରେ ଏହାର ଏକ ଗୌରବ କାଳ ଥିଲା; କିନ୍ତୁ ଏହା ବି ଖାସ ଆରବର ବାହାରେ ଥିଲା । ଏହିରୂପେ ପୁରୁଷ ପୁରୁଷ ଧରି ବେଦୁଇନ୍-ଗଣ ମରୁପ୍ରାନ୍ତରରେ ଜୀବନଯାପନ କଲେ ଏବଂ ଆରବ ଜାହାଜସବୁ ବେପାର କରିବା ନିମନ୍ତେ ଯାଉଥିଲା ଓ ଆରବରେ ବିଶେଷ କିଛି ପରିବର୍ତ୍ତନ ହେଉ ନ ଥିଲା । କେତେକ ଲୋକ ଖ୍ରୀଷ୍ଟିଆନ ହେଲେ ଓ କେତେକ ଇହୁଦୀ ହେଲେ; କିନ୍ତୁ ଅଧିକାଂଶ ୩୬୦ ମୂର୍ତ୍ତି ଓ ମକ୍‌କାର କୃଷ୍ଣପଥରର ପୂଜକ ହୋଇ ରହିଲେ ।

ଯେଉଁ ଆରବ ଜାତି ଦୀର୍ଘକାଳ ଧରି ସୁପ୍ତ ଅବସ୍ଥାରେ ବାସ କରୁଥିଲା, ଅନ୍ୟତ୍ର ଘଟୁଥିବା ଘଟଣାମାନଙ୍କରୁ ଆପାତତଃ ବିଚ୍ଛିନ୍ନ ହୋଇ ରହିଥିଲା, ତାହା ହଠାତ୍ ଜାଗ୍ରତ ହୋଇ ଏପରି ଅଦ୍ଭୁତ ଶକ୍ତି ଦେଖାଇଲା ଯେ ଦୁନିଆ ଚମକିପଡ଼ିଲା ଏବଂ ଓଲଟପାଲଟ ହୋଇଗଲା – ଏହା ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ଆରବମାନଙ୍କର କାହାଣୀ ସେମାନେ କିପରି ଏସିଆ, ଇଉରୋପ ଓ ଆଫ୍ରିକାରେ ଦ୍ରୁତଗତିରେ ବିସ୍ତାର ଲାଭ କଲେ ଏବଂ ଉଚ୍ଚ ସଂସ୍କୃତି ଓ ସଭ୍ୟତା ତାଙ୍କ ଭିତରେ କିପରି ବୃଦ୍ଧି ପାଇଲା—ଏହାସବୁ ପୃଥିବୀର ଆଶ୍ଚର୍ଯ୍ୟ ଭିତରୁ ଗୋଟିଏ ।

ଇସଲାମର ନୂତନ ଶକ୍ତି ବା ଭାବଧାରା ଆରବମାନଙ୍କୁ ଜାଗ୍ରତ କଲା ଓ ତାଙ୍କ ଭିତରେ ଆତ୍ମପ୍ରତ୍ୟୟ ଓ ଉତ୍ସାହ ଦାନ କଲା । ଏହି ଧର୍ମ ନୂତନ ଧର୍ମ ପ୍ରଚାରକ ମହମ୍ମଦ ଆରମ୍ଭ କଲେ । ସେ ୫୭୦ ଖ୍ରୀଷ୍ଟାବ୍ଦରେ ମକ୍କାରେ ଜନ୍ମଲାଭ କରିଥିଲେ । ସେ କିଛି ତରତର ହୋଇ ଏ ଧର୍ମ ଆରମ୍ଭ କରି ନ ଥିଲେ । ସେ ଏକ ନୀରବ ଜୀବନଯାପନ କରିଥିଲେ ଏବଂ ପଡ଼ୋଶୀ ନାଗରିକମାନେ ତାଙ୍କୁ ଆଦର କରୁଥିଲେ ଓ ବିଶ୍ୱାସ କରୁଥିଲେ । ବାସ୍ତବିକ ସେ 'ଆଲ୍‌ଆମିନ' ଅର୍ଥାତ୍ ନୀରଫଉଦାର ରୂପେ ପରିଚିତ ଥିଲେ; କିନ୍ତୁ ଯେତେବେଳେ ସେ ତାଙ୍କର ନୂତନ ଧର୍ମ ପ୍ରଚାର ଆରମ୍ଭ କଲେ ଏବଂ ବିଶେଷତଃ ଯେତେବେଳେ ସେ ମକ୍କାର ମୂର୍ତ୍ତିଗୁଡ଼ିକ ବିରୁଦ୍ଧରେ ପ୍ରଚାର ଆରମ୍ଭକଲେ, ସେତେବେଳେ ତାଙ୍କ ବିରୁଦ୍ଧରେ ଖୁବ୍ ଆନ୍ଦୋଳନ ଚାଲିଲା ଏବଂ ଶେଷରେ ତାଙ୍କୁ ମକ୍କାରୁ ତଡ଼ି ଦିଆଗଲା । ଅଳ୍ପକେ ସେ ବଞ୍ଚି ଆସିଲେ । ସର୍ବୋପରି ସେ 'ଏକ ଈଶ୍ୱର' ଉପରେ ଜୋର ଦେଉଥିଲେ ଏବଂ ମହମ୍ମଦ ନିଜକୁ ଭଗବାନଙ୍କର 'ପ୍ରଫେଟ୍' ବୋଲି ଦାବି କରୁଥିଲେ ।

ମକ୍କାରୁ ନିଜ ଲୋକଙ୍କଦ୍ୱାରା ତଡ଼ାଖାଇ ସେ ଏଥ୍ରିବରେ ନିଜର କେତେ ସାଥି ଓ ସହାୟକଙ୍କ ପାଖରେ ଆଶ୍ରୟ ଗ୍ରହଣ କଲେ । ମକ୍କାରୁ ଏହି ପଳାୟନକୁ ଆରବ ଭାଷାରେ 'ହିଜ୍‌ରତ' କହନ୍ତି ଏବଂ ଏହି ତାରିଖଠାରୁ ୬୨୨ ଖ୍ରୀଷ୍ଟାବ୍ଦ ମୁସଲମାନ ବର୍ଷର ଆରମ୍ଭ । ଏହି ହେଜିରା କାଲେଣ୍ଡର ଚାନ୍ଦ୍ରମାସ ଅନୁସାରେ ଗଣାଯାଏ, ଅର୍ଥାତ୍ ଚନ୍ଦ୍ର ଅନୁସାରେ ତିଥି ହିସାବ କରାଯାଏ; ତେଣୁ ସାଧାରଣତଃ ଆମେ ଯେଉଁ ସୌରବର୍ଷ ପାଳନ କରୁ, ଏହା ତାହାଠାରୁ ୫୬ ଦିନ କମ୍ ଏବଂ ହେଜିରା ମାସଗୁଡ଼ିକ ବର୍ଷର ପ୍ରତ୍ୟେକ ଋତୁରେ ଠିକ୍ ନ ଥାଏ । ତେଣୁ ଏକା ମାସ ଏବର୍ଷ ଶୀତଋତୁ ହୋଇପାରେ ଏବଂ ଆଉ କେତେକ ବର୍ଷ ପରେ ହୁଏତ ଗ୍ରୀଷ୍ମଋତୁ ମଝିରେ ସେହି ମାସ ପଡ଼ିପାରେ ।

ଏକ ପ୍ରକାର ଆଗରୁ ଆରମ୍ଭ ହୋଇଥିଲେ ସୁଦ୍ଧା ୬୨୨ ଖ୍ରୀଷ୍ଟାବ୍ଦରେ ଏହି ହିଜରତ୍ ଅର୍ଥାତ୍ ପଳାୟନ ଦିବସରୁ ଇସଲାମ୍‌ର ଆରମ୍ଭ ବୋଲି ଧରାଯାଏ । ଏଥ୍ରିବ ସହର ମହମ୍ମଦଙ୍କୁ ସ୍ୱାଗତ କଲା ଏବଂ ତାଙ୍କୁ ସମ୍ମାନ ଦେଖାଇବା ପାଇଁ ନଗରର ନାମ

"ମଦିନାତ୍—ଉନ୍—ନବୀ" ହେଲା ଅର୍ଥାତ୍ ପ୍ରଫେଟଙ୍କ ସହର ଅଥବା ଏବେ ସଂକ୍ଷେପରେ ଏହା ମଦିନା ବା ମେଦିନା ନାମରେ ପରିଚିତ। ମଦିନାର ଯେଉଁ ଲୋକେ ମହମ୍ମଦଙ୍କୁ ସାହାଯ୍ୟ କରିଥିଲେ, ତାଙ୍କୁ ଅନ୍ସାର ବା ସହାୟକ ବୋଲି କୁହାଯାଏ। ଏହି ସହାୟକଙ୍କର ବଂଶଧରମାନେ ଏପରି ଉପାଧି ନିମନ୍ତେ ଗର୍ବ ଅନୁଭବ କରନ୍ତି ଏବଂ ଆଜିଯାଏ ଏହା ବ୍ୟବହାର କରନ୍ତି।

ଇସଲାମ ଓ ଆରବମାନଙ୍କର ବିଜୟଯାତ୍ରା କଥା ଆରମ୍ଭ କରିବା ପୂର୍ବରୁ ଆମେ ଚାରିଆଡ଼କୁ ଦୃଷ୍ଟି ନିକ୍ଷେପ କରିବା। ରୋମ ପତନ ହେବା କଥା ଆମେ ଦେଖିଛେ। ପୁରାତନ ଗ୍ରୀସ-ରୋମାନ ସଭ୍ୟତା ଶେଷ ହୋଇଯାଇଛି ଏବଂ ଏହା ସହିତ ସମଗ୍ର ସାମାଜିକ ଗଠନ ମଧ୍ୟ ଓଲଟିପଡ଼ିଛି। ଉତ୍ତର-ଇଉରୋପର ଜାତୀୟ ସମ୍ପ୍ରଦାୟସବୁ ଏବେ ଟିକିଏ ଖ୍ୟାତି ଲଭିଛନ୍ତି। ରୋମରୁ କିଛି ଶିକ୍ଷା କରିବା ନିମନ୍ତେ ଚେଷ୍ଟାକରି ସେମାନେ ପ୍ରକୃତରେ ସମ୍ପୂର୍ଣ୍ଣ ନୂତନ ଧରଣର ସଭ୍ୟତା ଗଢ଼ିଲେ; କିନ୍ତୁ ଏହା ଏହି ସଭ୍ୟତାର ଆରମ୍ଭ ମାତ୍ର ଏବଂ ବାହାରକୁ ବିଶେଷ ଦୃଷ୍ଟିଗୋଚର ହେଉ ନ ଥିଲା। ତେଣୁ ପୁରାତନ ଚାଲିଯାଇଥିଲା ଓ ନୂତନ ପ୍ରକଟିତ ହୋଇ ନ ଥିଲା। ଏହିରୂପେ ଇଉରୋପରେ ଅନ୍ଧକାର ରହିଥିଲା। ଏହା ସତ୍ୟ ଯେ ପୂର୍ବ ପ୍ରାନ୍ତରେ ପୂର୍ବୀୟ ରୋମାନ ସାମ୍ରାଜ୍ୟ ଏବେସୁଦ୍ଧା ବୃଦ୍ଧି ପାଉଥିଲା। ସେତେବେଳେ କନଷ୍ଟାଣ୍ଟିନୋପଲ ସହର ଏକ ପ୍ରଧାନ ଓ ସଭ୍ୟ ନଗର ଥିଲା; ଇଉରୋପରେ ସର୍ବାପେକ୍ଷା ବଡ଼ ସହର ଥିଲା। ଖେଳ ଓ ସର୍କସ ଏଠାରେ ହେଉଥିଲା ଏବଂ ବହୁତ ପରିମାଣରେ ଆଡ଼ମ୍ବର ଓ ଚାକଚକ୍ୟ ରହିଥିଲା; କିନ୍ତୁ ସାମ୍ରାଜ୍ୟ ଦୁର୍ବଳ ହୋଇ ଯାଉଥିଲା। ଇରାନ୍‌ର ସସାନିଦ୍‌ମାନଙ୍କ ସହିତ ନିମାନ୍ତରରେ ଯୁଦ୍ଧ ଚାଲିଥିଲା। ଇରାନ୍‌ର ଦ୍ୱିତୀୟ ଖୁସରୁ ବାସ୍ତବିକ କନଷ୍ଟାଣ୍ଟିନୋପଲ ରାଜ୍ୟର ଏକାଂଶ ନେଇଯାଇଥିଲେ ଏବଂ ଏପରିକି ଆରବ ଉପରେ ନିଜକୁ ଅଧିପତି ବୋଲି ଦାବୀ କରୁଥିଲେ। ଖୁସରୁ ଇଜିପ୍ଟ ମଧ୍ୟ ଦଖଲ କଲେ ଏବଂ କନ୍‌ଷ୍ଟାଣ୍ଟିନୋପଲ ପର୍ଯ୍ୟନ୍ତ ଯାଇଥିଲେ; କିନ୍ତୁ ସେଠାରେ ଗ୍ରୀକ୍ ସମ୍ରାଟ ହେରାକ୍ଲିଅସ୍‌ଙ୍କ ଦ୍ୱାରା ପରାଜିତ ହେଲେ। ପରେ ଖୁସରୁଙ୍କ ନିଜପୁତ୍ର କାବାଦ ତାଙ୍କୁ ହତ୍ୟା କରିଥିଲେ।

ତେଣୁ ତୁ ଦେଖିବୁ ଯେ ପଶ୍ଚିମରେ ଇଉରୋପ ଓ ପୂର୍ବରେ ଇରାନ୍ ଉଭୟ ରାଜ୍ୟ ଖରାପ ଅବସ୍ଥାରେ ଥିଲା। ଏହା ସାଙ୍ଗକୁ ପୁଣି ଖ୍ରୀଷ୍ଟୀୟ ସମ୍ପ୍ରଦାୟ ଭିତରେ କଳିର ଅନ୍ତ ନ ଥିଲା। ପଶ୍ଚିମ ଦେଶ ତଥା ଆଫ୍ରିକାରେ ଅତି କଳୁଷିତ ଓ କଳିହପ୍ରିୟ ଖ୍ରୀଷ୍ଟଧର୍ମ ବୃଦ୍ଧି ପାଉଥିଲା। ଇରାନ୍‌ରେ ଜୋରୋଷ୍ଟ୍ରୀୟ ଧର୍ମ ରାଜଧର୍ମ ହୋଇଥିଲା ଏବଂ ଲୋକଙ୍କ ଉପରେ ବାଧ୍ୟ କରି ପ୍ରଚଳନ କରାଗଲା; ତେଣୁ ଇଉରୋପ, ଆଫ୍ରିକା ବା ଇରାନ୍‌ର ସାଧାରଣ ଲୋକ ପ୍ରଚଳିତ ଧର୍ମ ବିରୁଦ୍ଧରେ ବଡ଼ ଭ୍ରାନ୍ତିରେ ପଡ଼ିଗଲେ। ଠିକ୍

ଏତିକବେଳକୁ ଚତୁର୍ଦ୍ଦଶ ଶତାବ୍ଦୀର ଆରମ୍ଭରେ ସମଗ୍ର ଇଉରୋପରେ ପ୍ଲେଗ୍ ମାଡ଼ିପଡ଼ିଲା, ଲକ୍ଷ ଲକ୍ଷ ଲୋକ ମରିଗଲେ ।

ଭାରତରେ ହର୍ଷବର୍ଦ୍ଧନ ରାଜୁତି କରୁଥିଲେ ଏବଂ ହୁଏନ୍‌ସାଂ ଏହି ସମୟରେ ଆସିଥିଲେ । ହର୍ଷଙ୍କ ଅମଳରେ ଭାରତ ଏକ ବଳିଷ୍ଠ ଶକ୍ତି ଥିଲା; କିନ୍ତୁ ଅଳ୍ପ ଦିନ ପରେ ଉତ୍ତର-ଭାରତ ବିଭକ୍ତ ଓ ଦୁର୍ବଳ ହୋଇଗଲା । ସୁଦୂର ପ୍ରାଚ୍ୟରେ ଚୀନରେ ବିରାଟ ଟାଙ୍ଗ୍ ବଂଶ ଏତିକବେଳକୁ ତାର କାର୍ଯ୍ୟକାଳ ଆରମ୍ଭ କରୁଥାଏ । ତାଇ ସୁଙ୍ଗ୍ ନାମକ ଜଣେ ଶ୍ରେଷ୍ଠ ସମ୍ରାଟ ୬୨୭ ଖ୍ରୀଷ୍ଟାବ୍ଦରେ ସିଂହାସନ ଆରୋହଣ କଲେ ଏବଂ ତାଙ୍କ ଅମଳରେ ଚୀନ୍ ସାମ୍ରାଜ୍ୟ ପଶ୍ଚିମରେ କାସ୍ପିୟାନ ସାଗରପର୍ଯ୍ୟନ୍ତ ବିସ୍ତୃତ ଲଭିଥିଲା । ମଧ୍ୟ-ଏସିଆର ଅଧିକାଂଶ ଦେଶ ତାଙ୍କର ପ୍ରଭୁତ୍ୱ ସ୍ୱୀକାର କରିଥିଲେ ଏବଂ ତାଙ୍କୁ କର ଦେଉଥିଲେ । ତେବେ ଏହି ବିଶାଳ ସାମ୍ରାଜ୍ୟରେ କୌଣସି କେନ୍ଦ୍ର ଶାସନ ନ ଥିଲା ।

ଇସ୍‌ଲାମ୍ ଜାତ ହେଲାବେଳେ ଏସିଆ ଓ ଇଉରୋପରେ ଏପରି ଅବସ୍ଥା ଥିଲା । ଚୀନ ବଳିଷ୍ଠ ଓ ଶକ୍ତିଶାଳୀ ଥିଲା; ମାତ୍ର ତାହା ବହୁ ଦୂରରେ ଥିଲା । କିଛୁକାଳପର୍ଯ୍ୟନ୍ତ ଅନ୍ତତଃ ଭାରତ ଶକ୍ତିଶାଳୀ ଥିଲା; କିନ୍ତୁ ଆମେ ଦେଖିବା ଯେ ଦୀର୍ଘକାଳପର୍ଯ୍ୟନ୍ତ ଭାରତ ସହିତ କିଛି ବିବାଦ ହୋଇ ନଥିଲା । ଇଉରୋପ ଓ ଆଫ୍ରିକା ଦୁର୍ବଳ ଓ ଅବସନ୍ନ ହୋଇ ପଡ଼ିଥିଲା ।

ହିଜରାର ୭ବର୍ଷ ଭିତରେ ମହମ୍ମଦ ମକ୍‌କାର ପ୍ରଭୁ ହୋଇ ଫେରିଲେ । ଏହା କରିବା ପୂର୍ବରୁ ମଦିନାରୁ ଈଶ୍ୱର ଏକ ଓ ସେ ପ୍ରଫେଟ୍ ବୋଲି ସ୍ୱୀକାର କରିବା ନିମନ୍ତେ ପୃଥିବୀର ରାଜା ଓ ଶାସକମାନଙ୍କୁ ବାର୍ତ୍ତା ପ୍ରେରଣ କଲେ । କନ୍‌ଷ୍ଟାଣ୍ଟିନୋପଲ୍‌ର ସମ୍ରାଟ ସିରିଆରେ ଇରାନୀମାନଙ୍କ ବିରୁଦ୍ଧରେ ଅଭିଯାନରେ ନିଯୁକ୍ତ ଥିଲାବେଳେ ଏହା ପାଇଲେ । ଇରାନୀ ରାଜା ଏହା ପାଇଥିଲେ ଏବଂ କଥିତ ଅଛି ଯେ ଚୀନରେ ତାଇସୁଙ୍ଗ ବି ଏହା ପାଇଥିଲେ । ଏହି ରାଜା ଓ ଶାସକମାନେ ଅବଶ୍ୟ ବିସ୍ମିତ ହୋଇଥିବେ, ଏହି ଅଜଣା ଲୋକଟି କିଏ ? ସେମାନଙ୍କୁ ଆଦେଶ କରିବାର ସାହସ ବାନ୍ଧୁଛି ? ଏହି ସମ୍ବାଦ ପଠାଇବାରୁ ହିଁ ମହମ୍ମଦଙ୍କ ନିଜଠାରେ ଓ ନିଜର ଉଦ୍ଦେଶ୍ୟରେ ଯେ ଅତୁଳ ବିଶ୍ୱାସ ଥିଲା, ତାହାର ଗୋଟାଏ ଧାରଣା ଜନ୍ମେ । ସେ ତାଙ୍କ ଲୋକଙ୍କ ଭିତରେ ଏହି ଆତ୍ମପ୍ରତ୍ୟୟ ଓ ବିଶ୍ୱାସ ଜାଗ୍ରତ କରାଇଥିଲେ ଏବଂ ଏହା ସାହାଯ୍ୟରେ ସେମାନଙ୍କୁ ପ୍ରେରଣା ଓ ସାନ୍ତ୍ୱନା ଦେଲେ । ଜ୍ଞାତ ଦୁନିଆର ଅର୍ଦ୍ଧାଂଶ ଜୟ କରିବା ଏହି ମରୁପ୍ରାନ୍ତରର ଲୋକଙ୍କ ପକ୍ଷରେ କିଛି ସହଜ କଥା ନୁହେଁ ।

ଆତ୍ମପ୍ରତ୍ୟୟ ଓ ବିଶ୍ୱାସ ବଡ଼ ଜିନିଷ । ଇସଲାମ ମଧ୍ୟ ସେମାନଙ୍କୁ ଭ୍ରାତୃତ୍ୱର ସନ୍ଦେଶ ଦେଲା । ମୁସଲମାନମାନଙ୍କଠାରେ ସମାନତାର ଭାବ ଜାତ କଲା । ଏହିରୂପେ ଲୋକଙ୍କ ସମକ୍ଷରେ ଏ ପ୍ରକାର ଗଣତନ୍ତ୍ର ଦେଖାଗଲା । ଭ୍ରଷ୍ଟ ଖ୍ରୀଷ୍ଟଧର୍ମ ସହିତ ତୁଳନା କଲେ ଏହି ଭ୍ରାତୃତ୍ୱ ବାର୍ତ୍ତା କେବଳ ଆରବ ନୁହେଁ, ଯେଉଁସବୁ ରାଜ୍ୟକୁ ସେମାନେ ଯାଉଥିଲେ ସେଠାର ଅଧିବାସୀଙ୍କ ହୃଦୟ ଓ ମନ ଅବଶ୍ୟ ଆକର୍ଷଣ କରିଥିବ ।

ହିଜ୍‌ରାର ଦଶ ବର୍ଷ ପରେ ୬୩୨ ଖ୍ରୀ: ରେ ମହମ୍ମଦ ମଲେ । ଆରବର କଳହପ୍ରିୟ ସମ୍ପ୍ରଦାୟଗୁଡ଼ିକୁ ଏକତ୍ର କରି ସେ ଏକ ଜାତି ଗଢ଼ିବାରେ ସମର୍ଥ ହେଲେ ଏବଂ ଏକ ଉଦ୍ଦେଶ୍ୟରେ ତାଙ୍କ ଭିତରେ ଉତ୍ସାହ ଜାଗ୍ରତ କରିଥିଲେ । ତାଙ୍କ ପରେ ତାଙ୍କ ପରିବାରର ଆବୁବାକର ଖଲିଫା ବା କାଲେଫ୍ ବା ମୁଖିଆରୂପେ ରହିଲେ । ଗୋଟିଏ ସାଧାରଣ ସଭାରେ ଏକପ୍ରକାର ନିର୍ବାଚନରେ ଏହି ଉତ୍ତରାଧିକାରୀ ସ୍ଥିର କରାଯାଇଥିଲା । ଦୁଇ ବର୍ଷ ପରେ ଆବୁବାକର ମରିଗଲେ ଏବଂ ତାଙ୍କ ପରେ ଓମାର ଉତ୍ତରାଧିକାରୀ ହେଲେ । ସେ ଦଶ ବର୍ଷ ଖଲିଫା ହୋଇ ରହିଥିଲେ ।

ଆବୁବାକର ଏବଂ ଓମାର ବିଖ୍ୟାତ ଲୋକଥିଲେ । ସେମାନେ ଆରବ ଓ ଇସଲାମର ଶ୍ରେଷ୍ଠତ୍ୱର ମୂଳଭିତ୍ତି ସ୍ଥାପନ କରିଥିଲେ । ଖଲିଫା ଭାବରେ ସେମାନେ ଉଭୟ ଧର୍ମଗୁରୁ ଓ ରାଜନୀତି କ୍ଷେତ୍ରରେ ମୁଖିଆ—ରାଜା ଓ ଧର୍ମଯାଜକ ଥିଲେ । ତାଙ୍କର ଉଚ୍ଚସ୍ଥାନ ଓ ସରକାରର କ୍ଷମତା ବୃଦ୍ଧି ସତ୍ତ୍ୱେ ସେମାନେ ତାଙ୍କର ଚାଲିଚଳନରେ ବଡ଼ ସାଧାସିଧା ଥିଲେ ଏବଂ ବିଳାସ ବା ଆଡ଼ମ୍ବର ପସନ୍ଦ କରୁ ନ ଥିଲେ । ତାଙ୍କ ପରେ ଇସଲାମ ଗଣତନ୍ତ୍ର ଏକ ଜୀବନ୍ତ ଜିନିଷ ଥିଲା । କିନ୍ତୁ ତାଙ୍କ ନିଜ କର୍ମଚାରୀ ଓ ଅମୀରମାନେ ଅତି ଶୀଘ୍ର ରେଶମ ବ୍ୟବହାର କରି ବିଳାସରେ ବଢ଼ିଲେ ଏବଂ ଆବୁବାକର ଓ ଓମାର ଏହିସବୁ କର୍ମଚାରୀଙ୍କୁ ଗାଳି ଓ ଶାସ୍ତି ଦେଇଥିବାର ଓ ଏପରି କି ଏହି ବିଳାସିତା ସକାଶେ କାନ୍ଦିଥିବାର ଅନେକ ଗପ ରହିଛି । ସେମାନେ ଅନୁଭବ କରିଥିଲେ ଯେ ସରଳ ଓ କଠିନ ଜୀବନଧାରଣରେ ହିଁ ତାଙ୍କର ଶକ୍ତି ନିହିତ ଅଛି ଏବଂ ସେମାନେ ଯଦି ଇରାନ୍ ବା କନ୍‌ଷ୍ଟାଣ୍ଟିନୋପଲ୍‌ର ରାଜକୀୟ ବିଳାସ ଗ୍ରହଣ କରନ୍ତି, ତେବେ ଆରବମାନେ ଦୂଷିତ ହୋଇଯିବେ ଏବଂ ସେମାନଙ୍କର ପତନ ଘଟିବ ।

ଆବୁବାକର ଓ ଓମାର ଯେଉଁ ଅଳ୍ପକାଳ ରାଜତ୍ୱ କରିଥିଲେ, ତାହା ଭିତରେ ମଧ୍ୟ ଆରବମାନେ ପୂର୍ବୀୟ ରୋମାନ ସାମ୍ରାଜ୍ୟ ଇରାନର ସସନିଦ୍ ରାଜା ଉଭୟଙ୍କୁ ପରାସ୍ତ କରିଥିଲେ । ଇହୁଦୀ ଓ ଖ୍ରୀଷ୍ଟୀୟମାନଙ୍କ ଧର୍ମକ୍ଷେତ୍ର ଜେରୁଜେଲମ୍ ଆରବମାନେ ଦଖଲ କଲେ ଏବଂ ସିରିଆ, ଇରାକ୍ ଓ ଇରାନ୍‌ର ସମସ୍ତ ଅଂଶ ନୂତନ ଆରବ ସାମ୍ରାଜ୍ୟର ଅଙ୍ଗୀଭୂତ ହେଲା ।

# ୪୯ । ଆରବମାନେ ସ୍ପେନ୍‌ରୁ ମଙ୍ଗୋଲିଆ ପର୍ଯ୍ୟନ୍ତ ଜୟ କଲେ

ମେ ୧୮, ୧୯୩୨

ଅନ୍ୟ କେତେକ ଧର୍ମସ୍ଥାପୟିତାଙ୍କ ପରି ମହମ୍ମଦ ଅନେକ ପ୍ରଚଳିତ ସାମାଜିକ ପ୍ରଥାର ବିରୋଧ କରିଥିଲେ । ସେ ଯେଉଁ ଧର୍ମ ପ୍ରଚାର କଲେ, ସେଥିରେ ସରଳତା, ପ୍ରତ୍ୟକ୍ଷ ଭାବ ଓ ଗଣତନ୍ତ୍ର ଏବଂ ସମାନତା ରହିଥିଲା । ପାର୍ଶ୍ୱବର୍ତ୍ତୀ ପଡ଼ୋଶୀ ରାଜ୍ୟମାନଙ୍କରେ ଯେଉଁ ଜନତା ସ୍ୱେଚ୍ଛାଚାରୀ ରାଜା ଓ ତଦନୁରୂପ ସ୍ୱେଚ୍ଛାଚାରୀ ଓ କର୍ତ୍ତୃତ୍ୱ ଜାରି କରୁଥିବା ପୁରୋହିତଙ୍କ ଦ୍ୱାରା ଦଳିତ ହୋଇଥିଲେ, ସେମାନଙ୍କୁ ଏହା ପସନ୍ଦ ହେଲା । ସେମାନେ ପୁରାତନ ବ୍ୟବସ୍ଥା ପ୍ରତି ବିରକ୍ତ ହୋଇ ପଡ଼ିଥିଲେ ଏବଂ ପରିବର୍ତ୍ତନ ଲାଗି ପ୍ରସ୍ତୁତ ଥିଲେ । ଇସଲାମ ଏହି ପରିବର୍ତ୍ତନ ଆଣିଦେଲା ଏବଂ ଏହା ସେମାନେ ସ୍ୱାଗତ କଲେ । କାରଣ ଅନେକ ପ୍ରକାରରେ ଏହା ସେମାନଙ୍କର ଉନ୍ନତି କଲା ଓ ଅନେକ ପୁରୁଣା ଦୁର୍ଭିଗ୍ୟର ଲୋପ କରିଦେଲା । ଇସଲାମ ଯୋଗୁ ଏପରି କିଛି ବିରାଟ ସାମାଜିକ ବିପ୍ଳବ ହୋଇ ନ ଥିଲା, ଯାହାକି ଜନସାଧାରଣଙ୍କ ଶୋଷଣକୁ ଅନେକ ପରିମାଣରେ ବନ୍ଦ କରି ପାରିବ; କିନ୍ତୁ ଏହା ମୁସଲମାନ-ଜନତାର ଶୋଷଣକୁ କମାଇ ଦେଇ ପାରିଥିଲା ଓ ସେମାନେ ଏକ ବିରାଟ ଭ୍ରାତୃମଣ୍ଡଳୀର ସଭ୍ୟ ବୋଲି ଅନୁଭବ କଲେ ।

ଏହିରୂପେ ଆରବମାନେ ବିଜୟ ପରେ ବିଜୟ ହାସଲ କଲେ । ଅନେକ ସମୟରେ ବିନା ଯୁଦ୍ଧରେ ସେମାନେ ଜିତିଲେ । ତାଙ୍କ ପ୍ରଫେଟ୍‌ଙ୍କ ମୃତ୍ୟୁର ୨୫ ବର୍ଷ ଭିତରେ ଆରବମାନେ ଏକପକ୍ଷରେ ସମଗ୍ର ଇରାନ୍, ସିରିଆ, ଆର୍ମେନିଆ ଓ ମଧ୍ୟ-ଏସିଆର କେତେକ ଅଂଶ ଜୟକଲେ; ପଶ୍ଚିମରେ ଇଜିପ୍ଟ ଓ ଉତ୍ତର-ଆଫ୍ରିକାର ଅଳ୍ପାଂଶ ଜୟ କରିଥିଲେ । ଅତି ସହଜରେ ଇଜିପ୍ଟ ତାଙ୍କ ହାତରେ ପଡ଼ିଥିଲା । କାରଣ ରୋମାନ୍ ସାମ୍ରାଜ୍ୟର ଶୋଷଣ ଓ ଖ୍ରୀଷ୍ଟୀୟ ସମ୍ପ୍ରଦାୟର ପ୍ରତିଦ୍ୱନ୍ଦ୍ୱିତା ହେତୁ ଇଜିପ୍ଟର ଖୁବ୍ କ୍ଷତି ହୋଇଥିଲା । ଏକ କିମ୍ବଦନ୍ତୀ ଅଛି ଯେ ଆରବମାନେ ଆଲେକ୍‌ଜାଣ୍ଡ୍ରିଆର ପ୍ରସିଦ୍ଧ ପୁସ୍ତକାଗାର ପୋଡ଼ି ଦେଇଥିଲେ; କିନ୍ତୁ ଏହା ଏବେ ମିଥ୍ୟାବୋଲି ବିଶ୍ୱାସ କରାଯାଉଛି । ଆରବମାନେ ଅତ୍ୟନ୍ତ ପୁସ୍ତକପ୍ରିୟ ଥିଲେ, ସେମାନେ ଏପରି ବର୍ବର ଆଚରଣ କରି ନ ଥିବେ । ଯାହାହେଉ, ମୁଁ ଆଗରୁ ତୋତେ କନଷ୍ଟାଣ୍ଟିନୋପଲର ଯେଉଁ ସମ୍ରାଟ ଥିଓଡ଼ୋସିଏସଙ୍କ ସମ୍ବନ୍ଧରେ କହିଛି, ସେ ଏହି ଧ୍ୱଂସ ଲାଗି ଆଂଶିକଭାବରେ ଦୋଷୀ । ଜୁଲିଅସ୍ ସିଜରଙ୍କ ସମୟରେ ଏକ ଅବରୋଧ ପରେ ବହୁଦିନ ପୂର୍ବରୁ ପୁସ୍ତକାଗାରର ଏକ ଅଂଶ ଧ୍ୱଂସ ହୋଇଥିଲା । ପୁରାତନ ଗ୍ରୀକ୍ ପୁରାଣ ଓ ଦର୍ଶନ ସମ୍ବଳିତ ଗ୍ରୀକ୍ ପୁସ୍ତକମାନ ଥିଓଡ଼ୋସିଏସ ପସନ୍ଦ କରୁ ନ ଥିଲେ । ସେ ଏକ ଅତି ଧର୍ମଶୀଳ ଖ୍ରୀଷ୍ଟିୟାନ୍ ଥିଲେ ।

କଥିତ ଅଛି ଯେ ନିଜର ସ୍ନାନଜଳ ଗରମ କରିବା ପାଇଁ ଜାଳ ରୂପେ ସେ ଏହି ପୁସ୍ତକ-ଗୁଡ଼ିକୁ ବ୍ୟବହାର କରିଥିଲେ ।

ଆରବମାନେ ପୂର୍ବ ଓ ପଶ୍ଚିମରେ ଅଗ୍ରସର ହେବାକୁ ଲାଗିଲେ । ପୂର୍ବରେ ହେରାତ୍, କାବୁଲ ଓ ବାଲ୍‌କ (Balkh)ର ପତନ ହେଲା ଏବଂ ସେମାନେ ସିନ୍ଧୁନଦୀ ଓ ସିନ୍ଧୁ ପର୍ଯ୍ୟନ୍ତ ପହଞ୍ଚିଲେ । କିନ୍ତୁ ଭାରତରେ ଏଠାରୁ ଆଉ ଭିତରକୁ ସେମାନେ ଗଲେ ନାହିଁ ଏବଂ କେତେ ଶହ ବର୍ଷ ପର୍ଯ୍ୟନ୍ତ ଭାରତୀୟ ଶାସକମାନଙ୍କ ସହିତ ତାଙ୍କର ବନ୍ଧୁତ୍ୱ ସମ୍ପର୍କ ରହିଥିଲା । ପଶ୍ଚିମରେ ସେମାନେ ଅଗ୍ରସର ହେବାରେ ଲାଗିଲେ । କଥିତ ଅଛି ଯେ ଜେନେରାଲ ଓକ୍‌ବା ଉତ୍ତର-ଆଫ୍ରିକା ପାର ହୋଇ ଚାଲିଲେ; ଶେଷରେ ଆଟଲାଣ୍ଟିକ୍ ସାଗରରେ ପହଞ୍ଚିଲେ । ଏହାର ପଶ୍ଚିମ-ଉପକୂଳ ଯାହାକି ବର୍ତ୍ତମାନ ମରକ୍‌କୋ ନାମରେ ପରିଚିତ, ସେଠି ପହଞ୍ଚିଲେ । ଏଠାରେ ବାଧା ପାଇ ସେ ଏକପ୍ରକାର ହତୋତ୍ସାହ ହୋଇ ପଡ଼ିଲେ ଏବଂ ସମୁଦ୍ର ଭିତରେ ଯେତେ ଦୂର ଯାଇନ୍ତ ପ୍ରବେଶ କଲେ ଓ ତାହା ପରେ ସର୍ବଶକ୍ତିମାନ୍‌ଙ୍କଠାରେ ଦୁଃଖ ଜ୍ଞାପନ କଲେ ଯେ ତାଙ୍କ (ଭଗବାନଙ୍କ) ନାମରେ ବିଜୟ କରିବା ପାଇଁ ସେଠି ଆଉ ଭୂମି ନାହିଁ । ମରକ୍‌କୋ ଓ ଆଫ୍ରିକାରୁ ଆରବମାନେ ସଙ୍କୀର୍ଣ୍ଣ ସାଗର ପାର ହୋଇ ସ୍ପେନ୍ ଓ ଇଉରୋପକୁ ଗଲେ । ପୁରାତନ ଗ୍ରୀକ୍‌ମାନେ ଏହି ସଙ୍କୀର୍ଣ୍ଣ ପ୍ରଣାଳୀକୁ ହର୍କ୍ୟୁଲସ ସ୍ତମ୍ଭବୋଲି କହୁଥିଲେ । ଯେଉଁ ଆରବ ସେନାପତି ଇଉରୋପ ଭିତରକୁ ପ୍ରବେଶ କଲେ, ସେ ଜିବ୍ରାଲଟରଠାରେ ଓହ୍ଲାଇଥିଲେ ଏବଂ ଏହି ନାମ ହିଁ ତାଙ୍କର ସ୍ମୃତି । ତାଙ୍କ ନାମ ଥିଲା ତାରିକ୍ ଏବଂ ବାସ୍ତବିକ୍ ଜିବ୍ରାଲଟର ହେଉଛି ଜବଲ-ଉତ୍-ତାରିକ୍ ବା ତାରିକ୍ ପାହାଡ଼ ।

ସ୍ପେନ ଶୀଘ୍ର କରଗତ ହେଲା, ତାପରେ ଆରବମାନେ ଦକ୍ଷିଣ-ଫ୍ରାନ୍‌ସ ଭିତରକୁ ମାଡ଼ିଗଲେ । ଏହିରୂପେ ମହମ୍ମଦଙ୍କ ମୃତ୍ୟୁର ଏକ ଶହ ବର୍ଷ ଭିତରେ ଆରବ ସାମ୍ରାଜ୍ୟ ଫ୍ରାନ୍‌ସର ଦକ୍ଷିଣ ଓ ସ୍ପେନଠାରୁ ଉତ୍ତର-ଆଫ୍ରିକାରେ ସୁଏଜ ପର୍ଯ୍ୟନ୍ତ, ଆରବ, ଇରାନ୍ ଓ ମଧ୍ୟ-ଏସିଆ ଅତିକ୍ରମ କରି ମଙ୍ଗୋଲିଆର ସୀମାନ୍ତ ପର୍ଯ୍ୟନ୍ତ ବିସ୍ତାର ଲଭିଥିଲା । କେବଳ ସିନ୍ଧୁ ଛଡ଼ା ଭାରତର ଅନ୍ୟ ଅଂଶ ଏହାର ଅନ୍ତର୍ଭୁକ୍ତ ହୋଇ ନ ଥିଲା । ଆରବମାନଙ୍କଦ୍ୱାରା ଦୁଇ ପାଖରୁ—ପ୍ରତ୍ୟକ୍ଷଭାବରେ କନଷ୍ଟାଣ୍ଟିନୋପଲରେ ଓ ଆଫ୍ରିକା ଦେଇ ଫ୍ରାନ୍‌ସଠାରେ ଇଉରୋପ ଉପରେ ଆକ୍ରମଣ କରାଗଲା । ଫ୍ରାନ୍‌ସର ଦକ୍ଷିଣରେ ଆରବମାନଙ୍କ ସଂଖ୍ୟା ବହୁତ କମ୍ ଥିଲା ଏବଂ ସେମାନେ ନିଜ ମାତୃଭୂମିରୁ ବହୁତ ଦୂରରେ ଥିଲେ । ଏଥି ଯୋଗୁଁ ଆରବରୁ ସେମାନେ ଅଧିକ ସାହାଯ୍ୟ ପାଇପାରିଲେ ନାହିଁ । ସେହି ସେତେବେଳେ ମଧ୍ୟ-ଏସିଆ ଜୟ କରିବାରେ ବ୍ୟସ୍ତ ଥିଲା । ତଥା ଫ୍ରାନ୍‌ସରେ ଏହି ଆରବମାନଙ୍କ ଆଗମନ ଦେଖି ପଶ୍ଚିମ-ଇଉରୋପର ଲୋକେ ଭୟଭୀତ ହୋଇଗଲେ ଏବଂ ତାଙ୍କ ସହିତ ଲଢ଼ିବା

ପାଇଁ ଏକ ବିରାଟ ମିଳିତ ଦଳ ଗଢ଼ାଗଲା । ଏହି ମିଳିତ ଦଳର ନେତା ହେଲେ ଚାର୍ଲସ ମାର୍ଟେଲ ଏବଂ ୭୩୨ ଖ୍ରୀ: ରେ ଫ୍ରାନ୍ସରେ ଟୁରସ୍ ଯୁଦ୍ଧରେ ସେ ଏମାନଙ୍କୁ ପରାସ୍ତ କଲେ । ଏହି ପରାଜୟ ହେତୁ ଆରବମାନଙ୍କଠାରୁ ଇଉରୋପ ରକ୍ଷା ପାଇଲା । ଜଣେ ଐତିହାସିକ ଲେଖିଛନ୍ତି, "ବିଶ୍ୱବ୍ୟାପୀ ସାମ୍ରାଜ୍ୟ ପ୍ରାୟ ଆରବମାନଙ୍କ ହାତମୁଠାରେ ଆସିଲା ବେଳକୁ ଟୁର୍ସ ସମତଳଭୂମିରେ ଆରବମାନେ ତାହା ହରାଇଲେ ।" ଏଥିରେ ସନ୍ଦେହ ନାହିଁ ଯେ ଆରବମାନେ ଯଦି ଟୁର୍ସ ଯୁଦ୍ଧରେ ଜିତିଥାଆନ୍ତେ, ତେବେ ଇଉରୋପର ଇତିହାସ ଖୁବ୍ ପରିବର୍ତ୍ତିତ ହୋଇଯାଇ ଥାଆନ୍ତା । ଇଉରୋପରେ ତାଙ୍କୁ ବାଧା ଦେବା ଭଳି କେହି ନ ଥିଲା ଏବଂ ସେମାନେ କନ୍‌ଷ୍ଟାଣ୍ଟିନୋପଲ ପର୍ଯ୍ୟନ୍ତ ଅଗ୍ରସର ହୋଇପାରି-ଥାଆନ୍ତେ ଓ ପୂର୍ବୀୟ ରୋମାନ୍ ସାମ୍ରାଜ୍ୟ ଓ ପଥରେ ଥିବା ଅନ୍ୟ ରାଷ୍ଟ୍ରସବୁ ଲୋପ କରିଦେଇ ଥାଆନ୍ତେ । ସେପରି ଅବସ୍ଥାରେ ଖ୍ରୀଷ୍ଟଧର୍ମ ପରିବର୍ତ୍ତେ ଇସଲାମ ହିଁ ଇଉରୋପର ଧର୍ମ ହୋଇ ଥାଆନ୍ତା ଏବଂ ଅନ୍ୟାନ୍ୟ ନାନା ପ୍ରକାର ପରିବର୍ତ୍ତନ ଘଟିଥାଆନ୍ତା । କିନ୍ତୁ ଏହା ଏକ କଳ୍ପନା ମାତ୍ର । ଆରବମାନେ ଫ୍ରାନ୍ସରେ ଅଟକିଗଲେ । ଯାହାହେଉ ପରେ ଅନେକ ଶହ ବର୍ଷ ପର୍ଯ୍ୟନ୍ତ ସେମାନେ ସ୍ପେନରେ ରହିଥିଲେ ଓ ଶାସନ କରୁଥିଲେ ।

ଆରବମାନେ ସ୍ପେନରୁ ମଙ୍ଗୋଲିଆ ପର୍ଯ୍ୟନ୍ତ ଜୟ କଲେ ଏବଂ ମରୁଭୂମିର ଏହି ଯାଯାବରମାନେ ଏକ ବିଶାଳ ସାମ୍ରାଜ୍ୟର ଶାସକ ପାଲଟିଲେ । ସେମାନଙ୍କୁ ସାରାସେନ ବୋଲି କୁହାଯାଉଥିଲା । ବୋଧହୁଏ ସାହାରା ଓ ନସିନ୍ - ଅର୍ଥାତ୍ 'ମରୁଭୂମିବାସୀ'ରୁ ଏହି ନାମ ଆସିଛି । କିନ୍ତୁ ମରୁଭୂମିବାସୀ ଅତି ଶୀଘ୍ର ବିଳାସ ଓ ନଗରବାସୀ ଜୀବନ ଗ୍ରହଣ କଲେ ଏବଂ ତାଙ୍କ ସହରମାନଙ୍କରେ ପ୍ରାସାଦ ସବୁ ନିର୍ମିତ ହେଲା । ସୁଦୂର ରାଜ୍ୟରେ ବିଜୟ ହାସଲ କରିବା ସତ୍ତ୍ୱେ ନିଜ ଭିତରେ କଳହ କରିବା ପୁରାତନ ଅଭ୍ୟାସ ସେମାନେ ଛାଡ଼ିପାରି ନ ଥିଲେ । ଅବଶ୍ୟ ଏବେ କଜିଆ କରିବାର କିଛି ମୂଲ୍ୟ ଥିଲା; କାରଣ ଆରବର ମୁଖିଆ ହେବା ଅର୍ଥ ଏକ ବିଶାଳ ସାମ୍ରାଜ୍ୟ ଅଧୀନରେ ରଖିବା । ତେଣୁ ଖଲିଫା ସ୍ଥାନ ପାଇଁ ବାରମ୍ବାର କଳହ ହେଉଥିଲା । ଗ୍ରେଟ ଗ୍ରେଟ କଳହ, ପାରିବାରିକ କଳହରୁ ଦେଶରେ ଗୃହଯୁଦ୍ଧ ଲାଗି ଯାଉଥିଲା । ଏହିସବୁ ବିବାଦ ଫଳରେ ଇସଲାମରେ ଦୁଇଟି ବିଭାଗ ହୋଇଗଲା ଏବଂ ଦୁଇଟି ସମ୍ପ୍ରଦାୟ ଗଢ଼ିଉଠିଲା—ସୁନି ଓ ସିହା; ଏହା ଆଜି ସୁଦ୍ଧା ରହିଛି ।

ଆବୁବାକର ଓ ଓମାରଙ୍କ ରାଜୁତି ପରେ ଗୋଳମାଳ ଉପସ୍ଥିତ ହେଲା । ମହମ୍ମଦଙ୍କ କନ୍ୟା ଫାତିମାଙ୍କ ସ୍ୱାମୀ ଆଲି ଅଳ୍ପଦିନ ସକାଶେ ଖଲିଫା ହୋଇଥିଲେ । କିନ୍ତୁ ଉଭୟଙ୍କରେ ବିବାଦ ଲାଗିଲା । ଆଲିଙ୍କୁ ହତ୍ୟା କରାଗଲା ଏବଂ କିଛି ଦିନ ପରେ ସମସ୍ତ ପରିବାର ସହ ତାଙ୍କର ପୁଅ ହୋସେନଙ୍କୁ କର୍ବାଲା ସମତଳଭୂମିରେ ହତ୍ୟା କରା

ଯାଇଥିଲା । ଏହି କର୍ବାଲାର ଶୋଚନୀୟ କାଣ୍ଡ ଲାଗି ପ୍ରତିବର୍ଷ ମୁସଲମାନମାନେ ବିଶେଷତଃ ସିହାସମ୍ପ୍ରଦାୟ ମହରମ ମାସରେ ଶୋକପ୍ରକାଶ କରନ୍ତି ।

ଖଲିଫା ଏବେ ସ୍ୱେଚ୍ଛାଗ୍ରହୀ ରଜା ହେଲେ । କୌଣସି ଗଣତନ୍ତ୍ର ବା ନିର୍ବାଚନ ପ୍ରଥା ଆଉ ରହିଲା ନାହିଁ । ସେ କାଳର ଅନ୍ୟ ସ୍ୱେଚ୍ଛାଗ୍ରହୀ ସମ୍ରାଟମାନଙ୍କ ପରି ସେ ଏକ ସମ୍ରାଟ ହୋଇ ରହିଲେ । ସିଦ୍ଧାନ୍ତ ଅନୁସାରେ ସେ ଧର୍ମଗୁରୁ ହୋଇ ମଧ୍ୟ ରହିଲେ (Commander of the faithful) କିନ୍ତୁ କେତେକ ଶାସକ ପ୍ରକୃତରେ ଯେଉଁ ଇସ୍‌ଲାମର ସେମାନେ ପ୍ରଧାନ ରକ୍ଷକ ବୋଲି ଧରାଯାଉଥିଲା, ତାକୁ ଅପମାନିତ କରିଥିଲେ ।

୧୦୦ ବର୍ଷ ପର୍ଯ୍ୟନ୍ତ ମହମ୍ମଦଙ୍କ ପରିବାରର ଏକ ଶାଖାରୁ ଖଲିଫା ହେଉଥିଲେ । ଏମାନେ 'ଓମ୍ମେୟାଦ୍' ନାମରେ ପରିଚିତ । ଡାମାସ୍କସ ସେମାନଙ୍କର ରାଜଧାନୀ ହେଲା ଏବଂ ଏହି ପୁରାତନ ସହରଟି ପ୍ରାସାଦ, ମସ୍‌ଜିଦ୍, ଝରଣା ଓ ଖୋଲା ପ୍ରାନ୍ତରରେ ଖୁବ୍ ସୁନ୍ଦର ହୋଇଗଲା । ଡାମାସ୍କସର ଜଳ ସରବରାହ ପ୍ରସିଦ୍ଧ ଥିଲା । ଏହି କାଳ ଭିତରେ ଆରବମାନେ କୋଠାବାଡ଼ି ତିଆରି କରିବାର ବିଶେଷ ଶୈଳୀ ବ୍ୟବହାର କଲେ ଯାହା କି ସାରାସେନିକ ସ୍ଥାପିତ ନାମରେ ପରିଚିତ । ଏଥିରେ ବିଶେଷ କିଛି ଆଡ଼ମ୍ବର ନ ଥାଏ । ଏହା ସରଳ, ଚିତ୍ତାକର୍ଷକ ଓ ସୁନ୍ଦର । ଆରବ ଓ ସିରିଆର ସୁନ୍ଦର ତାଳଗଛର ଧାରଣାହିଁ ଏହି କାରୁକାର୍ଯ୍ୟର ପଶ୍ଚାତରେ ରହିଛି । ତୋରଣ, ସ୍ତମ୍ଭ, ମସଜିଦ୍‌ର ଚୂଡ଼ା ଓ ଗମ୍ବୁଜସବୁ ତାଳବନର ଅଗ୍ରଭାଗ ସମୂହର ସୂଚନା ଦିଏ ।

ଏହି ସ୍ଥାପତ୍ୟ ଭାରତକୁ ବି ଆସିଲା; ମାତ୍ର ଏଠାରେ ଭାରତୀୟ ଭାବଦ୍ୱାରା ପ୍ରଭାବିତ ହେଲା ଏବଂ ଏକ ମିଶ୍ରିତ ଶୈଳୀ ଜନ୍ମାଇଲା । ସାରାସେନିକ କାରୁକାର୍ଯ୍ୟର କେତେକ ସୁନ୍ଦର ଦୃଷ୍ଟାନ୍ତ ଏବେ ସୁଦ୍ଧା ସ୍ପେନରେ ରହିଛି ।

ସମ୍ପଦ ଓ ସାମ୍ରାଜ୍ୟ ଫଳରେ ବିଳାସ, ଖେଳ ଓ ଆମୋଦ କଳାସବୁ ଆସିଲା । ଘୋଡ଼ାଦୌଡ଼ ତଥା ପୋଲୋ, ଶିକାର ଓ ନ୍ୟାୟବଳ ଆରବମାନଙ୍କର ଏକ ଏକ ପ୍ରିୟ ଆମୋଦ ପଦାର୍ଥ । ଗୀତବାଦ୍ୟ, ବିଶେଷତଃ ଗୀତ ପ୍ରତି ଖୁବ୍ ଆଗ୍ରହ ଦେଖାଯାଉଥିଲା ଏବଂ ରାଜଧାନୀରେ ଗାୟକମାନେ ପୂରି ରହୁଥିଲେ । ତାଙ୍କ ସାଙ୍ଗୋପାଙ୍ଗ ପୁଣି ତ ଥିଲେ ।

ଆଉ ଏକ ବିରାଟ ଅଥଚ ଅତି ଦୁର୍ଭାଗ୍ୟଜନକ ପରିବର୍ତ୍ତନ କ୍ରମେ ଘଟିଲା । ଏହା ହେଉଛି ନାରୀର ସ୍ଥାନ । ଆରବନାରୀମାନେ କୌଣସି ପ୍ରକାର ପର୍ଦା ପାଳନ କରୁ ନ ଥିଲେ । ସେମାନଙ୍କୁ ଅନ୍ତଃପୁରରେ ଲୁଚାଇ ରଖାଯାଉ ନ ଥିଲା; ସେମାନେ ସାଧାରଣରେ ବୁଲୁଥିଲେ; ମସଜିଦ୍‌କୁ ଓ ବକ୍ତୃତା ଶୁଣିବାକୁ ଯାଉଥିଲେ ଏବଂ ବକ୍ତୃତାଦି ଦେଉଥିଲେ ।

କିନ୍ତୁ ସଫଳତା ଲଭିବା ସଙ୍ଗେ ସଙ୍ଗେ ଆରବମାନେ ତାଙ୍କ ଦୁଇ ପାଖରେ ଥିବା ପୂର୍ବୀୟ ରୋମାନ୍ ଓ ଇରାନୀ ଏହି ଦୁଇଟି ପୁରାତନ ସାମ୍ରାଜ୍ୟର ରୀତିନୀତି ଅଧିକ ଭାବରେ ଅନୁକରଣ କରିବାକୁ ଲାଗିଲେ । ସେମାନେ ପ୍ରଥମଟିକୁ ପରାସ୍ତ କରିଥିଲେ ଏବଂ ଦ୍ୱିତୀୟଟି ଲୋପ କରିଦେଇଥିଲେ; ମାତ୍ର ଏହିସବୁ ସାମ୍ରାଜ୍ୟର ଅନେକ ମନ୍ଦ ଅଭ୍ୟାସ ଏମାନେ ଗ୍ରହଣ କରିଥିଲେ । କଥିତ ଅଛି ଯେ ବିଶେଷଭାବରେ କନଷ୍ଟାଣ୍ଟିନୋପଲ ଓ ଇରାନ୍‌ର ପ୍ରଭାବ ହେତୁ ଆରବମାନଙ୍କ ଭିତରେ ନାରୀମାନଙ୍କୁ ପର୍ଦ୍ଦା ଭିତରେ ରଖିବା ପ୍ରଥା ଆରମ୍ଭ ହେଲା । କ୍ରମେ ଅନ୍ତଃପୁରପ୍ରଥା ଆରମ୍ଭ ହେଲା ଏବଂ ସ୍ତ୍ରୀ ଓ ପୁରୁଷ ସାମାଜିକ କ୍ଷେତ୍ରରେ ଖୁବ୍ କମ୍ ପରସ୍ପର ସହିତ ଭେଟ ହେଲେ । ଦୁର୍ଭାଗ୍ୟବଶତଃ ନାରୀର ନିର୍ଭରତାବାଦ ଇସଲାମ ସମାଜର ଏକ ଅଙ୍ଗ ହୋଇଗଲା ଏବଂ ମୁସଲମାନମାନେ ଯେତେବେଳେ ଏଠାକୁ ଆସିଲେ ତାଙ୍କଠାରୁ ଭାରତ ବି ଏହା ଶିକ୍ଷା କଲା । ଆଜି ସୁଦ୍ଧା କେତେକ ଲୋକ ଏହି ବର୍ବରତା ପାଳନ କରୁଛନ୍ତି ଦେଖି ମୋତେ ଅବାକ୍ ଲାଗେ । ଯେତେବେଳେ ସ୍ତ୍ରୀ ଲୋକମାନେ ବାହ୍ୟ ଜଗତରୁ ବିଚ୍ଛିନ୍ନ ହୋଇ ପର୍ଦ୍ଦାରେ ରହିବା କଥା ମୁଁ ଭାବେ ସେତେବେଳେ ମୁଁ ପ୍ରାୟ ଏକ କାରାଗାର ବା ଚିଡ଼ିଆଖାନା କଥା ମନେ ପକାଏ । କୌଣସି ଜାତିର ଲୋକସଂଖ୍ୟାର ଅର୍ଦ୍ଧେକ ଯଦି ଏକପ୍ରକାର ବନ୍ଦୀଶାଳା ଭିତରେ ଆବଦ୍ଧ ରହନ୍ତି, ତେବେ ସେ ଜାତି କିପରି ବା ଆଗେଇ ପାରିବ ?

ସୌଭାଗ୍ୟବଶତଃ ଭାରତରେ ପର୍ଦ୍ଦା ପ୍ରଥା ଶୀଘ୍ର ଦୂର ହୋଇଯାଉଛି । ଏପରି କି ମୁସଲମାନ ସମାଜରୁ ମଧ୍ୟ ଏହି ନିନ୍ଦାଜୁଣ ବୋଝ ବହୁ ପରିମାଣରେ ଦୂର ହୋଇଛି । ତୁର୍କୀରେ କେମାଲପାଶା ଏହାକୁ ସମ୍ପୂର୍ଣ୍ଣ ଭାବରେ ଉଠାଇ ଦେଇଛନ୍ତି ଏବଂ ଇଜିପ୍ଟରେ ଏହା ଦ୍ରୁତବେଗରେ ଦୂର ହେଉଛି ।

ଆଉ ଏକ ବିଷୟ ଲେଖି ମୁଁ ଏହି ଠାରେ ଶେଷ କରିବି । ଆରବମାନେ ବିଶେଷତଃ ତାଙ୍କର ଜାଗରଣର ଆରମ୍ଭ ଅବସ୍ଥାରେ ନିଜ ଧର୍ମ ପ୍ରତି ଉତ୍ସାହପୂର୍ଣ୍ଣ ଥିଲେ । ତଥାପି ସେମାନେ ଏକ ସହିଷ୍ଣୁ ଜାତି ଥିଲେ ଏବଂ ଧର୍ମରେ ସହନଶୀଳତା ଦେଖାଇଥିବାର ଅସଂଖ୍ୟ ଦୃଷ୍ଟାନ୍ତ ରହିଛି । ଜେରୁଜେଲମରେ ଖଲିଫା ଓମାର ଏହାକୁ ବିଶେଷଭାବରେ ପାଳନ କରିଥିଲେ । ସ୍ପେନରେ ବହୁ ଖ୍ରୀଷ୍ଟୀୟ ଅଧିବାସୀ ଥିଲେ, ତାଙ୍କ ନିଜ ଧର୍ମ ପାଳନର ପୂର୍ଣ୍ଣ ସ୍ୱାଧୀନତା ରହିଥିଲା । ଭାରତରେ ସିନ୍ଧୁ ଛଡ଼ା ଅନ୍ୟତ୍ର ଆରବମାନେ ଶାସନ କରି ନ ଥିଲେ; କିନ୍ତୁ ବାରମ୍ବାର ସେମାନଙ୍କ ସହିତ ସମ୍ପର୍କ ହୋଇଛି ଓ ଏହି ସମ୍ବନ୍ଧ ବନ୍ଧୁତ୍ୱପୂର୍ଣ୍ଣ ହୋଇଥିଲା । ବାସ୍ତବିକ୍ ଇତିହାସରେ ଏହି କାଳରେ ମୁସଲମାନ ଆରବମାନଙ୍କର ସହନଶୀଳତା ଏବଂ ଇଉରୋପରେ ଖ୍ରୀଷ୍ଟୀୟମାନଙ୍କର ଅସହିଷ୍ଣୁତା—ଏହି ବିରାଟ ପାର୍ଥକ୍ୟ ଦେଖିବାକୁ ମିଳେ ।

# ୫୦ । ବାଗଦାଦ ଓ ହାରୁନାଲ ରସିଦ

ମେ ୨୭, ୧୯୩୨

ଅନ୍ୟ ରାଜ୍ୟ ବିଷୟ ଆଲୋଚନା କରିବା ପୂର୍ବରୁ ଆମେ ଆରବମାନଙ୍କ କାହାଣୀ ପୁଣି ଆଲୋଚନା କରିବା ।

ମୋର ଗତ ଚିଠିରେ କହିଛି ଯେ ପ୍ରାୟ ୧୦୦ ବର୍ଷ ପର୍ଯ୍ୟନ୍ତ ପ୍ରଫେଟ ମହମ୍ମଦଙ୍କ ପରିବାର ଓମ୍ମେୟାଦ ଶାଖାରୁ ଖଲିଫାମାନେ ହେଉଥିଲେ । ସେମାନେ ଡାମସ୍କସରେ ରହି ଶାସନ କରୁଥିଲେ ଓ ତାଙ୍କ ଶାସନକାଳରେ ଆରବୀୟ ମୁସଲମାନ-ମାନେ ଦୂରଦୂରାନ୍ତରରେ ଇସଲାମର ଝଣ୍ଡା ପ୍ରଚଳନ କଲେ । ଆରବମାନେ ସୁଦୂର ରାଜ୍ୟ ଜୟ କରୁଥିବା ବେଳେ ଏଣେ ଘରେ କଳହ କରୁଥିଲେ ଓ ବାରମ୍ବାର ଗୃହଯୁଦ୍ଧ ଲାଗୁଥିଲା । ଶେଷରେ ମହମ୍ମଦଙ୍କ ପରିବାରର ଆଉ ଏକ ଶାଖା ଓମ୍ମେୟାଦମାନଙ୍କୁ ପରାସ୍ତ କଲେ । ଏମାନେ ମହମ୍ମଦଙ୍କ କକା ଆବ୍‌ବାସଙ୍କର ବଂଶଧର, ତେଣୁ ଏହାଙ୍କୁ ଆବ୍‌ବାସି ବୋଲି କହନ୍ତି । ଓମ୍ମେୟାଦମାନଙ୍କ ନୃଶଂସତାର ପ୍ରତିଶୋଧ ନେବାଲାଗି ଆବ୍‌ବାସିମାନେ ଆସିଲେ । କିନ୍ତୁ ବିଜୟ ହାସଲ ପରେ ନିଷ୍ଠୁରତା ଓ ହତ୍ୟାକାଣ୍ଡରେ ସେମାନେ ଓମ୍ମେୟାଦମାନଙ୍କୁ ବଳିପଡ଼ିଲେ । ସେମାନେ ଓମ୍ମେୟାଦ୍‌ମାନଙ୍କୁ ସବୁଠି ଖୋଜି ବାହାର କଲେ ଏବଂ ଅତି ବର୍ବରଭାବରେ ବଧ କଲେ ।

ଆବ୍‌ବାସି ଖଲିଫାମାନଙ୍କର ଦୀର୍ଘ ଶାସନ ଏହି ୭୫୦ ଖ୍ରୀ: ରେ ଆରମ୍ଭ ମାତ୍ର ହୋଇଥିଲା । ଏହା ଅତ୍ୟନ୍ତ ସୁଖଦାୟକ ବା ଶୁଭାରମ୍ଭ ନୁହେଁ । ଅଥଚ ଆରବ ଇତିହାସରେ ଆବ୍‌ବାସି କାଳ ଏକ ଅତି ଉଜ୍ଜ୍ୱଳ କାଳ ବୋଲି ଗଣ୍ୟ । କିନ୍ତୁ ଓମ୍ମେୟାଦ-ମାନଙ୍କ ଅମଳଠାରୁ ଏମାନଙ୍କ ଅମଳରେ ବିରାଟ ପରିବର୍ତ୍ତନ ଦେଖା ହୋଇଥିଲା । ଆବ୍‌ବାସି-ମାନେ ନିଜଦେଶରେ ଜୟଲାଭ କଲେ; ମାତ୍ର ସୁଦୂର ସ୍ପେନରେ ଜଣେ ଓମ୍ମେୟାଦ୍ ଆରବ ଶାସକ ଥିଲେ ଏବଂ ସେ ଆବ୍‌ବାସ ଖଲିଫାଙ୍କୁ ମାନିବାକୁ ଅସ୍ୱୀକାର କଲେ । ଇଫ୍ରିକିଆର ରାଜପ୍ରତିନିଧି ଶାସନାଧୀନ ଥିବା ଉତ୍ତର ଆଫ୍ରିକା ମଧ୍ୟରେ ଊଣା ଅଧିକେ ସ୍ୱାଧୀନ ହୋଇଥିଲା । ଇଜିପ୍ଟ ବି ବିଦ୍ରୋହ କଲା ଏବଂ ବାସ୍ତବିକ ଆଉ ଏକ ଖଲିଫା ଘୋଷଣା କଲା । ଇଜିପ୍ଟ ଖୁବ୍ ନିକଟରେ ଥିବାରୁ, ଏହାକୁ ଧମକ ଦେବା ଓ ବଶ୍ୟତା ସ୍ୱୀକାର କରିବାକୁ ବାଧ କରିବା ସହଜ ହୋଇଥିଲା ଏବଂ ଅନେକଥର ଏହା କରାଯାଉଥିଲା । କିନ୍ତୁ ଇଫ୍ରିକିଆରେ ହସ୍ତକ୍ଷେପ କରାଯାଇ ପାରିଲା ନାହିଁ ଏବଂ ସ୍ପେନ ଏତେ ଦୂରରେ ଥିଲା ଯେ ତାହା ଉପରେ କୌଣସି ପ୍ରକାର ଆକ୍ରମଣ କରାଯାଇ ପାରୁ ନ ଥିଲା । ତେଣୁ ଆମେ ଦେଖୁ ଯେ ଆବ୍‌ବାସିମାନେ କ୍ଷମତା ପାଇଲା ପରେ ଆରବ ସାମ୍ରାଜ୍ୟ ବିଭକ୍ତ ହୋଇଗଲା । ଖଲିଫା

ଆଉ ସମଗ୍ର ମୁସଲମାନ ଜଗତରେ ମୁଖ୍ୟ ଓ ସମସ୍ତ ଧର୍ମାବଲମ୍ବୀମାନଙ୍କର ଶାସକ ହୋଇ ରହିଲେ ନାହିଁ । ଇସଲାମର ଐକ୍ୟବନ୍ଧନ ରହିଲା ନାହିଁ ଏବଂ ସ୍ପେନରେ ଆରବ ଓ ଆବ୍ବାସିମାନେ ପରସ୍ପରକୁ ଏତେ ଘୃଣା କରୁଥିଲେ ଯେ ଏକ ଅପରର ଅମଙ୍ଗଳ କାମନା ବରାବର କରୁଥିଲେ ।

ଏସବୁ ସତ୍ତ୍ୱେ ଆବ୍ବାସି ଖଲିଫାମାନେ ପ୍ରଧାନ ଶାସକ ଥିଲେ ଏବଂ ସାମ୍ରାଜ୍ୟ-ମାନଙ୍କ ପରି ତାଙ୍କ ସାମ୍ରାଜ୍ୟ ମଧ୍ୟ ଏକ ବିରାଟ ସାମ୍ରାଜ୍ୟ ଥିଲା । ଯେଉଁ ପୁରୁଣା ବିଶ୍ୱାସ ଓ ତେଜ ସବୁଚିହ୍ନକୁ ଦଖଲ କରିଥିଲା ଏବଂ ବୃକ୍ଷସ୍ଥାନ ପ୍ରଶସ୍ତ ପ୍ରାନ୍ତରର ଅଗ୍ନି ପରି ବିସ୍ତୃତ ହୋଇଥିଲା, ତାହା ଆଉ ପରିଲକ୍ଷିତ ହେଲା ନାହିଁ । ଆଉ ସରଳତା ଓ ପୂର୍ବର ଗଣତନ୍ତ୍ର ନଥିଲା ଏବଂ ଧର୍ମ ଶାସକଙ୍କର ଆଗେ ଆରବମାନେ ଇରାନର ଯେଉଁ ରାଜାଧିରାଜଙ୍କୁ ପରାସ୍ତ କରିଥିଲେ ଅଥବା କନଷ୍ଟାଣ୍ଟିନୋପଲର ସମ୍ରାଟଙ୍କ ସହିତ କୌଣସି ପାର୍ଥକ୍ୟ ରହିଲା ନାହିଁ । ପ୍ରଫେଟ ମହମ୍ମଦଙ୍କ ଅମଳରେ ଆରବମାନଙ୍କ ଭିତରେ ଯେଉଁ ଅଦ୍ଭୁତ ଜୀବନ ଓ ଶକ୍ତି ଦେଖା ଦେଇଥିଲା, ତାହା ଯେ କୌଣସି ପ୍ରକାର ଯୋଦ୍ଧାମାନଙ୍କ ଶକ୍ତିଠାରୁ ସମ୍ପୂର୍ଣ୍ଣ ପୃଥକ । ସେମାନେ ତାଙ୍କ କାଳର ଦୁନିଆରେ ମୁଣ୍ଡଟେକ ଛିଡ଼ା ହୋଇଥିଲେ ଏବଂ ତାଙ୍କର ଅପ୍ରତିହତ ଯାତ୍ରା ସମକ୍ଷରେ ଅନ୍ୟ ସେନାବାହିନୀ ଓ ରାଜାସବୁ ନିସ୍ତେଜ ହୋଇପଡ଼ିଲେ । ଜନସାଧାରଣ ଏହି ରାଜାମାନଙ୍କ ଉପରେ ବିରକ୍ତ ହୋଇ ପଡ଼ିଥିଲେ ଏବଂ ଆରବମାନେ ଉନ୍ନତ ଓ ସାମାଜିକ ବିପ୍ଳବ ଆଣି ପରିବର୍ତ୍ତନ କରିବେ ବୋଲି ସେମାନେ ଆଶା କରୁଥିଲେ ।

ଏସବୁର ଏବେ ପରିବର୍ତ୍ତନ ହୋଇଗଲା । ମରୁପ୍ରାନ୍ତର ଲୋକେ ଏବେ ପ୍ରାସାଦରେ ବାସକଲେ ଏବଂ ଖଜୁରି ପରିବର୍ତ୍ତେ ଅତି ବିଳାସ ଜିନିଷ ଭକ୍ଷଣ କଲେ । ସେମାନେ ଖୁବ୍ ସ୍ୱଚ୍ଛନ୍ଦରେ ଥିଲେ । ତେଣୁ ପରିବର୍ତ୍ତନ ଓ ସାମାଜିକ ବିପ୍ଳବ ଲାଗି ସେମାନେ କାହିଁକି ମୁଣ୍ଡ ଘୂରାନ୍ତେ ? ସେମାନେ ଆଡ଼ମ୍ବରରେ ପୁରୁଣା ସାମ୍ରାଜ୍ୟଗୁଡ଼ିକର ସମକକ୍ଷ ହେବାକୁ ଚେଷ୍ଟା କଲେ ଏବଂ ସେମାନଙ୍କର ଅନେକ ଦୁର୍ଗୁଣ ଗ୍ରହଣ କରିଥିଲେ । ମୁଁ ତୋତେ କହୁଛି ଯେ ନାରୀମାନଙ୍କୁ ଅନ୍ତଃପୁରରେ ରଖିବା ପ୍ରଥା ଏହି ଦୁର୍ଗୁଣରୁ ଗୋଟିଏ ।

ରାଜଧାନୀ ଏବେ ଡାମସ୍କସରୁ ଇରାକର ବାଗଦାଦକୁ ଗଲା । ରାଜଧାନୀ ପରିବର୍ତ୍ତନର ମହତ୍ତ୍ୱ ଥିଲା; କାରଣ ବାଗଦାଦ ଇରାନୀ ରାଜାମାନଙ୍କର ଗ୍ରୀଷ୍ମକାଳୀନ ଆବାସ ଥିଲା । ବାଗଦାଦ ଡାମସ୍କସ ଅପେକ୍ଷା ଇଉରୋପରୁ ଆହୁରି ଦୂରରେ ଥିବାରୁ ଆବ୍ବାସିମାନେ ଇଉରୋପ ଅପେକ୍ଷା ଏସିଆ ଉପରେ ବେଶୀ ନଜର ପକାଇଲେ । କନଷ୍ଟାଣ୍ଟିନୋପଲ

ଦଖଲ କରିବା ନିମନ୍ତେ ଆହୁରି ଅନେକ ଚେଷ୍ଟା ହେଲା ଏବଂ ଇଉରୋପୀୟ ଜାତିଗୁଡ଼ିକ ସହିତ ଅନେକ ଯୁଦ୍ଧ ହୋଇଥିଲା; କିନ୍ତୁ ଅଧିକାଂଶ ଯୁଦ୍ଧ ଆତ୍ମରକ୍ଷାମୂଳକ ହୋଇଥିଲା। ବିଜୟର ଦିନ ଶେଷ ହୋଇଆସିଲାପରି ବୋଧହେଲା ଏବଂ ଆବ୍‌ବାସି ଖଲିଫାମାନଙ୍କର ଯେତିକି ସାମ୍ରାଜ୍ୟ ଥିଲା, ତାହା ଦୃଢ଼ କରିବା ନିମନ୍ତେ ସେମାନେ ଚେଷ୍ଟାକଲେ। ଆଫ୍ରିକା ଓ ସ୍ପେନ ଯାଇଥିଲେ ସୁଦ୍ଧା ଏହା ଯଥେଷ୍ଟ ବଡ଼ ଥିଲା।

ବାଗଦାଦ ! ତୋର ମନେ ନାହିଁକି ? ଆରବୀୟାନ ନାଇଟ୍‌ସ୍‌ରେ ବର୍ଣ୍ଣିତ ଅଦ୍ଭୁତ କାହାଣୀସବୁ, ହାରୁନାଲ ରସିଦ ଓ ସାହେରାଜେଦ୍ ଆଜି ମନେ ଅଛି ତ ? ଆବ୍‌ବାସି ଖଲିଫାଙ୍କ ଅଧୀନରେ ଏବେ ଯେଉଁ ନଗର ଗଢ଼ିଉଠିଲା, ତାହା ଆରବୀୟାନ ନାଇଟ୍‌ସ୍‌ର ବର୍ଣ୍ଣିତ ସହର। ଏହା ଏକ ବିଶାଳନଗରୀ, ପ୍ରାସାଦ, ସାଧାରଣ ଦପ୍ତର, ସ୍କୁଲ, କଲେଜ, ବଡ଼ ବଡ଼ ଦୋକାନ, ପାର୍କ ଓ ଉଦ୍ୟାନରେ ପରିପୂର୍ଣ୍ଣ ଥିଲା। ବଣିକମାନେ ପୂର୍ବ ଓ ପାଶ୍ଚାତ୍ୟରେ ବିସ୍ତୃତ ବାଣିଜ୍ୟ ଚଳାଉଥିଲେ। ସାମ୍ରାଜ୍ୟର ସୁଦୂର ଅଂଶ ସହିତ ସରକାରୀ କର୍ମଚାରୀଗଣ ବରାବର ସମ୍ପର୍କ ରଖିଥିଲେ ଏବଂ ସରକାରୀ ଶାସନ ଅଧିକରୁ ଅଧିକ ଜଟିଳ ହୋଇପଡ଼ିବାରୁ କେତେଗୁଡ଼ିଏ ବିଭାଗରେ ବିଭକ୍ତ ହେଲା। ସାମ୍ରାଜ୍ୟର ସମସ୍ତ ଅଞ୍ଚଳ ସହିତ ଏକ ଡାକବ୍ୟବସ୍ଥାଦ୍ୱାରା ରାଜଧାନୀର ସମ୍ପର୍କ ରହିଥିଲା। ପ୍ରଚୁର ପରିମାଣରେ ହାସପାତାଳ ଥିଲା। ସମଗ୍ର ପୃଥିବୀରୁ ବିଶେଷତଃ ଜ୍ଞାନୀଲୋକେ, ଛାତ୍ର ଓ କଳାବିତ୍‌ମାନେ ଦର୍ଶକଭାବରେ ବାଗଦାଦକୁ ଆସୁଥିଲେ। କାରଣ ସମସ୍ତ ଶିକ୍ଷିତ ବା କଳାନିପୁଣ ଲୋକଙ୍କୁ ଖଲିଫା ସ୍ୱାଗତ କରୁଥିଲେ ବୋଲି ଜଣାଥିଲା।

ଖଲିଫା ନିଜେ ଦାସପରିବେଷ୍ଟିତ ହୋଇ ଅତ୍ୟନ୍ତ ବିଳାସରେ ବାସ କରୁଥିଲେ ଏବଂ ତାଙ୍କର ସ୍ତ୍ରୀମାନେ ଅନ୍ତଃପୁରରେ ରହିଲେ। ୭୮୬ଠାରୁ ୮୦୯ ଖ୍ରୀ: ପର୍ଯ୍ୟନ୍ତ ହାରୁନାଲ ରସିଦଙ୍କ ଶାସନକାଳ ଭିତରେ ଆବ୍‌ବାସି ସାମ୍ରାଜ୍ୟ ବାହ୍ୟିକ ଗୌରବର ଉଚ୍ଚସୀମାରେ ଥିଲା। ଚୀନ ସମ୍ରାଟ ଓ ପଶ୍ଚିମରେ ସମ୍ରାଟ ଚାର୍ଲମାନଙ୍କଠାରୁ ଦୂତ ହାରୁନଙ୍କ ପାଖକୁ ଆସିଥିଲେ। ସେହି କାଳରେ ଆରବ ଓ ସ୍ପେନ ଛଡ଼ା ବାଗଦାଦ ଓ ଆବ୍‌ବାସି ରାଜ୍ୟସବୁ ଇଉରୋପଠାରୁ ବହୁତ ଆଗୁଆ ଥିଲା; ଶାସନକୌଶଳ, ବେପାର ଓ ଶିକ୍ଷାବୃଦ୍ଧିରେ ଏହା ମଧ୍ୟ ଅଗ୍ରଗତି ଲାଭ କରିଥିଲା।

ଆବ୍‌ବାସି ଅମଳରେ ବିଜ୍ଞାନରେ ଯେଉଁ ନୂତନ ଆଗ୍ରହ ଜାଗ୍ରତ କରାଗଲା, ସେଥିଯୋଗୁଁ ବିଶେଷଭାବରେ ଏହା ଆମକୁ ସୁଖ ଲାଗେ। ତୁ ଜାଣୁ, ଆଧୁନିକ ଜଗତରେ ବିଜ୍ଞାନ ଗୋଟିଏ ଖୁବ୍ ବଡ଼ ଜିନିଷ ଏବଂ ସେଥିରୁ ଆମର ଅନେକ କଥା ବାହାରିଛି। ବିଜ୍ଞାନ ଖାଲି ବସିରହି କୌଣସି ଜିନିଷ ଘଟିବା ଲାଗି ପ୍ରାର୍ଥନା କରେ ନାହିଁ; ମାତ୍ର କାହିଁକି

କିନିଷ ଘଟେ ତାହା ବାହାର କରିବାକୁ ଚେଷ୍ଟା କରେ । ଏହା ପ୍ରୟୋଗ କରେ ଏବଂ ବାରମ୍ବାର ଚେଷ୍ଟା କରେ; ବେଳେ ବେଳେ ବିଫଳ ହୁଏ, ବେଳେ ବେଳେ କୃତକାର୍ଯ୍ୟ ହୁଏ ଏବଂ କ୍ରେଣ୍ଠ ଧୀରେ ଧୀରେ ମାନବର ଜ୍ଞାନ ବୃଦ୍ଧି କରେ । ଆମର ଏ ଆଧୁନିକ ଜଗତଟି ପୁରାତନ ଜଗତ ବା ମଧ୍ୟଯୁଗରୁ ସମ୍ପୂର୍ଣ୍ଣ ଭିନ୍ନ । ଏହି ପାର୍ଥକ୍ୟ ଅଧିକ ଭାବରେ ବିଜ୍ଞାନ ଯୋଗୁଁ ହୋଇଛି; କାରଣ ବିଜ୍ଞାନ ଦ୍ୱାରହିଁ ଆଧୁନିକ ଜଗତ ତିଆରି ହୋଇଅଛି ।

ପୁରାକାଳରେ ଇଜିପ୍ଟ, ଚୀନ ବା ଭାରତରେ ବୈଜ୍ଞାନିକପ୍ରଣାଳୀ ଦେଖିବାକୁ ମିଳେ ନାହିଁ । କେବଳ ପୁରାତନ ଗ୍ରୀସରେ କିଛିମାତ୍ର ଦେଖାଯାଏ । ରୋମରେ ମଧ୍ୟ ଏହାର ନାମଗନ୍ଧ ନାହିଁ । କିନ୍ତୁ ଆରବମାନଙ୍କର ବୈଜ୍ଞାନିକ ଅନୁସନ୍ଧାନ ଭାବ ଥିଲା ଏବଂ ତେଣୁ ସେମାନଙ୍କୁ ଆଧୁନିକ ବିଜ୍ଞାନର ପିତା ବୋଲି କୁହାଯାଇପାରେ । ଆୟୁର୍ବେଦ ଓ ଗଣିତ ପ୍ରଭୃତି କେତେକ ବିଷୟ ସେମାନେ ଭାରତଠାରୁ ଶିଖିଥିଲେ । ଭାରତୀୟ ପଣ୍ଡିତ ଓ ଗଣିତଜ୍ଞ ବହୁ ସଂଖ୍ୟାରେ ବାଗଦାଦକୁ ଆସିଥିଲେ । ଉତ୍ତର-ଭାରତରେ ତକ୍ଷଶୀଳାକୁ ଅନେକ ଆରବଗୁଡ଼ା ଯାଇଥିଲେ । ଏଠାରେ ଏକ ବିରାଟ ବିଶ୍ୱବିଦ୍ୟାଳୟ ଥିଲା ଓ ଆୟୁର୍ବେଦ ବିଷୟରେ ବିଶେଷ ଭାବରେ ଶିକ୍ଷା ଦିଆଯାଉଥିଲା । ଚିକିତ୍ସାବିଦ୍ୟା ଓ ଅନ୍ୟ ବିଷୟର ସଂସ୍କୃତ ପୁସ୍ତକମାନ ବିଶେଷ ଭାବରେ ଆରବୀୟ ଭାଷାରେ ଅନୁବାଦ ହୋଇଥିଲା । ଅନେକ କିନିଷ - ଦୃଷ୍ଟାନ୍ତ ସ୍ୱରୂପ କାଗଜ ତିଆରି ଆରବମାନେ ଚୀନଠାରୁ ଶିଖିଥିଲେ; କିନ୍ତୁ ଅନ୍ୟଠାରୁ ଯେଉଁ ଜ୍ଞାନ ଅର୍ଜନ କଲେ ତାହାକୁ ଭିତ୍ତିକରି ସେମାନେ ନିଜର ଗବେଷଣା ଚଳାଇଲେ ଓ କେତେକ ଗୁରୁତ୍ୱପୂର୍ଣ୍ଣ ଆବିଷ୍କାରମାନ କଲେ । ସେମାନେ ପ୍ରଥମ ଦୂରବୀକ୍ଷଣଯନ୍ତ୍ର ଓ ନାବିକର ଦିଗନିର୍ଣ୍ଣୟ ଯନ୍ତ୍ର ବାହାର କରିଥିଲେ । ଔଷଧ ଲାଗି ସମଗ୍ର ଇଉରୋପରେ ଆରବ ଚିକିତ୍ସକ ଓ ଅସ୍ତ୍ରଚିକିତ୍ସକମାନେ ପ୍ରସିଦ୍ଧ ଥିଲେ ।

ଅବଶ୍ୟ ଏହିସବୁ ବୌଦ୍ଧିକ କାର୍ଯ୍ୟକଳାପର ପ୍ରଧାନ କେନ୍ଦ୍ର ବାଗଦାଦ ଥିଲା । ପଶ୍ଚିମରେ ଆରବ-ସ୍ପେନର ରାଜଧାନୀ କୋରଦୋବା ଆଉ ଏକ କେନ୍ଦ୍ର ଥିଲା । ଆରବ ଜଗତରେ ବୁଦ୍ଧିଜୀବୀଙ୍କ ଉତ୍କର୍ଷ ସମୟରେ ଆହୁରି ଅନେକ ବିଶ୍ୱବିଦ୍ୟାଳୟ କେନ୍ଦ୍ରମାନ ଥିଲା । କାଏରୋ ବା ଆଲକାହିରା (ବିଜେତା), ବାସରା ଓ କୁଫା । କିନ୍ତୁ ଏହି ସମସ୍ତ ବିଖ୍ୟାତ ସହରମାନଙ୍କ ମଧ୍ୟରେ ବାଗଦାଦ ହିଁ ପ୍ରଧାନ ଥିଲା । ଏହା "ଇସଲାମର ରାଜଧାନୀ, ଇରାକର ଚକ୍ଷୁ, ସାମ୍ରାଜ୍ୟର କେନ୍ଦ୍ରସ୍ଥଳୀ ଏବଂ ସୌନ୍ଦର୍ଯ୍ୟ, ସଂସ୍କୃତି ଓ କଳାର କେନ୍ଦ୍ର" ଥିଲା ବୋଲି ଜଣେ ଆରବ ଐତିହାସିକ ବର୍ଣ୍ଣନା କରି ଯାଇଛନ୍ତି । ଏହାର ଲୋକସଂଖ୍ୟା ୨୦ ଲକ୍ଷରୁ ଅଧିକ ଥିଲା ଏବଂ ସେହି ହେତୁ ଏହା ଆଧୁନିକ କଲିକତା ବା ବମ୍ବେଠାରୁ ବହୁତ ବଡ଼ ଥିଲା ।

ବାଗଦାଦରେ ଧନୀଲୋକଙ୍କ ଭିତରେ ହାଫ ପ୍ୟାଣ୍ଟ ଓ ମୋଜା ପିନ୍ଧା ପ୍ରଚଳନ ଥିବାର ଦେଖାଯାଏ । ଏହାକୁ "ମୋଜାଜ" ବୋଲି କହୁଥିଲେ ଏବଂ ଏହିଥିରୁ ଭାରତୀୟ

ମୋଜା ଶବ୍ଦ ବୋଧହୁଏ ଆସିଛି । ସେହିପରି ଫରାସୀ "ସେମିଜ" ଶବ୍ଦରୁ "କମିଜ" ଶବ୍ଦ ଆସିଛି । କମିଜ ଓ ମୋଜା ଉଭୟ ଆରବମାନଙ୍କଠାରୁ କନ୍‌ଷ୍ଟାଣ୍ଟିନୋପଲର ବିଜାଣ୍ଟାଇନମାନଙ୍କ ପାଖକୁ ଗଲା ଏବଂ ସେଠାରୁ ଇଉରୋପକୁ ଗଲା ।

ଆରବମାନେ ଖୁବ୍ ବିଖ୍ୟାତ ପରିବ୍ରାଜକ । ସେମାନେ ତାହାଙ୍କର ଦୀର୍ଘ ଯାତ୍ରା ସମୁଦ୍ର ମଧ୍ୟରେ କରୁଥିଲେ ଏବଂ ଆଫ୍ରିକା, ଭାରତର ଉପକୂଳ, ମାଲୟସିଆ ଓ ଏପରି କି ଚୀନ୍‌ରେ ମଧ୍ୟ ଉପନିବେଶ ସ୍ଥାପନ କଲେ । ଆଲବେରୁନୀ ନାମକ ତାଙ୍କର ଜଣେ ବିଖ୍ୟାତ ପରିବ୍ରାଜକ ଭାରତକୁ ଆସିଥିଲେ ଏବଂ ହୁଏନ୍‌ସାଙ୍କ ପରି ସେ ତାଙ୍କର ଭ୍ରମଣ ବିବରଣୀ ଲେଖିଯାଇଛନ୍ତି ।

ଆରବମାନେ ମଧ୍ୟ ଐତିହାସିକ ଥିଲେ ଏବଂ ତାଙ୍କର ନିଜର ପୁସ୍ତକ ଇତିହାସରୁ ଅମେ ବହୁତ କଥା ଜାଣିପାରୁ । ସେମାନେ କି ସୁନ୍ଦର କାହାଣୀ ଓ ରୋମାଞ୍ଚକର ଗପ ଲେଖିପାରନ୍ତି, ତାହା ଆମେ ସମସ୍ତେ ଜାଣୁ । ଆବ୍‌ବାସି ଖଲିଫା ଓ ତାଙ୍କ ସାମ୍ରାଜ୍ୟ ବିଷୟରେ ହଜାର ହଜାର ଲୋକ କେବେ କିଛି ଶୁଣି ନାହାନ୍ତି । ମାତ୍ର ସେମାନେ 'ଆଲଫ ଲାଇଲା ଓ୍ୱା ଲାଇଲା'ର ବାଗଦାଦ "ସହସ୍ରାଧିକ ରଜନି"ର ବାଗ୍‌ଦାଦ ଏବଂ ରହସ୍ୟମୟ ଓ ରୋମାଞ୍ଚକ ନଗର କଥା ଜାଣନ୍ତି । କଳ୍ପନା-ସାମ୍ରାଜ୍ୟ ଅନେକ ସମୟରେ ପ୍ରକୃତ ସାମ୍ରାଜ୍ୟ ଅପେକ୍ଷା ଅଧିକ ବାସ୍ତବ ଓ ଅଧିକ ଦୃଢ଼ ।

ହାରୁନାଲ ରସିଦଙ୍କ ମୃତ୍ୟୁ ପରେ ଆରବସାମ୍ରାଜ୍ୟରେ ଗୋଳମାଳ ଆରମ୍ଭ ହେଲା, ବିଶୃଙ୍ଖଳା ଦେଖାଦେଲା ଏବଂ ସାମ୍ରାଜ୍ୟର ବିଭିନ୍ନ ଅଞ୍ଚଳ ଅଲଗା ହୋଇଗଲା । ପ୍ରାଦେଶିକ ଶାସକମାନେ ବଂଶାନୁକ୍ରମେ ଶାସକ ହୋଇପଲେ । ଖଲିଫାସବୁ ଅଧିକ ଭାବରେ କ୍ଷମତାହୀନ ହୋଇଗଲେ । ଶେଷକୁ ଏପରି ହେଲା ଯେ ଏକମାତ୍ର ବାଗଦାଦ ନଗର ଓ ତା ଆଖପାଖ କେତେକ ଗ୍ରାମ ଉପରେ ହିଁ ଖଲିଫା ଶାସନ କରୁଥିଲେ । ଏପରି କି ଜଣେ ଖଲିଫାଙ୍କୁ ତାଙ୍କର ଜଣେ ସୈନିକ ପ୍ରାସାଦ ମଧ୍ୟରୁ ଟାଣିଆଣି ହତ୍ୟା କରିଥିଲେ । ତାପରେ ଅଳ୍ପକାଳ ପର୍ଯ୍ୟନ୍ତ ଜଣେ ବଳିଷ୍ଠ ଲୋକ ବାଗଦାଦ ଶାସନ କଲେ ଏବଂ ଖଲିଫାଙ୍କୁ ତାଙ୍କ ଅଧୀନ କଲେ ।

ଇତ୍ୟବସରେ ଇସଲାମର ଐକ୍ୟ ଏକ ସୁଦୂର ଅତୀତ ଜିନିଷ ହୋଇଯାଇଥିଲା । ଇଜିପ୍ଟଠାରୁ ମଧ୍ୟ-ଏସିଆରେ ଖୋରାସାନ ପର୍ଯ୍ୟନ୍ତ ପ୍ରତ୍ୟେକ ସ୍ଥାନରେ ସ୍ୱତନ୍ତ୍ର ରାଜ୍ୟସବୁ ଗଢ଼ିଉଠିଲା । ସୁଦୂର ପ୍ରାଚ୍ୟରୁ ଯାଯାବର ଜାତି ପଶ୍ଚିମକୁ ଚଳେ । ମଧ୍ୟ-ଏସିଆର ପୁରାତନ ତୁର୍କଜାତି ମୁସଲମାନ ହେଲେ ଏବଂ ଆସି ବାଗଦାଦ ଦଖଲ କଲେ । ଏମାନେ ସେଲଜୁକ ତୁର୍କ ନାମରେ ପରିଚିତ । ସେମାନେ କନ୍‌ଷ୍ଟାଣ୍ଟିନୋପଲ ବିଜାଣ୍ଟାଇନ

ସେନାକୁ ସମ୍ପୂର୍ଣ୍ଣରୂପେ ପରାସ୍ତ କରିଥିଲେ । ଇଉରୋପ ଏଥିରେ ଖୁବ୍ ବିସ୍ମିତ ହୋଇପଡ଼ିଲା । କାରଣ ଇଉରୋପ ଭାବିଥିଲା ଯେ ଆରବ ଓ ମୁସଲମାନମାନଙ୍କ ଶକ୍ତି କ୍ଷୟ ହୋଇ ଯାଇଛି ଏବଂ ସେମାନେ ଦିନକୁଦିନ ଦୁର୍ବଳତର ହୋଇପଡ଼ୁଛନ୍ତି । ଏହା ସତ୍ୟ ଯେ ଆରବମାନଙ୍କର ଖୁବ୍ ଅଧଃପତନ ହୋଇଥିଲା; ମାତ୍ର ଏବେ ଇସଲାମର ଧ୍ୱଜା ଧରିବା ପାଇଁ ଓ ଏହା ସହିତ ଇଉରୋପକୁ ସ୍ପର୍ଦ୍ଧା କରିବା ପାଇଁ ସେଲ୍‌ଜୁକ୍ ତୁର୍କମାନେ କ୍ଷେତ୍ରକୁ ଆସିଲେ ।

ଆମେ ଦେଖିବା ଏହି ଆହ୍ୱାନ ଗୃହୀତ ହେଲା ଏବଂ ମୁସଲମାନ-ମାନଙ୍କ ସହିତ ଯୁଦ୍ଧ କରିବା ପାଇଁ ଓ ତୀର୍ଥସ୍ଥଳୀ ଜେରୁଜେଲମ ପୁନର୍ବାର ଜୟ କରିବା ପାଇଁ ୟୁରୋପର ଖ୍ରୀଷ୍ଟୀୟ ଜାତିସବୁ ଧର୍ମଯୁଦ୍ଧର ( Crusade ) ସଂଗଠନ କଲେ । ୧୦୦ ବର୍ଷରୁ ଅଧିକ କାଳ ପର୍ଯ୍ୟନ୍ତ ସିରିଆ, ପାଲେଷ୍ଟାଇନ, ଓ ଏସିଆମାଇନରରେ ପ୍ରଭୁତ୍ୱ ନିମନ୍ତେ ଖ୍ରୀଷ୍ଟଧର୍ମ ଓ ଇସଲାମ ଭିତରେ ଯୁଦ୍ଧ ଲାଗିଲା । ପରସ୍ପରର ଶକ୍ତି କ୍ଷୟ ହେଲା ଏବଂ ଏହିସବୁ ରାଜ୍ୟର ପ୍ରତ୍ୟେକ ଇଞ୍ଚ ଭୂମି ପ୍ରାୟ ମନୁଷ୍ୟ ରକ୍ତପ୍ଲାବିତ ହୋଇଥିଲା । ଏହି ଅଞ୍ଚଳଗୁଡ଼ିକର ସମୃଦ୍ଧିଶାଳୀ ନଗରସବୁ ତାର ବାଣିଜ୍ୟ ଓ ଶ୍ରେଷ୍ଠତ୍ୱ ହରାଇଲା ଏବଂ ଶସ୍ୟଶ୍ୟାମଳା କ୍ଷେତସବୁ ଜଙ୍ଗଲରେ ପରିଣତ ହେଲା ।

ସେମାନେ ପରସ୍ପର ସହିତ ଯୁଦ୍ଧ କଲେ । କିନ୍ତୁ ଏହି ଯୁଦ୍ଧ ଶେଷ ହେବା ପୂର୍ବରୁ ଏସିଆର ସେ ଦିଗରେ ମଙ୍ଗୋଲିଆରେ ଚେଙ୍ଗିଜ ଖାଁ ବାହାରିଲେ । ପୃଥିବୀକୁ ଦୋହଲାଇ ଦେଇଥିବା ମଙ୍ଗୋଲ ବୋଲି ତାଙ୍କୁ କୁହାଯାଏ । ପ୍ରକୃତରେ ସେ ଏସିଆ ଓ ଇଉରୋପକୁ ଦୋହଲାଇ ଦେବାକୁ ଯାଉଥିଲେ । ସେ ଓ ତାଙ୍କର ବଂଶଧରମାନେ ବାଗଦାଦ ଓ ତାହାର ସାମ୍ରାଜ୍ୟ ଲୋପ କଲେ । ମଙ୍ଗୋଲମାନେ ବିଖ୍ୟାତ ବାଗଦାଦ ନଗରକୁ ଅଧୀନ କଲାବେଳକୁ ଏହା ପ୍ରାୟ ଏକ ଧୂଳି ଓ ଭସ୍ମସ୍ତୂପରେ ପରିଣତ ହୋଇଥିଲା ଏବଂ ଏହାର ୨୦ ଲକ୍ଷ ଅଧିବାସୀଙ୍କ ମଧ୍ୟରୁ ଅଧିକାଂଶ ମରି ଯାଇଥିଲେ । ଏହା ୧୨୫୮ ଖ୍ରୀ:ରେ ହୋଇଥିଲା ।

ଏବେ ବାଗଦାଦ ପୁନର୍ବାର ଏକ ସମୃଦ୍ଧିଶାଳୀ ନଗର ହୋଇଛି ଏବଂ ଇରାକ ରାଜ୍ୟର ମଧ୍ୟ ରାଜଧାନୀ । କିନ୍ତୁ ଏହା ତା'ର ପୂର୍ବରୂପର ଏକ ଛାୟା ମାତ୍ର; କାରଣ ମଙ୍ଗୋଲମାନେ ଯେଉଁ ହତ୍ୟା ଓ ଧ୍ୱଂସ କରିଥିଲେ, ସେଥିରୁ ଏହା ଆଉ କେବେହେଲେ ଫେରି ଆସି ପାରିଲା ନାହିଁ ।

# ୫୧ । ଉତ୍ତର-ଭାରତରେ ହର୍ଷଙ୍କଠାରୁ ମାମୁଦ ପର୍ଯ୍ୟନ୍ତ

ଜୁନ୍ ୧, ୧୯୩୨

ଆମେ ଆରବ ବା ସାରାସେନଙ୍କ କାହାଣୀ ବନ୍ଦ କରି ଅନ୍ୟ ରାଜ୍ୟ ବିଷୟ ଆଲୋଚନା କରିବା । ଆରବମାନେ କ୍ଷମତା ଓ ବିଜୟ ହାସଲ କଲେ, ବିସ୍ତାର ଲାଭ କଲେ ଓ ତାପରେ ସେମାନଙ୍କର ପତନ ହେଲା । ଏପରି ସମୟରେ ଭାରତ, ଚୀନ ଓ ଇଉରୋପର ଅନ୍ୟ ରାଜ୍ୟଗୁଡ଼ିକରେ କ'ଣ ଘଟୁଥିଲା ? ଆମେ ସାମାନ୍ୟ ପରିମାଣରେ ଜାଣିଛେ—୭୩୨ରେ ଚାର୍ଲସ ମାର୍ଟେଲଙ୍କ ଅଧୀନରେ ଏକ ମିଳିତ ସେନା ଫ୍ରାନ୍ସର ଟୁରସଠାରେ ଆରବ-ମାନଙ୍କୁ ପରାସ୍ତ କରିଥିଲେ । ଆରବମାନେ ମଧ୍ୟ-ଏସିଆ ଜୟ କରିଥିଲେ ଓ ଭାରତରେ ସିନ୍ଧ ପର୍ଯ୍ୟନ୍ତ ଆସିଥିଲେ । ଆମେ ପ୍ରଥମେ ଭାରତ କଥା ଦେଖିବା ।

୬୪୮ ଖ୍ରୀ:ରେ କନୌଜର ହର୍ଷବର୍ଦ୍ଧନ ମଲେ ଏବଂ ତାଙ୍କ ମୃତ୍ୟୁ ସଙ୍ଗେ ସଙ୍ଗେ ଉତ୍ତର-ଭାରତର ରାଜନୈତିକ ଅଧୋଗତି ସୁସ୍ପଷ୍ଟ ହୋଇଗଲା । କେତେ କାଳ ହେଲା ଏହା ହୋଇ ଆସୁଥିଲା ଏବଂ ହିନ୍ଦୁଧର୍ମ ଓ ବୌଦ୍ଧଧର୍ମ ମଧ୍ୟରେ ବିବାଦ ଏହି ପ୍ରକ୍ରିୟାରେ ସାହାଯ୍ୟ କରିଥିଲା । ହର୍ଷଙ୍କ ଅମଳରେ ବାହ୍ୟତଃ ଏକ ସାହସିକ ଆଡ଼ମ୍ବର ରହିଥିଲା; ମାତ୍ର ତାହା ଅଳ୍ପକାଳ ପାଇଁ । ତାଙ୍କ ପରେ ଉତ୍ତରରେ ଅନେକ ଶ୍ରେଷ୍ଠ ଶ୍ରେଷ୍ଠ ରାଜ୍ୟ ଗଢ଼ି ଉଠିଲା । ବେଳେ ବେଳେ ସେଗୁଡ଼ିକ କ୍ଷଣକାଳ ପାଇଁ ଯଶ ଅର୍ଜନ କରିଥିଲା, ବେଳେ ବେଳେ ପରସ୍ପର ସହିତ କଳହ କରୁଥିଲା । ବିଚିତ୍ର କଥା ଯେ ହର୍ଷଙ୍କ ପରେ ୩୦୦ ବର୍ଷ ବା ଅଧିକ କାଳ ପର୍ଯ୍ୟନ୍ତ କଳା ଓ ସାହିତ୍ୟ ବୃଦ୍ଧି ପାଇଥିଲା ଏବଂ ଅନେକ ସୁନ୍ଦର ସାଧାରଣ ରାସ୍ତା ଆଦି ନିର୍ମାଣ କରାଯାଇଥିଲା । ଭବଭୂତି ଓ ରାଜଶେଖରଙ୍କ ପରି କେତେକ ଖ୍ୟାତନାମା ସଂସ୍କୃତ ଲେଖକ ଏହି କାଳରେ ବାସ କରୁଥିଲେ ଏବଂ କେତେକ ରାଜା ରାଜନୈତିକ ଦୃଷ୍ଟିରେ ଅପ୍ରଧାନ ହୋଇଥିଲେ ସୁଦ୍ଧା ତାଙ୍କ ଅମଳରେ କଳା ଓ ଶିକ୍ଷାବୃଦ୍ଧି ନିମନ୍ତେ ଖ୍ୟାତ ଅର୍ଜିଥିଲେ । ରାଜା ଭୋଜ ନାମକ ଜଣେ ଶାସକ ଏକ ପୁରାଣ-ବର୍ଣ୍ଣିତ ଆଦର୍ଶ ରାଜା ହୋଇଥିଲେ ଏବଂ ଆଜି ସୁଦ୍ଧା ଲୋକେ ତାଙ୍କୁ ସେହି ଭାବରେ ଦେଖନ୍ତି ।

କିନ୍ତୁ ଏହିସବୁ ଜାଜୁଲ୍ୟମାନ କାର୍ଯ୍ୟ ସତ୍ତ୍ୱେ ଉତ୍ତରର ପତନ ଘଟୁଥିଲା । ଦକ୍ଷିଣ-ଭାରତ ପୁନର୍ବାର ନେତୃତ୍ୱ ନେଲା ଓ ଉନ୍ନତିକୁ ଟପିଗଲା । ମୁଁ ମୋର ଏକ ପୂର୍ବ ଚିଠିରେ (୪୪) ଏହି କାଳରେ ଦକ୍ଷିଣରେ ଥିବା ଚାଲୁକ୍ୟ ଚୋଳ ସାମ୍ରାଜ୍ୟ, ପଲ୍ଲବ ଓ ରାଷ୍ଟ୍ରକୂଟଙ୍କ ସମ୍ବନ୍ଧରେ ଟିକିଏ କିଛି କହିଛି । ଯେଉଁ ଶଙ୍କରାଚାର୍ଯ୍ୟ ତାଙ୍କର ସଂକ୍ଷିପ୍ତ ଜୀବନକାଳ ଭିତରେ ସମଗ୍ର ଦେଶର ଶିକ୍ଷିତ ଓ ଅଶିକ୍ଷିତ ଉଭୟଙ୍କ ଉପରେ ପ୍ରଭାବ ପକାଇ ପାରିଥିଲେ ଓ ଭାରତରେ ବୌଦ୍ଧଧର୍ମ ଲୋପ କରିବାରେ ପ୍ରାୟ ସମର୍ଥ ହୋଇ-ଥିଲେ, ତାଙ୍କ କଥା ମୁଁ କହିଛି । ଆଶ୍ଚର୍ଯ୍ୟ କଥା, ସେ ଏହା କରୁଥିବାବେଳେ ଭାରତର ଦ୍ୱାରରେ ଏକ ନୂତନ ଧର୍ମ ଆସି ଧକ୍କା ଦେଉଥିଲା ଏବଂ ପରେ ବିଜୟୀ ହୋଇ ଆସି ପ୍ରଚଳିତ ବ୍ୟବସ୍ଥାକୁ ଭାଙ୍ଗି ପକାଇବାକୁ ବସିଲା ।

ହର୍ଷ ବଞ୍ଚିଥିଲାବେଳେ ସୁଦ୍ଧା ଆରବମାନେ ଭାରତର ସୀମାନ୍ତରେ ପହଞ୍ଚିଲେ । ସେମାନେ ସେଠାରେ କ୍ଷଣକାଳ ଅଟକି ରହିଥିଲେ ଓ ତାପରେ ସିନ୍ଧୁ ଦଖଲ କଲେ । ୭୧୦ ଖ୍ରୀ : ରେ ମହମ୍ମଦ ଇବନ କାଶିମ ନାମକ ଜଣେ ୧୭ ବର୍ଷର ବାଳକ ଆରବସେନା ପରିଚାଳନା କରି ସିନ୍ଧୁ ଉପତ୍ୟକାରେ ପଶ୍ଚିମ ପଞ୍ଜାବର ମୁଲତାନ ପର୍ଯ୍ୟନ୍ତ ଜୟ କଲେ । ଭାରତରେ ଆରବ ବିଜୟ ଏହିପରିକେ ହୋଇଥିଲା । ସମ୍ଭବତଃ କଠିନ ଚେଷ୍ଟା କରିଥିଲେ ସେମାନେ ଅଉ ଟିକିଏ ଭିତରକୁ ପ୍ରବେଶ କରିପାରିଥାଆନ୍ତେ । ଏହା କିଛି କଷ୍ଟକର ହୋଇ ନ ଥାଆନ୍ତା । କାରଣ ଉତ୍ତର-ଭାରତ ଦୁର୍ବଳ ଥିଲା, କିନ୍ତୁ ଯଦିଓ ଆରବ ଓ ପଡ଼ୋଶୀ ଶାସକମାନଙ୍କ ଭିତରେ ଖୁବ୍ ଯୁଦ୍ଧ ଲାଗିଥିଲା, ତଥାପି ବିଜୟ ନିମନ୍ତେ କୌଣସି ସଙ୍ଗଠିତ ଉଦ୍ୟମ ନ ଥିଲା । ତେଣୁ ରାଜନୀତିକ ଦୃଷ୍ଟିରେ ଆରବମାନଙ୍କ ସିନ୍ଧୁ ବିଜୟ ଏକ ଗୁରୁତ୍ୱପୂର୍ଣ୍ଣ ବ୍ୟାପାର ନୁହେଁ । ଅନେକ ଶହ ବର୍ଷ ପରେ ଭାରତରେ ମୁସଲମାନ ବିଜୟ ଆରମ୍ଭ ହେଲା । କିନ୍ତୁ ଭାରତର ଲୋକଙ୍କ ସହିତ ଆରବମାନଙ୍କ ସାଂସ୍କୃତିକ ସମ୍ପର୍କ ହେତୁ ଭଲ ଫଳ ହେଲା ।

ଦକ୍ଷିଣର ଭାରତୀୟ ଶାସକ ବିଶେଷତଃ ରାଷ୍ଟ୍ରକୂଟଙ୍କ ସହିତ ଆରବମାନଙ୍କର ବନ୍ଧୁତା ଥିଲା । ଭାରତ ପଶ୍ଚିମ-ଉପକୂଳରେ ଅନେକ ଆରବ ବସବାସ କଲେ ଏବଂ ନିଜ ବସତିରେ ମସଜିଦ ନିର୍ମାଣ କଲେ । ଆରବ ପରିବ୍ରାଜକ ଓ ବେପାରୀମାନେ ଭାରତର ବିଭିନ୍ନ ଅଞ୍ଚଳ ପରିଦର୍ଶନ କଲେ । ଚିକିତ୍ସାଶାସ୍ତ୍ର ସକାଶେ ପ୍ରସିଦ୍ଧ ଉତ୍ତର-ଭାରତର ତକ୍ଷଶିଳା ବିଶ୍ୱବିଦ୍ୟାଳୟକୁ ବହୁସଂଖ୍ୟକ ଆରବ ଛାତ୍ର ଆସିଥିଲେ । କଥିତ ଅଛି, ହାରୁନାଲ ରସିଦ୍‌ଙ୍କ କାଳରେ ବାଗଦାଦରେ ଭାରତୀୟ ଶିକ୍ଷାର ଏକ ଉଚ୍ଚ ସ୍ଥାନ ଥିଲା ଏବଂ ସେଠାରେ ହାସପାତାଲ ଓ ମେଡ଼ିକାଲ ସ୍କୁଲ ସଂଗଠନ କରିବା ନିମନ୍ତେ ଭାରତରୁ ଚିକିତ୍ସକମାନେ ଯାଇଥିଲେ । ଗଣିତ ଓ ଜ୍ୟୋତିଗଣିତ ବିଷୟକ ଅନେକ ସଂସ୍କୃତ ପୁସ୍ତକ ଆରବୀୟ ଭାଷାରେ ଅନୂଦିତ ହୋଇଥିଲା ।

ଏହିରୂପେ ଭାରତର ପୁରାତନ ଆର୍ଯ୍ୟ ସଂସ୍କୃତିରୁ ଆରବମାନେ ଅଧିକ ଜିନିଷ ଗ୍ରହଣ କରିଥିଲେ । ସେମାନେ ଇରାନର ଆର୍ଯ୍ୟସଂସ୍କୃତି ଏବଂ ଗ୍ରୀସୀୟ ସଂସ୍କୃତିରୁ ମଧ୍ୟ ବହୁତ କିଛି ଗ୍ରହଣ କରିଥିଲେ । ସେମାନେ ନିଜର ଜୀବନଶକ୍ତିର ପ୍ରାରମ୍ଭାବସ୍ଥାରେ ଥିବା ଏକ ନୂତନ ଜାତି ପରି ଜଣା ପଡ଼ୁଥିଲେ ଏବଂ ତାଙ୍କ ଚତୁର୍ଦ୍ଦିଗରେ ଯେଉଁ ପୁରାତନ ସଂସ୍କୃତି ଦେଖିପାରୁଥିଲେ, ସେଥିରୁ ଫାଇଦା ଉଠାଇଲେ ଏବଂ ସେଥିରୁ ଶିକ୍ଷା ଲାଭ କଲେ ଏବଂ ଏହି ଭିତ୍ତି ଉପରେ ସେମାନେ ନିଜର ସାରାସେନୀୟ ସଂସ୍କୃତି ତିଆରି କଲେ । ଅନ୍ୟ ସଂସ୍କୃତିମାନଙ୍କ ପରି ଏହା ଅଳ୍ପକ୍ଷଣ ପାଇଁ ସ୍ଥାୟୀ ହୋଇଥିଲା; କିନ୍ତୁ ଏହାର ଏକ ଉଜ୍ଜ୍ୱଳ ଜୀବନ ଥିଲା, ତାହା ଇଉରୋପର ମଧ୍ୟଯୁଗର ଅନ୍ଧକାର ପଞ୍ଚଭୂମିକାରେ ଝଲସି ଉଠୁଥିଲା ।

ବିଚିତ୍ର କଥା ଯେ ଆରବମାନେ ଭାରତୀୟ ଆର୍ଯ୍ୟ ଇରାନୀ ଓ ଗ୍ରୀସୀୟ ସଂସ୍କୃତି ସହିତ ସମ୍ପର୍କରେ ଆସି ଲାଭବାନ ହେବାବେଳେ ଆରବମାନଙ୍କ ସହିତ ସମ୍ପର୍କରେ ଆସି ଭାରତୀୟ, ଇରାନୀ ଓ ଗ୍ରୀକମାନେ କିଛି ଲାଭ ଉଠାଇ ପାରି ନଥିଲେ । ସମ୍ଭବତଃ ଆରବମାନେ ନୂତନ ତେଜ ଓ ଉତ୍ସାହପୂର୍ଣ୍ଣ ହୋଇଥିବାରୁ ଏବଂ ଅନ୍ୟମାନେ ପୁରାତନ ଜାତି, ପୁରାତନ ଗତାନୁଗତିକ ପନ୍ଥୀ ଓ ପରିବର୍ତ୍ତନ ଲାଗି ବିଶେଷ ଉତ୍ସୁକ ନ ଥିବାରୁ ଏହା ହୋଇଥିଲା । ବ୍ୟକ୍ତିବିଶେଷ ପରି ଏକ ଏକ ଦେଶର ଅଧିବାସୀ ବା ଜାତି ଉପରେ ବୟସର କପରି ସମାନ ଫଳ ହୁଏ, ତାହା ବାସ୍ତବିକ ବିଚିତ୍ର କଥା—ଏହା ଗତିକୁ ମନ୍ଥର କରିଦିଏ, ମନ ଓ ଶରୀରର ବ୍ୟାପକତା ନଷ୍ଟ କରିଦିଏ, ଏହା ରକ୍ଷଣଶୀଳ ହୋଇପଡ଼େ ଏବଂ ପରିବର୍ତ୍ତନକୁ ଭୟ କରେ ।

ତେଣୁ ଆରବମାନେ କେତେ ଶହ ବର୍ଷ ପର୍ଯ୍ୟନ୍ତ ରହିଲେ ସୁଦ୍ଧା ସେମାନଙ୍କ ସହିତ ସମ୍ପର୍କ ସ୍ଥାପନଦ୍ୱାରା ଭାରତର ବିଶେଷ ଭାବରେ କିଛି ପ୍ରଭାବ ପଡ଼ିଲା ନାହିଁ କିମ୍ବା ପରିବର୍ତ୍ତନ ହେଲା ନାହିଁ । କିନ୍ତୁ ଏହି ଦୀର୍ଘକାଳ ଭିତରେ ନୂତନ ଧର୍ମ ଇସଲାମ ସମ୍ବନ୍ଧରେ ଭାରତ ଅବଶ୍ୟ କିଛି ଜାଣିଥିବ । ମୁସଲମାନ ଆରବମାନେ ଆସିଲେ, ଗଲେ ଓ ମସଜିଦ-ମାନ ନିର୍ମାଣ କଲେ ଏବଂ ସେମାନେ ମଧ୍ୟ ଧର୍ମପ୍ରଚାର କଲେ ଓ ଲୋକଙ୍କୁ ଦୀକ୍ଷିତ କରାଇଲେ । ସେହି କାଳରେ କେହି ଏଥିରେ ଆପତ୍ତି ଉଠାଇଥିବାର ଜଣାଯାଏ ନାହିଁ । ହିନ୍ଦୁ ଓ ଇସଲାମ ଭିତରେ କୌଣସି ଗଣ୍ଡଗୋଳ ବା ବିବାଦ ନଥିଲା । ଏହା ଜାଣିଲେ ଆଗ୍ରହ ଜନ୍ମେ; କାରଣ ପରବର୍ତ୍ତୀ କାଳରେ ଏହି ଦୁଇ ଧର୍ମ ଭିତରେ ବିବାଦ ଓ ଗଣ୍ଡଗୋଳ ଉପୁଜିବାକୁ ଆରମ୍ଭ କଲା । କେବଳ ଯେତେବେଳେ ହସ୍ତରେ ଖଡ୍ଗ ଧାରଣ କରି ବିଜେତା ବେଶରେ ଇସଲାମ ଏକାଦଶ ଶତାବ୍ଦୀରେ ଭାରତକୁ ଆସିଲା, ସେତେବେଳେ ଭୀଷଣ ପ୍ରତିକ୍ରିୟା ସୃଷ୍ଟି ହେଲା ଏବଂ ପୁରାତନ ସହନଶୀଳତା ପରିବର୍ତ୍ତେ ଘୃଣା ଓ ବିବାଦ ଜାତ ହେଲା ।

ଗଜନୀର ମାମୁଦ ଏହି ଖଡ଼୍‌ଗ ଧାରଣ କରି ଭାରତକୁ ଆସିଥିଲେ ଏବଂ ଅନେକ ଧ୍ୱଂସ ଓ ହତ୍ୟାକାଣ୍ଡ କରିଥିଲେ । ଅଫଗାନିସ୍ଥାନର ଏକ ସହରର ନାମ ଏବେ ଗଜନୀ ରହିଛି । ଗଜନୀର ଚତୁର୍ଦ୍ଦିଗରେ ଦଶମ ଶତାବ୍ଦୀରୁ ଏକ ରାଜ୍ୟ ଗଢ଼ି ଉଠିଥିଲା । ମଧ୍ୟ ଏସିଆର ରାଜ୍ୟଗୁଡ଼ିକ ନାମକୁ ମାତ୍ର ବାଗଦାଦର ଖଲିଫାଙ୍କ ଅଧୀନରେ ଥିଲା; ମାତ୍ର ମୁଁ ତୋତେ ଆଗରୁ କହିଛି ଯେ ହାରୁନାଲ ରସିଦଙ୍କ ମୃତ୍ୟୁ ପରେ ଖଲିଫା ଦୁର୍ବଳ ହୋଇଗଲା ଏବଂ ଏକ ସମୟରେ ତାଙ୍କର ସାମ୍ରାଜ୍ୟ କେତେଗୁଡ଼ିଏ ସ୍ୱାଧୀନ ରାଜ୍ୟରେ ବିଭକ୍ତ ହୋଇଗଲା । ଏହି କାଳ କଥା ଆମେ ଏବେ ଆଲୋଚନା କରୁଛେଁ । ୯୭୫ ଖ୍ରୀ: ବେଳକୁ ଶାବକ୍ତଗୀନ ନାମକ ଜଣେ ତୁର୍କିସ୍ଥ ଦାସ ଗଜନୀ ଓ କାନ୍ଦାହାର ଚତୁର୍ଦ୍ଦିଗରେ ଅଲଗା କରି ନିଜର ଏକ ରାଜ୍ୟ ପ୍ରତିଷ୍ଠା କଲେ । ସେ ଭାରତ ମଧ୍ୟ ଆକ୍ରମଣ କରିଥିଲେ । ସେହି କାଳରେ ଜୟପାଳ ନାମକ ଲାହୋରରେ ଜଣେ ରାଜା ଥିଲେ । ଅତି ସାହସ ବାନ୍ଧି ଜୟପାଳ ଶାବକ୍ତଗୀନଙ୍କ ବିରୁଦ୍ଧରେ କାବୁଲ ଉପତ୍ୟକା ଭିତରକୁ ଯାତ୍ରା କଲେ ଏବଂ ସେଠାରେ ତାଙ୍କର ପରାଜୟ ହେଲା ।

ଶାବକ୍ତଗୀନଙ୍କ ପରେ ତାଙ୍କ ପୁତ୍ର ମାମୁଦ ଉତ୍ତରାଧିକାରୀ ହେଲେ । ସେ ଜଣେ ବିଚକ୍ଷଣ ସେନାପତି ଓ ଅଶ୍ୱାରୋହୀ ସେନାଙ୍କ ନେତା ଥିଲେ । ବର୍ଷକୁ ବର୍ଷ ସେ ଭାରତ ଆକ୍ରମଣ କଲେ, ଅତ୍ୟାଚାର ଓ ହତ୍ୟା କରାଇଲେ ଏବଂ ତାଙ୍କ ସହିତ ବିଶାଳ ସମ୍ପଦ ଓ ବହୁ ସଂଖ୍ୟକ ବନ୍ଦୀ ନେଇ ଯାଇଥିଲେ । ସେ ସର୍ବମୋଟ ୧୭ ଥର ଭାରତ ଆକ୍ରମଣ କରିଥିଲେ ଏବଂ ସେଥିଭିତରୁ ଏକମାତ୍ର କାଶ୍ମୀର ଅଭିଯାନରେ ବିଫଳ ହୋଇଥିଲେ । ଅନ୍ୟ ସବୁଥିରେ ସଫଳ ହୋଇଥିଲେ ଏବଂ ସମଗ୍ର ଉତ୍ତର-ଭାରତରେ ସେ ଏକ ଆତଙ୍କ ଜନ୍ମାଇଦେଲେ । ସେ ଦକ୍ଷିଣରେ ପାଟ୍ଟଲୀପୁତ୍ର, ମଥୁରା ଓ ସୋମନାଥ ପର୍ଯ୍ୟନ୍ତ ଯାଇଥିଲେ । କଥିତ ଅଛି ଯେ, ଥାନେଶ୍ୱରଠାରୁ ସେ ଦୁଇ ଲକ୍ଷ ବନ୍ଦୀ ଓ ବିଶାଳ ସମ୍ପଦ ନେଇ ଯାଇଥିଲେ । ସୋମନାଥରେ ହିଁ ସେ ସବୁଠାରୁ ବେଶୀ ଧନ ପାଇଥିଲେ; କାରଣ ଏହାହିଁ ସବୁଠାରୁ ବଡ଼ ମନ୍ଦିର ଥିଲା ଏବଂ କେତେ ଶତାବ୍ଦୀର ଦାନରୁ ସଞ୍ଚିତ ହୋଇଥିଲା । କଥିତ ଅଛି ଯେ କିଛି ଗୋଟାଏ ଯାଦୁକର ଘଟଣା ହୋଇଯିବ ଏବଂ ଯେଉଁ ଦେବତାଙ୍କୁ ଲୋକେ ପୂଜା କରି ଆସୁଛନ୍ତି ସେ ତାଙ୍କୁ ରକ୍ଷା କରିବେ, ଏହି ଆଶା ପୋଷଣ କରି ମାମୁଦଙ୍କ ଆଗମନରେ ହଜାର ହଜାର ଲୋକ ମନ୍ଦିର ଭିତରେ ଆଶ୍ରୟ ଗ୍ରହଣ କରିଥିଲେ; କିନ୍ତୁ ଯାଦୁକର ଘଟଣା ପ୍ରାୟ ଘଟେ ନାହିଁ, ଏହା କେବଳ ଧର୍ମବିଶ୍ୱାସୀଙ୍କ କଳ୍ପନାରେ ରହିଯାଏ । ସେ ମନ୍ଦିର ଭାଙ୍ଗି ଦିଆଗଲା; ମାମୁଦ ତାକୁ ଲୁଟ କଲେ ଏବଂ ୫୦,୦୦୦ ଲୋକ ଧ୍ୱଂସ ପାଇଗଲେ । ଯେଉଁ ଯାଦୁପାଇଁ ଲୋକେ ଅପେକ୍ଷା କରିଥିଲେ, ତାହା ଆଉ ଘଟିଲା ନାହିଁ ।

ମାମୁଦ ୧୦୩୦ ଖ୍ରୀ : ରେ ମଲେ । ସେତେବେଳେ ସମଗ୍ର ପଞ୍ଜାବ ଓ ସିନ୍ଧ୍ ତାଙ୍କ କବଳାରେ ଥିଲା । ସେ ଇସଲାମର ଜଣେ ପ୍ରଧାନ ନେତା ରୂପେ ଖ୍ୟାତ । ଭାରତରେ ଇସଲାମ ପ୍ରଚାର ଲାଗି ସେ ଆସିଥିଲେ । ଅଧିକାଂଶ ମୁସଲମାନ ତାଙ୍କୁ ପ୍ରଶଂସା କରନ୍ତି, ଅଧିକାଂଶ ହିନ୍ଦୁ ତାଙ୍କୁ ଘୃଣା କରନ୍ତି । ପ୍ରକୃତରେ ଦେଖିବାକୁ ଗଲେ ସେ ପ୍ରାୟ ଧାର୍ମିକ ନ ଥିଲେ । ଅବଶ୍ୟ ସେ ଜଣେ ମୁସଲମାନ; କିନ୍ତୁ ତାହା କେବଳ ନାଲକମେ । ସର୍ବୋପରି ସେ ଜଣେ ଯୋଦ୍ଧା ଓ ବିଚକ୍ଷଣ ସୈନିକ ଥିଲେ । ସେ ଭାରତକୁ ବିଜୟ ଓ ଲୁଣ୍ଠ କରିବାକୁ ଆସିଥିଲେ । ଦୁର୍ଭାଗ୍ୟବଶତଃ ସୈନିକମାନେ ସେହିପରି କରନ୍ତି ଏବଂ ସେ ଯେକୌଣସି ଧର୍ମାବଲମ୍ବୀ ହୋଇଥିଲେ ସୁଦ୍ଧା ଏହାହିଁ କରିଥାନ୍ତେ । ସିନ୍ଧ୍‌ର ମୁସଲମାନ ଶାସକମାନଙ୍କୁ ବି ସେ ଧମକ ଦେଇଥିଲେ ଏବଂ ସେମାନେ ବଶ୍ୟତା ସ୍ୱୀକାର କରିବାକୁ ଓ କର ଦେବାକୁ ତାଙ୍କୁ ଗୁହାରି ଦେଇଥିଲେ । ସେ ଏପରି କି ବାଗଦାଦର ଖଲିଫାଙ୍କୁ ମାରିଦେବେ ବୋଲି ଧମକ ଦେଇଥିଲେ ଏବଂ ତାଙ୍କଠାରୁ ସମରକନ୍ଦ ଦାବୀ କରିଥିଲେ । ତେଣୁ ମାମୁଦଙ୍କୁ ଜଣେ କୃତୀ ସୈନିକ ଛଡ଼ା ଅନ୍ୟ କିଛି ବୋଲି ବିଚାର କରିବା ପରି ଭୁଲ ଆମେ ଯେପରି ନ କରୁ ।

ମାମୁଦ ତାଙ୍କ ସହିତ ଗଜନୀକୁ ବହୁସଂଖ୍ୟକ ଭାରତୀୟ କାରିଗର ଓ ମିସ୍ତ୍ରୀ ନେଇଥିଲେ ଏବଂ ସେଠାରେ ଗୋଟିଏ ସୁନ୍ଦର ମସଜିଦ୍ ନିର୍ମାଣ କଲେ । ତାହାକୁ ସେ "ସେଲେଷ୍ଟିଆଲ ବ୍ରାଇଡ" (Celestial Bride) ବା ସ୍ୱର୍ଗବଧୂ ବୋଲି ନାମ ଦେଇଥିଲେ । ସେ ଭାରି ଉଦ୍ୟାନପ୍ରିୟ ଥିଲେ ।

ମଥୁରା ବିଷୟରେ ମାମୁଦ ଯତ୍‌ସାମାନ୍ୟ ଲେଖି ଯାଇଛନ୍ତି । ସେଥିରୁ ଏହା ଉପରି ଏକ ପ୍ରଧାନ ସହର ଥିଲା ଜଣାପଡ଼େ । ମାମୁଦ ଗଜନୀଠାରେ ଥିବା ତାଙ୍କ ଶାସକଙ୍କ ପାଖକୁ ଲେଖିଥିଲେ "ଏଠି (ମଥୁରାରେ) ଧର୍ମାବଲମ୍ବୀମାନଙ୍କର ବିଶ୍ୱାସ ପରି ଦୃଢ଼ ହଜାର ହଜାର ପ୍ରାସାଦରି ରହିଛି, ଲକ୍ଷ ଲକ୍ଷ ମୁଦ୍ରା ବ୍ୟୟ ବ୍ୟତିରେକେ ସହରଟି ଏପରି ଅବସ୍ଥାକୁ ଆସିବା ସମ୍ଭବପର ହୋଇ ନ ଥାନ୍ତା କିମ୍ବା ଦୁଇ ଶହ ବର୍ଷ ଭିତରେ ଏପରି ଆଉ ଏକ ନିର୍ମିତ ବି ହୋଇପାରନ୍ତା ନାହିଁ ।"

ଫିର୍ଦ୍ଦୁଶୀଙ୍କ ବିବରଣୀରୁ ମାମୁଦଙ୍କ ଏହି ମଥୁରାବର୍ଣ୍ଣନା ଆମେ ପାଠ କରୁ । ଫିର୍ଦ୍ଦୁଶୀ ଜଣେ ବିଖ୍ୟାତ ଫାର୍ସୀ କବି । ସେ ମାମୁଦଙ୍କ ଅମଳରେ ବାସ କରୁଥିଲେ । ମୋର ମନେହୁଏ, ଗତବର୍ଷ ମୋର ଏକ ଚିଠିରେ ମୁଁ ତାଙ୍କ ନାମ ଓ ତାଙ୍କର ପ୍ରଧାନ ଦାନ 'ସାହାନାମା' ବିଷୟରେ ଲେଖିଛି । ଏକ କାହାଣୀ ପ୍ରଚଳିତ ଅଛି ଯେ, ମାମୁଦଙ୍କ ଅନୁରୋଧରେ 'ସାହାନାମା' ଲିଖିତ ହୋଇଥିଲା । ପ୍ରତ୍ୟେକ କାବ୍ୟ ଲାଗି ଏକ ସୁବର୍ଣ୍ଣ

ଦୀନାର (ମୁଦ୍ରା) ଦେବା ନିମନ୍ତେ ମାମୁଦ ପ୍ରତିଶ୍ରୁତି ଦେଇଥିଲେ । କିନ୍ତୁ ଫିର୍ଦ୍ଦୁସୀ ଆପାତତଃ ସଂକ୍ଷେପ ବର୍ଣ୍ଣନାରେ ବିଶ୍ୱାସ କରୁ ନ ଥିଲେ । ସେ ଖୁବ୍ ବିସ୍ତୃତ ଭାବରେ ଲେଖିଥିଲେ ଏବଂ ସେ ଯେତେବେଳେ ମାମୁଦଙ୍କ ସମକ୍ଷରେ ତାଙ୍କର ହଜାର ହଜାର କାବ୍ୟ ନେଇ ହାଜର କଲେ, ସେତେବେଳେ ତାଙ୍କର କାର୍ଯ୍ୟ ନିମନ୍ତେ ତାଙ୍କୁ ପ୍ରଶଂସା କରି ଯାଇଥିଲା; କିନ୍ତୁ ମାମୁଦଙ୍କୁ ନିଜର ପ୍ରତିଶ୍ରୁତି ଲାଗି ଧନ ଦେବାକୁ ପଡ଼ିବାରୁ ସେ ବଡ଼ ଅନୁତାପ କଲେ । କିଛିଟା କମ୍ ଦେବା ନିମନ୍ତେ ସେ ଚେଷ୍ଟା କଲେ ଏବଂ ଫିର୍ଦ୍ଦୁସୀ ଅତ୍ୟନ୍ତ ରାଗିଗଲେ ଓ କିଛି ଗ୍ରହଣ କରିବାକୁ ଅସ୍ୱୀକାର କଲେ ।

ହର୍ଷଙ୍କଠାରୁ ମାମୁଦ ପର୍ଯ୍ୟନ୍ତ ଆମେ ବହୁଦୂର ଆଗେଇ ଆସିଛେ ଏବଂ କେତେକ ପଂକ୍ତି ଭିତରେ ୩୫୦ ବର୍ଷ ବା ଅଧିକ କାଳର ଭାରତ ଇତିହାସ ଆଲୋଚନା କଲେ ମୋର ମନେହୁଏ, ଏହି ଦୀର୍ଘକାଳ ବିଷୟରେ ଅନେକ ଆଗ୍ରହପ୍ରଦ ବିଷୟ କୁହାଯାଇପାରେ । କିନ୍ତୁ ମୁଁ ଏ ସମ୍ବନ୍ଧରେ ଅନଭିଜ୍ଞ ଏବଂ ତେଣୁ ଏ ବିଷୟରେ ନୀରବ ରହିବା ମୋ ପକ୍ଷରେ ନିରାପଦ । ଉତ୍ତର-ଭାରତର ଅନେକ ରାଜା ଓ ଶାସକ, ଯେଉଁମାନେ ପରସ୍ପର ସହିତ ଲଢ଼ାଇ କରୁଥିଲେ ଏବଂ ବେଳେ ବେଳେ ବିଶାଳ ରାଜ୍ୟ ମଧ୍ୟ ସ୍ଥାପନ କରୁଥିଲେ, ସେମାନଙ୍କ ସମ୍ବନ୍ଧରେ କିଛି କହିପାରିଥାନ୍ତି । ପାଞ୍ଚାଳ ରାଜ୍ୟ କନୌଜ ପରି ପ୍ରଧାନ ସହର । କିପରି କାଶ୍ମୀରର ଶାସକମାନେ ଏହାକୁ ପରାସ୍ତ କରି କ୍ଷଣକାଳ ନିମନ୍ତେ ନିଜ ହାତରେ ରଖିଲେ ଏବଂ ତାପରେ ବଙ୍ଗଳାର ରାଜାଙ୍କଦ୍ୱାରା ଦଖଲ ହେଲା ଏବଂ ପରେ ଦକ୍ଷିଣରୁ ରାଷ୍ଟ୍ରକୂଟମାନେ ଆସି ପହଞ୍ଚିଲେ—ଏହିସବୁ କଥା କହି ପାରିଥାନ୍ତି । କିନ୍ତୁ ଏ ବିବରଣୀ କିଛି ଉଦ୍ଦେଶ୍ୟ ସଫଳ କରିବ ନାହିଁ ଏବଂ ତୋ ମନରେ କେବଳ ଗୋଳମାଳ ସୃଷ୍ଟି କରିବ ।

ଆମେ ଏବେ ଭାରତ ଇତିହାସର ଏକ ଦୀର୍ଘ ଅଧ୍ୟାୟ ଶେଷରେ ଆସି ପହଞ୍ଚିଛେ ଏବଂ ନୂତନ ଗୋଟିଏ ଆରମ୍ଭ ହୋଇଛି । ଇତିହାସକୁ ଭାଗ ଭାଗ କରିବା କଷ୍ଟକର ଏବଂ ଅନେକ ସମୟରେ ଅନୁଚିତ ମଧ୍ୟ । ଏହା ଏକ ପ୍ରବାହିତ ନଦୀ ପରି । ଏହା ଗତିକରି ଚାଲିଯାଏ; ତଥାପି ଏହା ବଦଳେ ଏବଂ ବେଳେ ବେଳେ ଏକ ପ୍ରବାହ ଶେଷ ହୋଇ ଆଉ ଗୋଟିଏ ଆରମ୍ଭ ହେବାର ଦେଖୁଁ । ଏପରି ପରିବର୍ତ୍ତନ ହଠାତ୍ ହୁଏନା; ପ୍ରତ୍ୟେକଟି ଅପରଟି ଯୋଡ଼ାଇ ହୋଇଯାଏ । ତେଣୁ ଭାରତ ସମ୍ପର୍କରେ ଆମେ ଏକ ଅପୂର୍ବ ଇତିହାସ ନାଟକର ଗୋଟିଏ ଅଙ୍କ ଶେଷ କରିଛେ । ଯାହାକୁ ହିନ୍ଦୁ କାଳ କହନ୍ତି, ତାହା କ୍ରମେ ଶେଷ ହୋଇ ଆସୁଛି । ହଜାର ହଜାର ବର୍ଷ ହେଲା ଯେଉଁ ଭାରତୀୟ ଆର୍ଯ୍ୟସଂସ୍କୃତି ବୃଦ୍ଧି ପାଇଥିଲା, ତାଙ୍କୁ ଏବେ ଏକ ନୂତନ ଆଗନ୍ତୁକ ବିରୁଦ୍ଧରେ ଲଢ଼ାଇ କରିବାକୁ ପଡ଼ିଲା । କିନ୍ତୁ ମନେରଖ, ଏହି ପରିବର୍ତ୍ତନ ହଠାତ୍ ହୋଇ ନ ଥିଲା; ଏହା ଧୀର

ନିଷ୍ଠାରେ ଘଟିଥିଲା । ମାମୁଦଙ୍କ ସହିତ ଇସଲାମ୍ ଉତ୍ତରକୁ ଆସିଲା । ଦୀର୍ଘକାଳ ପର୍ଯ୍ୟନ୍ତ ଇସଲାମ ଅଭିଯାନ ଦକ୍ଷିଣକୁ ସ୍ପର୍ଶ କରି ନ ଥିଲା ଏବଂ ଏପରି କି ବଙ୍ଗଳା ମଧ୍ୟ ପ୍ରାୟ ୨୦୦ ବର୍ଷରୁ ଅଧିକ କାଳ ପର୍ଯ୍ୟନ୍ତ ଏଥିରୁ ମୁକ୍ତ ଥିଲା । ଉତ୍ତରରେ ଚିତୋର ଅଛି । ଏହା ଅସାଧାରଣ ବୀରତ୍ୱ ଯୋଗୁ ପରବର୍ତ୍ତୀ ଇତିହାସରେ ପ୍ରସିଦ୍ଧି ଲାଭ କରିଥିଲା । ରାଜପୁତ ଜାତିର ଏହା କେନ୍ଦ୍ରସ୍ଥଳୀ ଥିଲା; କିନ୍ତୁ ନିଶ୍ଚିତ ଓ ଅପରିମେୟ ଭାବରେ ମୁସଲମାନ ବିଜୟସ୍ରୋତ ବିସ୍ତାର ଲଭିଲା ଏବଂ କୌଣସି ବ୍ୟକ୍ତିବିଶେଷର ସାହସିକ ଉଦ୍ୟମ ତାକୁ ରୋକିପାରିଲା ନାହିଁ । ଏଥିରେ ସନ୍ଦେହ ନାହିଁ ଯେ ପୁରାତନ ଭାରତୀୟ ଆର୍ଯ୍ୟକାଳ ଭାରତ ପତନ ଅବସ୍ଥାରେ ଥିଲା ।

ବିଦେଶୀ ଓ ଆକ୍ରମଣକାରୀଙ୍କୁ ରୋକିବାକୁ ଅସମର୍ଥ ଥିବାରୁ ଭାରତୀୟ ଆର୍ଯ୍ୟସଂସ୍କୃତି ନିଜକୁ ରକ୍ଷାକରିବା ନୀତି ଗ୍ରହଣ କଲା । ଏହା ନିଜକୁ ରକ୍ଷା କରିବାର ଉଦ୍ୟମ କରି ଏକ ନିର୍ଦ୍ଦିଷ୍ଟ ଗଣ୍ଡି ମଧ୍ୟରେ ଆବଦ୍ଧ ରହିଲା । ସେତେବେଳ ପର୍ଯ୍ୟନ୍ତ ଜାତିପ୍ରଥା ଟିକିଏ କୋହଳ ଥିଲା; କିନ୍ତୁ ଏହା ପରେ ଏହା ଅଧିକ କଠୋର ଓ ନିର୍ଦ୍ଦିଷ୍ଟ ହୋଇଗଲେ । ଏହା ନାରୀ ଜାତିର ସ୍ୱାଧୀନତା ଖର୍ବ କରିଦେଲା । ଏପରି କି ଗ୍ରାମପଞ୍ଚାୟତ-ଗୁଡ଼ିକର ବି ଅନେକ ପରିବର୍ତ୍ତନ ହେଲା । ଏହା ଖରାପ ଆଡ଼କୁ ଗଲା; ତଥାପି ଏକ ଅଧିକ ଶକ୍ତିଶାଳୀ ଲୋକଙ୍କ ଆଗରେ ପତନ ଘଟିଲେ ସୁଦ୍ଧା ଏହା ସେମାନଙ୍କ ଉପରେ ପ୍ରଭାବ ପକାଇ ନିଜର ରୀତି ଅନୁସାରେ ଗଢ଼ିବା ଲାଗି ଚେଷ୍ଟା କରିଥିଲା । କିନ୍ତୁ ଏହା ଭିତରେ ମିଶାଇ ନେବାର ଓ ଗ୍ରହଣ କରିବାର ଏପରି କ୍ଷମତା ଥିଲା ଯେ ବିଜେତାମାନଙ୍କର ସାଂସ୍କୃତିକ ଗୁଣ ମଧ୍ୟ ଅନେକ ପରିମାଣରେ ନିଜେ ଗ୍ରହଣ କରିଗଲା । ତୋର ମନେରଖିବା ଦରକାର ଯେ ଭାରତୀୟ ଆର୍ଯ୍ୟସଭ୍ୟତା ଓ ଉଚ୍ଚ ସଭ୍ୟ ଆରବଙ୍କ ଭିତରେ ବିବାଦ ନ ଥିଲା । ପ୍ରକୃତ ବିବାଦ ଥିଲା ସଭ୍ୟ ଅଥଚ ପତନୋନ୍ମୁଖୀ ଭାରତ ଓ ମୁସଲମାନ ଧର୍ମରେ ନିକଟରେ ଦୀକ୍ଷିତ ହୋଇଥିବା ମଧ୍ୟ ଏସିଆର ଅର୍ଦ୍ଧସଭ୍ୟ ଓ ବେଳେବେଳେ ଯାଯାବର ଲୋକଙ୍କ ମଧ୍ୟରେ । ଦୁର୍ଭାଗ୍ୟବଶତଃ ଭାରତ ଇସଲାମର ଏହି ସଭ୍ୟତାର ଅଭାବ ଓ ମାମୁଦଙ୍କ ଆକ୍ରମଣର ଆତଙ୍କରେ ସମ୍ପୃକ୍ତ ହେଲା ଏବଂ ତିକ୍ତତା ବୃଦ୍ଧି ପାଇଲା ।

## ୫୭ । ଇଉରୋପ ରାଜ୍ୟସବୁ ଗଠିତ ହେଲା

ଜୁନ ୩, ୧୯୩୨

ଇନ୍ଦୁ ! ଆମେ ଇଉରୋପକୁ ଯିବା କି ? ଆମେ ଏଥି ପୂର୍ବରୁ ୟୁରୋପ ବିଷୟରେ ଆଲୋଚନା କଲାବେଳେ ଏହା ବଡ଼ ଖରାପ ଅବସ୍ଥାରେ ଥିଲା । ରୋମର ପତନ ବୋଇଲେ ପଶ୍ଚିମ-ୟୁରୋପରେ ସଭ୍ୟତାର ବି ପତନ ବୁଝାଏ । ପୂର୍ବ ୟୁରୋପରେ କେବଳ

କନ୍‌ଷ୍ଟାଣ୍ଟିନୋପଲ ସରକାର ଅଧୀନରେ ଥିବା ଅଞ୍ଚଳ ବ୍ୟତୀତ ଅନ୍ୟତ୍ର ଅବସ୍ଥା ଅତି ଶୋଚନୀୟ ଥିଲା । ହୁନ ଆଦିଲ ମହାଦେଶର ଅନେକ ଅଞ୍ଚଳ ପୋଡ଼ି ଧ୍ୱଂସ କରିଥିଲେ; କିନ୍ତୁ ପୂର୍ବୀୟ ରୋମାନ ସାମ୍ରାଜ୍ୟର ପତନ ଘଟିଥିଲେ ସୁଦ୍ଧା ଏହା ସହ୍ୟ କରୁଥିଲା ଏବଂ ବେଳେ ବେଳେ ଶକ୍ତିର ପରାକାଷ୍ଠା ଦେଖାଉଥିଲା ।

ପଶ୍ଚିମରେ ରୋମର ପତନ ପରେ ଯେଉଁ ହଲଚଲ ହୋଇଗଲା, ତାପରେ ଏକ ନୂତନ ପ୍ରକାରେ ଅବସ୍ଥା ଶାନ୍ତ ହେବାକୁ ଲାଗିଲା । ଅବସ୍ଥା ସ୍ଥିର ହେବା ନିମନ୍ତେ ଦୀର୍ଘକାଳ ଲାଗିଲେ; କିନ୍ତୁ ନୂତନ ଧରଣର ବୃଦ୍ଧି କିପରି ହେଲା ତାହା ପରିଷ୍କାର ଜଣାପଡ଼େ । ଖ୍ରୀଷ୍ଟଧର୍ମ ବିସ୍ତାର ଲଭିଲା, ବେଳେ ବେଳେ ଏହାର ସାଧୁ ଓ ଶାନ୍ତିପ୍ରିୟ ଲୋକମାନେ ଏଥିରେ ସାହାଯ୍ୟ କଲେ, କେତେବେଳେ ବା ଯୁଦ୍ଧପ୍ରେମୀ ରାଜାଙ୍କ ତରବାରି ବଳରେ ଏହା ପ୍ରସାର ଲାଭକଲା । ନୂତନ ରାଜ୍ୟସବୁର ଉଦୟ ହେଲା । ଫ୍ରାନ୍‌ସ, ବେଲ୍‌ଜିଅମ ଓ ଜର୍ମାନୀର ଏକାଂଶରେ ଫ୍ରାଙ୍କମାନେ ( ତୁ ଏହାଙ୍କୁ ଫରାସୀ ବୋଲି ଭୁଲ ବୁଝିବୁନାହିଁ ) କ୍ଲୋଭିସ୍ ନାମକ ଏକ ଶାସକଙ୍କ ଅଧୀନରେ ରାଜ୍ୟ ଗଠନ କଲେ । ସେମାନେ ୪୮୧ରୁ ୫୧୧ ଖ୍ରୀ: ପର୍ଯ୍ୟନ୍ତ ଶାସନ କରିଥିଲେ । କ୍ଲୋଭିସଙ୍କ ପିତାମହଙ୍କ ନାମାନୁସାରେ ଏହାକୁ ମେରୋଭିଞ୍ଜିଆନ ବଂଶ ବୋଲି କହନ୍ତି । କିନ୍ତୁ ଏହି ରାଜାମାନେ ତାଙ୍କ ନିଜ କର୍ମଚାରୀ ରାଜପ୍ରାସାଦର ପୁରନାୟକ (ମେୟର) ମାନଙ୍କଦ୍ୱାରା ଶାସିତ ହୁଅନ୍ତି । ଏହି ମେୟରମାନେ ସର୍ବଶକ୍ତିମାନ୍ ଏବଂ ବଂଶାନୁକ୍ରମେ ମେୟର ହେଲେ । ସେମାନେ ହିଁ ପ୍ରକୃତ ଶାସକ ଥିଲେ, ତଥାକଥିତ ରାଜାମାନେ କେବଳ ପିତୁଳା ହୋଇ ରହୁଥିଲେ ।

୭୩୨ ଖ୍ରୀ: ରେ ଫ୍ରାନ୍‌ସର ଟୁରସ୍ ମହାଯୁଦ୍ଧରେ ଚାର୍ଲସ ମାର୍ଟେଲ ନାମକ ରାଜପ୍ରାସାଦର ଜଣେ ମେୟର ସାରସେନମାନଙ୍କୁ ପରାସ୍ତ କରିଥିଲେ । ଏହି ବିଜୟଦ୍ୱାରା ସେ ସାରସେନଙ୍କ ବିଜୟ ତରଙ୍ଗକୁ ରୋକିଦେଲେ ଏବଂ ଖ୍ରୀଷ୍ଟଧର୍ମ ଦୃଷ୍ଟିରେ ଇଉରୋପକୁ ରକ୍ଷା କଲେ । ଏଥିଯୋଗୁଁ ତାଙ୍କର ମର୍ଯ୍ୟାଦା ଓ ଖ୍ୟାତି ଖୁବ୍ ବଢ଼ିଗଲା । ଶତ୍ରୁହାତରୁ ଖ୍ରୀଷ୍ଟରାଜ୍ୟର ରକ୍ଷକ ବୋଲି ଲୋକେ ତାଙ୍କୁ ମଣିଲେ । ସେତେବେଳେ ରୋମର ପୋପ-ମାନଙ୍କର କନଷ୍ଟାଣ୍ଟିନୋପଲ ସମ୍ରାଟଙ୍କ ସହିତ ଭଲ ପଡ଼ୁ ନ ଥିଲା । ତେଣୁ ସେମାନେ ସାହାଯ୍ୟ ପାଇଁ ଚାର୍ଲସ ମାର୍ଟେଲଙ୍କ ଆଡ଼କୁ ଦୃଷ୍ଟି ଫେରାଇଥିଲେ । ତାଙ୍କର ପୁତ୍ର ପେପିନ ନିଜକୁ ରାଜା ନାମ ଦେବାକୁ ସ୍ଥିର କଲେ ଏବଂ ସେଠାରେ ଯେଉଁ ପୁତୁଳୀ ଥିଲେ ତାଙ୍କୁ ତଡ଼ିଦେଲେ । ପୋପ ଅବଶ୍ୟ ଆନନ୍ଦରେ ସମ୍ମତି ପ୍ରଦାନ କଲେ ।

ପେପିନଙ୍କ ପୁତ୍ରଙ୍କ ନାମ ଚାର୍ଲମିନ । ପୋପ ପୁନର୍ବାର ବିପଦରେ ପଡ଼ିଥିଲେ ଏବଂ ତାଙ୍କୁ ରକ୍ଷାକରିବା ନିମନ୍ତେ ଚାର୍ଲମିନଙ୍କୁ ନିମନ୍ତ୍ରଣ କଲେ । ଚାର୍ଲସ ତାହା କଲେ ଓ ତାଙ୍କ ଶତ୍ରୁଙ୍କୁ ତଡ଼ିଦେଲେ ଏବଂ ୮୦୦ ଖ୍ରୀଷ୍ଟାବ୍ଦର ବଡ଼ଦିନରେ ଗୀର୍ଜାରେ ମହା-

ଉତ୍ସବ ହେଲା । ପୋପ ଶାର୍ଲମେନଙ୍କୁ ରୋମ୍ ସମ୍ରାଟ୍ ରୂପେ ମୁକୁଟ ମଣ୍ଡିତ କଲେ । ସେହି ଦିନଠାରୁ ପବିତ୍ର ରୋମାନ୍ ସାମ୍ରାଜ୍ୟ ଆରମ୍ଭ ହେଲା । ଏ ସମ୍ବନ୍ଧରେ ପୂର୍ବରୁ ଥରେ ମୁଁ ତୋତେ ଲେଖିଛି ।

ଏହା ଏକ ବିଚିତ୍ର ସାମ୍ରାଜ୍ୟ ଥିଲା ଏବଂ ଏହାର ପରବର୍ତ୍ତୀ ଇତିହାସ ଆହୁରି ଅଦ୍ଭୁତ । ଏଲିସ୍ ଇନ୍ ଦି ଓ୍ୱାଣ୍ଡରଲାଣ୍ଡ * ଚେସାୟାର ବିରାଡ଼ି ପରି ଏହା କ୍ରମେ ଲୋପ ପାଇଲା, ଶରୀରର କୌଣସି ଚିହ୍ନ ରହିଲା ନାହିଁ, କେବଳ ସ୍ମିତହାସ୍ୟ ମାତ୍ର ରହିଥିଲା; କିନ୍ତୁ ଏହା ଘଟିବାକୁ ବାକି ରହିଛି ଏବଂ ଭବିଷ୍ୟତ ଭିତରକୁ ଆମେ ମାଡ଼ିଯିବା ଦରକାର ନାହିଁ ।

ଏହି ପବିତ୍ର ରୋମାନ ସାମ୍ରାଜ୍ୟ ପୁରାତନ ପଶ୍ଚିମ ରୋମାନ ସାମ୍ରାଜ୍ୟର କ୍ରମଧାରା ନୁହେଁ । ଏହା ତହିଁରୁ ସ୍ୱତନ୍ତ୍ର । ଏହା ନିଜକୁ ସାମ୍ରାଜ୍ୟ ବୋଲି ବିଚାର କଲା, ପୃଥିବୀରେ ପ୍ରତ୍ୟେକ ଲୋକଙ୍କ ଉପରେ ସମ୍ଭବତଃ କେବଳ ପୋପଙ୍କ ଛଡ଼ା—ସମ୍ରାଟ୍ ସର୍ବେସର୍ବା ବୋଲି ବିଚାର କଲା । ପୋପ ବଡ଼ କି ସମ୍ରାଟ ବଡ଼, ଏହା ଯେନ ଅନେକ ଶତାବ୍ଦୀ ପର୍ଯ୍ୟନ୍ତ ପୋପ ଓ ସମ୍ରାଟଙ୍କ ଭିତରେ ବିବାଦ ଲାଗିଥିଲା । କିନ୍ତୁ ଏହା ମଧ୍ୟ ଅନେକ ଦିନ ପରେ ହୋଇଥିଲା । ମଜାର କଥା ହେଉଛି, ଏହି ନୂତନ ସାମ୍ରାଜ୍ୟ ସର୍ବଶ୍ରେଷ୍ଠ ଥିବାବେଳେ ଏହା ପୁରାତନ ରୋମାନ୍ ସାମ୍ରାଜ୍ୟର ପୁନର୍ଜାଗରଣ ବୋଲି ମନେ କରାଯାଉଥିଲା ଏବଂ ରୋମ ହିଁ ପୃଥିବୀର ସାମ୍ରାଜ୍ଞୀ ବୋଲି କୁହାଯାଉଥିଲା । କିନ୍ତୁ ଏହା ସହିତ ଖ୍ରୀଷ୍ଟଧର୍ମ ଓ ଖ୍ରୀଷ୍ଟରାଜ୍ୟ ଏହି ନୂତନ ଧାରଣା ଯୋଗ ହୋଇଗଲା । ତେଣୁ ଏ ସାମ୍ରାଜ୍ୟ ହେଲା "ପବିତ୍ର" । ସମ୍ରାଟ୍ ପୃଥିବୀରେ ଭଗବାନଙ୍କର ଏକପ୍ରକାର ପ୍ରତିନିଧି ବୋଲି ଧରାଯାଉଥିଲା ଏବଂ ପୋପ ମଧ୍ୟ ସେଇଆ । ଜଣେ ରାଜନୀତିକ ବ୍ୟାପାର ବୁଝୁଥିଲା ଏବଂ ଆଉ ଜଣେ ଧର୍ମ ସମ୍ବନ୍ଧୀୟ ବ୍ୟାପାର ବୁଝୁଥିଲା । ଅନ୍ତତଃ ଏହି ଧାରଣା ଥିଲା ଏବଂ ମୋର ମନେ ହୁଏ, ଏହିଥିରୁ ହିଁ ଇଉରୋପର ରାଜାମାନଙ୍କ ଐଶ୍ୱରିକ ଅଧିକାର (Divine right) ଧାରଣା ବାହାରିଲା । ସମ୍ରାଟ୍ ଧର୍ମରକ୍ଷକ (Defender of Faith) ଥିଲେ । ତୁ ଜାଣିଲେ ବଡ଼ ମଜା ଲାଗିବ ଯେ ଇଂରେଜ ରାଜା ଆଜି ସୁଦ୍ଧା ନିଜକୁ ଧର୍ମରକ୍ଷକ ବୋଲି କହନ୍ତି । ଖଲିଫା ବା ଖାଲିଫାମାନଙ୍କୁ ବି ଧର୍ମରକ୍ଷକ କୁହା ଯାଉଥିଲା । ତାଙ୍କ ସହିତ ଏହି ସମ୍ରାଟମାନଙ୍କୁ ତୁଳନା କର । ଆରମ୍ଭରେ ପ୍ରକୃତରେ ଖଲିଫା ଧର୍ମଯାଜକ ଓ ସମ୍ରାଟ ଉଭୟ ଥିଲେ । ଆମେ ଦେଖିବା, ପରେ ସେ କେବଳ ଗୋରୁମୁଣ୍ଡ ଥାପିଲା ପରି ରହିଲେ ।

---

* ଏହା ଇଂରେଜୀ ଭାଷାରେ ପିଲାଙ୍କ ପାଇଁ ଏକ ବଡ଼ ବହି । ଏଥିରେ ଏଲିସ୍ ନାମକ ଏକ ବାଳିକାର ଆଶ୍ଚର୍ଯ୍ୟମୟ ଜଗତରେ ସ୍ୱପ୍ନଯାତ୍ରାର ବର୍ଣ୍ଣନା ରହିଛି ।

ଅବଶ୍ୟ କନ୍‌ଷ୍ଟାଣ୍ଟିନୋପଲର ସମ୍ରାଟମାନେ ପଶ୍ଚିମରେ ନୂତନ ଜାଗ୍ରତ "ପବିତ୍ର ରୋମାନ୍ ସାମ୍ରାଜ୍ୟ"କୁ ଆଦୌ ପସନ୍ଦ କରୁ ନ ଥିଲେ । ଶାର୍ଲମେନ ସିଂହାସନ ଆରୋହଣ କଲାବେଳେ କନ୍‌ଷ୍ଟାଣ୍ଟିନୋପଲରେ ଇରେନ ନାମକ ଜଣେ ନାରୀ ନିଜକୁ ସାମ୍ରାଜ୍ଞୀ ବୋଲି ଘୋଷଣା କରିଥିଲେ । ଏହି ନାରୀ ସାମ୍ରାଜ୍ଞୀ ହେବା ପାଇଁ ଆପଣା ପୁଅକୁ ହତ୍ୟା କରିଥିଲେ ଏବଂ ତାଙ୍କ ଅମଳରେ ରାଜ୍ୟ ଅବସ୍ଥା ବଡ଼ ଖରାପ ଥିଲା । ଏହି କାରଣରୁ କନ୍‌ଷ୍ଟାଣ୍ଟିନୋପଲରୁ ବିଚ୍ଛିନ୍ନ ହୋଇ ପୋପ ଶାର୍ଲମେନଙ୍କୁ ମୁକୁଟ ପିନ୍ଧାଇବାର ସାହସ କରିଥିଲେ ।

ଶାର୍ଲମେନ ଏବେ ପାଶ୍ଚାତ୍ୟ ଖ୍ରୀଷ୍ଟରାଜ୍ୟର ମୁଖିଆ, ପୃଥିବୀରେ ଭଗବାନଙ୍କ ପ୍ରତିନିଧି ଓ ପବିତ୍ର ସାମ୍ରାଜ୍ୟର ସମ୍ରାଟ୍ ହେଲେ । ଏହି ବାକ୍ୟଗୁଡ଼ିକ କପରି ଆଡ଼ମ୍ବରପୂର୍ଣ୍ଣ ଶୁଣାଯାଉଛି । ମାତ୍ର ଲୋକଙ୍କୁ ଠକି ଓ ଭେଳକି ଦେଖାଇ ସେମାନେ ନିଜର ଉଦ୍ଦେଶ୍ୟ ହାସଲ କରନ୍ତି । କର୍ତ୍ତୃପକ୍ଷ ନିଜର ସୁବିଧା ନିମନ୍ତେ ଭଗବାନ ଓ ଧର୍ମକୁ ଆଣି ଅନେକ ସମୟରେ ଅନ୍ୟମାନଙ୍କୁ ବୋକା କରିବାର ଚେଷ୍ଟା କରନ୍ତି ଏବଂ ନିଜର କ୍ଷମତା ବଢ଼ାନ୍ତି । ରାଜା, ସମ୍ରାଟ, ଧର୍ମାଗୁରୁ ସାଧାରଣ ଲୋକ ପକ୍ଷରେ ଦେବତା ପରି ସାଧାରଣ ଜୀବନରୁ ବହୁଦୂରସ୍ଥ ଅସ୍ପଷ୍ଟ ଓ ଅପାର ଲୋକ ପରି ରହନ୍ତି । ଏହି ରହସ୍ୟ ଯୋଗୁଁ ସେ ତାଙ୍କୁ ଭୟ କରେ । ରାଜସଭାର ବିସ୍ତୃତ ରୀତି ନିୟମ, ଶିଷ୍ଟାଚାର ଓ ଉତ୍ସବ ସହିତ ମନ୍ଦିର ବା ଗିର୍ଜାର ପୂଜା ଉତ୍ସବ ତୁଳନା କଲେ ସାମଞ୍ଜସ୍ୟ ଦେଖାଯାଏ । ଏଠାରେ ସେହି ଏକପ୍ରକାର ମୁଣ୍ଡ ନୁଆଁଇବା ଓ ଭୂମିସାତ୍ ଦଣ୍ଡବତ ରହିଛି, ଯାହାକୁ ଚୀନାମାନେ କାଓଟାଉଙ୍ଗ ବୋଲି କହନ୍ତି । ବାଲ୍ୟକାଳରୁ କପରି କର୍ତ୍ତୃତ୍ୱର ପୂଜା କରିବାକୁ ହେବ, ଏହା ନାନା ପ୍ରକାରେ ଆମକୁ ଶିକ୍ଷା ଦିଆଯାଏ । ଏହା ପ୍ରେମ ନୁହେଁ, ଭୟର ସେବା ।

ଶାର୍ଲମେନ ବାଗଦାଦର ହାରୁନାଲ ରସିଦଙ୍କର ସମସାମୟିକ ଥିଲେ । ସେ ତାଙ୍କ ସହିତ ଚିଠିପତ୍ର ଚଳାଉଥିଲେ ଏବଂ ପ୍ରକୃତରେ ପୂର୍ବୀୟ ରୋମାନ୍ ସାମ୍ରାଜ୍ୟ ତଥା ସ୍ପେନରେ ସାରାସେନମାନଙ୍କ ସହିତ ଯୁଦ୍ଧ କରିବାକୁ ସେ ଦୁହିଁଙ୍କ ଭିତରେ ମିଳନ ପ୍ରସ୍ତାବ କରିଥିଲେ. ଏହା ଲକ୍ଷ୍ୟ କରିବାର କଥା । ଏହି ପ୍ରସ୍ତାବରେ କିଛି ହୋଇଥିଲା ପରି ମନେ ହୁଏନା; ତଥାପି ରାଜା ଓ ରାଜନୀତିଜ୍ଞମାନଙ୍କର ମନର ଗତି ବିଷୟରେ ଏଥିରୁ ଅନେକ କଥା ପ୍ରକାଶ ପାଏ । ଥରେ କଳ୍ପନା କର, "ପବିତ୍ର ସମ୍ରାଟ୍" ଖ୍ରୀଷ୍ଟରାଜ୍ୟର ମୁଖିଆ ଖ୍ରୀଷ୍ଟିୟାନ ଶକ୍ତି ଓ ଏକ ଆରବଶକ୍ତିର ବିରୁଦ୍ଧରେ ବାଗଦାଦର ଖଲିଫାଙ୍କ ସହିତ ହାତ ମିଳାଉଛନ୍ତି । ତୋର ମନେଥିବ, ସ୍ପେନର ସାରସେନ୍‌ଗଣ ବାଗଦାଦର ଆବାସୀ ଖଲିଫାମାନଙ୍କୁ ସ୍ୱୀକାର କରିବାକୁ ମନା କରିଥିଲେ । ସେମାନେ ସ୍ୱାଧୀନ ହୋଇଥିଲେ ଏବଂ ବାଗଦାଦର ତାଙ୍କ ବିରୁଦ୍ଧରେ ଅଭିଯୋଗ ଥିଲା । କିନ୍ତୁ ଉଭୟେ ବହୁଦୂରରେ ଥିବାରୁ ଦୁହିଁଙ୍କ ଭିତରେ

ଲଢ଼ାଇ ହୋଇପାରୁ ନ ଥିଲା । କନ୍‌ଷ୍ଟାଣ୍ଟିନୋପଲ ଓ ଗ୍ସର୍ଲମିନ ମଧ୍ୟରେ ବିଶେଷ ପ୍ରୀତିଭାବ ନ ଥିଲା । ଏଠି ମଧ୍ୟ ଦୂରତା ଯୋଗୁଁ ପ୍ରକୃତ ଲଢ଼ାଇ ହେବାରେ ବାଧା ପଡ଼ୁଥିଲା । ଯାହାହେଉ ଖ୍ରୀଷ୍ଟିୟାନ ଓ ଆରବ ଏକତ୍ର ମିଳିତ ହୋଇ ଆଉ ଏକ ଖ୍ରୀଷ୍ଟୀୟ ଓ ଆରବ ଶକ୍ତି ସହିତ ଯୁଦ୍ଧ କରିବାର ପ୍ରସ୍ତାବ କରାଯାଇଥିଲା । ରାଜାମାନଙ୍କର ମନ ଭିତରେ ପ୍ରକୃତ ମତଲବ ଥିଲା କ୍ଷମତା, ଅଭିମାନ, କର୍ତ୍ତୃତ୍ୱ ଓ ଧନ ଲାଭ କରିବା । ଧର୍ମ କେବଳ ଏହାର ଆବରଣ ମାତ୍ର ହୋଇ ରହିଥିଲା । ପ୍ରତ୍ୟେକ ସ୍ଥାନରେ ଏହିପରି ହୋଇଛି । ଭାରତରେ ଆମେ ଦେଖିଲେ ମାମୁଦ ଧର୍ମ ନାମରେ ଆସିଥିଲେ; କିନ୍ତୁ ଗୋଟିଏ ହେଲେ ଧର୍ମ ସମ୍ବନ୍ଧୀୟ ଭଲ କାର୍ଯ୍ୟ କରି ନାହାନ୍ତି । ଧର୍ମକଥା ଉଠାଇ ଅନେକ ସମୟରେ ଲୋକେ ଫାଇଦା ଉଠାଇଛନ୍ତି ।

କିନ୍ତୁ ଲୋକଙ୍କର ଧାରଣା ଯୁଗକୁ ଯୁଗ ପରିବର୍ତ୍ତନ ହେଉଛି ଏବଂ ଏତେ ପୂର୍ବକାଳରେ ବାସ କରୁଥିବା ଲୋକଙ୍କ ବିଷୟ ବିଗ୍ଚର କରିବା ଆମ ପକ୍ଷରେ କଷ୍ଟକର । ଆମକୁ ଏହା ମନେ ରଖିବାକୁ ହେବ ଯେ ଆଜି ଯେଉଁସବୁ ଜିନିଷ ଆମକୁ ଅତି ସ୍ପଷ୍ଟ ପରି ଜଣାପଡ଼ୁଛି, ସେତେବେଳେ ତାଙ୍କ ପକ୍ଷରେ ଏହା ଅତି ଅଦ୍ଭୁତ ବୋଲି ମନେ ହେଉଥିବ ଏବଂ ତାଙ୍କର ଅଭ୍ୟାସ ଓ ଚିନ୍ତାର ଗତି ଆମକୁ ଅଦ୍ଭୁତ ପରି ମନେହେବ । ଯେତେବେଳେ ଲୋକେ ଉଚ୍ଚ ଆଦର୍ଶ, ପବିତ୍ର ସାମ୍ରାଜ୍ୟ, ଭଗବାନଙ୍କ ପ୍ରତିନିଧି ପୋପ ( ଯେ କି ଖ୍ରୀଷ୍ଟଙ୍କର ପ୍ରତିନିଧି ଥିଲେ ) ଆଦି କଥା କହୁଥିଲେ, ସେତେବେଳେ ପଶ୍ଚିମରେ ଅବସ୍ଥା ଯଥାସମ୍ଭବ ଖରାପ ଥିଲା । ଗ୍ସର୍ଲମିନଙ୍କ ରାଜୁତି ପରେ ଇଟାଲି ଓ ରୋମ ଅତି ଶୋଚନୀୟ ଅବସ୍ଥାରେ ପଡ଼ିଥିଲା । କେତେକ ଘୃଣିତ ନରନାରୀ ରୋମରେ ନିଜ ମନଇଚ୍ଛା କାର୍ଯ୍ୟ କଲେ ଏବଂ ପୋପଙ୍କୁ ବସାଉଥିଲେ ଓ ତଡ଼ି ଦେଉଥିଲେ ।

ବାସ୍ତବିକ ରୋମର ପତନ ପରେ ପଶ୍ଚିମ-ୟୁରୋପରେ ଯେଉଁ ସାଧାରଣ ବିଶୃଙ୍ଖଳା ହୋଇଥିଲା, ସେଥିରେ ଅନେକ ଲୋକ ଭାବିବାକୁ ଲାଗିଲେ କି ଯଦି ସାମ୍ରାଜ୍ୟର ପୁନରୁଦ୍ଧାର କରାଯାଏ, ତେବେ ଅବା ଅବସ୍ଥାର ଉନ୍ନତି ହେବ । ସମ୍ରାଟ୍ ରଖିବା ମଧ୍ୟ ଅନେକଙ୍କ ପକ୍ଷରେ ଏକ ମର୍ଯ୍ୟାଦାର ପ୍ରଶ୍ନ ଥିଲା । ସେହି କାଳରେ ଜଣେ ପୁରାତନ ଲେଖକ ଲେଖିଛନ୍ତି, "କାଳେ ଖ୍ରୀଷ୍ଟଧର୍ମବିରୋଧୀମାନେ ଖ୍ରୀଷ୍ଟୀୟମାନଙ୍କ ଭିତରେ ସମ୍ରାଟ୍ ନାମ ପ୍ରଚଳିତ ନ ଥିବାର ଦେଖି ଖ୍ରୀଷ୍ଟୀୟମାନଙ୍କୁ ଅପମାନିତ କରିବେ, ସେହି ହେତୁରୁ ଗ୍ସର୍ଲସଙ୍କୁ ସମ୍ରାଟ୍ କରାଗଲା ।"

ଫ୍ରାନ୍‌ସ, ବେଲଜିୟମ, ହଲାଣ୍ଡ, ସ୍ୱିଜରଲାଣ୍ଡ, ଜର୍ମାନୀ ଓ ଇଟାଲୀର ଅର୍ଦ୍ଧେକ ଗ୍ସର୍ଲମିନଙ୍କ ସାମ୍ରାଜ୍ୟର ଅନ୍ତର୍ଗତ ଥିଲା । ଏହାର ଦକ୍ଷିଣ-ପଶ୍ଚିମସ୍ଥ ସ୍ପେନ ଆରବମାନଙ୍କ ଅଧୀନରେ ଥିଲା, ଉତ୍ତର-ପୂର୍ବରେ ସ୍ଲାଭ ଓ ଅନ୍ୟ ଜାତି ଥିଲେ, ଉତ୍ତରରେ ଡେନର୍ସ ଓ

ନର୍ଥମେନ ଥିଲେ, ଦକ୍ଷିଣ-ପୂର୍ବରେ ସ୍ଲାଭୋନୀୟ ଓ ସର୍ବୀୟମାନେ ଥିଲେ ଏବଂ ଦୂରକୁ କନ୍‌ଷ୍ଟାଣ୍ଟିନୋପଲ ଅଧୀନରେ ପୂର୍ବୀୟ ରୋମାନ୍ ସାମ୍ରାଜ୍ୟ ଥିଲା ।

ଶାର୍ଲମେନ ୮୧୪ ଖ୍ରୀ: ରେ ମଲେ ଏବଂ ଅଳ୍ପ ଦିନ ପରେ ସାମ୍ରାଜ୍ୟ ଭାଗ ବାଣ୍ଟି ନେବା ଲାଗି ଗୋଳମାଳ ଉଠିଲା । ତାଙ୍କର ବଂଶଧରମାନଙ୍କୁ କାର୍ଲୋଭିଞ୍ଜିଆନ ( ଲାଟିନରେ ଶାର୍ଲସକୁ କାରୋଲସ ବୋଲି କହନ୍ତି ) ନାମ ଦିଆ ହୋଇଥିଲା ଏବଂ କେତେକଙ୍କର ଉପାଧି ଯଥା ମୋଟା, ଗଞ୍ଜା ( କୁଳୁଡ଼ା ), ପବିତ୍ର ଇତ୍ୟାଦିରୁ ଜଣାପଡ଼େ, ସେମାନେ ବିଶେଷ କିଛି ନ ଥିଲେ । ଶାର୍ଲମେନଙ୍କ ସାମ୍ରାଜ୍ୟ ଅଲଗା ହୋଇ ଜର୍ମାନୀ ଓ ଫ୍ରାନ୍‌ସ ଗଢ଼ିଉଠିଲା । ୮୪୩ ଖ୍ରୀ: ରୁ ଜର୍ମାନୀ ଏକ ଜାତି ହିସାବରେ ରହିଆସିଛି ବୋଲି ଧରାଯାଏ ଏବଂ କଥିତ ଅଛି ଯେ ୯୬୨ ରୁ ୯୭୩ ପର୍ଯ୍ୟନ୍ତ ଶାସନ କରିଥିବା ସମ୍ରାଟ ଅଟୋଦି ଗ୍ରେଟ ଜର୍ମନମାନଙ୍କୁ ଉଣା ଅଧିକେ ଏକ ଜାତିରେ ପରିଣତ କଲେ । ଫ୍ରାନ୍‌ସ ଅଟୋଙ୍କ ସାମ୍ରାଜ୍ୟର ଏକ ଅଂଶ ନ ଥିଲା । ୯୮୭ ଖ୍ରୀ: ରେ ହିଉକେପେଟ ଦୁର୍ବଳ କାର୍ଲୋଭିଞ୍ଜିଆନ ରାଜାମାନଙ୍କୁ ତଡ଼ି ଦେଇଥିଲେ ଏବଂ ଫ୍ରାନ୍‌ସ ଉପରେ କର୍ତ୍ତୃତ୍ୱ ଜାରି କରିଥିଲେ । ସେ ପୂରା ଫ୍ରାନ୍‌ସକୁ ନେଇ ପାରି ନ ଥିଲେ । କାରଣ ଫ୍ରାନ୍‌ସ ଅନେକ ବଡ଼ ବଡ଼ ଅଞ୍ଚଳରେ ବିଭକ୍ତ ଥିଲା । ସେଥିରେ ସ୍ୱାଧୀନ ସାମନ୍ତମାନେ ରହୁଥିଲେ ଏବଂ ସେମାନେ ପରସ୍ପର ଭିତରେ ବରାବର ଲଢ଼େଇ କରୁଥିଲେ । ପରସ୍ପର ଅପେକ୍ଷା ସମ୍ରାଟ୍ ଓ ପୋପଙ୍କୁ ସେମାନେ ବେଶୀ ଭୟ କରୁଥିଲେ ଓ ସେମାନଙ୍କୁ ପ୍ରତିରୋଧ କରିବା ନିମନ୍ତେ ଏକତ୍ର ମିଳିତ ହେଲେ । ହିଉକେପେଟଙ୍କ କାଳରୁ ଫ୍ରାନ୍‌ସ ଏକ ଜାତିଭାବରେ ଚଳିବାକୁ ଆରମ୍ଭ କଲା ଏବଂ ଆମେ ଦେଖିବା ଆରମ୍ଭ କାଳରୁ ମଧ୍ୟ ଫ୍ରାନ୍‌ସ ଓ ଜର୍ମାନୀ ଭିତରେ ପ୍ରତିଦ୍ୱନ୍ଦିତା ଥିଲା । ଏହା ହଜାର ହଜାର ବର୍ଷ ଧରି ଆଜି ପର୍ଯ୍ୟନ୍ତ ବି ରହିଛି । ଆଶ୍ଚର୍ଯ୍ୟର କଥା, ଫରାସୀ ଓ ଜର୍ମାନୀ ପରି ଅତି ସଂସ୍କୃତ ଓ ଉଚ୍ଚ ସଭ୍ୟ ଦୁଇଟି ପଡ଼ୋଶୀ ଓ ଲୋକଙ୍କ ଭିତରେ ପୁରୁଷ ପୁରୁଷ ଧରି ଏହି ପୁରାତନ ବିବାଦ ଚାଲିଆସିଛି; କିନ୍ତୁ ସମ୍ଭବତଃ ଦୋଷ ସେମାନଙ୍କର ନୁହେଁ, ଯେଉଁ ବ୍ୟବସ୍ଥା ଅଧୀନରେ ସେମାନେ ବାସ କରିଛନ୍ତି ଦୋଷ ତାର ।

ଏହି ସମୟ ବେଳକୁ ଇତିହାସ-ମଞ୍ଚରେ ରୁଷର ଆବିର୍ଭାବ ହୁଏ । ୮୫୦ ଖ୍ରୀ: ବେଳକୁ ଉତ୍ତରର ଜଣେ ଲୋକ ରୁରିକ ରୁଷ ରାଜ୍ୟର ମୂଳଭିତ୍ତି ସ୍ଥାପନ କରିଥିଲେ ବୋଲି କୁହାଯାଏ । ୟୁରୋପର ଦକ୍ଷିଣ-ପୂର୍ବରେ ସ୍ଲାଭୋନୀୟମାନେ ବସତି ସ୍ଥାପନ କରିବାର ଏବଂ ବାସ୍ତବିକ ଏକପ୍ରକାର ଉଦ୍ଧତ ହେବାର ଆମେ ଦେଖୁଁ । ସର୍ବୀୟମାନେ ମଧ୍ୟ ସେହିପରି ହେଲେ । ମାର୍ଗିୟାର୍ସ ବା ହଙ୍ଗେରୀୟମାନେ ଓ ପୋଲ୍ ଜାତି ପବିତ୍ର ରୋମାନ ସାମ୍ରାଜ୍ୟ ଓ ନୂତନ ରୁଷ ମଧ୍ୟରେ ଏକ ରାଜ୍ୟ ଗଢ଼ିବାକୁ ଆରମ୍ଭ କରିଥିଲେ ।

ଇତ୍ୟବସରରେ ଉତ୍ତର-ୟୁରୋପରୁ ପଶ୍ଚିମ ଓ ଦକ୍ଷିଣ ରାଜ୍ୟମାନଙ୍କୁ ଜାହାଜରେ ଲୋକ ଆସିଲେ ଏବଂ ପୋଡ଼ପାଡ଼ ଦେଲେ, ହତ୍ୟା କଲେ ଓ ଲୁଟ୍ କଲେ । ଇଟାଲୀରେ ଅରାଜକତା ଥିଲା ଏବଂ ରୋମ ବଡ଼ ଶୋଚନୀୟ ଅବସ୍ଥାରେ ପଡ଼ିଥିଲା । ସେମାନେ ରୋମ ଦଖଲ କଲେ ଓ ଏପରିକି କନ୍‌ଷ୍ଟାଣ୍ଟିନୋପଲକୁ ବି ଧମକ ଦେଲେ । ଏହି ଡକାଏତ ଓ ଲୁଣ୍ଠନକାରୀମାନେ ଫ୍ରାନ୍‌ସର ଉତ୍ତର-ପଶ୍ଚିମାଞ୍ଚଳ, ଯେଉଁଠି ନରମାଣ୍ଡି ଅଛି, ଦକ୍ଷିଣ ଇଟାଲୀ ଓ ସିସିଲି ଦଖଲ କଲେ ଏବଂ କ୍ରମେ ସେଠାରେ ବସତି କଲେ; ଆଉ ଏହି ଦସ୍ୟୁମାନେ ସମୃଦ୍ଧିଶାଳୀ ହେଲେ । ପ୍ରାୟ ଯେପରି କରନ୍ତି ଏମାନେ ସେହିପରି ପ୍ରଭୁ ଓ ଭୂସ୍ୱାମୀ ହେଲେ । ଫ୍ରାନ୍‌ସର ନରମାଣ୍ଡିର ଏହି ନରମ ନିବାସୀମାନେ ଉଇଲିଅମଙ୍କ ଅଧୀନରେ ୧୦୬୬ ଖ୍ରୀ: ରେ ଯାଇ ଇଂଲଣ୍ଡ ଜୟ କରିଥିଲେ । ଏହାଙ୍କୁ "ଉଇଲିୟମ ଦ କଙ୍କରର" ବୋଲି କୁହାଯାଏ । ଏହିରୂପେ ଇଂଲଣ୍ଡ ଗଠିତ ହେବାର ଆମେ ଦେଖୁଁ ।

ଆମେ ଏବେ ମୋଟାମୋଟି ୟୁରୋପରେ ଖ୍ରୀଷ୍ଟୀୟ ଯୁଗର ପ୍ରଥମ ହଜାର ବର୍ଷ ଶେଷରେ ପହଞ୍ଚୁଥାଉଁ । ଏହି ସମୟ ବେଳକୁ ଗଜନୀରେ ମାମୁଦ ଭାରତ ଆକ୍ରମଣ କରୁଥିଲେ ଏବଂ ଏହି ସମୟ ବେଳକୁ ବାଗଦାଦର ଆବ୍‌ବାସୀ ଖଲିଫାମାନଙ୍କର ଶକ୍ତିହ୍ରାସ ଘଟୁଥିଲା । ସେଲ୍‌ଜୁକ ତୁର୍କମାନେ ପଶ୍ଚିମ-ଏସିଆରେ ଇସ୍‌ଲାମ୍‌ର ପୁନରୁଦ୍ଧାର କରୁଥିଲେ । ସ୍ପେନ ଆରବମାନଙ୍କ ଅଧୀନରେ ରହିଥିଲା, କିନ୍ତୁ ତାହା ଆରବରୁ ସମ୍ପୂର୍ଣ୍ଣରୂପେ ବିଚ୍ଛିନ୍ନ ହୋଇଥିଲା ଏବଂ ବାସ୍ତବିକ ବାଗଦାଦ ଶାସକମାନଙ୍କ ସହିତ ଭଲ ସମ୍ବନ୍ଧ ନ ଥିଲା । ଉତ୍ତରଆଫ୍ରିକା ବ୍ୟାବହାରିକରୂପେ ବାଗଦାଦରୁ ସ୍ୱାଧୀନ ଥିଲା । ଇଜିପ୍ଟରେ କେବଳ ଯେ ଗୋଟିଏ ସ୍ୱାଧୀନ ସରକାର ଥିଲା ତାହା ନୁହେଁ, ସ୍ୱତନ୍ତ୍ର ଖଲିଫା ମଧ୍ୟ ଥିଲା ଏବଂ କେତେକାଳ ପର୍ଯ୍ୟନ୍ତ ଇଜିପ୍ଟର ଖଲିଫାମାନେ ଉତ୍ତର-ଆଫ୍ରିକାର ଶାସନ କରିଥିଲେ ।

## ୫୩ । ସାମନ୍ତପ୍ରଥା

ଜୁନ୍ ୪, ୧୯୩୨

ଆଜି ଫ୍ରାନ୍‌ସ, ଜର୍ମାନୀ, ରୁଷ ଓ ଇଂଲଣ୍ଡ ବୋଲି ଆମେ ଯାହା ଜାଣୁ ସେଗୁଡ଼ିକର ଆରମ୍ଭ ବିଷୟରେ କିଛିଟା ଆଭାସ ଆମେ ଗତ ଚିଠିରେ ପାଇଲେ; କିନ୍ତୁ ଏଥିରୁ ଅନୁମାନ କରିବୁ ନାହିଁ ଯେ ଆଜି ଯେପରି ଭାବୁଛନ୍ତି, ସେତେବେଳେ ଲୋକେ ଏହି ଦେଶଗୁଡ଼ିକୁ ସେହିପରି ଭାବୁଥିଲେ । ଆମେ ଇଂରେଜ, ଫରାସୀ ଓ ଜର୍ମାନମାନଙ୍କୁ

ବିଭିନ୍ନ ଜାତି ବୋଲି ଭାବୁ ଏବଂ ସେମାନେ ପ୍ରତ୍ୟେକ ବି ନିଜ ଦେଶକୁ ତାଙ୍କର ମାତୃଭୂମି ପିତୃଭୂମି ବା ପାଟ୍ରି (Patrie) ବୋଲି ଭାବନ୍ତି । ଏହା ହିଁ ଜାତୀୟତାବୋଧ, ଆଜି ଏହା ପୃଥିବୀରେ ସୁସ୍ପଷ୍ଟ ହୋଇପଡ଼ିଛି । ଭାରତରେ ଆମର ସ୍ୱାଧୀନତା-ସଂଗ୍ରାମ ହେଉଛି ଆମର "ଜାତୀୟ" ସଂଗ୍ରାମ; କିନ୍ତୁ ସେହି କାଳରେ ଏପରି ଜାତିର ଧାରଣା ନ ଥିଲି । ଏକପ୍ରକାର ଖ୍ରୀଷ୍ଟରାଜ୍ୟର ଧାରଣା ଥିଲି, ଅର୍ଥାତ୍ ମୁସଲମାନ ବାହ୍ୟଦେଶଙ୍କ ବିରୁଦ୍ଧରେ ଖ୍ରୀଷ୍ଟୀୟମାନଙ୍କର ଏକ ସମାଜ ବା ଗୋଷ୍ଠୀ ଥିଲି । ସେହିରୂପେ ଅନ୍ୟ ସମସ୍ତ ଅବିଶ୍ୱାସୀଙ୍କ ବିରୁଦ୍ଧରେ ମୁସଲମାନମାନେ ଏକ ଇସ୍‌ଲାମ ଜଗତର ଅନ୍ତର୍ଭୁକ୍ତ ବୋଲି ଗୋଟାଏ ଧାରଣା ଥିଲି ।

କିନ୍ତୁ ଏହି ଖ୍ରୀଷ୍ଟରାଜ୍ୟ ଓ ଇସ୍‌ଲାମର ଧାରଣା ଅତି ଅସ୍ପଷ୍ଟ ଭାବରେ ଥିଲି । ଏହା ଲୋକଙ୍କ ଦୈନନ୍ଦିନ ଜୀବନ ସ୍ପର୍ଶ କରି ନ ଥିଲି । କେବଳ ବିଶେଷ ଅବସ୍ଥାରେ ଖ୍ରୀଷ୍ଟଧର୍ମ ହେଉ ବା ଇସ୍‌ଲାମ ହେଉ ଯୁଦ୍ଧ କରିବା ଲାଗି ଲୋକଙ୍କ ଭିତରେ ଏକ ଧର୍ମପ୍ରେରଣା ଜାଗ୍ରତ କରାଯାଉଥିଲି । ଜାତି ପରିବର୍ତ୍ତେ ମଣିଷ ଓ ମଣିଷ ଭିତରେ ଏକ ବିଶେଷ ସମ୍ବନ୍ଧ ରହିଥିଲି । ଏହାକୁ ସାଆନ୍ତିଆ ସମ୍ବନ୍ଧ କହନ୍ତି । ସାମନ୍ତପ୍ରଥାରୁ ଏହା ହୋଇଥିଲି । ରୋମର ପତନ ପରେ ପଶ୍ଚିମରେ ପୁରାତନ ବ୍ୟବସ୍ଥା ଲୋପ ପାଇଗଲି । ପ୍ରତ୍ୟେକ ସ୍ଥାନରେ ବିଶୃଙ୍ଖଳା, ଅରାଜକତା, ହିଂସା ଓ ବଳ ପ୍ରୟୋଗ ଦେଖାଗଲି । ବଳବାନ ଲୋକେ ଯାହା ପାରିଲେ ଦଖଲ କରୁଥିଲେ ଏବଂ ଅନ୍ୟ କେହି ଅଧିକତର ବଳବାନ ବ୍ୟକ୍ତି ଆସି ତାଙ୍କୁ ତଡ଼ି ନ ଦେବା ପର୍ଯ୍ୟନ୍ତ ଯାହା ଥିଲି ତାହା ସେମାନେ ଧରିରଖିଲେ । ବଳିଷ୍ଠ ଦୁର୍ଗମାନ ତିଆରି ହେଲି ଏବଂ ଏହି ଦୁର୍ଗର ସାମନ୍ତମାନେ ଅଭିଯାନ ଦଳ ଧରି ବାହାରୁଥିଲେ । ଦେଶ ଭିତରକୁ ଯାଉଥିଲେ ଓ ବେଳେ ବେଳେ ନିଜ ପରି ଅନ୍ୟମାନଙ୍କ ସହିତ ଲଢ଼େଇ କରୁଥିଲେ । ଅବଶ୍ୟ ଜମିରେ ଥିବା ଚାଷୀ ଓ ମୂଲିଆ ଅଧିକ କଷ୍ଟ ଭୋଗିଲେ । ଏହି ବିଶୃଙ୍ଖଳା ଭିତରୁ ସାମନ୍ତପ୍ରଥାର ଉତ୍ପତ୍ତି ହେଲି ।

କୃଷକମାନେ ସଂଗଠିତ ନ ଥିଲେ ଏବଂ ଦସ୍ୟୁ ସାମନ୍ତଙ୍କଠାରୁ ନିଜକୁ ରକ୍ଷା କରିପାରି ନ ଥିଲେ । ସେମାନଙ୍କୁ ରକ୍ଷାକରିବା ନିମନ୍ତେ କୌଣସି ବଳିଷ୍ଠ କେନ୍ଦ୍ର ସରକାର ନ ଥିଲି । ତେଣୁ ସେମାନେ ଏହି ମନ୍ଦ ଅବସ୍ଥାରୁ ଯେତିକି ପାରନ୍ତି ସୁବିଧା କରୁଥିଲେ ଓ ତାଙ୍କୁ ଲୁଣ୍ଠନ କରୁଥିବା ଦୁର୍ଗର ସାମନ୍ତ ସହିତ ସନ୍ଧି କରୁଥିଲେ । ଜମିରେ ଯାହା ଉତ୍ପନ୍ନ କରିବେ ତାହାର ଏକାଂଶ ସାମନ୍ତଙ୍କୁ ଦେବା ନିମନ୍ତେ ସମ୍ମତ ହେଉଥିଲେ ଏବଂ ନାନାପ୍ରକାରେ ତାଙ୍କର ସେବା ମଧ୍ୟ କରିବାକୁ ରାଜି ହୋଇଥିଲେ । ସର୍ତ୍ତ ଥିଲି ଯେ ସେ ଲୁଣ୍ଠନ କରିବେ ନାହିଁ, ସେମାନଙ୍କୁ ହଇରାଣ କରିବେ ନାହିଁ ଓ ତାଙ୍କ ପରି ଅନ୍ୟ କେହି ଲୁଣ୍ଠନକାରୀ ହାତରୁ ଏମାନଙ୍କୁ ରକ୍ଷା କରିବେ । ଛୋଟ ଦୁର୍ଗର ସାମନ୍ତ ମଧ୍ୟ ସେହି ପ୍ରକାରେ ବୃହତ୍ତର ଦୁର୍ଗର ସାମନ୍ତଙ୍କ ସହ ସନ୍ଧି କରୁଥିଲେ । କିନ୍ତୁ ଛୋଟ ସାମନ୍ତ

କୃଷକ ବା ଉତ୍ପାଦକ ନ ଥିବାରୁ ଜମିର ଉତ୍ପନ୍ନ ଶସ୍ୟରୁ ଭାଗ ସେ ବଡ଼ ସାମନ୍ତଙ୍କୁ ଦେଇପାରୁ ନ ଥିଲେ । ତେଣୁ ସାମରିକ ସାହାଯ୍ୟ ଦେବାର ପ୍ରତିଶ୍ରୁତି ସେ ଦେଉଥିଲେ ଅର୍ଥାତ୍ ଦରକାର ପଡ଼ିଲେ ତାଙ୍କ ଲାଗି ଯୁଦ୍ଧ କରିବେ । ପ୍ରତିବଦଳରେ ବଡ଼ ସାମନ୍ତ ଶ୍ରେଷ୍ଠଙ୍କୁ ରକ୍ଷା କରିବେ ଏବଂ ଶ୍ରେଷ୍ଠ ସାମନ୍ତ ତାଙ୍କର ଅଧୀନସ୍ଥ ହୋଇ ରହିଲା; ତେଣୁ ପାହାଚ ପାହାଚ କରି ଏହିପରି ଆହୁରି ବଡ଼ ପ୍ରଭୁ ଓ ସାମନ୍ତ ପର୍ଯ୍ୟନ୍ତ ଗଲା । ଶେଷକୁ ସାମନ୍ତବାଦୀ ଗଠନର ସର୍ବୋଚ୍ଚ ଶିଖରେ ରାଜା ରହିଲେ; କିନ୍ତୁ ଏହା ଏଠାରେ ବନ୍ଦ ରହିଲା ନାହିଁ । ତାଙ୍କ ମତରେ ସ୍ୱର୍ଗରେ ବି ଏକପ୍ରକାର ସାମନ୍ତପ୍ରଥା ପ୍ରଚଳିତ ଅଛି । ସେଥିରେ ଏହିପରି ତିନପ୍ରକାର ସାମନ୍ତ ଅଛନ୍ତି; ଭଗବାନ ହେଉଛନ୍ତି ତାହାର ସଭାପତି ।

ଇଉରୋପରେ ଯେଉଁ ବିଶୃଙ୍ଖଳା ପ୍ରଚଳିତ ଥିଲା, ସେଥିଭିତରୁ କ୍ରମେ ଏହି ପ୍ରଥା ଜାତ ହେଲା । ତୁ ଅବଶ୍ୟ ମନେ ରଖିବୁ ଯେ ସେତେବେଳେ କୌଣସି କେନ୍ଦ୍ର ଶାସନ ନ ଥିଲା; ପୁଲିସ ବି ସେପରି କିଛି ନ ଥିଲା । ଜମିର ମାଲିକ ହିଁ ତା ଜମିର ଶାସକ ଓ ପ୍ରଭୁ ଥିଲା ଏବଂ ଜମି ଚାଷକରି ବଞ୍ଚୁଥିବା ଲୋକଙ୍କର ପ୍ରଭୁ ଥିଲା । ସେ ଏକ ପ୍ରକାର କ୍ଷୁଦ୍ର ରାଜା ଏବଂ ସେମାନଙ୍କର ସେବା ଓ ଜମିର ଉତ୍ପନ୍ନ ଦ୍ରବ୍ୟର ଯେଉଁ ଅର୍ଦ୍ଧାଂଶ ସେଥିନ୍ତି, ତା' ବଦଳରେ ଏହି ରାଜ୍ୟ ସେମାନଙ୍କୁ ରକ୍ଷା କରିବ ବୋଲି ଧରି ଯାଉଥିଲା । ସେ ଏହିସବୁ ଲୋକଙ୍କର ପ୍ରଭୁ ଥିଲେ । ଲୋକମାନଙ୍କୁ ପ୍ରଜା ବା ଅର୍ଦ୍ଧଦାସ ବୋଲି କୁହା-ଯାଉଥିଲା । ତଥ୍ୟ ହିସାବରେ ସେ ତାର ଉପରସ୍ଥ ସାମନ୍ତର ଅଧୀନ ଥିଲା ଓ ତାକୁ ସାମରିକ ସାହାଯ୍ୟ ଦେବାଲାଗି ପ୍ରତିଶ୍ରୁତି ଦେଇ ତାଠାରୁ ଭୂମି ପାଉଥିଲା ।

ଗୀର୍ଜାର କର୍ମଚାରୀମାନେ ମଧ୍ୟ ଏହି ସାମନ୍ତପ୍ରଥାର ଅଙ୍ଗ ଥିଲେ । ସେମାନେ ଉଭୟ ପୁରୋହିତ ଓ ସାମନ୍ତ ପ୍ରଭୁ ଥିଲେ । ଏହିରୂପେ ଜର୍ମାନୀର ପ୍ରାୟ ଅର୍ଦ୍ଧେକ ଜମି ଓ ସମ୍ପଦ ଏହି ଧର୍ମଯାଜକମାନଙ୍କ ହାତରେ ଥିଲା । ପୋପ ନିଜେ ଜଣେ ସାମନ୍ତ ପ୍ରଭୁ ଥିଲେ ।

ତୁ ଦେଖିବୁ ଯେ ସମଗ୍ର ବ୍ୟବସ୍ଥାଟି ଏପରି କ୍ରମଗଠିତ ଓ ଶ୍ରେଣୀପୂର୍ଣ୍ଣ ଥିଲା । ସେଥିରେ ସମାନତାର କୌଣସି ପ୍ରଶ୍ନ ନ ଥିଲା । କିମ୍ନରେ ଅର୍ଦ୍ଧଦାସ (Serf) ଥିଲେ, ସେମାନଙ୍କୁ ସାମାଜିକ ଗଠନରେ ଅର୍ଥାତ୍ ଶ୍ରେଷ୍ଠ ସାମନ୍ତ, ବଡ଼ ସାମନ୍ତ, ବୃହତ୍ତର ସାମନ୍ତ ଓ ରାଜା—ସମସ୍ତଙ୍କ ଚାପ ସହିବାକୁ ପଡ଼ୁଥିଲା । ଗୀର୍ଜାର ସମସ୍ତ ବ୍ୟକ୍ତି ଅର୍ଥାତ୍ ଧର୍ମଯାଜକ, ପୁରୋହିତ, କାର୍ଡିନାଲ, ଶ୍ରେଷ୍ଠ ପାଦ୍ରୀ ଆଦି ସମସ୍ତଙ୍କର ଖର୍ଚ୍ଚ ସେମାନଙ୍କୁ ଦେବାକୁ ପଡ଼ୁଥିଲା । ଶ୍ରେଷ୍ଠ ବା ବଡ଼ ସାମନ୍ତ ଖାଦ୍ୟପଦାର୍ଥ ବା ଅନ୍ୟ କୌଣସି ପ୍ରକାର ଧନ ଉପାର୍ଜନ କଲା ପରି ଶ୍ରମ କରୁ ନ ଥିଲେ । ଏହା ତାଙ୍କର ସମ୍ମାନ ବାହାରେ ବୋଲି ଧରା ଯାଉଥିଲା । ଲଢ଼ାଇ ହିଁ ମୁଖ୍ୟ ପେଶା ଥିଲା ଏବଂ ଲଢ଼ାଇରେ ଯେ

ନିଯୁକ୍ତ ନ ହୋଇଥିଲା ବେଳେ ସେମାନେ ଶିକାର କରୁଥିଲେ କିମ୍ବା କୃତ୍ରିମ ଯୁଦ୍ଧ ଓ ଖେଳ ଇତ୍ୟାଦିରେ ମଗ୍ନଥିଲେ । ସେମାନେ ଏକ ଦୁର୍ଦ୍ଦାନ୍ତ ଓ ଅଶିକ୍ଷିତ ଶ୍ରେଣୀ ଥିଲେ । ଲଢ଼ାଇ କରିବା, ଖାଇବା ଓ ପିଇବା ଛଡ଼ା ଆଉ କୌଣସି ପ୍ରକାର ଆମୋଦ କରିବାର ରୀତି ସେମାନଙ୍କୁ ଜଣା ନ ଥିଲା । ଏହିରୂପେ ଖାଦ୍ୟଶସ୍ୟ ଓ ଜୀବନର ଅନ୍ୟ ଆବଶ୍ୟକୀୟ ପଦାର୍ଥସବୁ ଜାତ କରିବାର ସମସ୍ତ ବୋଝ କୃଷକ ଓ କାରିଗରମାନଙ୍କ ଉପରେ ପଡ଼ିଲା । ସମଗ୍ର ବ୍ୟବସ୍ଥାର ଉଚ୍ଚରେ ଥିଲେ ରାଜା । ସେ ଭଗବାନଙ୍କ ପ୍ରତିନିଧି ବୋଲି ଧରି ଯାଉଥିଲେ ।

ସାମନ୍ତପ୍ରଥା ପଶ୍ଚାତ୍‌ରେ ଏହି ଧାରଣା ଥିଲା । ସିଦ୍ଧାନ୍ତ ଦୃଷ୍ଟିରେ ସାମନ୍ତ-ମାନେ ତାଙ୍କର ଅଧୀନ ଓ ଦାସମାନଙ୍କୁ ରକ୍ଷା କରିବା ନିମନ୍ତେ ବାଧ୍ୟ; କିନ୍ତୁ ବ୍ୟାବହାରିକ ଦୃଷ୍ଟିରେ ସେମାନେ ବଡ଼ ଦୁର୍ଦ୍ଦାନ୍ତ ହେଉଥିଲେ । ତାଙ୍କର ଉପରିସ୍ଥ ସାମନ୍ତ ବା ରାଜା ପ୍ରାୟ ତାଙ୍କୁ ରୋକିପାରୁ ନ ଥିଲେ ଏବଂ କୃଷକମାନେ ଏତେ ଦୁର୍ବଳ ଥିଲେ ଯେ ମାଲିକଙ୍କ ଦାବୀର ପ୍ରତିରୋଧ କରି ପାରୁ ନ ଥିଲେ । ଅଧିକ ବଳବାନ ହୋଇଥିବାରୁ ସେମାନେ ଯେତେ ବେଶୀ ପାରନ୍ତି, ତାଙ୍କର ଦାସମାନଙ୍କଠାରୁ ଆଦାୟ କରୁଥିଲେ ଏବଂ ସେମାନଙ୍କୁ କୌଣସି ପ୍ରକାର ବଞ୍ଚିବା ପାଇଁ ଅତି ଦୁର୍ଦ୍ଦଶାଗ୍ରସ୍ତ ଅବସ୍ଥାରେ ଛାଡ଼ି ଦେଉଥିଲେ । ସର୍ବଦା ସବୁ ଦେଶରେ ଭୂସ୍ୱାମୀମାନେ ଏହା କରି ଆସିଛନ୍ତି । ଭୂମିର ଅଧିକାରରୁ ସାମନ୍ତ ସୃଷ୍ଟି ହୋଇଛି । ଯେଉଁ ଦସ୍ୟୁ ଜମି ଦଖଲ କରି ଏକ ଦୁର୍ଗ ନିର୍ମାଣ କରିପାରିଲା, ତାହାକୁ ପ୍ରତ୍ୟେକ ସାମନ୍ତ ପ୍ରଭୁ ବୋଲି ସମ୍ମାନ ଦେଖାଇଲେ । ଏହି ସ୍ୱାମୀତ୍ୱ ଯୋଗୁଁ ଏହାଙ୍କ ହାତକୁ କ୍ଷମତା ଆସିଲା ଏବଂ ଏହି କ୍ଷମତା ପ୍ରୟୋଗ କରି ଭୂସ୍ୱାମୀ କୃଷକ, ଉତ୍ପାଦକ ବା ମୂଲିଆଠାରୁ ଯଥାସମ୍ଭବ ଧନ ଶୋଷଣ କରିବାକୁ ଲାଗିଲା । ଏପରି କି ଆଇନ ସୁଦ୍ଧା ଭୂସ୍ୱାମୀକୁ ସାହାଯ୍ୟ କଲା; କାରଣ ଆଇନ ସେମାନେ ଓ ତାଙ୍କର ବନ୍ଧୁମାନେ ତିଆରି କରିଥିଲେ । ଏହି କାରଣରୁ ଅନେକ ଲୋକ ଭାବନ୍ତି ଯେ ଜମି ବ୍ୟକ୍ତିବିଶେଷର ନ ହୋଇ ସମୂହ ହାତରେ ରହିବା ଦରକାର । ଯଦି ଏହା ଏକ ରାଷ୍ଟ୍ର ବା ସମାଜ ହାତରେ ରହେ ଅର୍ଥାତ୍ କୌଣସି ସ୍ଥାନରେ ଯେଉଁମାନେ ବାସ କରନ୍ତି ତାଙ୍କର ହାତରେ ରହେ, ତାହାହେଲେ କେହି ଅନ୍ୟକୁ ଏଥିରେ ଶୋଷଣ କରିବ ନାହିଁ କିମ୍ବା ଅନ୍ୟାୟର ସୁବିଧା ନେବ ନାହିଁ ।

କିନ୍ତୁ ଏପରି ଭାବ କାର୍ଯ୍ୟକାରୀ ହେବାକୁ ବାକୀ ରହିଛି । ଆମେ ଯେଉଁ କାଳର କଥା ଆଲୋଚନା କରୁଛେ, ସେତେବେଳେ ଲୋକେ ଏପରି ଚିନ୍ତା କରୁ ନ ଥିଲେ । ଜନସାଧାରଣ ଦୁର୍ଦ୍ଦଶାଗ୍ରସ୍ତ ଥିଲେ; କିନ୍ତୁ ନିଜର ବିପଦରୁ କୌଣସି ପ୍ରତିକାରର ପନ୍ଥା ଦେଖୁ ନ ଥିଲେ । ତେଣୁ ସେମାନେ ଏହା ସହ୍ୟ କରୁଥିଲେ ଓ ନିଦାରୁଣ ଶ୍ରମଦ୍ୱାରା

କଳର ଜୀବନ ବିତାଉଥିଲେ । ବଶ୍ୟତାସ୍ୱୀକାର କରିବା ଅଭ୍ୟାସ ତାଙ୍କ ଭିତରେ ଭର୍ତ୍ତି କରାଯାଇଛି ଏବଂ ଥରେ ଏହି ଅଭ୍ୟାସ ହୋଇଗଲେ ଲୋକେ ଯେକୌଣସି କଥାକୁ ସହ୍ୟ କରିଯାଆନ୍ତି । ଏହିରୂପେ ଆମେ ଦେଖୁ ଯେ ସମାଜରେ ଏକପାଖରେ ସାମନ୍ତ ପ୍ରଭୁ ଓ ସେମାନଙ୍କର ଚାକର ଓ ଅନ୍ୟ ପକ୍ଷରେ ଅତ୍ୟନ୍ତ ଦରିଦ୍ରଶ୍ରେଣୀ ଗଢ଼ି ଉଠିଲେ । ସାମନ୍ତଙ୍କ ପ୍ରସ୍ତର ଦୁର୍ଗର ଚତୁର୍ଦ୍ଦିଗରେ ଦାସମାନଙ୍କର ମାଟି ବା କାଠକୁଡ଼ିଆ ଦେଖାଦେଲା । ଦୁଇଟି ଦୁନିଆ ହେଲା ଓ ଏଗୁଡ଼ିକ ପରସ୍ପରଠାରୁ ବିଚ୍ଛିନ୍ନ ଥିଲେ—ସାମନ୍ତ ଜଗତ୍ ଓ ଦାସ ଜଗତ୍ ଏବଂ ସାମନ୍ତମାନେ ପ୍ରାୟ ଭାବିଲେ ଯେ ସେମାନେ ଯେଉଁ ଗୋରୁ ପାଳିଛନ୍ତି, ଦାସମାନେ ତାଙ୍କଠାରୁ ସାମାନ୍ୟ ଉଚ୍ଚରେ ।

ବେଳେ ବେଳେ ଶ୍ରେଷ୍ଠ ପାଦ୍ରୀମାନେ ତାଙ୍କ ସାମନ୍ତଙ୍କ କବଳରୁ ଦାସମାନଙ୍କୁ ରକ୍ଷା କରିବା ଲାଗି ଚେଷ୍ଟା କରୁଥିଲେ; କିନ୍ତୁ ସାଧାରଣତଃ ପୁରୋହିତ ଓ ଧର୍ମଯାଜକ-ମାନେ ସାମନ୍ତଙ୍କ ପକ୍ଷ ଗ୍ରହଣ କରୁଥିଲେ ଏବଂ ପ୍ରକୃତରେ ଦେଖିବାକୁ ଗଲେ ଧର୍ମଯାଜକ ଓ ବଡ଼ ପୁରୋହିତମାନେ ନିଜେ ବି ଜଣେ ଜଣେ ସାମନ୍ତ ଥିଲେ ।

ଭାରତରେ ଏ ପ୍ରକାର ସାମନ୍ତପ୍ରଥା ନ ଥିଲା, କିନ୍ତୁ ଏଠାରେ ଏହିଭଳି ଏକ ପ୍ରଥାର ପ୍ରଚଳନ ଥିଲା । ବାସ୍ତବିକ ଆଜି ଆମର ଭାରତୀୟ ଦେଶୀୟ ରାଜ୍ୟରେ, ଯେଉଁଠି ଶାସକ, ସାମନ୍ତ ଓ ସାମନ୍ତଙ୍କ ଅନୁଚରସବୁ ରହିଛନ୍ତି, ସେଥିରେ ଅନେକ ସାମନ୍ତ ରୀତିନୀତି ପ୍ରଚଳିତ ଅଛି । ଭାରତର ଜାତିପ୍ରଥା ସାମନ୍ତପ୍ରଥାଠାରୁ ସମ୍ପୂର୍ଣ୍ଣ ପୃଥକ୍ ହୋଇଥିଲେ ସୁଦ୍ଧା ଏହା ସମାଜକୁ ଶ୍ରେଣୀରେ ବିଭକ୍ତ କଲା । ମୋର ମନେହୁଏ, ମୁଁ ତୋତେ କହିଛି ଯେ ଚୀନରେ କେବେହେଲେ ଏପରି ଏକଛତ୍ର ବା ବିଶେଷାଧିକାର-ଭୋଗୀ ଶ୍ରେଣୀ ହୋଇ ନାହାନ୍ତି । ସେମାନଙ୍କର ପୁରାତନ ପରୀକ୍ଷାପ୍ରଣାଳୀ ଅନୁସାରେ ତାଙ୍କ ଦେଶର ଉଚ୍ଚପଦବୀର ଦ୍ୱାର ପ୍ରତ୍ୟେକ ବ୍ୟକ୍ତିବିଶେଷ ଲାଗି ଉନ୍ମୁକ୍ତ ରହିଥିଲା । କିନ୍ତୁ ଅବଶ୍ୟ କାର୍ଯ୍ୟକ୍ଷେତ୍ରରେ କିଛି କଟକଣା ରହିଥାଇପାରେ ।

ତେଣୁ ସାମନ୍ତପ୍ରଥାରେ ସମାନତା ବା ସ୍ୱାଧୀନତାର କୌଣସି ଧାରଣା ନ ଥିଲା । ସେଥିରେ ଦାବୀ ଓ ଦାୟିତ୍ୱର ଧାରଣା ଥିଲା, ଅର୍ଥାତ୍ ସାମନ୍ତ ପ୍ରଭୁ ତାହାର ଅଧିକାର ସ୍ୱରୂପ ସେବା ଓ ଜମିର ଉତ୍ପନ୍ନ ଦ୍ରବ୍ୟର ଏକାଂଶ ପାଉଥିଲା ଏବଂ ଲୋକଙ୍କୁ ରକ୍ଷା କରିବା ତାର ଦାୟିତ୍ୱ ବୋଲି ବିଶ୍ୱରୁଥିଲା । କିନ୍ତୁ ଅଧିକାର ସର୍ବଦା ମନେ ରହିଥାଏ ଓ ଦାୟିତ୍ୱ ଅନେକ ସମୟରେ ଲୋକ ଭୁଲିଯାଆନ୍ତି । ଏବେ ବି କେତେକ ଇଉରୋପୀୟ ରାଜ୍ୟ ଭାରତରେ ଅନେକ ବଡ଼ ବଡ଼ ଭୂସ୍ୱାମୀ ଅଛନ୍ତି । ଏମାନେ କୁଟା ଖଣ୍ଡିକ ଦଣ୍ଡେ ନ କରି ତାଙ୍କ ପ୍ରଜାଙ୍କଠାରୁ ଯଥେଷ୍ଟ ପରିମାଣରେ କର ଆଦାୟ କରନ୍ତି । କିନ୍ତୁ ସେମାନଙ୍କ ପ୍ରତି କୌଣସି ପ୍ରକାର ଦାୟିତ୍ୱ ଥିବାର ଧାରଣା ଭୁଲିଗଲେଣି ।

ଇଉରୋପର ଯେଉଁ ପୁରାତନ ବର୍ବର ଜାତି ଏତେ ସ୍ୱାଧୀନତାପ୍ରିୟ ଥିଲେ, ସେମାନେ ସଂପୂର୍ଣ୍ଣରୂପେ ସ୍ୱାଧୀନତା ଖର୍ବ କରୁଥିବା ଏହି ସାମନ୍ତ ପ୍ରଥାକୁ କ୍ରମେ କିପରି ସ୍ୱଭାବରେ ମାନିନେଲେ, ଏହା ଦେଖିଲେ ବିସ୍ମୟ ଲାଗେ । ଏହି ଜାତିମାନେ ନିଜର ମୁଖିଆ ନିର୍ବାଚନ କରୁଥିଲେ ଏବଂ ତାକୁ ରୋକିବାର ବାଟ ରଖିଥିଲେ । ଆମେ ସର୍ବତ୍ର ସ୍ୱେଚ୍ଛାଚାରିତା ଓ ଏକଛତ୍ର ଶାସନ ଦେଖୁଁ ଏବଂ ଆଉ ନିର୍ବାଚନର ପ୍ରଶ୍ନ ରହିଲା ନାହିଁ । କାହିଁକି ଏପରି ପରିବର୍ତ୍ତନ ଘଟିଲା, ମୁଁ କହିପାରିବି ନାହିଁ । ହୁଏତ ଗିର୍ଜାମାନଙ୍କଦ୍ୱାରା ଯେଉଁ ଧର୍ମ ପ୍ରଚାରିତ ହେଲା, ତାହା ଏହି ଅଗଣତାନ୍ତ୍ରିକ ଭାବଧାରା ବିସ୍ତାରରେ ସାହାଯ୍ୟ କରିଥିଲା । ରାଜା ପୃଥିବୀରେ ଭଗବାନଙ୍କର ଅଂଶ ବୋଲି ପରିଚିତ ହେଲେ ଏବଂ ସର୍ବଶକ୍ତିମାନଙ୍କର ପ୍ରତିରୂପଙ୍କୁ ତମେ କିପରି ଅମାନ୍ୟ କରିବ ବା ତାଙ୍କ ସହିତ ଯୁକ୍ତି କରିବ ? ସାମନ୍ତପ୍ରଥା ଭିତରେ ସ୍ୱର୍ଗ ଓ ମର୍ତ୍ତ୍ୟ ଉଭୟ ଥିଲା ପରି ମନେହେଲା ।

ଆମେ ଦେଖୁଥାଉଁ ଯେ ଭାରତରେ କ୍ରମେ ପୁରାତନ ଆର୍ଯ୍ୟ ସ୍ୱାଧୀନତାର ଧାରଣା ବଦଳିଗଲା । ଏହା ଦୁର୍ବଳରୁ ଦୁର୍ବଳତର ହୋଇଗଲା, ଶେଷକୁ ଏହା ପାସୋର ଗଲା । ମୁଁ ତୋତେ ଦେଖାଇଦେଇଛି ଯେ ମଧ୍ୟଯୁଗର ଆରମ୍ଭ ଅବସ୍ଥାରେ ଏହିସବୁ କେତେକ ପରିମାଣରେ ମନରେ ଥିଲା । ଶୁକ୍ରାଚାର୍ଯ୍ୟଙ୍କ ନୀତିସାର ଓ ଦକ୍ଷିଣ-ଭାରତର ପ୍ରସ୍ତରଖୋଦିତ ଲେଖାମାନଙ୍କରୁ ଆମେ ଏହା ଜାଣିପାରୁଁ ।

ଯେଉଁ ନୂତନ ବ୍ୟବସ୍ଥାର ଉଦୟ ହେଉଥିଲା ତାହା ମଧ୍ୟଦେଇ ଇଉରୋପକୁ ଧୀରେ ଧୀରେ କିଛି ସ୍ୱାଧୀନତା ଆସିଲା । ଭୂସ୍ୱାମୀ ଏବଂ ଜମିରେ ଚଳୁଥିବା ସାମନ୍ତ ଓ ତାଙ୍କ ଦାସମାନଙ୍କ ଛଡ଼ା ଆଉ ଅନ୍ୟ ଶ୍ରେଣୀ ବି ଥିଲେ । ସେମାନେ ହେଉଛନ୍ତି କାରିଗର ଓ ବେପାରୀ । ଏମାନେ ସାମନ୍ତପ୍ରଥାର ଅଂଶ ସ୍ୱରୂପ ନ ଥିଲେ । ବିଶୃଙ୍ଖଳା ବେଳେ ପ୍ରାୟ ବେପାର ହେଉ ନ ଥିଲା ଏବଂ ହସ୍ତଶିଳ୍ପ ବୃଦ୍ଧି ପାଉ ନ ଥିଲା । କିନ୍ତୁ କ୍ରମେ ବେପାର ବୃଦ୍ଧି ପାଇଲା ଓ ନିପୁଣ କାରିଗର ଏବଂ ବଣିକମାନଙ୍କର ଗୁରୁତ୍ୱ ବଢ଼ିଲା । ସେମାନେ ଧନୀ ହେଲେ ଓ ସାମନ୍ତ ଏବଂ ଭୂସ୍ୱାମୀମାନେ ତାଙ୍କଠାରୁ ଧନ ଋଣ କଲେ । ସେମାନେ ଧନ କରଜ ଦେଲେ; କିନ୍ତୁ ସାମନ୍ତମାନଙ୍କଠାରୁ କେତେକ ସୁବିଧା ପାଇବା ନିମନ୍ତେ ଦାବୀ କଲେ । ଏହିସବୁ ବିଶେଷାଧିକାର ପାଇ ତାଙ୍କର ଶକ୍ତି ବୃଦ୍ଧି ହେଲା । ତେଣୁ ସାମନ୍ତଙ୍କ ଦୁର୍ଗର ଚତୁର୍ଦ୍ଦିଗରେ ଦାସର କୁଟୀର ପରିବର୍ତ୍ତେ ଆମେ ଦେଖୁଁ ଧର୍ମପୀଠ, ଗିର୍ଜା ବା ବେପାରୀ ସଂଘର ଚତୁର୍ଦ୍ଦିଗରେ ଛୋଟ ଛୋଟ ସହରସବୁ ଗଢ଼ି-ଉଠିଲା । ବଣିକ ଓ କାରିଗରମାନେ ସଂଘ ବା ସମିତି ଗଢ଼ିଲେ ଏବଂ ସମାଜ ଗୃହସବୁ ଏହିସବୁ ସମିତିର କେନ୍ଦ୍ରସ୍ଥଳୀ ହେଲା । ପରେ ଏଗୁଡ଼ିକ ଟାଉନହଲ୍‌ରେ ପରିଣତ ହେଲା ।

ଇଲେନ, ଫ୍ରଙ୍କଫର୍ଟ, ହାମ୍ବୁର୍ଗ ଏବଂ ଆହୁରି ଅନେକ ଯେଉଁସବୁ ସହର ଗଢ଼ି ଉଠିଲା, ସେଗୁଡ଼ିକ ସାମନ୍ତ ପ୍ରଭୁମାନଙ୍କ ପ୍ରତିଦ୍ୱନ୍ଦୀ ହୋଇ ବାହାରିଲା । ସେଥିରେ ଏକ ନୂତନ ଶ୍ରେଣୀ, ବଣିକ ଓ ବେପାରୀଶ୍ରେଣୀ ଜାଗ୍ରତ ହେଲେ, ସାମନ୍ତଙ୍କ ଅପେକ୍ଷା କଲି ପରି ତାଙ୍କର ଧନ ଥିଲା । ଏହା ଏକ ଦୀର୍ଘ ସଂଗ୍ରାମ କାହାଣୀ ଏବଂ ଅନେକ ସମୟରେ ରାଜା ନିଜର ସାମନ୍ତ ଓ ଭୂମିପତିମାନଙ୍କ କ୍ଷମତାକୁ ଭାଙ୍ଗି ଦେଇ ସହରଗୁଡ଼ିକର ପକ୍ଷ ନେଇଥିଲେ । ଯାହାହେଉ, ମୁଁ ବହୁତ ଆଗକୁ ଚାଲିଯାଉଛି ।

ସେହିକାଳରେ କୌଣସି ପ୍ରକାର ଦେଶୀପ୍ରେମ ବା ଜାତୀୟଭାବ ନ ଥିଲା ବୋଲି ମୁଁ ଏହି ଚିଠି ଆରମ୍ଭରେ କହିଥିଲି । ଲୋକେ ତାଙ୍କର କର୍ତ୍ତବ୍ୟ ଓ ଉପରିସ୍ଥ ପ୍ରଭୁ ପ୍ରତି ବଶ୍ୟତା କଥା ହିଁ ଚିନ୍ତା କରୁଥିଲେ । ସେମାନେ ତାର ସେବା ଲାଗି ଶପଥ ଗ୍ରହଣ କରିଥିଲେ, ଦେଶସେବା ନୁହେଁ । ଏପରିକି ରାଜା ମଧ୍ୟ ଏକ ଅସ୍ପଷ୍ଟ ବ୍ୟକ୍ତି ଥିଲେ ଓ ବହୁଦୂରରେ ରହୁଥିଲେ । ସାମନ୍ତ ରାଜାଙ୍କ ବିରୁଦ୍ଧରେ ବିଦ୍ରୋହ କରୁଥିଲା, ଏହାହିଁ ସେ ଖୋଜି ବୁଲୁଥିଲା । ତାର ଅନୁଚରମାନେ ତାଙ୍କୁ ଅନୁସରଣ କରୁଥିଲେ । ଅନେକ ଦିନ ପରେ ଯେଉଁ ଜାତୀୟତା ଜାତ ହେଲା, ଏହା ତାହାଠାରୁ ସମ୍ପୂର୍ଣ୍ଣ ଭିନ୍ନ ।

## ୫୪ । ଚୀନ ଯାଯାବରଙ୍କୁ ପଶ୍ଚିମକୁ ତଡ଼ିଦେଲା

ଜୁନ ୫, ୧୯୩୨

ଅନେକ ଦିନ ହେଲା; ମୋର ମନେହୁଏ ପ୍ରାୟ ମାସେ ହେବ, ମୁଁ ଚୀନ ଓ ସୁଦୂର ପ୍ରାଚ୍ୟ ରାଜ୍ୟମାନଙ୍କ ବିଷୟରେ ତୋତେ କିଛି ଲେଖି ନାହିଁ । ଆମେ ଇଉରୋପ, ଭାରତବର୍ଷ ଓ ପଶ୍ଚିମ ଏସିଆରେ ଅନେକ ପରିବର୍ତ୍ତନ ବିଷୟ ଆଲୋଚନା କରିଛେଁ, ଆରବମାନେ ବିସ୍ତାରଲାଭ କରି ଅନେକ ଦେଶ ଜୟ କରିବା କଥା ଲକ୍ଷ୍ୟ କରିଛେ ଏବଂ ଇଉରୋପ କପରି ଅନ୍ଧକାର ଭିତରେ ପଡ଼ିଲା ଓ ସେଥିରୁ ବାହାରିବା ପାଇଁ ଲଢ଼ାଇ କରୁଥିବା କଥା ଦେଖିଛେ । ଅବଶ୍ୟ ଏଇ କାଳଭିତରେ ଚୀନ ସାଧାରଣତଃ ଖୁବ୍ ଭଲଭାବରେ ରହିଥିଲା । ୭ମ ୮ମ ଶତାବ୍ଦୀରେ ଟାଙ୍ଗ ସମ୍ରାଟମାନଙ୍କ ଅଧୀନରେ ସମ୍ଭବତଃ ଚୀନ ପୃଥିବୀରେ ସବାପେକ୍ଷା ଅଧିକ ସଭ୍ୟ, ସମୃଦ୍ଧିଶାଳୀ ଓ ସୁଶାସିତ ରାଜ୍ୟ ଥିଲା । ଅବଶ୍ୟ ଇଉରୋପକୁ ଏହା ସହିତ ତୁଳନା କରାଯାଇପାରେନା; କାରଣ ରୋମ ପତନ ପରେ ଏହା ଅତ୍ୟନ୍ତ ଅନୁନ୍ନତ ଥିଲା । ଉତ୍ତର-ଭାରତ ଅଧିକାଂଶ କାଳ ବିଜ୍

ନିମ୍ନସ୍ତରରେ ପଡ଼ିଥିଲା । ହର୍ଷଙ୍କ ଶାସନରେ ଯେପରି ଥିଲା, ସେହିପରି ତାର ଭଲ ଅବସ୍ଥା ବି ହୋଇଥିଲା; ମାତ୍ର ମୋଟାମୋଟି ଏହା ତଳଆଡ଼କୁ ଯାଉଥିଲା । ଦକ୍ଷିଣ-ଭାରତ ଅବଶ୍ୟ ଉତ୍ତର ଅପେକ୍ଷା ଅଧିକ ସତେଜ ଥିଲା ଏବଂ ସମୁଦ୍ର ସେପାରିରେ ତାର ଆଙ୍କୋର ଓ ଶ୍ରୀବିଜୟ ଉପନିବେଶରେ ଏକ ମହତ୍ ଯୁଗର ପୂର୍ବାବସ୍ଥା ଥିଲା । ଏହି କାଳରେ କେବଳ ବାଗଦାଦ ଓ ସ୍ପେନ ଏହି ଦୁଇଟି ଆରବ ରାଜ୍ୟ ହିଁ କେତେକ ପରିମାଣରେ ଚୀନର ପ୍ରତିଦ୍ୱନ୍ଦୀ ହେବାର ଉପଯୁକ୍ତ ଥିଲେ । ମାତ୍ର ଏମାନଙ୍କ ମଧ୍ୟ ଅପେକ୍ଷାକୃତ କ୍ଷଣକାଳ ଲାଗି ଯଶ ଅର୍ଜନ କରିଥିଲେ । ଯାହାହେଉ ଏହା ଜାଣିଲେ ଖୁସି ଲାଗେ ଯେ ଜଣେ ଟାଙ୍ଗ୍ ସମ୍ରାଟ ନିଜ ସିଂହାସନରୁ ବିତାଡ଼ିତ ହୋଇଥିବାରୁ ଆରବମାନଙ୍କ ସାହାଯ୍ୟ ମାଗିଥିଲେ ଏବଂ ତାଙ୍କ ସାହାଯ୍ୟରେ କ୍ଷମତା ଫେରିପାଇଲେ ।

ସେହି କାଳରେ ଚୀନ ସଭ୍ୟତାପଥରେ ଭଲରୂପେ ଗତି କରୁଥିଲା । ସେକାଳର ଇଉରୋପୀୟମାନଙ୍କୁ ଅର୍ଦ୍ଧବର୍ବର ବୋଲି ଜ୍ଞାନ କରିବାର ଯଥେଷ୍ଟ କାରଣ ଥିଲା । ସେହିକାଳର ପରିଚିତ ପୃଥିବୀରେ ଚୀନ ସର୍ବୋପରି ଥିଲା । ମୁଁ ପରିଚିତ ଦୁନିଆ କହୁଛି; କାରଣ ଆମେରିକାରେ ସେତେବେଳେ କ'ଣ ଘଟୁଥିଲା ମୋତେ ଜଣା ନାହିଁ । ଏତିକି ଆମେ ଜାଣୁ ଯେ ମେକ୍ସିକୋରେ, ପେରୁରେ ଏବଂ ଆଖପାଖ ରାଜ୍ୟମାନଙ୍କରେ କେତେ ଶହ ବର୍ଷ ହେଲା ସଭ୍ୟତା ଚାଲି ଆସୁଥିଲା । କେତେକ ଭାବରେ ସେମାନେ ଖୁବ୍ ଉନ୍ନତ ଥିଲେ, ଅନ୍ୟ ଦିଗରେ ସେମାନେ ଅତ୍ୟନ୍ତ ଅନୁନ୍ନତ ଥିଲାପରି ଦେଖାଯାଏ; କିନ୍ତୁ ମୁଁ ସେହିବୁ ସମ୍ବନ୍ଧରେ ଏତେ କମ ଜାଣେ ଯେ ସେ ବିଷୟରେ ଅଧିକ କିଛି କହିବାକୁ ସାହସ କରୁ ନାହିଁ । ଯାହାହେଉ ତୋର ମେକ୍ସିକୋ ଓ ମଧ୍ୟ-ଆମେରିକାର 'ମାୟା' ସଭ୍ୟତା ଏବଂ † ଇନ୍‌କାଙ୍କ ପେରୁଭିଆନ ଷ୍ଟେଟ୍ କଥା ମନେ ରଖିବା ଦରକାର । ମୋ ଅପେକ୍ଷା ଅନ୍ୟ କେହି ଜ୍ଞାନୀ ଲୋକ ତୋତେ ସେ ସମ୍ବନ୍ଧରେ ଆହୁରି କିଛି କହିପାରିବେ । ମୁଁ ଅବଶ୍ୟ ସ୍ୱୀକାର କରିବ ଯେ ତାହା ମୋର ମନ ଆକର୍ଷଣ କରିଛି; କିନ୍ତୁ ମୋର ଚିତ୍ତାକର୍ଷଣ ଯେପରି ହୋଇଛି, ଅଜ୍ଞତା ମଧ୍ୟ ସେହିପରି ରହିଛି ।

ତୋତେ ଆଉ ଗୋଟିଏ କଥା ସ୍ମରଣ କରାଇଦେବାକୁ ମୁଁ ଚାହେଁ । ଆମେ ଏହି ଚିଠିରେ ଦେଖିଛେ ଯେ ମଧ୍ୟ-ଏସିଆରେ ଅନେକ ଯାଯାବର ଜାତି ବାହାରିଛନ୍ତି ଏବଂ ପଶ୍ଚିମରେ ଇଉରୋପକୁ ଯାଇଛନ୍ତି ବା ଭାରତରେ ପଶିଛନ୍ତି । ହୁନ୍, ଶକ, ତୁର୍କି ଓ ଆହୁରି ଅନେକ ଗୋଟିକ ପରେ ଗୋଟିଏ ଢେଉ ମାଡ଼ିଲା ପରି ଯାଇଛନ୍ତି । ତୋର ମନେଥିବ, ଶ୍ୱେତ ହୁନମାନେ ଭାରତକୁ ଆସିଥିଲେ । ଏବଂ ଅଟିଲାଙ୍କ ଅଧୀନରେ ଥିବା ହୁନମାନେ ଇଉରୋପକୁ ଯାଇଥିଲେ ଯେଉଁ ସେଲଜୁକ ତୁର୍କମାନେ

---

† ଇନ୍‌କା (Inca) ଦକ୍ଷିଣ-ଆମେରିକାର ରାଜକୀୟ ଉପାଧି । ପେରୁ-ଦେଶରେ ଏମାନେ ପ୍ରାୟ ୩୦୦ ବର୍ଷ ରାଜୁତି କରିଥିଲେ ।

ବାଗଦାଦ ସାମ୍ରାଜ୍ୟ ଦଖଲ କରିଥିଲେ, ସେମାନେ ମଧ୍ୟ ମଧ୍ୟ-ଏସିଆରୁ ଆସିଥିଲେ । ପରେ ତୁର୍କମାନଙ୍କ ଆଉ ଏକ ଶାଖା ଅଟୋମାନ ତୁର୍କ ଆସିଥିଲେ ଏବଂ ସେମାନେ କନ୍‌ଷ୍ଟାଣ୍ଟି-ନୋପଲ ଜୟକଲେ ଓ ଭିଏନା ପର୍ଯ୍ୟନ୍ତ ମାଡ଼ିଯାଇଥିଲେ । ମଧ୍ୟ-ଏସିଆ ଓ ମଙ୍ଗୋଲିଆରୁ ନିଷ୍ଠୁର ମଙ୍ଗୋଲିୟମାନେ ଆସିଥିଲେ; ସେମାନେ ଇଉରୋପର ମଧ୍ୟସ୍ଥଳୀ ପର୍ଯ୍ୟନ୍ତ ଜୟ କରିଥିଲେ ଓ ଚୀନକୁ ମଧ୍ୟ ତାଙ୍କ ଶାସନାଧୀନରେ ଆଣିଥିଲେ ଏବଂ ତାଙ୍କର ଜଣେ ବଂଶଧର ଭାରତରେ ଏକ ବଂଶ ଓ ସାମ୍ରାଜ୍ୟ ସ୍ଥାପନ କଲେ । ଏହି ବଂଶରୁ କେତେକ ପ୍ରସିଦ୍ଧ ଶାସକ ବାହାରିଥିଲେ ।

ମଧ୍ୟ-ଏସିଆର ଓ ମଙ୍ଗୋଲିଆର ଏହିସବୁ ଯାଯାବର ଜାତିଙ୍କ ସହ ଚୀନ ଅବିଶ୍ରାନ୍ତ ଲଢ଼ାଇ କରିଥିଲା, ଅଥବା ଏହା କହିଲେ ବୋଧହୁଏ ଠିକ୍ ହେବ ଯେ ଏହି ଯାଯାବରମାନେ ପ୍ରାୟ ସବୁଦା ଚୀନକୁ ହଇରାଣ କରୁଥିଲେ ଓ ଚୀନ୍ ନିଜକୁ ରକ୍ଷା କରିବାକୁ ବାଧ୍ୟ ହେଉଥିଲା । ଏହିସବୁରୁ ରକ୍ଷା ପାଇବା ପାଇଁ ମହାପ୍ରାଚୀର ନିର୍ମାଣ କରାଗଲା । ଏଥିରେ ସନ୍ଦେହ ନାହିଁ ଯେ ଏଥିରେ ହିତ ହେଲା; କିନ୍ତୁ ଆକ୍ରମଣରୁ ରକ୍ଷା କରିବା ପାଇଁ ଏହା ଅତି କ୍ଷୀଣ ବ୍ୟବସ୍ଥା । ସମ୍ରାଟ୍ ପରେ ସମ୍ରାଟ୍‌ଙ୍କୁ ଯାଯାବରମାନଙ୍କୁ ତଡ଼ିବାକୁ ପଡ଼ିଲା ଏବଂ ତୋତେ ମୁଁ ଆଗରୁ କହିଛି ଯେ ଏହି ବିତାଡ଼ନ ପ୍ରକ୍ରିୟାରେ ହିଁ ଚୀନ ସାମ୍ରାଜ୍ୟ ପଶ୍ଚିମରେ କାସ୍ପିଆନ ହ୍ରଦ ପର୍ଯ୍ୟନ୍ତ ବିସ୍ତୃତ ହୋଇଗଲା । ଚୀନ ଲୋକେ ସମ୍ରାଜ୍ୟବାଦୀ ନ ଥିଲେ । କେତେକ ସମ୍ରାଟ୍ ନିଶ୍ଚୟ ସାମ୍ରାଜ୍ୟବାଦୀ ଥିଲେ ଓ ଅନ୍ୟ ଦେଶ ବିଜୟ କାମନା କରୁଥିଲେ । କିନ୍ତୁ ଅନେକ ଲୋକଙ୍କ ସହିତ ତୁଳନା କଲେ ସେମାନେ ଶାନ୍ତିପ୍ରିୟ ଥିଲେ ଓ ଯୁଦ୍ଧ ଏବଂ ଆକ୍ରମଣପ୍ରିୟ ନ ଥିଲେ । ଯୋଦ୍ଧା ଅପେକ୍ଷା ବିଦ୍ୱାନ୍ ଲୋକର ହିଁ ଚୀନରେ ସବୁଦା ଅଧିକ ସମ୍ମାନ ଓ ଗୌରବ ଥିଲା । ଏହିସବୁ ସତ୍ତ୍ୱେ ସାମୟିକ ଭାବରେ ଚୀନ ସାମ୍ରାଜ୍ୟ ଅତି ବିସ୍ତୃତ ଲାଭକରି ପାରିଥିଲା, ତାହାର କାରଣ ହେଉଛି ଉତ୍ତର ଓ ପଶ୍ଚିମରୁ ଯାଯାବରମାନେ ବାରମ୍ବାର ଆକ୍ରମଣ କରି ଯେଉଁ ଉତ୍ତେଜନା ସୃଷ୍ଟି କରୁଥିଲେ, ସେଥିଯୋଗୁଁ ଅଧିକ ପରିମାଣରେ ଏହା ହେଉଥିଲା । ଶକ୍ତିଶାଳୀ ସମ୍ରାଟ୍‌ମାନେ ଚିରଦିନ ପାଇଁ ସେମାନଙ୍କ ହାତରୁ ମୁକ୍ତି ପାଇବା ଲାଗି ସୁଦୂର ପଶ୍ଚିମକୁ ତାଙ୍କୁ ତଡ଼ି ଦେଇଥିଲେ । ଏଥିରେ ସ୍ଥାୟୀରୂପେ ପ୍ରଶ୍ନର ସମାଧାନ ହୋଇ ନ ଥିଲା । ମାତ୍ର ସେମାନେ ଅନ୍ତତଃ କିଛିଦିନ ଆରାମ ପାଇଲେ ।

କିନ୍ତୁ ଅନ୍ୟ ଦେଶର ଲୋକ ଓ ରାଜାର କ୍ଷତିରେ ହିଁ ଚୀନାଲୋକେ ଏହି ଆରାମ ପାଉଥିଲେ । କାରଣ ଚୀନାମାନଙ୍କଦ୍ୱାରା ଯାଯାବରମାନେ ତଡ଼ାଖାଇ ଖସିଗଲେ ଓ ଅନ୍ୟ ରାଜ୍ୟ ଆକ୍ରମଣ କଲେ । ସେମାନେ ଭାରତକୁ ଆସିଲେ । ସେମାନେ ବାରମ୍ବାର ଇଉରୋପକୁ ଗଲେ । ଚୀନର ହାନ୍ ସମ୍ରାଟ୍‌ମାନଙ୍କର ବିତାଡ଼ନ ଫଳରେ ଅନ୍ୟ ଦେଶରେ

ହୁନ, ତାତାର ଓ ଅନ୍ୟ ଯାଯାବରମାନେ ରହିଲେ । ଟାଙ୍ଗମାନେ ତୁର୍କମାନଙ୍କୁ ଇଉରୋପକୁ ବିଦାୟ କରିଥିଲେ ।

ଏପର୍ଯ୍ୟନ୍ତ ଏ ଯାଯାବର ଜାତିଙ୍କର ହାତରୁ ନିଜକୁ ରକ୍ଷା କରିବାରେ ଚୀନାମାନେ ଅନେକ ପରିମାଣରେ କୃତକାର୍ଯ୍ୟ ହୋଇଥିଲେ । ଆମେ ଏବେ ଆଉ ଏକ କାଳ କଥା ଆଲୋଚନା କରିବା, ଯେତେବେଳେ ସେମାନେ ସେପରି କୃତିତ୍ୱ ଲାଭ କରିପାରି ନ ଥିଲେ । ପ୍ରତ୍ୟେକ ସ୍ଥଳରେ ବଂଶମାନଙ୍କର ଯେପରି ଅବସ୍ଥା ସର୍ବଦା ଘଟିଥାଏ, ସେହିପରି ଟାଙ୍ଗ୍ ବଂଶରୁ ଅନେକ ଅକର୍ମଣ୍ୟ ଶାସକ କ୍ରମେ ବାହାରିଲେ । ସେମାନଙ୍କ-ଠାରେ ପୂର୍ବପୁରୁଷଙ୍କ କୌଣସି ସଦ୍‌ଗୁଣ ନ ଥିଲା ବରଂ ସେମାନେ ବିଳାସପ୍ରିୟ ହୋଇଥିଲେ । ରାଜ୍ୟରେ ବ୍ୟଭିଚାର ପ୍ରଚାର ଲାଭକଲା ଏବଂ ଏହା ସଙ୍ଗେ ସଙ୍ଗେ ଅତ୍ୟଧିକ ଟିକସ ବୋଝ ପଡ଼ୁଥିଲା । ଏହା ମଧ୍ୟ ଅଧିକ ଭାବରେ ଦରିଦ୍ର ଶ୍ରେଣୀଙ୍କ ଉପରେ ହିଁ ପଡ଼ୁଥିଲା । ଅସନ୍ତୋଷ ବୃଦ୍ଧି ପାଇଲା ଏବଂ ଦଶମ ଶତାବ୍ଦୀର ଆରମ୍ଭରେ ୯୦୭ ଖ୍ରୀ: ରେ ଏହି ବଂଶର ପତନ ହେଲା ।

ଅର୍ଦ୍ଧ ଶତାବ୍ଦୀ ପର୍ଯ୍ୟନ୍ତ ଗୋଟିକ ପରେ ଗୋଟିଏ କ୍ଷୁଦ୍ର ଅନାମଧେୟ ଶାସକ ହେଲେ । ଯାହାହେଉ ୯୬୦ ଖ୍ରୀଷ୍ଟାବ୍ଦରେ ଚୀନରେ ଆଉ ଏକ ବଡ଼ ବଂଶର ଶାସନ ଆରମ୍ଭ ହେଲା । ଏହା ସୁଙ୍ଗବଂଶ; କାଓ-ସୁ ଏହା ସ୍ଥାପନ କରିଥିଲେ; କିନ୍ତୁ ଚୀନର ସୀମାନ୍ତ ଓ ଅଭ୍ୟନ୍ତରରେ ଗୋଳମାଳ ଲାଗି ରହିଥିଲା । ଅତ୍ୟଧିକ ଭୂରାଜସ୍ୱ କୃଷକମାନଙ୍କ ଉପରେ ବଡ଼ ବୋଝ ହୋଇଥିଲା ଏବଂ ସେମାନେ ଖୁବ୍ ଅସନ୍ତୋଷ ପ୍ରକାଶ କରୁଥିଲେ । ଭାରତ ପରି ସମଗ୍ର ଭୂବ୍ୟବସ୍ଥା ଲୋକଙ୍କ ଉପରେ ଏକ ଅତ୍ୟଧିକ ବୋଝ ଥିଲା ଏବଂ ଏହା ସମ୍ପୂର୍ଣ୍ଣରୂପେ ପରିବର୍ତ୍ତନ ନ ହେବା ପର୍ଯ୍ୟନ୍ତ କୌଣସି ଶାନ୍ତି ବା ପ୍ରତିକାର ହୋଇପାରିବ ନାହିଁ; କିନ୍ତୁ ଏପରି ମୌଳିକ ପରିବର୍ତ୍ତନ କରିବା ସର୍ବଦା କଷ୍ଟକର । ଉପରେ ଥିବା ଲୋକେ ପ୍ରଚଳିତ ପ୍ରଥାରେ ଲାଭବାନ ହୁଅନ୍ତି ଏବଂ କୌଣସି ପରିବର୍ତ୍ତନ ପ୍ରସ୍ତାବ କଲେ ଖୁବ ଚିତ୍କାର ଉଠାନ୍ତି, କିନ୍ତୁ ଯଦି ଠିକ୍ ସମୟରେ ପରିବର୍ତ୍ତନ କରାଯାଏ, ତେବେ ବିନା ନିମନ୍ତ୍ରଣରେ ପରିବର୍ତ୍ତନ ନିଜେ ଆସି ସାରା ମାମଲା ନିଷ୍ପତ୍ତି କରିଦିଏ ।

ଟାଙ୍ଗ ବଂଶ ଆବଶ୍ୟକୀୟ ପରିବର୍ତ୍ତନ ନ କରିବା ହେତୁ ତାହାର ପତନ ହେଲା । ଏହି କାରଣରୁ ସୁଙ୍ଗମାନଙ୍କୁ ମଧ୍ୟ କ୍ରମାନ୍ୱୟରେ ଗୋଳମାଳରେ ପଡ଼ିବାକୁ ହୋଇଥିଲା । ତାଙ୍କ ଭିତରୁ ଏପରି ଜଣେ ଲୋକ ବାହାରିଥିଲା ଯିଏ ହୁଏତ କୃତକାର୍ଯ୍ୟ ହୋଇପାରିଥାଆନ୍ତା । ସେ ହେଉଛନ୍ତି ଓ୍ୱାଙ୍ଗ-ଆନସି; ଏକାଦଶ ଶତାବ୍ଦୀରେ ସୁଙ୍ଗବଂଶର ସେ ପ୍ରଧାନମନ୍ତ୍ରୀ ଥିଲେ । ମୁଁ ତୋତେ କହିଛି, ଚୀନ୍ କନ୍‌ଫୁସିଅସ ଭାବଧାରାରେ ଶାସିତ ହେଉଥିଲା । ସବୁ କର୍ମଚାରୀଙ୍କୁ କନ୍‌ଫୁସିଅସ ସାହିତ୍ୟର ପରୀକ୍ଷାରେ ପାସ କରିବାକୁ

ପଡ଼ୁଥିଲା ଏବଂ କନ୍‌ଫୁସିଅସ ଯାହା କହିଯାଇଥିଲେ, ତାହା ବିରୁଦ୍ଧରେ କିଛି କହିବାକୁ କେହି ସାହସ କରୁ ନ ଥିଲେ । ଓ୍ୱାଙ୍ଗ-ଆନସି ଏହାର ବିରୁଦ୍ଧରେ ଗଲେ ନାହିଁ; କିନ୍ତୁ ସେ ଏକ ଅଦ୍ଭୁତଭାବରେ ଏଗୁଡ଼ିକର ବ୍ୟାଖ୍ୟା କରିଥିଲେ । କୌଣସି ବିଷୟକୁ ବାଟ କାଢ଼ିବା ପାଇଁ ଚତୁର ଲୋକେ ଏପରି କରନ୍ତି । ଓ୍ୱାଙ୍ଗଙ୍କ କେତେକ ଧାରଣା ଅଲୌକିକ ଭାବରେ ଆଧୁନିକ ଥିଲା । ତାଙ୍କର ଉଦ୍ଦେଶ୍ୟ ହେଲା, ଦରିଦ୍ରଙ୍କ ଉପରେ କରଭାର କମାଇଦେବା ଏବଂ ଯେଉଁ ଧନୀଲୋକେ ଦେଇପାରିବେ ତାଙ୍କ ଉପରେ କର ବଢ଼ାଇବା । ସେ ଭୂମି-ରାଜସ୍ୱ କମାଇଦେଲେ ଏବଂ ଜିନିଷ ଆକାରରେ ଅସୁଲ ଦେବା ନିମନ୍ତେ, ଅର୍ଥାତ୍ କୃଷକମାନେ ଯଦି ମୁଦ୍ରାରେ ଦେବା କଷ୍ଟକର ହୁଏ, ତେବେ ଶସ୍ୟ ବା ଅନ୍ୟ ଉତ୍ପନ୍ନ ଦ୍ରବ୍ୟ ଆକାରରେ ଅସୁଲ ଦେବାକୁ ଅନୁମତି ଦେଲେ । ଧନୀଙ୍କ ଉପରେ ସେ ଏକ ଆୟକର ଧାର୍ଯ୍ୟ କଲେ । ଏହା ଏକ ଅତି ଆଧୁନିକ କର ବୋଲି ଧରାଯାଏ । ଅଥଚ ଆମେ ଦେଖୁଛୁ ଯେ ୯୦୦ ବର୍ଷ ପୂର୍ବେ ଚୀନରେ ଏପରି ପ୍ରସ୍ତାବ ହୋଇଥିଲା । କୃଷକ-ମାନଙ୍କୁ ସାହାଯ୍ୟ କରିବା ନିମନ୍ତେ ଓ୍ୱାଙ୍ଗ ପ୍ରସ୍ତାବ କରିଥିଲେ ଯେ ସରକାର ସେମାନଙ୍କୁ ଅର୍ଥ ଧାର ଦେବା ଉଚିତ୍, ତାହା ସେମାନେ ଶସ୍ୟ ଅମଳ ସମୟରେ ଆଦାୟ ଦେଇଦେବେ । ଶସ୍ୟର ଦର ହ୍ରାସବୃଦ୍ଧି ଅସୁବିଧା ଦୂର କରିବା ଏକ କଷ୍ଟକର ବ୍ୟାପାର । ବଜାର ଭାଉ ପଡ଼ିଗଲେ ଗରିବ କୃଷକ ବିଚରା ତାର ଭୂମିଜାତ ଶସ୍ୟରୁ ଖୁବ୍ କମ ଅର୍ଥ ପାଏ । ସେମାନେ ଏହା ବିକି କରିପାରନ୍ତି ନାହିଁ । ଖଜଣା ଦେବା ବା କିଛି କିଣିବା ନିମନ୍ତେ ହାତରେ ପଇସା କେଉଁଠୁ ପାଇବେ ? ଓ୍ୱାଙ୍ଗ-ଆନ-ସି ଏହି ସମସ୍ୟାର ସମ୍ମୁଖୀନ ହେବାକୁ ଚେଷ୍ଟା କରିଥିଲେ ଏବଂ ପ୍ରସ୍ତାବ କଲେ ଯେ ଶସ୍ୟର ଭାଉ ପଡ଼ିବା ଉଠିବା ବନ୍ଦ କରିବା ନିମନ୍ତେ ସରକାର ଶସ୍ୟ ବିକାକିଣା କରିବା ଉଚିତ୍ ।

ଓ୍ୱାଙ୍ଗ ମଧ୍ୟ ପ୍ରସ୍ତାବ କରିଥିଲେ ଯେ ସାଧାରଣ କାର୍ଯ୍ୟ ନିମନ୍ତେ କୌଣସି ପ୍ରକାର ବେଠି ହେବା ଉଚିତ୍ ନୁହେଁ ଏବଂ ଯେଉଁ ଲୋକ କାର୍ଯ୍ୟ କରିବ ସେ ପୂରା ମଜୁରି ପାଇବା ଉଚିତ୍ । ସେ ମଧ୍ୟ ପାଓ-ଚିଆ ନାମକ ଏକ ସ୍ଥାନୀୟ ସାମରିକ ସେନା ସ୍ଥାପନ କରିଥିଲେ । କିନ୍ତୁ ଦୁର୍ଭାଗ୍ୟବଶତଃ ଓ୍ୱାଙ୍ଗ ତାଙ୍କ କାଳ ଅପେକ୍ଷା ବହୁତ ଆଗୁଆ ହୋଇପଡ଼ିଲେ ଏବଂ କେତେକ କାଳ ପରେ ତାଙ୍କ ସଂସ୍କାରସବୁ ଲୁଆଡ଼େ ଲୁଚିଗଲା । କେବଳ ସାମରିକ ସେନାହିଁ ୮୦୦ ବର୍ଷରୁ ଅଧିକ କାଳ ପର୍ଯ୍ୟନ୍ତ ରହିଥିଲା ।

ସୁଙ୍ଗମାନଙ୍କ ସମ୍ମୁଖରେ ଯେଉଁ ସମସ୍ୟାମାନ ଥିଲା, ତାହା ସମାଧାନ କରିବାର ସାହସ ନ ଥିବାରୁ କ୍ରମେ ସେମାନେ ତାହା ମୁଣ୍ଡ ନୁଆଇଁ ମାନିଗଲେ । ଉତ୍ତରାଞ୍ଚଳର ବର୍ବର ଖିତାନମାନେ ତାଙ୍କୁ ବଡ଼ ହଇରାଣ କରୁଥିଲେ । ସେମାନଙ୍କୁ ତଡ଼ିବାରେ ସମର୍ଥ ନ ହୋଇ

ସେମାନେ ଉତ୍ତରପଶ୍ଚିମରୁ କିନ୍ ବା ସୁବର୍ଣ୍ଣ ତାତାରମାନଙ୍କୁ ତାଙ୍କୁ ସାହାଯ୍ୟ କରିବା ନିମନ୍ତେ ଆହ୍ୱାନ କଲେ । କିନ୍‌ମାନେ ଆସିଲେ ଓ ଖିତାନମାନଙ୍କୁ ତଡ଼ିଦେଲେ । କିନ୍ତୁ ସେମାନେ ନିଜେ ରହିଲେ ଓ ପାଦେ ଘୁଞ୍ଚିବାକୁ ଅସ୍ୱୀକାର କଲେ । ଯେଉଁ ଦୁର୍ବଳ ବ୍ୟକ୍ତି ବା ଦେଶ ବଳବାନଠାରୁ ସାହାଯ୍ୟ ଭିକ୍ଷା କରିଥାଏ, ତାହାର ଦଶା ପ୍ରାୟ ଏହିପରି ହୋଇଥାଏ । କିନ୍‌ମାନେ ଉତ୍ତର-ଚୀନର ପ୍ରଭୁ ହେଲେ ଏବଂ ତାଙ୍କର ରାଜଧାନୀ ହେଲା ପେକିଂ । ସୁଙ୍ଗ୍‌ମାନେ ଦକ୍ଷିଣରେ ରହିଲେ ଏବଂ ଅଗ୍ରଗାମୀ କିନ୍‌ମାନଙ୍କ ସମକ୍ଷରେ ସଙ୍କୁଚିତ ହୋଇଗଲେ । ତେଣୁ ଉତ୍ତର-ଚୀନରେ କିନ୍ ସାମ୍ରାଜ୍ୟ ଓ ଦକ୍ଷିଣ-ଚୀନରେ ସୁଙ୍ଗ୍ ସାମ୍ରାଜ୍ୟ ହେଲା । ଏହି ସୁଙ୍ଗ୍‌ମାନଙ୍କୁ ଦକ୍ଷିଣ ସୁଙ୍ଗ ବୋଲି କୁହାଯାଉଥିଲା । ଉତ୍ତରରେ ସୁଙ୍ଗ୍‌ବଂଶ ୯୬୦ରୁ ୧୧୨୭ ପର୍ଯ୍ୟନ୍ତ ରହିଥିଲା । ଦକ୍ଷିଣସ୍ଥ ସୁଙ୍ଗ ମାନେ ଦକ୍ଷିଣ ଚୀନରେ ୧୫୦ ବର୍ଷ ପର୍ଯ୍ୟନ୍ତ ଶାସନ କରିଥିଲେ । ଶେଷରେ ମଙ୍ଗୋଲମାନେ ଆସିଲେ ଏବଂ ୧୨୬୦ ଖ୍ରୀ:ରେ ସେମାନଙ୍କୁ ଶେଷ କରିଦେଲେ । କିନ୍ତୁ ପୂର୍ବକାଳର ଭାରତ ପରି ଚୀନ ମଧ୍ୟ ଏହି ମଙ୍ଗୋଲମାନଙ୍କୁ ଗ୍ରହଣ କରିନେଇ ନିଜ ଭିତରେ ମିଶାଇନେଲା ଏବଂ ସେମାନଙ୍କୁ ଏକ ବିଶେଷ ପ୍ରକାର ଚୀନା ଲୋକରେ ପରିଣତ କରିଦେଲା ।

ଏହିରୂପେ ଚୈନରେ ଯାଯାବର ଜାତିମାନେ ଚୀନରେ ରହିଲେ । କିନ୍ତୁ ସେମାନେ ଚୀନା ହେଲେ ପୂରା ସଭ୍ୟ ହେଲେ ଏବଂ ଏସିଆ ଓ ଇଉରୋପର ଅନ୍ୟ ଅଞ୍ଚଳ ଯେପରି ଏମାନଙ୍କ ଲାଗି ଭୋଗିଥିଲେ, ଚୀନରେ ତାହା ହୋଇ ନ ଥିଲା ।

ଉତ୍ତର ଓ ଦକ୍ଷିଣରେ ସୁଙ୍ଗ୍‌ମାନେ ତାଙ୍କର ପୂର୍ବାଧିକାରୀ ଟାଙ୍ଗ୍‌ମାନଙ୍କ ପରି ରାଜନୀତିକ ଦୃଷ୍ଟିରୁ କ୍ଷମତାଶାଳୀ ନ ଥିଲେ । କିନ୍ତୁ ସେମାନେ ଟାଙ୍ଗ୍‌ମାନଙ୍କର ସମୃଦ୍ଧି ବେଳର କଳାଗତ ପରମ୍ପରା ଆଣିଥିଲେ ଏବଂ ବାସ୍ତବିକ ସେଥିରେ ଉନ୍ନତି କରିଥିଲେ । ଦକ୍ଷିଣସ୍ଥ ସୁଙ୍ଗ୍‌ମାନଙ୍କ ଅଧୀନରେ ଦକ୍ଷିଣ-ଚୀନ କଳା ଓ କବିତାରେ ଛପିଯାଇଥିଲା ଏବଂ ସୁନ୍ଦର ଅଙ୍କନ ଚିତ୍ରସବୁ ହୋଇଥିଲା । ବିଶେଷତଃ ଦୃଶ୍ୟ ପ୍ରକୃତିର ଚିତ୍ର ହୋଇଥିଲା; କାରଣ ସୁଙ୍ଗ୍‌ମାନେ ପ୍ରକୃତିର ଆଦର କରୁଥିଲେ । ଚୀନାବାସନ ବି ପ୍ରଚଳିତ ହେଲା, କଳାକାରର ଅଙ୍ଗୁଳିସ୍ପର୍ଶରେ ଏହା ଅଧିକ ସୁନ୍ଦର ହୋଇଗଲା । ଏହା କ୍ରମେ ଅଧିକରୁ ଅଧିକ ସୁନ୍ଦର ଓ ବୈଚିତ୍ର୍ୟମୟ ହେଲା । ଶେଷରେ ୧୦୦ ବର୍ଷ ପରେ ମିଙ୍ଗ ସମ୍ରାଟଙ୍କ କାଳରେ ଅତୀବ ସୁନ୍ଦର ଚୀନାବାସନ ତିଆରି କରାଗଲା । ମିଙ୍ଗ୍ ଯୁଗର ଚୀନା କଳସ ଆଜିସୁଦ୍ଧା ଏକ ଆମୋଦଦାୟକ ଜିନିଷ ହୋଇ ରହିଛି ।

## ୫୫ । ସୋଗୁନ୍‌ମାନେ ଜାପାନରେ ଶାସନ କଲେ

ଜୁନ୍ ୭, ୧୯୩୨

ଚୀନରୁ ପୀତସାଗର ପାରହୋଇ ଜାପାନକୁ ଯିବା ନିହକ ଏବଂ ଆମେ ଯେତେବେଳେ ବର୍ତ୍ତମାନ ଏହାର ଏତେ ନିକଟରେ ପହଞ୍ଚିଛେ, ସେତେବେଳେ ଆମେ ଭଲଭାବରେ ତାହା କରିପାରିବା । ଗତଥର କଥା ତୋର ମନେ ଅଛି ତ ? ଆମେ ଦେଖି-ଥିଲେ, ପ୍ରଧାନ ପରିବାରସବୁ ନିଜ ଭିତରେ ପ୍ରଭୁତ୍ୱ ଲାଗି ଲଢ଼ାଇ ଚଳୁଥିଲେ ଏବଂ କେନ୍ଦ୍ର ସରକାର ବେଶି ପ୍ରାଧାନ୍ୟ ଲାଭ କରୁଥିଲେ । ସମ୍ରାଟ ଏକ ବିରାଟ କ୍ଷମତାଶାଳୀ ଜାତିର ମୁଖିଆ ହେବା ପରିବର୍ତ୍ତେ କେନ୍ଦ୍ର ସରକାରର ମୁଖିଆ ହେଲେ । କେନ୍ଦ୍ର କର୍ତ୍ତୃତ୍ୱର ପ୍ରତୀକ ରୂପେ ରାଜଧାନୀ ନାରା ସ୍ଥାପିତ ହେଲା । ତା'ପରେ ରାଜଧାନୀ ପରିବର୍ତ୍ତିତ ହୋଇ କ୍ୟୋଟୋକୁ ଗଲା । ଚୀନର ଶାସନପ୍ରଣାଳୀ ଅନୁକରଣ କରାଗଲା ଏବଂ ଚୀନରୁ ଅଥବା ଚୀନ ଜରିଆରେ କଳା, ଧର୍ମ ଓ ରାଜନୀତିକୁ ଅନେକ ଜିନିଷ ଆସିଲା । ଏପରିକି ଦେଶର ନାମ ତାଇ ନିପନ୍ ଚୀନରୁ ଆସିଥିଲା ।

ଆମେ ଦେଖିଲେ, ଫୁଜିଓ୍ୱାରା ପରିବାର ନାମକ ଏକ କ୍ଷମତାଶାଳୀ ପରିବାର ସମସ୍ତ କ୍ଷମତା ଦଖଲ କରିନେଲା ଏବଂ ସମ୍ରାଟମାନଙ୍କୁ ପୁତ୍ତଳୀରୂପେ ବ୍ୟବହାର କଲା । ସେମାନେ ୨୦୦ ବର୍ଷ ରାଜୁତି କଲେ, ଶେଷରେ ସମ୍ରାଟ ହତାଶ ହୋଇ ସିଂହାସନ ଛାଡ଼ିଲେ ଓ ଧର୍ମମଠରେ ପ୍ରବେଶ କଲେ । ପୁରାତନ ସମ୍ରାଟ ସନ୍ନ୍ୟାସୀ ହୋଇ ସୁଦ୍ଧା ତାଙ୍କର ପୁତ୍ର ଯେ କି ସମ୍ରାଟ ପଦରେ ଶାସନ କରୁଥିଲେ, ତାଙ୍କୁ ପରାମର୍ଶ ଦେଇ ଶାସନ ବ୍ୟାପାରରେ ବିଶେଷ ହସ୍ତକ୍ଷେପ କଲେ । ଏହି ଉପାୟରେ ସମ୍ରାଟମାନେ ଫୁଜିଓ୍ୱାରା ପରିବାରର ହାତରୁ କୌଣସି ପ୍ରକାର ମୁକ୍ତ ପାଇଲେ । ଏହା କାର୍ଯ୍ୟ କରିବାର ଏକ ଜଟିଳ ପଦ୍ଧତି; କିନ୍ତୁ ଯାହାହେଉ, ଏଥିରେ ଫୁଜିଓ୍ୱାରାମାନଙ୍କର କ୍ଷମତା ହ୍ରାସ ହୋଇପାରିଲା । ପ୍ରକୃତ କ୍ଷମତା ସମ୍ରାଟଙ୍କ ହାତରେ ରହିଲା । ସେମାନେ ଗୋଟିକ ପରେ ଗୋଟିଏ ସିଂହାସନ ତ୍ୟାଗକରି ସନ୍ନ୍ୟାସୀ ହେଲେ; ତେଣୁ ସେମାନଙ୍କୁ ସନ୍ନ୍ୟାସୀ ସମ୍ରାଟ କହନ୍ତି ।

ଯାହାହେଉ, ଏଥି ଭିତରେ ଅନ୍ୟ ପରିବର୍ତ୍ତନସବୁ ହେଲା ଏବଂ ବଡ଼ ବଡ଼ ଭୂସ୍ୱାମୀ ଏକ ନୂତନ ଶ୍ରେଣୀ ହୋଇ ବାହାରିଲେ । ସେହିମାନେ ସାମରିକ ଲୋକ ଥିଲେ । ଫୁଜିଓ୍ୱାରାମାନେ ଏହି ଭୂସ୍ୱାମୀ ସୃଷ୍ଟି କରିଥିଲେ ଏବଂ ସରକାର ପାଇଁ ଟିକସ୍ ଅସୁଲ କରିବା ନିମନ୍ତେ ସେମାନଙ୍କୁ କହିଲେ । ସେମାନଙ୍କୁ 'ଡାଇମ୍ୟୋ' ବୋଲି କହୁଥିଲେ । ଏହାର ଅର୍ଥ 'ମହତ୍ତ୍ୱ ନାମ' । ବ୍ରିଟିଶ ଆସିବା ପୂର୍ବରୁ ଆମ ପ୍ରଦେଶରେ ଏହିପରି ଏକ

ଶ୍ରେଣୀର ଆବିର୍ଭାବ ଏହା ସହିତ ତୁଳନା କରାଯାଇପାରେ । ବିଶେଷତଃ ଅଯୋଗ୍ୟରେ ଜଣେ ଦୁର୍ବଳ ରାଜା ଟିକସ ଆଦାୟକାରୀ ନିଯୁକ୍ତ କଲେ । ଟିକସ ବଳପୂର୍ବକ ଅସୁଲ କରିବାରେ ସାହାଯ୍ୟ କରିବା ପାଇଁ ଏହି ଲୋକେ ନିଜର ଶ୍ରେଷ୍ଠ ଶ୍ରେଷ୍ଠ ସେନାବାହିନୀ ରଖିଲେ; ଅବଶ୍ୟ ସଂଗୃହୀତ ଧନର ଅଧିକ ଭାଗ ସେମାନେ ନିଜ ପାଖରେ ରଖୁଥିଲେ । ଏହି ଟିକସ ସଂଗ୍ରହକାରୀମାନେ କେତେକ କ୍ଷେତ୍ରରେ ବଡ଼ ବଡ଼ ତାଲୁକଦାର ପାଲଟିଲେ ।

ଡାଇମ୍ୟୋମାନେ ତାଙ୍କର ସମର୍ଥନ ଓ କ୍ଷୁଦ୍ର କ୍ଷୁଦ୍ର ସେନା ସହ ଅଧିକ କ୍ଷମତା-ଶାଳୀ ହେଲେ, ନିଜ ନିଜ ଭିତରେ ଲଢ଼ାଇ କଲେ ଓ କ୍ୟୋଟୋର କେନ୍ଦ୍ର ସରକାରଙ୍କୁ ଅବଜ୍ଞା କଲେ । ଟାଏରା ଓ ମିନାମୋଟୋ ଏହି ଦୁଇଟି ମୁଖ୍ୟ ଡାଇମ୍ୟୋ ପରିବାର ଥିଲା । ସେମାନେ ୧୧୬୭ ଖ୍ରୀ: ରେ ଫୁଜିଓ୍ୱାରାମାନଙ୍କୁ ଦମନ କରିବା ପାଇଁ ସମ୍ରାଟଙ୍କୁ ସାହାଯ୍ୟ କରିଥିଲେ; କିନ୍ତୁ ପରେ ସେମାନେ ପରସ୍ପର ଉପରେ ଆକ୍ରମଣ କଲେ । ଟାଏରା-ମାନେ ଜିତିଲେ ଏବଂ ଭବିଷ୍ୟତରେ ପ୍ରତିଦ୍ୱନ୍ଦୀ ପରିବାର ଆଉ ଯେପରି ଗୋଳମାଳ ନ କରନ୍ତି, ବୋଧହୁଏ ସେଥିରେ ନିଶ୍ଚିନ୍ତ ହେବା ନିମନ୍ତେ ସେମାନେ ତାଙ୍କୁ ହତ୍ୟା କଲେ । ସେମାନେ ଦୁଇଟି ବାଳକଙ୍କୁ ଛାଡ଼ି ମୁଖ୍ୟ ମିନାମୋଟୋମାନଙ୍କୁ ବଧ କଲେ । ଏହି ଦୁଇଟି ପିଲାଙ୍କ ଭିତରୁ ୧୧ ବର୍ଷ ବୟସ୍କ ୟୁରିତୋମୋ ଜଣେ ଥିଲେ । ଟାଏରା ପରିବାରଙ୍କ ସକଳ ଉଦ୍ୟମ ସତ୍ତ୍ୱେ ସେମାନେ ଖୁବ୍ ପକ୍କା କାମ କରି ନ ଥିଲେ । କିଛି କ୍ଷତି କରିବ ନାହିଁ ବୋଲି ଯେଉଁ ବାଳକ ୟୁରିତୋମୋଙ୍କୁ ଛାଡ଼ି ଦିଆଯାଇଥିଲା, ସେ ପ୍ରତିଶୋଧ ନେବା ନିମନ୍ତେ ଟାଏରା ମାନଙ୍କର ବିକଟ ଶତ୍ରୁ ହୋଇ ଉଠିଥିଲେ । ସେ କୃତକାର୍ଯ୍ୟ ହେଲେ । ସେ ସେମାନଙ୍କୁ ରାଜଧାନୀରୁ ତଡ଼ିଦେଲେ ଏବଂ ପରେ ଏକ ନୌଯୁଦ୍ଧରେ ସେମାନଙ୍କୁ ନିପାତ କରିଦେଲେ । ୟୁରିତୋମୋ ଏବେ ସର୍ବଶକ୍ତିମାନ ହେଲେ ଏବଂ ସମ୍ରାଟ ତାଙ୍କୁ 'ସେ-ଇଟାଇ-ସୋଗୁନ' ନାମକ ଉପାଧି ଦେଲେ । ଏହାର ଅର୍ଥ 'ବର୍ବର-ମାନଙ୍କୁ ପରାସ୍ତ କରିଥିବା ମହାନ୍ ସେନାପତି' । ଏହା ୧୧୯୦ ଖ୍ରୀ. ରେ ହୋଇଥିଲା । ଏହି ଉପାଧି ବଂଶପରମ୍ପରା ରହିଥିଲା ଏବଂ ଶାସନର ସମସ୍ତ କ୍ଷମତା ତାଙ୍କ ହାତକୁ ଗଲା । ସୋଗୁନମାନେ ହିଁ ପ୍ରକୃତ ଶାସକ ଥିଲେ । ଏହିରୂପେ ଜାପାନରେ ସୋଗୁନ କର୍ତ୍ତୃତ୍ୱ ଆରମ୍ଭ ହେଲା । ଏହା ଦୀର୍ଘକାଳ ପର୍ଯ୍ୟନ୍ତ ପ୍ରାୟ ୭୦୦ ବର୍ଷ କାଳ ରହିଥିଲା । ଆଜି-କାଲିକାର ଜାପାନ ତା'ର ଏହି ସାମନ୍ତବାଦୀ ଆବରଣ ଭିତରୁ ବାହାରି ଆସୁଥିଲା ।

କିନ୍ତୁ ଏହାର ଅର୍ଥ ନୁହେଁ ଯେ ୟୁରିତୋମୋଙ୍କର ବଂଶଧରମାନେ ସୋଗୁନ ଭାବରେ ୭୦୦ ବର୍ଷ ରାଜତ୍ୱ କରିଥିଲେ । ଯେଉଁ ପରିବାରରୁ ସୋଗୁନମାନେ ଆସିଥିଲେ, ସେଥିରେ କେତେକ ପରିବର୍ତ୍ତନ ଘଟିଲା । ବାରମ୍ବାର ଗୃହଯୁଦ୍ଧ ହେଲା; ମାତ୍ର ସୋଗୁନ-ମାନେ ପ୍ରକୃତ ଶାସକ ହେବାର ପ୍ରଥା ଓ ସମ୍ରାଟ ନାମରେ ଶାସନ କରିବା ଅନେକ ଦିନ

ଚାଲିଲା । ସମ୍ରାଟଙ୍କର ବିଶେଷ କିଛି ବା ଆଦୌ କ୍ଷମତା ନ ଥିଲା । ଅନେକ ସମୟରେ ଇମିତି ଘଟିଛି ଯେ ସୋଗୁନମାନେ ଖାଲି ନାମକୁ ମାତ୍ର ରହିଥାନ୍ତି ଏବଂ କେତେକ କର୍ମଚାରୀଙ୍କ ହାତରେ ସମସ୍ତ କ୍ଷମତା ରହିଥାଏ ।

ୟୁରିତୋମୋ ରାଜଧାନୀ କ୍ୟୋଟୋରେ ବିଳାସରେ ରହିବା ଲାଗି ଭୟ କରୁଥିଲେ; କାରଣ ସେ ଅନୁଭବ କରୁଥିଲେ ଯେ ବିଳାସୀ ଜୀବନ ଯାପନ କଲେ ସେ ଓ ତାଙ୍କର ସହକର୍ମୀମାନେ ଦୁର୍ବଳ ହୋଇପଡ଼ିବେ; ତେଣୁ କାମାକୋରାଠାରେ ସେ ତାଙ୍କର ସାମରିକ ରାଜଧାନୀ ସ୍ଥାପନ କଲେ ଏବଂ ସେଥିଲାଗି ପ୍ରଥମ ସୋଗୁନ୍ ଶାସନକୁ କାମାକୋରା ସୋଗୁନେଟ୍ କହନ୍ତି । ଏହା ୧୩୩୩ ଖ୍ରୀ. ଅର୍ଥାତ୍ ୧୫୦ ବର୍ଷ ପର୍ଯ୍ୟନ୍ତ ଚାଲିଲା । ଏହି କାଳ ଭିତରେ ଜାପାନରେ ଶାନ୍ତି ହୋଇଥିଲା । ଅନେକ ବର୍ଷର ଗୃହଯୁଦ୍ଧ ପରେ ଶାନ୍ତିକୁ ଖୁବ୍ ସ୍ୱାଗତ କରାଗଲା ଏବଂ ଏକ ସମୃଦ୍ଧି ଯୁଗ ପଡ଼ିଥିଲା । ଏହି କାଳ ଭିତରେ ଜାପାନର ଅବସ୍ଥା ନିଶ୍ଚିତରୂପେ ଅତ୍ୟନ୍ତ ଭଲ ଥିଲା ଏବଂ ସମସାମୟିକ ୟୁରୋପର କୌଣସି ରାଜ୍ୟ ଅପେକ୍ଷା ଏହାର ଶାସନ ଅଧିକ କର୍ମକୁଶଳ ଥିଲା । ଜାପାନ ଚୀନର ଏକ ଯୋଗ୍ୟଶିଷ୍ୟ, ଯଦିଓ ଦୁହିଙ୍କର ଦୃଷ୍ଟିକୋଣର ଅନେକ ପାର୍ଥକ୍ୟ ରହିଥିଲା । ମୁଁ ତୋତେ କହିଛି, ଚୀନ ମୁଖ୍ୟତଃ ଏକ ଶାନ୍ତିପ୍ରିୟ ଦେଶ ଥିଲା । ଅନ୍ୟ ପକ୍ଷରେ ଜାପାନ ଏକ ଉଗ୍ର ସାମରିକ ଦେଶ ଥିଲା । ଚୀନରେ ସୈନିକଙ୍କୁ ନୀଚ ଦୃଷ୍ଟିରେ ଦେଖୁଥିଲେ ଏବଂ ଯୁଦ୍ଧକାର୍ଯ୍ୟ ଅତି ସମ୍ମାନଜନକ ବୋଲି ବିଚାର କରାଯାଉ ନ ଥିଲା । ଜାପାନରେ ଉପରେ ଥିବା ଲୋକ ସୈନିକ ଥିଲେ ଏବଂ 'ଡାଇମ୍ୟୋ' ବା ସାମରିକ ସାମନ୍ତ ହିଁ ସେମାନଙ୍କର ଆଦର୍ଶ ଥିଲା ।

ତେଣୁ ଜାପାନ ଚୀନରୁ ଅନେକ ଜିନିଷ ଶିକ୍ଷା କଲା; କିନ୍ତୁ ସେ ଏହା ନିଜ ବାଟରେ ନେଲା ଏବଂ ନିଜର ଜାତିଗତ ବୁଦ୍ଧିମତ୍ତା ସହିତ ଖାପ ଖାଇଲା ଭଳି ଏହାକୁ ଗ୍ରହଣ କଲା ଓ ଗଢ଼ିଲା । ଚୀନ ସହିତ ଘନିଷ୍ଠ ସମ୍ପର୍କ ଚାଲିଥିଲା ଏବଂ ସେହିପରି ଚୀନା ଜାହାଜମାନଙ୍କଦ୍ୱାରା ବେପାର ଚାଲିଲା । ତ୍ରୟୋଦଶ ଶତାବ୍ଦୀର ଶେଷବେଳକୁ ହଠାତ୍ ଏହା ବନ୍ଦ ହୋଇଗଲା । କାରଣ ମଙ୍ଗୋଲମାନେ ଚୀନ ଓ କୋରିଆକୁ ଆସିଥିଲେ । ମଙ୍ଗୋଲମାନେ ଜାପାନ ଜୟ କରିବାକୁ ମଧ୍ୟ ଉଦ୍ୟମ କରିଥିଲେ; କିନ୍ତୁ ସେମାନଙ୍କୁ ହଟାଇ ଦିଆଯାଇଥିଲା । ଏହିରୂପେ ଯେଉଁ ମଙ୍ଗୋଲମାନେ ଏସିଆର ରୂପ ପରିବର୍ତ୍ତିତ କରିଥିଲେ ଓ ୟୁରୋପକୁ ଦୋହଲାଇ ଦେଇଥିଲେ, ସେମାନଙ୍କର କୌଣସି ପ୍ରଭାବ ଜାପାନ ଉପରେ ପଡ଼ି ନ ଥିଲା । ଜାପାନ ବରଂ ପୂର୍ବାପେକ୍ଷା ଆହୁରି ଅଧିକ ଭାବରେ ବାହ୍ୟ ପ୍ରଭାବରୁ ବିଚ୍ଛିନ୍ନ ହୋଇ ନିଜର ପୁରୁଣା ଢଙ୍ଗରେ ଚାଲିଲା ।

ଜାପାନକୁ ପ୍ରଥମେ କପାଗଛ କିପରି ଆସିଲା, ସେ ସମ୍ବନ୍ଧରେ ପୁରୁଣା ସରକାରୀ ବିବରଣୀରେ ଏକ ଗପ ରହିଛି । କଥିତ ଅଛି ଯେ କେତେକ ଭାରତୀୟଙ୍କର

ଜାପାନ ଉପକୂଳ ନିକଟରେ ଜାହାଜ ଭାଙ୍ଗି ଯିବାରୁ ସେମାନେ ଜାପାନରୁ ୭୯୯ ଖ୍ରୀ. ରେ କପାମଞ୍ଜି ଆଣିଥିଲେ ।

ଚାହାଚାଷ ପରେ ଆରମ୍ଭ ହେଲା । ୯ମ ଶତାବ୍ଦୀର ଆରମ୍ଭରେ ଏହା ପ୍ରଥମେ ପ୍ରଚଳିତ ହେଲା; ମାତ୍ର ସେତେବେଳେ ସଫଳ ହେଲା ନାହିଁ । ୧୧୯୧ରେ ଜଣେ ବୌଦ୍ଧ ସନ୍ନ୍ୟାସୀ ଚୀନରୁ ଚାହାମଞ୍ଜି ଆଣିଥିଲେ ଏବଂ ଅତିଶୀଘ୍ର ଚାହା ଖୁବ୍ ପ୍ରଚଳିତ ହୋଇଗଲା । ଏହି ଚାହାପାନ ଅଭ୍ୟାସରୁ ସୁନ୍ଦର ପାତ୍ରର ଚାହିଦା ବଢ଼ିଲା । ତ୍ରୟୋଦଶ ଶତାବ୍ଦୀର ଶେଷବେଳକୁ ଚୀନାବାସନ ତିଆରି କୌଶଳ ଶିଖିବା ନିମନ୍ତେ ଜଣେ ଜାପାନୀ କୁମ୍ଭାର ଚୀନକୁ ଗଲେ । ସେ ସେଠାରେ ୬ବର୍ଷ ରହିଲେ । ଫେରିଆସି ସେ ସୁନ୍ଦର ଜାପାନୀବାସନ ତିଆରି କରିବା ଆରମ୍ଭ କଲେ । ଚାହାପାନ ଜାପାନରେ ଏବେ ଏକ ସୌଖୀନ ଅଭ୍ୟାସ ହୋଇଛି ଏବଂ ଚାହାପାନ ପାଇଁ ଖୁବ୍ ଆଡ଼ମ୍ବର ରହିଛି । ତୁ ଯେତେବେଳେ ଜାପାନକୁ ଯିବୁ, ସମୁଚିତ ଭାବରେ ଚାହାପାନ କରିବୁ, ନଚେତ୍ର ଏକ ବର୍ବର ବୋଲି ତୋତେ ବିଚାର କରିବେ ।

## ୫୭ । ମନୁଷ୍ୟର ଅନୁସନ୍ଧାନ

ଜୁନ୍ ୧୦, ୧୯୩୨

ଚାରିଦିନ ଆଗେ ମୁଁ ତୋ ପାଖକୁ ବେରିଲି ଜେଲରୁ ଲେଖିଥିଲି । ସେହିଦିନ ସନ୍ଧ୍ୟାବେଳେ ମୋର ଝାଡ଼ଣାପତ୍ର ବାନ୍ଧି କାରାଗାର ବାହାରକୁ ଯିବା ପାଇଁ ମୋତେ କୁହାଗଲା । ଖଲାସ ହେବା ପାଇଁ ନୁହେଁ, ଆଉ ଏକ ଜେଲକୁ ବଦଳି ହେବାକୁ । ମୁଁ ବାରିକ୍‌ରେ ଥିବା ସାଥୀମାନଙ୍କଠାରୁ ବିଦାୟ ନେଲି, ସେଠାରେ ମୁଁ ଠିକ୍ ଚାରି ମାସ ରହିଥିଲି ଏବଂ ଯେଉଁ ଅଖିଛ ୧୪ ଫୁଟିଆ କାନ୍ଥ ତଳେ ଆଶ୍ରାକରି ଏତେଦିନ ରହିଥିଲି, ତାର ଶେଷ ଦର୍ଶନ କଲି ଏବଂ କିଛିକ୍ଷଣ ପାଇଁ ପୁନର୍ବାର ବାହ୍ୟଜଗତ ଦେଖିବା ପାଇଁ ବାହାରିଲି । ଆମେ ଦୁଇ ଜଣ ବଦଳି ହେଉଥିଲୁ । ଲୋକେ କାଳେ ଆମକୁ ଦେଖିବେ, ଏଥିପାଇଁ ବେରିଲି ଷ୍ଟେସନକୁ ଆମକୁ ନିଆଗଲା ନାହିଁ; କାରଣ ଆମେ ପର୍ଦ୍ଦାନସୀନ ହୋଇ ଯାଇଥିଲୁ ଏବଂ ଆମକୁ କେହି ନ ଦେଖିବାର କଥା ! ସେମାନେ ଆମ୍ଭମାନଙ୍କୁ ମୋଟରରେ ୫୦ ମାଇଲ ଦୂରରେ ଜଙ୍ଗଲ ଭିତରେ ଏକ କ୍ଷୁଦ୍ର ଷ୍ଟେସନକୁ ନେଇ ଯାଇଥିଲେ । ଏହି ମୋଟର ଯାତ୍ରା ସକାଶେ ମୁଁ କୃତଜ୍ଞ । ଅନେକ ମାସ ଆବଦ୍ଧ ପରେ ଶୀତଳ ରାତିର

ପବନ ପାଇବା ଏବଂ ଅର୍ଦ୍ଧ ଅନ୍ଧକାର ଭିତରେ ବିଶାଳ ବୃକ୍ଷ, ମନୁଷ୍ୟ ଓ ପଶୁ ଗମନାଗମନ ଦେଖିବା ଖୁବ୍ ଆମୋଦଦାୟକ ହେଲା ।

ଆମକୁ ଡେରାଡୁନ ଅଣାଗଲା । ଖୁବ୍ ଭୋରରୁ ଆମକୁ ଟ୍ରେନରୁ ବାହାର କରାଗଲା । ଆମେ ଆମର ଯାତ୍ରାପଥର ଶେଷସ୍ଥଳରେ ପହଞ୍ଚିବା ପୂର୍ବରୁ କାଳେ ଆମକୁ ଲୋକେ ଦେଖିପକାଇବେ, ସେଥିଲାଗି ମୋଟରରେ ନେଇ ଯାଉଥିଲେ ।

ତେଣୁ ଆଜି ମୁଁ ଡେରାଡୁନର ଏହି କ୍ଷୁଦ୍ର ଜେଲରେ ବସିଛି ଏବଂ ଏହା ବେରିଲି ଅପେକ୍ଷା ଭଲ ସ୍ଥାନ । ଏହା ସେପରି ଗରମ ନୁହେଁ ଏବଂ ବେରିଲି ପରି ଏଠାରେ ଉତ୍ତାପ ୧୧୦ ଡିଗ୍ରୀକୁ ଉଠେନା । ଆମ ଚତୁର୍ଦ୍ଦିଗରେ ପରିବେଷ୍ଟିତ ପ୍ରାଚୀର ଅପେକ୍ଷାକୃତ କମ୍ ଉଚ୍ଚ ଏବଂ ଦୃଶ୍ୟମାନ ବୃକ୍ଷଗୁଡ଼ିକ ଅଧିକ ସବୁଜ । ମୁଁ କାନ୍ଥ ଉପରେ ଖୁବ ଦୂରରେ ତାଳଗଛର ଅଗ୍ରଭାଗ ଦେଖିପାରୁଛି ଏବଂ ଏହି ଦୃଶ୍ୟ ଦେଖି ମନରେ ଆନନ୍ଦ ଜାତ ହେଉଛି ଓ ସିଂହଳ ଏବଂ ମାଲବାର କଥା ମନେପଡ଼ୁଛି । ଗଛ ସେକଡ଼କୁ ପର୍ବତମାଳା ରହିଛି । ଏହା ବେଶୀ ମାଇଲ ଦୂର ନୁହେଁ ଏବଂ ସେଗୁଡ଼ିକର ଉପରେ ମସୋରୀ ଅବସ୍ଥିତ । ମୁଁ ପର୍ବତଗୁଡ଼ିକ ଦେଖି ପାରୁ ନାହିଁ; କାରଣ ବୃକ୍ଷ ତାହା ଲୁଚାଇ ପକାଇଛି, ମାତ୍ର ସେଗୁଡ଼ିକର ନିକଟରେ ରହିବାକୁ ଭଲ ଲାଗୁଛି ଏବଂ ଦୂରରୁ ରାତିରେ ମସୋରୀର ଆଲୋକଶ୍ରେଣୀ କଳ୍ପନା କରିବାକୁ ଭଲ ଲାଗୁଛି ।

ଗୃହଠାରୁ କେତେ ଦିନ ବର୍ଷ ? – ପୂର୍ବେ ଯେତେବେଳେ ତୁ ମସୋରୀରେ ଥିଲୁ ମୁଁ ତୋତେ ଏହି ଚିଠି ଲେଖିବା ଆରମ୍ଭ କରିଥିଲି । ଏହି ତିନ ବା ଚାରି ବର୍ଷ ଭିତରେ କେତେ ଘଟଣା ଘଟିଯାଇଛି ଏବଂ ତୁ କେତେ ବଡ଼ ହୋଇଛୁ ! ଖୁବ୍ ଲାଗେ ଲାଗେ ଏବଂ ପୁଣି କିଛିଦିନ ବ୍ୟବଧାନରେ ବିଶେଷ ଭାବରେ ବନ୍ଦୀଶାଳାରୁ ଏହି ଚିଠିସବୁ ଲେଖା ଆରମ୍ଭ କରିଥିଲି । କିନ୍ତୁ ମୁଁ ଯେତେ ଅଧିକ ଲେଖିଛି, ଯାହା ଲେଖିଛି, ତାହା ମୋର କେତେ ନାପସନ୍ଦ ହୋଇଛି ଏବଂ ମନରେ ଆଶଙ୍କା ଜାତ ହେଉଛି ଯେ ଯାହାସବୁ ଲେଖୁଛି, ସେସବୁ ତୋ ମନରେ ବିଶେଷ ଆଗ୍ରହ ଜାତ କରି ନ ପାରେ ଏବଂ ହୁଏତ ତୋତେ ବୋଝ ପରି ମାଲୁମ ହୋଇପାରେ । ତାହାହେଲେ କାହିଁକି ମୁଁ ଏସବୁ ତୋତେ ଲେଖିବି ?

ମୁଁ ତୋ ଆଗରେ ଅତୀତର ନିଦାରୁଣ ଚିତ୍ର ଦେବାକୁ ଚାହେଁ । ଗୋଟିଏ ପରେ ଗୋଟିଏ ଆମର ଜଗତ କିପରି ଧୀରେ ଧୀରେ ପରିବର୍ତ୍ତିତ ହୋଇଛି, ବୃଦ୍ଧି ଓ ପ୍ରଗତି ହୋଇଛି ଏବଂ ବେଳେ ବେଳେ କିପରି ଆପାତତଃ ପଶ୍ଚାତ୍‌ଗାମୀ ହୋଇଛି, ଏ ବିଷୟରେ ତୋର ଧାରଣା ଜନ୍ମାଇବା ପାଇଁ ମୁଁ ଚାହେଁ । ଆମର ପୁରାତନ ସଭ୍ୟତା

କିପରି କୁଆଁର ପରି ଉଠି ପୁଣି ପଡ଼ିଯାଇଛୁ, ତାହା ତୋତେ ଦେଖାଇବା ପାଇଁ ଏବଂ କିପରି ଇତିହାସର ନଦୀ ଅବିଶ୍ରାନ୍ତ ଓ ଅନବରତ ଯୁଗ ପରେ ଯୁଗ କେତେ ଆବର୍ତ୍ତ ଘୂର୍ଣ୍ଣନ ଓ ଭଟ୍ଟା ପରି ଗତି କରି ଚାଲିଛି ଏବଂ ଅଜଣା ସମୁଦ୍ର ଆଡ଼କୁ ଧାଇଁଛି, ତାହା ତୁ ଯେପରି ଉପଲବ୍ଧି କରିପାରୁ, ଏହା ମୋର ଇଚ୍ଛା । ମୁଁ ମଣିଷର ଆଦିକାଳରୁ, ଯେତେବେଳେ କି ସେ ପ୍ରାୟ ମନୁଷ୍ୟ ପଦବାଚ୍ୟ ହୋଇ ନ ଥିଲା, ସେ କାଳରୁ ଆଜି ଯେତେବେଳେ ସେ ଏକପ୍ରକାର ଅହଙ୍କାର ଓ ନିର୍ବୋଧ ଭାବରେ ନିଜର ମହାନ୍ ସଭ୍ୟତା ଯୋଗୁଁ ଏତେ ଗର୍ବ କରୁଛି, ସେସବୁ କାହାଣୀ ତୋତେ ଜଣାଇବାର ଇଚ୍ଛା ଥିଲା । ତୋର ମନେଥିବ, ଆମେ ସେହିରୂପେ ଆରମ୍ଭ କରିଥିଲେ । ମସୋରୀରେ ଲେଖିଲା ବେଳେ ଆମେ ଅଗ୍ନି ଓ କୃଷି କିପରି ଆବିଷ୍କୃତ ହେଲା, ସହରମାନଙ୍କରେ କିପରି ବସତି ହେଲା ଏବଂ ଶ୍ରମବିଭାଗ କିପରି ଅନୁଷ୍ଠିତ ହେଲା, ଏସବୁ ବିଷୟ କଥାବାର୍ତ୍ତା ହେଉଥିଲେ; କିନ୍ତୁ ଆମେ ଯେତେଦୂର ଅଗ୍ରସର ହୋଇଛେ, ସେତେ ଅଧିକ ସାମ୍ରାଜ୍ୟ ଓ ତଦ୍ରୂପ ବ୍ୟାପାରରେ ଲିପ୍ତ ହୋଇପଡ଼ିଛେ ଏବଂ ନିଜ ବାଟ ଭୁଲିଛେ । ଆମେ ଇତିହାସର ଆବରଣଟି ଦେଖିଛେ । ମୁଁ ପୁରାତନ ଘଟଣାମାନଙ୍କର ଏକ ଗ୍ରନ୍ଥ ତୋ ଆଗରେ ରଖିଛି ଏବଂ ମୁଁ ଆଶା ବାନ୍ଧିଛି ଯେ ଏହାକୁ ତୋ ନିମନ୍ତେ ଜୀବନ୍ତ ଓ ତେଜସ୍ୱାନ୍ କରିବା ପାଇଁ ରକ୍ତ ଓ ମାଂସ ଦେଇ ବଳିଷ୍ଠ କରିବାର କ୍ଷମତା ମୋର ହେଉ ।

କିନ୍ତୁ ମୋର ଆଶଙ୍କା, ମୋର ସେ ଶକ୍ତି ନାହିଁ ଏବଂ କିଛି ଏକ ଯାଦୁକର କଳ୍ପନା ତୁ କରିବୁ ନାହିଁ । ତାହାହେଲେ ମୁଁ କାହିଁକି ଲେଖିବି, ପୁଣି ଯେତେବେଳେ ଅନେକ ଭଲ ପୁସ୍ତକରେ ପୁରାତନ ଇତିହାସ ସମ୍ବନ୍ଧରେ ତୁ ପଢ଼ିପାରିବୁ ? ତଥାପି ମୋର ସନ୍ଦେହ ଭିତରେ ହିଁ ମୁଁ ଲେଖା ଚଳାଇଛି ଏବଂ ମୋର ଅନୁମାନ ମୁଁ ଏହିପରି ଲେଖୁଥିବି । ମୁଁ ତୋତେ ଯେଉଁ ପ୍ରତିଶ୍ରୁତି ଦେଇଥିଲି, ତାହା ମନେ ଅଛି ଏବଂ ତାହା ପୂରଣ କରିବା ନିମନ୍ତେ ଚେଷ୍ଟା କରିବି; କିନ୍ତୁ ତାଠାରୁ ଅଧିକ ହେଉଛି ଯେତେବେଳେ ମୁଁ ଲେଖିବାକୁ ବସେ ଏବଂ ମନରେ କଳ୍ପନା କରିନିଏ ଯେ ତୁ ମୋ ପାଖରେ ବସିଛୁ ଏବଂ ଆମେ ପରସ୍ପର ସହିତ କଥାବାର୍ତ୍ତା ହେଉଛେ, ଏହି ଚିନ୍ତା ହିଁ ଅଧିକ ଆନନ୍ଦ ଦିଏ ।

ମନୁଷ୍ୟ ଜଙ୍ଗଲରୁ ବାହାରି ଠୋକର ଖାଇ ଧୀରେ ଧୀରେ ଆସିଲା ଦିନୁ ତାର ଜୀବନଯାତ୍ରା ସମ୍ବନ୍ଧରେ ମୁଁ ଉପରେ ତୋତେ କହିଛି । ଏହି ଜୀବନଯାତ୍ରା ଖୁବ୍ ଦୀର୍ଘ ହଜାର ହଜାର ବର୍ଷ ଧରି ହୋଇଆସିଛି । ଅଥଚ ମନୁଷ୍ୟ ଆସିବା ପୂର୍ବରୁ ପୃଥିବୀର କାହାଣୀ କାଳର ଯୁଗଯୁଗବ୍ୟାପୀ ଗତି ସହିତ ତୁଳନା କଲେ ଏହା କେତେ ଅଳ୍ପସମୟ ପରି ମନେହୁଏ । କିନ୍ତୁ ଆମପକ୍ଷରେ ମନୁଷ୍ୟ ପୂର୍ବରୁ ଯେତେସବୁ ବଡ଼ ଜୀବ ଥିଲେ, ତାଙ୍କ ଅପେକ୍ଷା ମଣିଷ ହିଁ ବେଶି ଆଗ୍ରହ ଜାତ କରାଇବା ସ୍ୱାଭାବିକ । ମଣିଷ ବିଷୟରେ ଜାଣିବା ଲାଗି ଆଗ୍ରହ ଜାତହୁଏ; କାରଣ ଅନ୍ୟମାନଙ୍କ ଅପେକ୍ଷା ସେ ଦୁନିଆକୁ ନୂତନ ଜିନିଷ

ଆସିଲି । ଏହା ହେଉଛି ମନ, କୌତୂହଳ—କିଛି ବାହାର କରିବା ଓ ଶିଖିବାର ଅଭିଳାଷ । ତେଣୁ ଆଦିମକାଳରୁ ମଣିଷର ଅନୁସନ୍ଧାନ ଆରମ୍ଭ ହୋଇଛି । ଗୋଟିଏ କ୍ଷୁଦ୍ର ପିଲାକୁ ଲକ୍ଷ୍ୟକର, ସେ କିପରି ତାହାର ଚତୁର୍ଦ୍ଦିଗସ୍ଥ ନୂତନ ଓ ଅଦ୍ଭୁତ ଜଗତ ପ୍ରତି ଦୃଷ୍ଟି ପକାଏ, କିପରି ସେ ଜିନିଷ ଓ ଲୋକ ସବୁ ଚିହ୍ନିବାକୁ ଆରମ୍ଭ କରେ, କିପରି ସବୁ ଜାଣିପାରେ । ଗୋଟିଏ କ୍ଷୁଦ୍ର ବାଳକାକୁ ଦେଖ । ସେ ଯଦି ଖୁବ୍ ସୁସ୍ଥ ଓ ଚାଲାକ୍ ହୋଇଥାଏ, ତେବେ କେତେ କେତେ ଜିନିଷ ସମ୍ବନ୍ଧରେ କେତେ ପ୍ରଶ୍ନ ପଚାରେ । ସେହିପରି ଇତିହାସର ପ୍ରାରମ୍ଭରେ ମନୁଷ୍ୟ ଯେତେବେଳେ ଖୁବ୍ ଶିଶୁ ଥିଲା ଏବଂ ପୃଥିବୀ ନୂତନ ଓ ଅଦ୍ଭୁତ ଥିଲା ଏବଂ ତାହା ତା ମନରେ ଏକପ୍ରକାର ଭୟ ଓ ବିସ୍ମୟ ଜାତ କରାଉଥିଲା, ସେତେବେଳେ ସେ ନିଶ୍ଚୟ ତାର ଚତୁର୍ଦ୍ଦିଗସ୍ଥ ଦୁନିଆ ପ୍ରତି ନିରେଖି ରହିଥିବ ଏବଂ ଅନେକ ପ୍ରଶ୍ନ ପଚାରିଥିବ; କିନ୍ତୁ ନିଜ ଛଡ଼ା ଆଉ କାହାକୁ ବା ସେ ପ୍ରଶ୍ନ ପଚାରିଥିବ ? ସେତେବେଳେ ତାର ଜବାବ ଦେବା ପାଇଁ କେହି ନ ଥିଲେ; କିନ୍ତୁ ତା ପାଖରେ ଏକ ଅଦ୍ଭୁତ କ୍ଷୁଦ୍ର ବିଷୟ ଥିଲା—ସେ ହେଉଛି ବୁଦ୍ଧି ଏବଂ ଏହା ସାହାଯ୍ୟରେ ଧୀରେ ଧୀରେ ଓ କଷ୍ଟସ୍ୱୀକାରପୂର୍ବକ ସେ ଅଭିଜ୍ଞତା ଅର୍ଜନ କରିବାରେ ଲାଗିଲା ଏବଂ ସେଥିରୁ ଶିକ୍ଷା କରିବାରେ ଲାଗିଲା । ତେଣୁ ଆଦିମ କାଳରୁ ଆଜପର୍ଯ୍ୟନ୍ତ ମନୁଷ୍ୟର ଅନୁସନ୍ଧାନ ଚାଲିଛି ଏବଂ ସେ ଅନେକ କଥା ବାହାର କରିଛି; ତଥାପି ଅନେକ ଜିନିଷ ରହିଯାଇଛି ଏବଂ ସେ ତାର ଯାତ୍ରାପଥରେ ଅଗ୍ରସର ହେବା ସାଙ୍ଗେ ସାଙ୍ଗେ ତାର ସମ୍ମୁଖରେ ବିସ୍ତୃତ ହୋଇଥିବା ବିଶାଳ ନୂତନ କ୍ଷେତ୍ର ଆବିଷ୍କାର କରୁଛି । ସେ ତାର ଅନୁସନ୍ଧାନର ଶେଷ ସୀମା — ଯଦି ସେପରି କିଛି ଚରମ ସୀମା ଥାଏ — ତାହା ବହୁତ ଦୂରରେ ଥିବାର ଦେଖିପାରୁଛି ।

ମନୁଷ୍ୟ କ'ଣ ଅନୁସନ୍ଧାନ କରୁଛି ଏବଂ କେଉଁଠିକି ଯାତ୍ରା କରୁଛି, ହଜାର ହଜାର ବର୍ଷ ହେଲା ମଣିଷ ଏହି ପ୍ରଶ୍ନଗୁଡ଼ିକର ଜବାବ ଦେବାକୁ ଚେଷ୍ଟା କରୁଛି । ଧର୍ମ, ଦର୍ଶନ ଓ ବିଜ୍ଞାନ ଏହିସବୁ ବିଚାର କରିଛି ଏବଂ ଅନେକ ଉତ୍ତର ବାହାର କରିଛି । ଏହିସବୁ ଉତ୍ତର ବିଷୟ ଲେଖି ମୁଁ ତୋତେ ବିରକ୍ତ କରିବି ନାହିଁ; କାରଣ ମୁଁ ନିଜେ ସେଥିରୁ ଅନେକ କଥା ଜାଣେନା । କିନ୍ତୁ ମୁଖ୍ୟଭାବରେ ଧର୍ମ ଏକ ସମ୍ପୂର୍ଣ୍ଣ ଓ ନିର୍ଦ୍ଦିଷ୍ଟ ମତବିଶିଷ୍ଟ ଜବାବ ଦେବାକୁ ଚେଷ୍ଟା କରିଛି ଏବଂ ସର୍ବଦା ମନ ପ୍ରତି ଆଦୌ ନଜର ଦେଇ ନାହିଁ ଏବଂ ନାନା ଭାବରେ ତାର ସିଦ୍ଧାନ୍ତକୁ ମାନିନେବା ଉପରେ ଜୋର ଦେଇଛି । ବିଜ୍ଞାନ ଏକ ସନ୍ଦେହମୂଳକ ଓ ଦ୍ୱିଧାଯୁକ୍ତ ଜବାବ ଦିଏ; କାରଣ ବିଜ୍ଞାନର ପ୍ରକୃତି ହେଉଛି, ତାହା କୌଣସି ବିଷୟକୁ ଏକ ଧରାବନ୍ଧା ନିଷ୍ପତ୍ତି ବୋଲି କହେ ନା, ମାତ୍ର ପ୍ରୟୋଗ ଓ ଯୁକ୍ତି ଖଟାଏ ଏବଂ ମନୁଷ୍ୟର ମନ ଉପରେ ନିର୍ଭର କରେ । ମୁଁ ଯେ ବିଜ୍ଞାନ ଓ ବିଜ୍ଞାନର ପନ୍ଥାକୁ ପସନ୍ଦ କରେ, ଏକଥା କହିବା ବୋଧହୁଏ ଦରକାର ନାହିଁ ।

ଆମେ ହୁଏତ ନିର୍ଭରଯୋଗ୍ୟଭାବରେ ମନୁଷ୍ୟର ଅନୁସନ୍ଧାନ ବିଷୟରେ ପ୍ରଶ୍ନଗୁଡ଼ିକର ଜବାବ ଦେବାକୁ ସମର୍ଥ ହେବା ନାହିଁ; କିନ୍ତୁ ଏହି ଅନୁସନ୍ଧାନ ଯେ ଦୁଇଟି ଦିଗରେ ଗତି କରୁଛି, ଏହା ଆମେ ଦେଖିପାରୁଛୁଁ । ମଣିଷ ଆପଣାର ବାହାରକୁ ତଥା ଭିତରକୁ ଦୃଷ୍ଟିପାତ କରିଛି, ସେ ପ୍ରକୃତିକୁ ବୁଝିବା ନିମନ୍ତେ ଚେଷ୍ଟା କରିଛି ଏବଂ ନିଜକୁ ବି ବୁଝିବା ଲାଗି ଚେଷ୍ଟା କରିଛି । ପ୍ରକୃତରେ ଅନୁସନ୍ଧାନ ହେଉଛି ଏକା ଜିନିଷ; କାରଣ ମନୁଷ୍ୟ ପ୍ରକୃତିର ଏକ ଅଙ୍ଗ ମାତ୍ର । ଭାରତ ଓ ଗ୍ରୀସର ପୁରାତନ ଦାର୍ଶନିକମାନେ କହିଛନ୍ତି, "ନିଜକୁ ଚିହ୍ନ" ଏବଂ ପୁରାତନ ଭାରତୀୟ ଆର୍ଯ୍ୟମାନେ ଏହି ଜ୍ଞାନ ପାଇବା ଆଶାରେ ଯେଉଁ ଅଦ୍ଭୁତ ଓ ନିରନ୍ତର ଅନୁସନ୍ଧାନ କରିଛନ୍ତି, ତାର ବିବରଣୀ ଉପନିଷଦ୍‌ରେ ରହିଛି । ପ୍ରକୃତିର ଆଉ ଏକ ଜ୍ଞାନ ହେଉଛି ବିଜ୍ଞାନର ବିଶେଷ କ୍ଷେତ୍ର ଏବଂ ସେଥିରେ କିପରି ବିଶାଳ ପ୍ରଗତି ଘଟିଛି, ଆଧୁନିକ ଦୁନିଆ ହିଁ ତାହାର ନିଦର୍ଶନ । ବାସ୍ତବିକ ବିଜ୍ଞାନ ଆଜି ସୁଦ୍ଧା ତାର ବାହୁ ଆହୁରି ଦୂରକୁ ବିସ୍ତାର କରୁଛି ଏବଂ ଅନୁସନ୍ଧାନର ଏହି ଦୁଇଟି ଦିଗ ଆୟତ୍ତ କରି ସଂଯୋଗ କରିବା ନିମନ୍ତେ ଚେଷ୍ଟା କରୁଛି । ଏହା ସାହସର ସହିତ ଅତି ଦୂରସ୍ଥ ନକ୍ଷତ୍ରଗୁଡ଼ିକ ପ୍ରତି ଦୃଷ୍ଟିପାତ କରୁଛି ଏବଂ ଅତି ଅଦ୍ଭୁତ କ୍ଷୁଦ୍ର ଜିନିଷ ଇଲେକ୍‌ଟ୍ରନ୍ ଓ ପ୍ରୋଟନ୍, ଯାହା ଯେକି ସମସ୍ତ ବସ୍ତୁ ଗଠିତ, ତାହା କିପରି ନିୟମାନୁଯାୟୀରେ ଗତି କରୁଛି, ତାହା ଦେଖାଇ ଦେଇଛି ।

ମନୁଷ୍ୟର ବୁଦ୍ଧି ଆବିଷ୍କାର ଯାତ୍ରାରେ ତାକୁ ଅନେକ ଦୂର ନେଇଯାଇଛି । ସେ ପ୍ରକୃତିକୁ ଯେତେ ବୁଝିପାରିଛି, ତେତେ ଅଧିକ ତାର ଉପଯୋଗ କରିଛି ଏବଂ ନିଜର ସୁବିଧା ଲାଗି ନିୟୋଗ କରିଛି ଓ ଏହିରୂପେ ଅଧିକ ଶକ୍ତି ହାସଲ କରିଛି; କିନ୍ତୁ ଦୁର୍ଭାଗ୍ୟବଶତଃ ଏହି ନୂତନ ଶକ୍ତିର ସେ ସର୍ବଦା ସଦୁପଯୋଗ କରି ନାହିଁ ଏବଂ ଅନେକ ସମୟରେ ଏହାର ଅପପ୍ରୟୋଗ କରିଛି । ନିଜର ଭାଇକୁ ହତ୍ୟା କରିବାପାଇଁ ଏବଂ ଏତେ ପରିଶ୍ରମ କରି ସେ ଯେଉଁ ସଭ୍ୟତା ଗଢ଼ିଛି ତାହା ଧ୍ୱଂସ କରିବା ପାଇଁ ଭୀଷଣ ଅସ୍ତ୍ରଶସ୍ତ୍ର ପାଇବା ଲାଗି ମୁଖ୍ୟଭାବରେ ସେ ବିଜ୍ଞାନର ବ୍ୟବହାର କରିଛି ।

## ୫୭ । ଖ୍ରୀଷ୍ଟ ପରେ ପ୍ରଥମ ହଜାର ବର୍ଷର ଶେଷ ଅବଧି

ଜୁନ୍ ୧୧, ୧୯୩୨

ଆମ ଯାତ୍ରାପଥର ଏହି ସ୍ଥାନରେ ଟିକିଏ ଅଟକି ରହି ପଛଆଡ଼କୁ ଦୃଷ୍ଟି ପକାଇଲେ ଭଲ ହେବ । ଆମେ କେତେ ଦୂର ଯାଇଛେ ? ଏବେ ଆମେ କେଉଁଠି ? ପୃଥିବୀଟି କିପରି ଦେଖାଯାଉଛି ? ଚାଲ ଆଲାଦ୍ଦିନଙ୍କର କୁହୁକ ଗାଲିଚା ଉପରେ ବସି ସେ କାଳର ଦୁନିଆର ବିଭିନ୍ନ ଅଞ୍ଚଳ ଦର୍ଶନ କରିବା ।

ଖ୍ରୀଷ୍ଟ ଯୁଗର ପ୍ରଥମ ହଜାର ବର୍ଷରେ ଆମେ ଯାତ୍ରା କରୁଛେ । କେତେକ ଦେଶରେ ଆମେ ଟିକିଏ ଆଗକୁ ଯାଉଛେ ଏବଂ କେତେକ ସ୍ଥାନରେ ଆମେ ଟିକିଏ ପଛରେ ପଡ଼ୁଛେ ।

ଏସିଆରେ ଆମେ ସୁଙ୍ଗବଂଶ ଶାସିତ ଚୀନ୍‌କୁ ଦେଖିଛେ । ବିରାଟ ଟାଙ୍ଗ୍‌ବଂଶ ଶେଷ ହୋଇଛି ଏବଂ ସୁଙ୍ଗ୍‌ମାନଙ୍କୁ ଆଭ୍ୟନ୍ତରୀଣ ଗୋଳମାଳ ଏବଂ ଉତ୍ତରାଞ୍ଚଳର ବର୍ବର ଖିତାନମାନଙ୍କର ଆକ୍ରମଣର ସମ୍ମୁଖୀନ ହେବାକୁ ପଡ଼ୁଛି । ୧୫୦ ବର୍ଷ ପର୍ଯ୍ୟନ୍ତ ସେମାନେ ରହିଲେ; କିନ୍ତୁ ଯେତେବେଳେ ସେମାନେ ଦୁର୍ବଳ ହୋଇଗଲେ, ସେତେବେଳେ ଆଉ ଏକ ବର୍ବର ଜାତି, ସୁବର୍ଣ୍ଣ ତାତାର ବା କିନ୍‌ମାନଙ୍କର ସାହାଯ୍ୟ ଭିକ୍ଷା କଲେ । କିନ୍‌ମାନେ ଆସିଲେ ଓ ରହିଲେ ଏବଂ ବିଚରା ସୁଙ୍ଗ୍‌ମାନଙ୍କୁ ଦକ୍ଷିଣକୁ ଯିବାକୁ ପଡ଼ିଲା । ସେଠାରେ ଦକ୍ଷିଣବାସୀ ସୁଙ୍ଗ୍‌ଭାବରେ ସେମାନେ ଆଉରି ୧୫୦ ବର୍ଷ ରହିଲେ । ଉଭୟବଂଶରେ ସୁନ୍ଦର କଳା, ଚିତ୍ରାଙ୍କନ ଓ ଚୀନାବାସନ ତିଆରି ଆଦି ବିକାଶ ଲାଭକଲା ।

କୋରିଆରେ ବିଭାଗ ଓ ବିବାଦ ପରେ ୯୩୫ ଖ୍ରୀ. ରେ ଏକ ମିଳିତ ସ୍ୱାଧୀନ ରାଜ୍ୟ ସ୍ଥାପିତ ହେଲା ଏବଂ ଏହା ଦୀର୍ଘକାଳ ପର୍ଯ୍ୟନ୍ତ—ପ୍ରାୟ ୪୫୦ ବର୍ଷ ତିଷ୍ଠି ରହିଲା । କୋରିଆ ତାର ସଭ୍ୟତା, କଳା ଓ ଶାସନପ୍ରଣାଳୀ ଅନେକ ପରିମାଣରେ ଚୀନରୁ ଗ୍ରହଣ କରିଥିଲା । ସେଠାକୁ ତଥା ଜାପାନକୁ ଚୀନ ଜରିଆରେ ଭାରତରୁ ଧର୍ମ ଓ କିଛିତ ପରିମାଣରେ କଳା ମଧ୍ୟ ଯାଇଛି । ଜାପାନ ସୁଦୂର ପ୍ରାଚ୍ୟରେ ଏସିଆର ପ୍ରାୟ ଏକ ପ୍ରହରୀ ରୂପେ ଊଣାଅଧିକେ ପୃଥିବୀର ଅବଶିଷ୍ଟ ଅଂଶରୁ ବିଚ୍ଛିନ୍ନ ହୋଇ ତିଷ୍ଠି ରହିଥିଲା । ଫୁଜିଓ୍ୱାର ପରିବାର ସର୍ବେସର୍ବା ହୋଇ ଉଠିଥିଲେ ଏବଂ ଆଜି ସମ୍ରାଟ ଏକ ଜାତିର ମୁଖିଆଠାରୁ ଢେର ଉପରେ; କିନ୍ତୁ ସେତେବେଳେ ସେ ଏହାର ଛାୟାରୂପେ ରହିଥିଲେ । ଏହା ପରେ ସୋଗୁନମାନେ ଆସିଲେ ।

ଏତେବେଳକୁ ମାଲୟସିଆରେ ଭାରତୀୟ ଉପନିବେଶ ପ୍ରତିଷ୍ଠା ପାଇଛି । ବିରାଟ ଆଙ୍କୋର ହିଁ କାମ୍ବୋଡ଼ିଆର ରାଜଧାନୀ ହୋଇଛି ଏବଂ ଏହି ରାଷ୍ଟ୍ର କ୍ଷମତା ଓ ସମୃଦ୍ଧିର ଉଚ୍ଚ ସୀମାରେ ପହଞ୍ଚିଛି । ସୁମାତ୍ରାରେ ଶ୍ରୀବିଜୟ ଏକ ବିଶାଳ ବୌଦ୍ଧସାମ୍ରାଜ୍ୟର ରାଜଧାନୀ, ଏହା ସମଗ୍ର ପୂର୍ବୀୟ ଦ୍ୱୀପପୁଞ୍ଜକୁ କବଳରେ ରଖିଛି ଏବଂ ସେଗୁଡ଼ିକ ଭିତରେ ବିସ୍ତୃତ ବେପାର ଚଳାଉଛି । ପୂର୍ବୀୟ ଜାଭାରେ ଏକ ସ୍ୱାଧୀନ ହିନ୍ଦୁରାଷ୍ଟ୍ର ଶୀଘ୍ର ବୃଦ୍ଧି ଲାଭ କରି ବାଣିଜ୍ୟ ପାଇଁ ଶ୍ରୀବିଜୟ ସହିତ ପ୍ରତିଯୋଗିତା କରୁଛି ଏବଂ ବେପାରରେ ଯେଉଁ ସମ୍ପଦ ଆସେ ସେଥିରେ ଭୟଙ୍କର ଯୁଦ୍ଧ ଅନ୍ତେ ହୋଇଯାଏ, ଠିକ୍ ଯେପରି ବେପାର ସକାଶେ ଆଧୁନିକ ଇଉରୋପୀୟ ଜାତି ଯୁଦ୍ଧ କରୁଛନ୍ତି । ଶେଷରେ ଶ୍ରୀବିଜୟକୁ ଜୟ କରି ଧ୍ୱଂସ କରି ଦିଆଗଲା ।

ଭାରତରେ ପୂର୍ବାପେକ୍ଷା ଅଧିକଭାବରେ ଉତ୍ତର ଓ ଦକ୍ଷିଣ ପରସ୍ପରଠାରୁ ବିଚ୍ଛିନ୍ନ ହୋଇଛନ୍ତି । ଉତ୍ତରରେ ଗଜନୀର ମାମୁଦ ବାରମ୍ବାର ମାଡ଼ିଯାଇ ଧ୍ୱଂସ କରିଛନ୍ତି ଓ ଲୁଣ୍ଠନ କରିଥିଲେ । ସେ ପ୍ରଚୁର ଐଶ୍ୱର୍ଯ୍ୟ ନେଇ ଯାଇଥିଲେ ଏବଂ ତାଙ୍କ ରାଜ୍ୟ ସହିତ ପଞ୍ଜାବକୁ ମିଶାଇ ଦେଇଥିଲେ । ଦକ୍ଷିଣରେ ଆମେ ଦେଖୁ ଯେ ରାଜରାଜ ଓ ତାଙ୍କ ପୁତ୍ର ରାଜେନ୍ଦ୍ରଙ୍କ ଅଧୀନରେ ଚୋଳ ସାମ୍ରାଜ୍ୟ ବିସ୍ତାର ଲାଭକରି ଶକ୍ତି ଅର୍ଜନ କରିଛି । ସେମାନେ ଭାରତର ଦକ୍ଷିଣରେ ପ୍ରାଧାନ୍ୟ ବିସ୍ତାର କରିଥାନ୍ତି ଏବଂ ତାଙ୍କର ନୌବାହିନୀ ଆରବସାଗର ଓ ବଙ୍ଗୋପସାଗରର ଅଧିକାରୀ ହୋଇ ବସିଥାନ୍ତି । ସେମାନେ ସିଂହଳ, ଦକ୍ଷିଣବର୍ମା ଓ ବଙ୍ଗଳାକୁ ବିଜୟ ଅଭିଯାନ ଚଳାଇଥାନ୍ତି ।

ମଧ୍ୟ ଓ ପଶ୍ଚିମ ଏସିଆରେ ବାଗଦାଦର ଆବ୍‌ବାସୀ ସାମ୍ରାଜ୍ୟର ଧ୍ୱଂସାବଶେଷ ଆମେ ଦେଖୁ । ବାଗଦାଦ ତଥାପି ଉନ୍ନତି କରୁଥିଲା ଏବଂ ବାସ୍ତବିକ୍ ନୂତନ ଶାସକ ସେଲଜୁକ୍ ତୁର୍କଙ୍କ ଅଧୀନରେ ତାର ଶକ୍ତି ବୃଦ୍ଧି ହେଉଥିଲା । କିନ୍ତୁ ପୁରାତନ ସାମ୍ରାଜ୍ୟ ଅନେକ ରାଜ୍ୟରେ ବିଭକ୍ତ ହୋଇଯାଇଛି । ଇସଲାମ ଆଉ ଏକ ସାମ୍ରାଜ୍ୟ ହୋଇ ନାହିଁ. ଏହା ଅନେକ ଦେଶ ଓ ଲୋକଙ୍କର କେବଳ ଧର୍ମ ହୋଇ ରହିଛି । ଆବ୍‌ବାସୀ ସାମ୍ରାଜ୍ୟର ଧ୍ୱଂସ ଭିତରୁ ଗଜନୀ ରାଜ୍ୟର ଉଦ୍ଭବ ହୋଇଛି । ମାମୁଦ ଏଥିରେ ଶାସନ କରିଛନ୍ତି ଏବଂ ସେଠାରୁ ସେ ଭାରତକୁ ମାଡ଼ିଆସିଛନ୍ତି । କିନ୍ତୁ ଯଦିଓ ବାଗଦାଦ ସାମ୍ରାଜ୍ୟ ଭାଙ୍ଗି ପଡ଼ିଛି ତଥାପି ଏହା ଏକ ବିରାଟ ନଗର ହୋଇ ରହିଛି । ସୁଦୂର ଦେଶମାନଙ୍କରୁ କଳାବିତ୍ ଓ ବିଦ୍ୱାନ ଲୋକ ଆକୃଷ୍ଟ ହୋଇ ଏଠାକୁ ଆସିଛନ୍ତି । ବୋଖରା, ସମରକନ୍ଦ, ବଲ୍‌କ ଓ ଅନ୍ୟ ବଡ଼ ଏବଂ ପ୍ରସିଦ୍ଧ ସହରସବୁ ଏତେବେଳେ ମଧ୍ୟ-ଏସିଆରେ ବୃଦ୍ଧି ପାଇଛି । ଏଗୁଡ଼ିକ ଭିତରେ ବିସ୍ତୃତ ବେପାର ଚାଲିଛି ଏବଂ ବୃହତ୍‌କାୟ ଉଷ୍ଟ୍ରମାନେ ଏକ ଦେଶରୁ ଅନ୍ୟ ଦେଶକୁ ବାଣିଜ୍ୟ ସାମଗ୍ରୀ ବୋହି ନେଉଛନ୍ତି ।

ମଙ୍ଗୋଲିଆ ଓ ତାର ଚତୁର୍ଦ୍ଦିଗରେ ନୂତନ ଯାଯାବର ଜାତିଙ୍କ ସଂଖ୍ୟା ଓ ଶକ୍ତି ବୃଦ୍ଧି ହୋଇଛି । ୨୦୦ ବର୍ଷ ପରେ ସେମାନେ ଏସିଆରେ ମାଡ଼ିଗଲେ । ଆଜି ସୁଦ୍ଧା ମଧ୍ୟ ଓ ପଶ୍ଚିମ ଏସିଆର ପ୍ରଧାନ ଜାତିଗୁଡ଼ିକ ଏହି ମଧ୍ୟ-ଏସିଆର ଯାଯାବର ଜାତିଙ୍କଠାରୁ ଉଦ୍ଭବ । ଚୀନମାନେ ତାଙ୍କୁ ପଶ୍ଚିମକୁ ଠେଲିଦେଲେ ଏବଂ ସେମାନଙ୍କ ଭିତରୁ କେତେକ ଭାରତରେ ଓ କେତେକ ଇଉରୋପରେ ବିସ୍ତାର ଲାଭକଲେ । ଆମେ ଏବେ ଦେଖୁ ଯେ ସେଲଜୁକ୍ ତୁର୍କମାନେ ପଶ୍ଚିମକୁ ଯାଇ ବାଗଦାଦ ସାମ୍ରାଜ୍ୟର ଭାଗ୍ୟ ପୁନରୁତ୍‌ଥାନ କରୁଛନ୍ତି ଏବଂ କନଷ୍ଟାଣ୍ଟିନୋପଲର ପୂର୍ବାଂଶ ରୋମାନ୍ ସାମ୍ରାଜ୍ୟ ଆକ୍ରମଣ କରିଛନ୍ତି ଓ ବିଜୟୀ ହୋଇଛନ୍ତି ।

ଏସିଆ ବିଷୟରେ ଏତିକି । ମୋରିତନ୍ଦାରର ସେପଟେ ଇଜିପ୍ଟ ବାଗଦାଦରୁ ସ୍ୱାଧୀନ ହୋଇଥିଲା । ସେଠାରେ ମୁସଲମାନ ଶାସକ ନିଜକୁ ଏକ ସ୍ୱାଧୀନ ଖଲିଫା ନାମରେ ଘୋଷଣା କରୁଥିଲେ । ଉତ୍ତର-ଆଫ୍ରିକା ମଧ୍ୟ ସ୍ୱାଧୀନ ମୁସଲମାନ ଶାସନାଧୀନରେ ଥିଲା । ସ୍ପେନରେ ଜିବ୍ରାଲଟର ପ୍ରଣାଳୀର ଆଖପାଖରେ କୁର୍ଦ୍ଦୋବା ବା କର୍ଡୋବା ନାମକ ଏକ ସ୍ୱାଧୀନ ମୁସଲମାନ ରାଷ୍ଟ୍ର ଥିଲା । ଏ ସମ୍ବନ୍ଧରେ ପରେ ମୋତେ କିଛି କହିବାକୁ ପଡ଼ିବ । କିନ୍ତୁ ତୁ ଜାଣୁ ଯେତେବେଳେ ଆବ୍ବାସୀ ଖଲିଫାମାନେ କ୍ଷମତା ପାଇଲେ ସେତେବେଳେ ସ୍ପେନ ତାଙ୍କ ପାଖରେ ବଶ୍ୟତା ସ୍ୱୀକାର କରିବାକୁ ଅସ୍ୱୀକାର କଲା । ସେହିଦିନଠାରୁ ଏହା ସ୍ୱାଧୀନ ହୋଇ ରହିଥିଲା । ଏହାର ଫ୍ରାନ୍ସ ଦଖଲ ପ୍ରଚେଷ୍ଟା ଦୀର୍ଘକାଳ ପୂର୍ବରୁ ଚାର୍ଲସ ମାର୍ଟେଲଙ୍କ ଦ୍ୱାରା ବାଧା ପାଇଥିଲା । ଏବେ ସ୍ପେନ୍‌ର ଉତ୍ତରାଞ୍ଚଳରେ ଥିବା ଖ୍ରୀଷ୍ଟୀୟ ରାଷ୍ଟ୍ର-ଗୁଡ଼ିକର ମୁସଲମାନମାନଙ୍କୁ ଆକ୍ରମଣ କରିବାର ପାଳି ପଡ଼ିଲା ଏବଂ କାଳକ୍ରମେ ସେମାନେ ଅଧିକରୁ ଅଧିକ ଆତ୍ମବିଶ୍ୱାସ ସହକାରେ ଆକ୍ରମଣ କଲେ; କିନ୍ତୁ ଆମେ ଯେଉଁ କାଳର କଥା କହୁଛେ ସେତେବେଳେ କର୍ଡୋବାଶାସିତ ରାଜ୍ୟ ଏକ ମହାନ୍ ଓ ପ୍ରଗତିଶୀଳ ରାଷ୍ଟ୍ର ଥିଲା । ସଭ୍ୟତା ଓ ବିଜ୍ଞାନରେ ଇଉରୋପୀୟ ରାଜ୍ୟମାନଙ୍କ ଅପେକ୍ଷା ଖୁବ୍ ଅଗ୍ରଗାମୀ ଥିଲା ।

ସ୍ପେନ ଛଡ଼ା ଇଉରୋପ ମଧ୍ୟ ଏବେ ଅନେକଗୁଡ଼ିଏ ଖ୍ରୀଷ୍ଟୀୟ ରାଜ୍ୟରେ ବିଭକ୍ତ ହୋଇଥିଲା । ଏତେବେଳକୁ ଖ୍ରୀଷ୍ଟଧର୍ମ ସମଗ୍ର ମହାଦେଶରେ ବିସ୍ତାର ଲଭିଥିଲା ଏବଂ ପୁରାତନ ଧର୍ମର ବୀର ଓ ଦେବଦେବୀ ସବୁ ପ୍ରାୟ ଇଉରୋପରୁ ଅନ୍ତର୍ହିତ ହୋଇ ଯାଇଥିଲେ । ଇଉରୋପର ଆଧୁନିକ ରାଜ୍ୟସବୁ ଗଢ଼ି ଉଠିବାର ଆମେ ଦେଖୁଛେ ୯୮୭ ଖ୍ରୀ: ରେ ହ୍ୟୁ କାପେଟ୍‌ଙ୍କ ଅଧୀନରେ ଫ୍ରାନ୍ସର ଉଦୟ ହେଲା । ସମୁଦ୍ର ତରଙ୍ଗକୁ ପଛକୁ ହଟିଯିବା ନିମନ୍ତେ ଆଦେଶ ଦେଇଥିବା ଲାଗି ପ୍ରସିଦ୍ଧ 'କାନ୍ୟୁଟ ଦ ଡେନ' ୧୦୧୬ ଖ୍ରୀ: ରେ ଇଂଲଣ୍ଡରେ ଶାସନ କରୁଥିଲେ ଏବଂ ୫୦ ବର୍ଷରେ "ବିଜେତା ଉଇଲିୟମ" ନରମାଣ୍ଡିରୁ ଆସିଲେ । ଜର୍ମାନୀ ପବିତ୍ର ରୋମ୍ ସାମ୍ରାଜ୍ୟର ଅଂଶ ଥିଲା ଏବଂ ଏହା ଅନେକ କ୍ଷୁଦ୍ର କ୍ଷୁଦ୍ର ରାଜ୍ୟରେ ବିଭକ୍ତ ହୋଇଥିଲେ ସୁଦ୍ଧା ନିର୍ଦ୍ଦିଷ୍ଟରୂପେ ଏକ ଦେଶରେ ପରିଣତ ହେଉଥିଲା । ରୁଷ ପୂର୍ବରେ ବିସ୍ତୃତ ଲଭିକରୁଥିଲା ଏବଂ ଅନେକ ସମୟରେ ନିଜର ଜାହାଜ ନେଇ କନଷ୍ଟାଣ୍ଟିନୋପଲକୁ ଧମକ ଦେଉଥିଲା । ସର୍ବଦା ରୁଷ୍ କନଷ୍ଟାଣ୍ଟିନୋପଲ ପ୍ରତି ଯେଉଁ ଅପୂର୍ବ ଆକର୍ଷଣ ଦେଖାଇଆସିଛି ଏହା ତାର ଆରମ୍ଭ ମାତ୍ର । ସେ ହଜାର ବର୍ଷ ପର୍ଯ୍ୟନ୍ତ ଏହି ପ୍ରଧାନ ସହର ପାଇବାର ଆଶା ବାନ୍ଧିଥିଲା ଏବଂ ଶେଷରେ ୧୪ ବର୍ଷ ପୂର୍ବେ ଶେଷ ହୋଇଥିବା ମହାଯୁଦ୍ଧ ଫଳରେ ଏହା ପାଇବ ବୋଲି ଆଶା କରିଥିଲା; କିନ୍ତୁ ହଠାତ୍ ବିପ୍ଳବ ହୋଇ ପୁରାତନ ରୁଷର ସମସ୍ତ ଯୋଜନାକୁ ଓଲଟ ପାଲଟ କରିଦେଲା ।

ଇଉରୋପର ମାନଚିତ୍ର ଦେଖିଲେ ୯୦୦ ବର୍ଷ ପୂର୍ବେ ପୋଲାଣ୍ଡ ଓ ହଙ୍ଗେରି ଦେଶ ପାଇବୁ; ସେଠାରେ ମାଗାୟାର୍ସମାନେ ବାସ କରୁଥିଲେ ଏବଂ ବୁଲଗେରୀୟ ଓ ସ୍ଲାବ୍‌ମାନଙ୍କର ରାଜ୍ୟ ଦେଖିବୁ । ଅବଶ୍ୟ ପୂର୍ବୀୟ ରୋମାନ୍ ସାମ୍ରାଜ୍ୟ ଅନେକ ଶତ୍ରୁ ପରିବେଷ୍ଟିତ ହୋଇଥିବାର ଦେଖିବୁ; କିନ୍ତୁ ତଥାପି ଏହା କୌଣସି ପ୍ରକାରେ ରହିଥିଲା । ରୁଷ ଏହାକୁ ଆକ୍ରମଣ କଲା, ବୁଲଗେରିଆବାସୀ ବିରକ୍ତ କରିଥିଲେ । ସମୁଦ୍ରରେ ନରମାନମାନେ ବରାବର ହରଣ କରୁଥିଲେ ଏବଂ ଏବେ ସବାପେକ୍ଷା ବିପଜ୍ଜନକ ସେଲଜୁକ୍ ତୁର୍କମାନେ ଏହାର ଜୀବନକୁ ସଙ୍କଟାପନ୍ନ କରି ପକାଇଲେ । କିନ୍ତୁ ଏହିସବୁ ଶତ୍ରୁ ଓ ଅସୁବିଧା ସତ୍ତ୍ୱେ ଆହୁରି ୪୦୦ ବର୍ଷ ପର୍ଯ୍ୟନ୍ତ ଏହା ଭାଙ୍ଗି ପଡ଼ି ନ ଥିଲା । କନଷ୍ଟାଣ୍ଟିନୋପଲର ଶକ୍ତି ଏହି ଅଦ୍ଭୁତ ସହନଶୀଳତାରୁ କେତେକାଂଶରେ ବୁଝାପଡ଼େ । ଏହା ଏପରି ଭଲଭାବରେ ଅବସ୍ଥିତ ଯେ ଶତ୍ରୁ ପକ୍ଷରେ ଏହା ନେବା କଷ୍ଟକର । କ୍ରୁହାଯାଏ ଗ୍ରୀକ୍‌ମାନେ ରାଜ୍ୟରକ୍ଷାର ଯେଉଁ ନୂତନ ପ୍ରଣାଳୀ ବାହାର କରିଥିଲେ କେତେକାଂଶରେ ସେହି ହେତୁ ଏହାକୁହିଁ "ଗ୍ରୀକ୍‌ଫାୟାର" ବୋଲି କହନ୍ତି । ଏହା ଏପରି ଏକ ଜିନିଷ ଯେ ଜଳସ୍ପର୍ଶ କରିବାମାତ୍ରେ ନିଆଁ ଧରେ । ଏହି ଗ୍ରୀକ୍ ଅଗ୍ନି ସାହାଯ୍ୟରେ କନଷ୍ଟାଣ୍ଟିନୋପଲର ଲୋକେ ବସ୍ଫରସ୍ ଅତିକ୍ରମ କରି ଯେଉଁ ଯେଉଁ ଆକ୍ରମଣକାରୀ ସୈନ୍ୟ ଯିବାକୁ ଚେଷ୍ଟା କରନ୍ତି, ତାଙ୍କର ଜାହାଜରେ ନିଆଁ ଲଗାଇଦେଇ ପ୍ରଳୟକାଣ୍ଡ କରିଦିଅନ୍ତି ।

ଖ୍ରୀଷ୍ଟୀୟ ଯୁଗର ପ୍ରଥମ ହଜାର ବର୍ଷ ପରେ ଇଉରୋପର ମାନଚିତ୍ର ଏହିପରି ଥିଲା । ତୁ ବ ଦେଖିପାରିବୁ ଯେ ନର୍ଥମେନ୍ ବା, ନରମାନ୍‌ମାନେ ନିଜ ଜାହାଜରେ ଆସି ଭୂମଧ୍ୟସାଗର ଉପକୂଳସ୍ଥ ସହର ଓ ସମୁଦ୍ରରେ ଥିବା ଜାହାଜମାନଙ୍କୁ ହରଣ କରୁଥିଲେ ଏବଂ ଲୁଣ୍ଠନ କରୁଥିଲେ । ବାସ୍ତବିକ ଏହି ସଫଳତାରେ ସେମାନେ ସମ୍ମାନାସ୍ପଦ ହୋଇଉଠିଲେ; ଫ୍ରାନ୍‌ସର ପଶ୍ଚିମାଂଶ ନରମାଣ୍ଡିରେ ନିଜର ପ୍ରତିଷ୍ଠା କଲେ; ଫ୍ରାନ୍‌ସ ଭୂମିରୁ ସେମାନେ ଇଂଲଣ୍ଡକୁ ଅଧିକାର କଲେ; ସିସିଲିଦ୍ୱୀପ ମୁସଲମାନମାନଙ୍କଠାରୁ ନେଇଗଲେ ଏବଂ ଏହା ସହିତ ଦକ୍ଷିଣ ଇଟାଲି ଯୋଗକରି ସିସିଲିଆ ରାଜ୍ୟ ନାମକ ଏକ ରାଜ୍ୟ ପ୍ରତିଷ୍ଠା କଲେ ।

ଇଉରୋପର କେନ୍ଦ୍ରସ୍ଥଳୀରେ ପବିତ୍ର ରୋମାନ୍ ସାମ୍ରାଜ୍ୟ ଉତ୍ତର ସାଗରଠାରୁ ରୋମ ପର୍ଯ୍ୟନ୍ତ ଅନେକଗୁଡ଼ିଏ ରାଜ୍ୟରେ ବିଭକ୍ତ ହୋଇ ରହିଥିଲା ଏବଂ ସମ୍ରାଟ୍ ତାହାର ଏକମାତ୍ର ପ୍ରଭୁ ହୋଇଥିଲେ । ଏହି ଜର୍ମାନ ସମ୍ରାଟ୍ ଓ ରୋମର ପୋପଙ୍କ ମଧ୍ୟରେ ପ୍ରଭୁତ୍ୱ ଲାଗି ବରାବର ସଂଘର୍ଷ ଲାଗୁଥିଲା । ବେଳେବେଳେ ସମ୍ରାଟ୍ ଜିଣୁଥିଲେ ତ ବେଳେବେଳେ ପୋପ ଜିଣୁଥିଲେ । କିନ୍ତୁ କ୍ରମେ ପୋପଙ୍କ ଶକ୍ତି ବୃଦ୍ଧି ହେଲା । ଜାତିଚ୍ୟୁତ କରି ସମାଜରୁ

ଅଲଗା କରିଦେବାର ଭୟ ତାଙ୍କ ହାତରେ ପ୍ରଧାନ ଅସ୍ତ୍ର ଥିଲା । ବାସ୍ତବିକ ଜଣେ ଗର୍ବୀ ସମ୍ରାଟଙ୍କୁ କ୍ଷମାମାଗିବା ନିମନ୍ତେ ସେକାଳର ପୋପ ଏତେ ତଳକୁ ଆଣିଥିଲେ ଯେ ବରଫ ଉପରେ ଖାଲିଗୋଡ଼ରେ ତାଙ୍କୁ ଚାଲିବାକୁ ପଡ଼ିଥିଲା ଏବଂ ପୋପ ଦୟା ନ କରିବା ପର୍ଯ୍ୟନ୍ତ ଇଟାଲୀର କାନୋସାଠାରେ ପୋପଙ୍କର ବାସସ୍ଥଳୀର ବାହାରେ ତାଙ୍କୁ ଏହିପରି ଭାବରେ ଅପେକ୍ଷା କରିବାକୁ ପଡ଼ିଥିଲା ।

ଇଉରୋପର ରାଜ୍ୟଗୁଡ଼ିକ ଏହି ଢଙ୍ଗରେ ଗଢ଼ିଉଠିବାର ଆମେ ଦେଖୁଁ । ମାତ୍ର ଆଜି ଆମେ ସେଗୁଡ଼ିକ ଯେପରି ଦେଖୁଛୁ ତାହାଠାରୁ ସମ୍ପୂର୍ଣ୍ଣ ଭିନ୍ନ ହୋଇଥିବ ଏବଂ ବିଶେଷତଃ ଲୋକେ ଅଲଗା ଧରଣର ହୋଇଥିବେ । ସେମାନେ କେହି ନିଜକୁ ଫରାସୀ ଲୋକ, ଇଂରେଜ ବା ଜର୍ମାନ ବୋଲି ପରିଚୟ ଦେଉ ନ ଥିଲେ । କୃଷକମାନଙ୍କର ଅବସ୍ଥା ଅତି ଖରାପ ଥିଲା ଏବଂ ସେମାନେ ଦେଶ ବା ଭୂଗୋଳ କିଛି ଜାଣି ନ ଥିଲେ । ସେମାନେ ଏତିକି ଜାଣିଥିଲେ ଯେ ସେମାନେ ହେଉଛନ୍ତି ତାଙ୍କ ପ୍ରଭୁଙ୍କ ଦାସ ଏବଂ ପ୍ରଭୁଙ୍କ ଆଦେଶ ଅନୁସାରେ ତାଙ୍କୁ କାର୍ଯ୍ୟ କରିବାକୁ ପଡ଼ିବ । ସାମନ୍ତମାନଙ୍କୁ ତୁମେ ଯଦି ପଚାର ସେମାନେ କିଏ ? ତେବେ ସେମାନେ କହିବେ ଯେ ଆମେ ଏହି ବା ସେ ସ୍ଥାନର ମାଲିକ ଏବଂ ଏକ ଉପରିସ୍ଥ ବାଦସାହ ବା ରାଜ୍ୟର ଅଧୀନସ୍ଥ । ଏହାହିଁ ସାମନ୍ତ ପ୍ରଥା, ଏହା ସମଗ୍ର ଇଉରୋପରେ ବ୍ୟାପିଥିଲା ।

କ୍ରମେ ଜର୍ମାନୀରେ ଏବଂ ବିଶେଷତଃ ଉତ୍ତର ଇଟାଲୀରେ ବଡ଼ ବଡ଼ ସହରମାନ ଗଢ଼ି ଉଠିବାର ଆମେ ଦେଖୁ; ସେତେବେଳେ ପ୍ୟାରିସ୍ ମଧ୍ୟ ଏକ ପ୍ରସିଦ୍ଧ ସହର ଥିଲା । ଏହି ସହରଗୁଡ଼ିକ ବେପାର ଓ ବାଣିଜ୍ୟକେନ୍ଦ୍ର ଥିଲା ଏବଂ ଧନ ସେଠାରେ ଜମା ହେଉଥିଲା । ସହରଗୁଡ଼ିକ ସାମନ୍ତ ପ୍ରଭୁମାନଙ୍କର ପ୍ରାଧାନ୍ୟ ପସନ୍ଦ କରୁ ନ ଥିଲେ ଏବଂ ସର୍ବଦା ଦୁହିଁଙ୍କ ଭିତରେ ସଂଘର୍ଷ ଲାଗୁଥିଲା । ଶେଷରେ ଧନ ହିଁ ଜୟଲାଭ କରୁଥିଲା । ସାମନ୍ତମାନଙ୍କୁ ଧାର ଦେଉଥିବା ଅର୍ଥବଳରେ ସେମାନେ ବିଶେଷାଧିକାର ଓ କ୍ଷମତା କ୍ରୟ କରୁଥିଲେ; ତେଣୁ ଧୀରେ ଧୀରେ ସହରର ନୂତନ ଶ୍ରେଣୀ ଗଢ଼ି ଉଠିଲା । ଏହା ସାମନ୍ତ ପ୍ରଥା ସହିତ ଖାପ ଖାଇଲା ନାହିଁ ।

ଏହିରୂପେ ଆମେ ଦେଖିବା ଯେ ସାମନ୍ତ ଗ୍ରନ୍ଥ ଅନୁସାରେ ଇଉରୋପର ସମାଜ ସ୍ତର ସ୍ତର ହୋଇ ବିଭକ୍ତ ହୋଇଥିଲା ଏବଂ ଏପରିକି ଗୀର୍ଜା ମଧ୍ୟ ଏହି ବ୍ୟବସ୍ଥାକୁ ମଞ୍ଜୁର କଲା ଓ ଆଶୀର୍ବାଦ କଲା । କୌଣସି ରାଷ୍ଟ୍ରଭାବ ନ ଥିଲା । କିନ୍ତୁ ଇଉରୋପ ତମାମ ବିଶେଷତଃ ଉଚ୍ଚଶ୍ରେଣୀଙ୍କ ମଧ୍ୟରେ ଏକପ୍ରକାର ଖ୍ରୀଷ୍ଟରାଜ୍ୟର ଧାରଣା ଥିଲା ଯଦ୍ଦ୍ୱାରା ଇଉରୋପର ଖ୍ରୀଷ୍ଟିୟାନ ଜାତିଗୁଡ଼ିକ ଏକତ୍ର ହୋଇପାରିଲେ । ଧର୍ମମନ୍ଦିରହିଁ ଏହି ଧାରଣା ବିସ୍ତାର କରିବାରେ ସାହାଯ୍ୟ କଲା; କାରଣ ଏହା ଗୀର୍ଜାକୁ ଦୃଢ଼ କଲା ଏବଂ ରୋମକେ

ପୋପଙ୍କର କ୍ଷମତା ବଢ଼ାଇଲା । ସେ ଏବେ ପଶ୍ଚିମ ଇଉରୋପରେ (Church) ଖ୍ରୀଷ୍ଟଧର୍ମର ଅପ୍ରତିଦ୍ୱନ୍ଦୀ ନେତା ହେଲେ । ତୋର ମନେଥିବ ରୋମ୍ ନିଜକୁ କନଷ୍ଟାଣ୍ଟିନୋପଲ ଓ ପୂର୍ବୀୟ ରୋମ ସାମ୍ରାଜ୍ୟରୁ ଅଲଗା କରିଥିଲା । କନଷ୍ଟାଣ୍ଟିନୋପଲର ପୁରାତନ ରକ୍ଷଣଶୀଳ ଧର୍ମ ଏହିପର୍ଯ୍ୟନ୍ତ ରହିଛି ଏବଂ ରୁଷ ମଧ୍ୟ ସେହିଠାରୁ ଧର୍ମଗ୍ରହଣ କରିଥିଲା । କନଷ୍ଟାଣ୍ଟି-ନୋପଲର ଗ୍ରୀକ୍‌ମାନେ ପୋପଙ୍କୁ ସ୍ୱୀକାର କରୁ ନ ଥିଲେ ।

କିନ୍ତୁ ବିପଦବେଳେ ଯେତେବେଳେ ଶତ୍ରୁଦ୍ୱାରା କନଷ୍ଟାଣ୍ଟିନୋପଲ ପରିବେଷ୍ଟିତ ହେଲା ଏବଂ ବିଶେଷ ଭାବରେ ସେଲଜୁକ୍ ତୁର୍କମାନେ ଆକ୍ରମଣ କରିବାର ଆଶଙ୍କା ହେଲା, ସେତେବେଳେ ଏହା ନିଜର ଗର୍ବ ଓ ରୋମ ପ୍ରତି ଘୃଣା ପାଶୋରି ପକାଇଲା ଏବଂ ମୁସଲମାନ ବିଧର୍ମୀମାନଙ୍କଠାରୁ ରକ୍ଷା ପାଇବା ନିମନ୍ତେ ପୋପଙ୍କୁ ସାହାଯ୍ୟ ମାଗିଲା । ସେତେବେଳେ ରୋମରେ ଜଣେ ପ୍ରସିଦ୍ଧ ପୋପ ଥିଲେ । ତାଙ୍କର ନାମ ହିଲେଡ୍‌ବ୍ରାଣ୍ଡେ । ସେ ସପ୍ତମ ପୋପ ଗ୍ରେଗରି ହୋଇଥିଲେ । ଏହି ହିଲେଡ୍‌ବ୍ରାଣ୍ଡେଙ୍କ ସମୟରେ ଜର୍ମାନ ସମ୍ରାଟଙ୍କୁ କାନୋସାଠାରେ ବରଫ ଉପରେ ଖାଲିଗୋଡ଼ରେ ଆସିବାକୁ ପଡ଼ିଥିଲା ।

ଆଉ ଗୋଟିଏ ଘଟଣା ଯୋଗୁଁ ସେତେବେଳେ ଇଉରୋପର ଖ୍ରୀଷ୍ଟୀୟମାନେ ଉତ୍ତେଜିତ ହୋଇ ପଡ଼ିଥିଲେ । ଅନେକ ଭକ୍ତ ଖ୍ରୀଷ୍ଟୀୟମାନେ ବିଶ୍ୱାସ କରୁଥିଲେ ଯେ ଖ୍ରୀଷ୍ଟଙ୍କ ପରେ ଠିକ୍ ହଜାର ବର୍ଷ ପରେ ପୃଥିବୀ ହଠାତ୍ ଲୋପ ପାଇଯିବ । 'ମିଲିନିୟମ' ଶବ୍ଦର ଅର୍ଥ ଏକହଜାର ବର୍ଷ । ଏହା ଦୁଇଟି ଲାଟିନ୍ ଶବ୍ଦରୁ ଆସିଛି; 'ମିଲେ' ଅର୍ଥ ହଜାର ଏବଂ 'ଆନମ' ଅର୍ଥ ବର୍ଷ । ସେତେବେଳେ ଦୁନିଆ ଶେଷ ହୋଇଯିବ ବୋଲି ଆଶା କରାଯାଉଥିବାରୁ, ହଜାରେ ବର୍ଷ ଅନ୍ତିମରେ ଦୁନିଆ ହଠାତ୍ ହେବ ବୋଲି ଆଶଙ୍କା କରାଯାଉଥିଲା । ମୁଁ ତୋତେ କହୁଛି ସେତେବେଳେ ଇଉରୋପରେ ଖୁବ୍ ଦୁର୍ଦ୍ଦଶା ପଡ଼ିଥିଲା ଏବଂ ଏହି "ଏକ ହଜାର ବର୍ଷ" ଆସିବାର ଆଶାରେ ଅନେକ ବ୍ୟକ୍ତି ଆରାମ ବୋଧ କରିଥିଲେ । ଅନେକେ ତାଙ୍କର ଜମିବାଡ଼ି ବିକ୍ରୀ କରିଦେଲେ ଏବଂ ଦୁନିଆ ଶେଷ ହୋଇଯିବାବେଳେ ତାଙ୍କର ତୀର୍ଥସ୍ଥାନରେ ରହିପାରିବେ ବୋଲି ପାଲେଷ୍ଟାଇନକୁ ପଳାଇ ଯାଇଥିଲେ ।

କିନ୍ତୁ ଦୁନିଆର ଶେଷ ହେଲା ନାହିଁ ଏବଂ ଯେଉଁ ହଜାର ହଜାର ଯାତ୍ରୀ ଜେରୁଜେଲମକୁ ପଳାଇ ଆସିଥିଲେ ତୁର୍କୀଗଣ ତାଙ୍କପ୍ରତି ଦୁର୍ବ୍ୟବହାର କରିଥିଲେ ଏବଂ ତାଙ୍କୁ କଷ୍ଟ ଦେଇଥିଲେ । ସେମାନେ ରୁଷ୍ଟ ଓ ଅପମାନିତ ହୋଇ ଇଉରୋପକୁ ଫେରିଲେ ଏବଂ ପବିତ୍ରଭୂମିରେ ନିଜର ଦୁଃଖଭୋଗର କାହାଣୀ ବଖାଣିଲେ । ବିଶେଷତଃ "ପିଟାର ଦ ହରମିଟ" (ନିର୍ଜନବାସୀ ପିଟର) ନାମକ ଜଣେ ନାମଜାଦା ଯାତ୍ରୀ ହାତରେ ଯଷ୍ଟି ଧରି

ମୁସଲମାନମାନଙ୍କ ହାତରୁ ତାଙ୍କର ତୀର୍ଥସ୍ଥଳ ଜେରୁଜେଲମକୁ ଉଦ୍ଧାର କରିବା ନିମନ୍ତେ ଲୋକଙ୍କ ଭିତରେ ପ୍ରଚାର କରି ବୁଲିଲେ । ଖ୍ରୀଷ୍ଟରାଜ୍ୟରେ କ୍ରୋଧ ଓ ଉତ୍ସାହ ଦେଖାଦେଲା ଏବଂ ଏହା ଦେଖି ପୋପ ଏହି ଆନ୍ଦୋଳନର ନେତୃତ୍ୱ ନେବାପାଇଁ ସ୍ଥିର କଲେ ।

ଏହି ସମୟରେ ବିଧର୍ମୀମାନଙ୍କ ବିରୁଦ୍ଧରେ ସାହାଯ୍ୟ କରିବା ନିମନ୍ତେ କନଷ୍ଟାଣ୍ଟି-ନୋପଲରୁ ନିବେଦନ ଆସି ପହଞ୍ଚିଲା । ରୋମ୍ ଓ ଗ୍ରୀକ୍ ଉଭୟ ଖ୍ରୀଷ୍ଟରାଜ୍ୟ ଏବେ ଅଗ୍ରଗାମୀ ତୁର୍କମାନଙ୍କ ବିରୁଦ୍ଧରେ ଉଠିଥିବାର ଦେଖାଗଲା । ୧୦୯୫ ଖ୍ରୀଷ୍ଟାବ୍ଦରେ ତୀର୍ଥସ୍ଥଳୀ ଜେରୁଜେଲମକୁ ଫେରାଇ ଆଣିବା ଲାଗି ବିରାଟ ଗୀର୍ଜା କାଉନ୍‌ସିଲ ମୁସଲମାନମାନଙ୍କ ବିରୁଦ୍ଧରେ ଧର୍ମଯୁଦ୍ଧ ଘୋଷଣା କରିବା ଲାଗି ସ୍ଥିର କଲା । ଏହିରୂପେ କ୍ରୁଜେଡ୍ ଅର୍ଥାତ୍ ଇସଲାମ ବିରୁଦ୍ଧରେ ଖ୍ରୀଷ୍ଟରାଜ୍ୟର ଯୁଦ୍ଧ—କ୍ରୁଶର ଖ୍ରୀଷ୍ଟଧର୍ମ ଚିହ୍ନ କ୍ରିସେଣ୍ଟ୍ (ଅର୍ଦ୍ଧଚନ୍ଦ୍ର) ବିରୁଦ୍ଧରେ ଯୁଦ୍ଧ ଆରମ୍ଭ ହେଲା ।

## ୫୮ । ଏସିଆ ଓ ଇଉରୋପ ପ୍ରତି ଆଉ ଏକ ଦୃଷ୍ଟିପାତ

ଜୁନ୍ ୧୨, ୧୯୩୨

ଖ୍ରୀଷ୍ଟ ପରେ ଏକହଜାର ବର୍ଷ ଶେଷରେ ଏସିଆ, ଇଉରୋପ ଓ ଆଫ୍ରିକାର କେତେକ ଅଞ୍ଚଳ ବିଷୟରେ ଆମେ ଆମର ସଂକ୍ଷିପ୍ତ ଆଲୋଚନା ଶେଷ କରିଛେ; କିନ୍ତୁ ପୁନର୍ବାର ଦୃଷ୍ଟି ପକାଇବା ।

ଏସିଆର ବିଶେଷତଃ ଭାରତ ଓ ଚୀନ୍‌ର ପୁରାତନ ସଭ୍ୟତା ଏବେ ସୁଦ୍ଧା ରହିଛି ଓ ବୃଦ୍ଧି ପାଉଛି । ଭାରତୀୟ ସଂସ୍କୃତି ମାଲୟସିଆ ଓ କାମ୍ବୋଡ଼ିଆ ପର୍ଯ୍ୟନ୍ତ ବିସ୍ତାର ଲଭିଲା ଏବଂ ସେଠାରେ ଭଲ ଫଳହେଲା । ଚୀନ ସଂସ୍କୃତି କୋରିଆ ଓ ଜାପାନ ଏବଂ କେତେକ ପରିମାଣରେ ମାଲୟସିଆ ପର୍ଯ୍ୟନ୍ତ ବ୍ୟାପିଲା । ପଶ୍ଚିମ ଏସିଆରେ ଆରବୀୟ ସଂସ୍କୃତି ଆରବ, ପାଲେଷ୍ଟାଇନ, ସିରିଆ ଓ ମେସୋପୋଟାମିଆରେ ପ୍ରଚଳିତ ଥିଲା । ପର୍ଶିଆ ବା ଇରାନ୍‌ରେ ପୁରାତନ ଇରାନୀ ଓ ନୂତନ ଆରବ ସଭ୍ୟତାର ସମ୍ମିଶ୍ରଣ ଥିଲା । ମଧ୍ୟ-ଏସିଆର କେତେକ ରାଜ୍ୟ ମଧ୍ୟ ଏହି ମିଶ୍ରିତ ଇରାନୀ-ଆରବ ସଭ୍ୟତା ଗ୍ରହଣ କରିଥିଲେ ଏବଂ ଭାରତ ଓ ଚୀନ ଦ୍ୱାରା ବି ପ୍ରଭାବିତ ହୋଇଥିଲେ । ଏହିସବୁ ଦେଶରେ ଉଚ୍ଚ ସୋପାନର ସଭ୍ୟତା ଥିଲା; ବେପାର, ଶିକ୍ଷା ଓ କଳା ଉନ୍ନତି କରିଥିଲା; ଅନେକ ପ୍ରଧାନ ସହର ଥିଲା ଏବଂ ପ୍ରସିଦ୍ଧ ବିଶ୍ୱବିଦ୍ୟାଳୟମାନଙ୍କୁ ଦୂରଦୂରାନ୍ତରୁ ଛାତ୍ରମାନେ ଆସୁଥିଲେ । କେବଳମାତ୍ର ମଙ୍ଗୋଲିଆ,

ମଧ୍ୟ-ଏସିଆର କେତେକ ଅଞ୍ଚଳ ତଥା ଉତ୍ତରସ୍ଥ ଧାଇବେରିଆରେ ସଭ୍ୟତା ବଡ଼ ନିମ୍ନ ସ୍ତରରେ ଥିଲା ।

ଏତେବେଳେ ଇଉରୋପୀୟ ଦେଶ ଏସିଆର ପ୍ରଗତିଶୀଳ ରାଜ୍ୟଗୁଡ଼ିକ ତୁଳନାରେ ଅନୁନ୍ନତ ଓ ଅର୍ଦ୍ଧ ବର୍ବର ଥିଲା । ପୁରାତନ ଗ୍ରୀକ୍-ରୋମାନ ସଭ୍ୟତା ସୁଦୂର ଅତୀତର କେବଳ ସ୍ମୃତିରୂପେ ରହିଥିଲା । ଶିକ୍ଷା ପ୍ରାପ୍ୟ ନ ଥିଲା, କଳା ବି ଅଧିକ ଦେଖାଯାଉ ନ ଥିଲା ଏବଂ ଏସିଆ ଅପେକ୍ଷା ଖୁବ୍ କମ୍ ବେପାର ଚଳୁଥିଲା । ଦୁଇଟି ସ୍ଥାନ କେବଳ ଟିକିଏ ଉନ୍ନତ ଥିଲା । ଆରବମାନଙ୍କ ଅଧୀନରେ ସ୍ପେନ ଆରବମାନଙ୍କର ଗୌରବ ବେଳର ପରମ୍ପରା ରକ୍ଷାକରି ରହିଥିଲା ଏବଂ କନଷ୍ଟାଣ୍ଟିନୋପଲ ତାର ପତନ ଅବସ୍ଥାରେ ମଧ୍ୟ-ଏସିଆ ଓ ଇଉରୋପର ମଧ୍ୟସ୍ଥଳରେ ସୀମାନ୍ତରେ ବସି ଏକ ମହାନ୍ ଓ ଲୋକବସତି-ପୂର୍ଣ୍ଣ ନଗର ହୋଇଥିଲା । ଇଉରୋପର ଅଧିକ ଅଞ୍ଚଳରେ ବାରମ୍ବାର ବିଶୃଙ୍ଖଳା ଦେଖା ଯାଇଥିଲା ଏବଂ ଯେଉଁ ସାମନ୍ତପ୍ରଥା ପ୍ରଚଳନ ଥିଲା ସେଥିରେ ପ୍ରତ୍ୟେକ ସାମନ୍ତ ଓ ପ୍ରଭୁ ନିଜ ଇଲାକାର ଶ୍ରେଷ୍ଠ ରାଜା ପରି ନିଜକୁ ମନେ କରୁଥିଲେ । ପୁରାତନ ପ୍ରସିଦ୍ଧ ରାଜଧାନୀ ରୋମ୍ ଗୋଟିଏ ଗ୍ରାମଠାରୁ ପ୍ରାପ୍ୟ ବଡ଼ ନ ଥିଲା ଏବଂ ଏହାର ପୁରାତନ ପ୍ରମୋଦଶାଳା ବା ମଞ୍ଚରେ ବନ୍ୟପଶୁ ବାସ କରୁଥିଲେ । ମାତ୍ର ଏହା ଏବେ ପୁନର୍ବାର ଜାଗ୍ରତ ହୋଇ ଉଠିଥିଲା ।

ତେଣୁ ତୁ ଯଦି ଖ୍ରୀଷ୍ଟ ପରେ ଏକ ହଜାର ବର୍ଷର ଏସିଆ ଓ ଇଉରୋପ ଉଭୟଙ୍କୁ ତୁଳନା କରିବୁ, ତେବେ ଏସିଆ ଅଧିକ ସ୍ତରରେ ଅଗ୍ରଗାମୀ ଥିଲା ବୋଲି ତୁ ଜାଣିପାରିବୁ ।

ଆଉ ଏକ ଦୃଷ୍ଟିପାତ କରି ଆମେ ଏବେ ଘଟଣାମାନଙ୍କର ଆବରଣ ଭିତରକୁ ଦୃଷ୍ଟି ପକାଇବାକୁ ଚେଷ୍ଟା କରିବା । ବାହ୍ୟ ଦୃଷ୍ଟିରେ ଏସିଆ ଯେପରି ଅନୁମାନ ହୁଏ ସେପରି ଭଲ ନ ଥିଲା । ପୁରାତନ ସଭ୍ୟତାର ଦୁଇଟି ଦୁର୍ଗ ଭାରତ ଓ ଚୀନରେ ଗୋଲମାଳ ଲାଗିଥିଲା । କେବଳ ବାହାର ଆକ୍ରମଣ ହେତୁ ଏସବୁ ଗୋଲମାଳ ଉପୁଜି ନାହିଁ; ମାତ୍ର ଏଗୁଡ଼ିକ ଅଧିକ ବାସ୍ତବ ଜିନିଷ । ଏହା ଆଭ୍ୟନ୍ତରୀଣ ଜୀବନ ଓ ଶକ୍ତି କ୍ଷୟ କରୁଥିଲା । ପଶ୍ଚିମରେ ଆରବମାନଙ୍କର ସମୃଦ୍ଧି କାଳ ପୂରିଆସିଛି । ଏହା ସତ୍ୟ ଯେ ସେଲଜୁକ୍‌ମାନେ କ୍ଷମତା ପାଇଥିଲେ, ମାତ୍ର ସେମାନଙ୍କର ଜାଗରଣ କେବଳ ସାମରିକ କୁଶଳତା ଯୋଗୁଁ ହୋଇଥିଲା । ସେମାନେ ଭାରତୀୟ, ଚୀନା, ଇଂରାଜୀ ବା ଆରବମାନଙ୍କ ପରି ଏସିଆର ସଂସ୍କୃତିର ପ୍ରତିନିଧି ନୁହନ୍ତି; କିନ୍ତୁ ସେମାନେ ଏସିଆର ସାମରିକ ଗୁଣର ପ୍ରତିନିଧି । ଏସିଆରେ ପ୍ରତ୍ୟେକ ସ୍ଥାନରେ ପୁରାତନ ସଂସ୍କୃତିସମ୍ପନ୍ନ ଜାତିସବୁର ପତନ ହେଉଥିଲା । ସେମାନେ ନିଜ ଉପରେ ବିଶ୍ୱାସ ହରାଇଥିଲେ ଏବଂ ଆତ୍ମରକ୍ଷା କରିବାରେ ଲାଗିଥିଲେ ।

ବଳିଷ୍ଠ ଓ ତେଜସ୍ୱୀନ ନୂତନ ଜାତିସବୁ ଜାଗ୍ରତ ହୋଇଥିଲେ । ସେମାନେ ଏସିଆରେ ପୁରାତନ ଜାତିମାନଙ୍କୁ ଜୟ କରିଥିଲେ ଏବଂ ଏପରିକି ଇଉରୋପକୁ ସଙ୍କଟମୟ କରିଥିଲେ । କିନ୍ତୁ ସେମାନେ ତାଙ୍କ ସହିତ ନୂତନ ସଭ୍ୟତାର ତରଙ୍ଗ ବା ସଂସ୍କୃତିର ନୂତନ ପ୍ରେରଣା ଆଣି ନ ଥିଲେ । ପୁରାତନ ଜାତି ଧୀରେ ଧୀରେ ତାଙ୍କୁ ସଭ୍ୟ କରିଥିଲେ ଏବଂ ତାଙ୍କ ବିଜେତାମାନଙ୍କୁ ନିଜ ସହିତ ମିଶାଇ ଦେଇଥିଲେ ।

ତେଣୁ ଆମେ ଦେଖୁଛେ ଯେ ଏସିଆରେ ବିଶାଳ ପରିବର୍ତ୍ତନ ହୋଇଆସୁଛି । ପୁରାତନ ସଭ୍ୟତା ଚାଲିଥିଲା ବେଳେ, ସୁନ୍ଦର କଳା ବୃଦ୍ଧି ପାଉଥିଲା ନେଲେ ଓ କଳାସର ନୂତନ ଆକାର ଧାରଣ କରୁଥିବା ବେଳେ ସଭ୍ୟତାର ବେଗ ମନ୍ଥର ହୋଇପଡ଼ୁଛି ଏବଂ ଜୀବନପ୍ରବାହ ଅଧିକ ଭାବରେ ବାଧା ପାଇଲା ପରି ବୋଧ ହେଉଛି । ଦୀର୍ଘକାଳ ପର୍ଯ୍ୟନ୍ତ ଏ ସଭ୍ୟତା କାଏମ ରହିଲା । ଆରବ ଓ ମଧ୍ୟ-ଏସିଆରେ ଯେତେବେଳେ ମଙ୍ଗୋଲମାନେ ଆସିଲେ ତାହାଛଡ଼ା ଆଉ କେବେ ନିର୍ଦ୍ଦିଷ୍ଟ ଭାବରେ ତାହାର ଗତିଭଙ୍ଗ ଲୋପ ପାଇ ନାହିଁ । ଚୀନ ଭାରତରେ ଧୀରେ ଧୀରେ ଏହା ଉଭେଇ ଯାଉଛି, ଶେଷରେ ପୁରାତନ ସଭ୍ୟତା ଏକ ଚିତ୍ରାର୍ପିତ ବସ୍ତୁପରି ହୋଇଛି । ଦୂରରୁ ଦେଖିବା ଲାଗି ସୁନ୍ଦର; କିନ୍ତୁ ଏହା ପ୍ରାଣହୀନ ଏବଂ ତୁ ଯଦି ଏହା ପାଖକୁ ଆସୁ, ତେବେ ଦେଖିବୁ ଯେ ଏହା ସାରହୀନ ।

ସାମ୍ରାଜ୍ୟମାନଙ୍କ ପରି ସଭ୍ୟତାର ପତନ ସମ୍ଭବ ହୁଏ; କିନ୍ତୁ ବାହ୍ୟ ଶତ୍ରୁର ଶକ୍ତି ଯୋଗୁ ଯେତେ ନୁହେଁ ଯେତେ ନିଜର ଦୁର୍ବଳତା ଓ ପତନଯୋଗୁଁ ହିଁ ସଂଘଟିତ ହୁଏ । ବର୍ବରମାନଙ୍କ ଯୋଗୁଁ ରୋମର ପତନ ଘଟି ନ ଥିଲା; ସେମାନେ କେବଳ ଏକ ମୁମୂର୍ଷୁ ପଦାର୍ଥରେ ଆଘାତ କରିଥିଲେ ମାତ୍ର । ରୋମର ହୃଦସ୍ପନ୍ଦନୀ ଚାଲୁ ନ ଥିଲାବେଳେ ତାର ବାହୁ ଓ ପାଦ କାଟି ଦିଆଯାଇଥିଲା । ଏହି ପ୍ରକ୍ରିୟା ଆମେ ଭାରତ, ଚୀନ ଓ ଆରବରେ ମଧ୍ୟ କିଛି କିଛି ଦେଖିପାରୁ । ଆରବ ସଭ୍ୟତା ଯେପରି ବୃଦ୍ଧି ପାଇଥିଲା, ସେହିପରି ତାର ପତନ ସଂଘଟିତ ହେଲା । ଭାରତରେ ଓ ଚୀନରେ ଏହି ପ୍ରକ୍ରିୟା ଦୀର୍ଘକାଳବ୍ୟାପୀ ଚାଲିଲା ଏବଂ ଏହା ଧରିବା ସହଜ ନୁହେଁ ।

ଗଜନୀର ମାମୁଦ ଭାରତକୁ ଆସିବାର ବହୁପୂର୍ବରୁ ଏହି ପତନ ଆରମ୍ଭ ହୋଇଯାଇଥିଲା । ଲୋକଙ୍କ ମନରେ ପରିବର୍ତ୍ତନ ଦେଖା ଯାଉଥିଲା । ନୂତନ ଭାବ ଓ ଜିନିଷ ଉଦ୍ଭାବନ କରିବା ପରିବର୍ତ୍ତେ ଯାହା ଘଟିଯାଇଥିଲା, ତାହାର ପୁନରୁକ୍ତି ଓ ଅନୁକରଣରେ ଭାରତୀୟ ଲୋକେ ନିଜକୁ ବ୍ୟସ୍ତ ରଖିଲେ । ସେମାନଙ୍କର ବୁଦ୍ଧି ତଥାପି ଖୁବ୍ ତୀକ୍ଷ୍ଣ ଥିଲା; କିନ୍ତୁ ବହୁ ପୂର୍ବରୁ କଥିତ ଓ ଲିଖିତ ଜିନିଷର ବ୍ୟାଖ୍ୟା କରିବାରେ ଓ ବୁଝାଇବାରେ ସେମାନେ ନିଜକୁ ନିୟୋଜିତ କରିଥିଲେହେଁ ସେମାନେ ଅଦ୍ଭୁତ ମୂର୍ତ୍ତି ଓ

ପଙ୍କ୍ତିଗୁଡ଼ିକର ଚର୍ଚ୍ଚାମାନ କରୁଥିଲେ; କିନ୍ତୁ ଏଗୁଡ଼ିକ ଅତି ବିସ୍ତୃତ ବିବରଣ ଏବଂ ଅଳଙ୍କାରରେ ପୂର୍ଣ୍ଣ ଥିଲା ଓ ଅନେକ ସମୟରେ ଏକପ୍ରକାର କ୍ଷୀଣତା ଏଥିରେ ଦେଖା ଦେଉଥିଲା । କୌଣସି ମୌଳିକତା ଏବଂ ଅଭିନବ ଓ ଉଦାର ନୂତନ ଚର୍ଚ୍ଚାଶୈଳୀ ଦେଖାଯାଉ ନ ଥିଲା । ସଙ୍ଗତିସମ୍ପନ୍ନ ଓ ଧନୀଲୋକଙ୍କ ଭିତରେ ମାର୍ଜିତ ରୁଚି, କଳା ଓ ବିଳାସ ଚାଲିଥିଲା; କିନ୍ତୁ ସମଗ୍ର ଜନତାର କ୍ଲେଶ ଓ ଦୁର୍ଦ୍ଦଶା ଦୂରକରିବା ଲାଗି କିମ୍ବା ଉତ୍ପାଦନ ବଢ଼ାଇବା ଲାଗି କିଛି କରାଯାଉ ନ ଥିଲା ।

ଏସବୁ ସଭ୍ୟତାର ସାଂସ୍କୃତିକ ଚିହ୍ନ । ଏସବୁ ଯେତେବେଳେ ଘଟେ ସେତେବେଳେ ସେହି ସଭ୍ୟତାର ଜୀବନ ଶେଷ ପାଇଯାଉଛି ବୋଲି ନିଶ୍ଚୟ ଜାଣିବ; କାରଣ ସୃଷ୍ଟି ହିଁ ଜୀବନର ଚିହ୍ନ, ପୁନରୁକ୍ତି ଓ ଅନୁକରଣ ନୁହେଁ ।

ଯେତେବେଳେ ଚୀନ ଓ ଭାରତରେ ଏପରି ଅବସ୍ଥା ଦେଖା ଯାଉଥିଲା; କିନ୍ତୁ ସେ କଥାକୁ ଭୁଲ ବୁଝିବୁ ନାହିଁ । ମୋର କହିବାର ଅର୍ଥ ଏହା ନୁହେଁ ଯେ ଚୀନ ବା ଭାରତର ଏଥିଯୋଗୁଁ ଅସ୍ତିତ୍ୱ ଆଉ ନ ଥିଲା ବା ବର୍ବରତାକୁ ଫେରିଆସିଥିଲା । ମୋର କହିବାର ଅର୍ଥ ହେଉଛି ଯେ ଅତୀତରେ ଚୀନ ଓ ଭାରତରେ ଯେଉଁ ରଚନାତ୍ମକ କାର୍ଯ୍ୟର ପୁରାତନ ପ୍ରେରଣା ଥିଲା ତାହାର ଶକ୍ତି କ୍ଷୟ ହୋଇଯାଇଥିଲା ଏବଂ ତାକୁ ଆଉ ନୂତନ ରୂପରେ ଗଢ଼ାଯାଉ ନ ଥିଲା । ଏହା ପରିବର୍ତ୍ତିତ ବେଷ୍ଟନୀ ସହ ନିଜକୁ ଖାପ ଖୁଆଉ ନ ଥିଲା; ଏହା କେବଳ ପୁରାତନ ରାସ୍ତାଧରି ଚାଲିଥିଲା । ପ୍ରତ୍ୟେକ ଦେଶ ଓ ସଭ୍ୟତାରେ ଏପରି ହୋଇଥାଏ ।

ଏପରି ଯୁଗ ପହଞ୍ଚେ, ଯେତେବେଳେ ନୂତନ ଜିନିଷ ସୃଷ୍ଟି କରିବା ଓ ତାର ବିକାଶ କରିବା ଲାଗି ଉଦ୍ୟମ ହୁଏ ଏବଂ ପୁଣି ପତନବେଳ ପହଞ୍ଚେ । ଅଦ୍ଭୁତ କଥା ଯେ ଚୀନ ଓ ଭାରତରେ ଏହି ଅବସାଦ ବହୁ ବିଳମ୍ବରେ ଘଟିଲା ଏବଂ ତାହା ହୋଇ ସୁଦ୍ଧା ଏହା କେବେ ପୂର୍ଣ୍ଣ ଅବସାଦ ଲାଭ କରି ନାହିଁ ।

ଇସଲାମ ଭାରତକୁ ମାନବପ୍ରଗତିର ନୂତନ ଉନ୍ମାଦନା ଆଣିଦେଲା । କେତେକ ପରିମାଣରେ ଏହା ଏକ ପୁଷ୍ଟିପ୍ରଦ ଔଷଧରୂପେ କାର୍ଯ୍ୟ କଲା । ଏହା ଭାରତକୁ ଦୋହଲାଇଦେଲା; କିନ୍ତୁ ଦୁଇଟି କାରଣରୁ ଏହା ଯେପରି ମଙ୍ଗଳ କରିବାର କଥା ତାହା କରି ନ ଥିଲା । ଏହା ଭୁଲ ବାଟରେ ଆସିଲା ଏବଂ ଏକ ପ୍ରକାର ବିଳମ୍ବରେ ଆସିଲା । ଗଜନୀର ମାମୁଦ ଭାରତ ଆକ୍ରମଣ କରିବାର ଶହ ଶହ ବର୍ଷ ପୂର୍ବରୁ ମୁସଲମାନ ଧର୍ମପ୍ରଚାରକମାନେ ଭାରତର ଚାରିଆଡ଼େ ବୁଲୁଥିଲେ ଏବଂ ସେମାନଙ୍କୁ ସ୍ୱାଗତ କରାଯାଉଥିଲା । ସେମାନେ ଶାନ୍ତ ସମୟରେ ଆସିଲେ ଏବଂ କିଛି ସଫଳତା ଲାଭକଲେ । ଇସଲାମ ବିରୁଦ୍ଧରେ କୌଣସି ପ୍ରକାର ଖରାପ ଭାବ

ନ ଥିଲା । ତା ପରେ ମାମୁଦ ଅଗ୍ନି ଓ ଖଡ୍ଗ ଧାରଣ କରି ଆସିଲେ ଏବଂ ଏକ ବିଜେତା, ଲୁଣ୍ଠନକାରୀ ଓ ନରହନ୍ତା ଭାବରେ ସେ ଆସିବାରୁ ଅନ୍ୟ କୌଣସି ଜିନିଷ ଅପେକ୍ଷା ଏହାହିଁ ଭାରତରେ ଇସଲାମର ବଦନାମ କଲା । ସେ ଅବଶ୍ୟ ଅନ୍ୟ ମହାନ୍ ବିଜେତାମାନଙ୍କ ପରି ହତ୍ୟା କରୁଥିଲେ ଏବଂ ଲୁଣ୍ଠନ କରୁଥିଲେ ଓ ଧର୍ମ ପ୍ରତି ଖାତିର କରୁ ନ ଥିଲେ; କିନ୍ତୁ ଖୁବ୍ ଦୀର୍ଘକାଳ ପର୍ଯ୍ୟନ୍ତ ତାଙ୍କର ଆକ୍ରମଣ ଭାରତରେ ଇସଲାମର ଗୌରବକୁ ଆଚ୍ଛନ୍ନ କରି ପକାଇଲା ଏବଂ ଅନ୍ୟାନ୍ୟ ଲୋକେ ସ୍ଥିର ଚିତ୍ତରେ ଯେପରି ଚିନ୍ତା କରିପାରିଥାଆନ୍ତେ ସେପରି ଭାବରେ ଏହାର ବିଚାର କରିବା କଷ୍ଟକର କରି ପକାଇଲା ।

ଏହା ହେଉଛି ଗୋଟିଏ କାରଣ । ଆଉ ଗୋଟିଏ ହେଉଛି ଏହା ବିଳମ୍ବରେ ଆସିଲା । ଏହା ଆରମ୍ଭ ହେବାର ୪୦୦ ବର୍ଷ ପରେ ଆସିଲା ଏବଂ ଏହି ଦୀର୍ଘକାଳ ଭିତରେ ଏହା କେତେକ ପରିମାଣରେ ନିଜର ଶକ୍ତି କ୍ଷୟ କରିଥିଲା ଏବଂ ଏହାର ସର୍ଜନାଶକ୍ତି ଅନେକ ପରିମାଣରେ ହରାଇଥିଲା । ପ୍ରଥମ ଅବସ୍ଥାରେ ଇସଲାମ ସହ ଆରବମାନେ ଯଦି ଭାରତକୁ ଆସିଥାଆନ୍ତେ ତାହାହେଲେ ପୁରାତନ ଭାରତୀୟ ସଂସ୍କୃତି ସହ ଜାଗ୍ରତ ଆରବ ସଂସ୍କୃତି ମିଶିଯାଇଥାଆନ୍ତା ଏବଂ ଉଭୟେ ପରସ୍ପର ଉପରେ ପ୍ରଭାବ ଓ ପ୍ରତିକ୍ରିୟା ପକାଇବା ଫଳରେ ଖୁବ୍ ଭଲ ଫଳ ହୋଇଥାନ୍ତା । ଏଥିରେ ଦୁଇଟି ସଂସ୍କୃତିସମ୍ପନ୍ନ ଜାତିର ମିଶ୍ରଣ ହୋଇଥାନ୍ତା । ଆଉ ବି ଧର୍ମରେ ସହିଷ୍ଣୁତା ଓ ନ୍ୟାୟପରତା ନିମନ୍ତେ ଆରବମାନେ ତ ପ୍ରସିଦ୍ଧ ଥିଲେ ! ବାସ୍ତବିକ୍ ଏକ ସମୟରେ ଖଲିଫାଙ୍କ ଅନୁକୂଳ୍ୟରେ ବାଗଦାଦରେ ଏକ ଜନସମାଜ (Club) ଥିଲା, ଯେଉଁଠି ସବୁ ଧର୍ମୀ ଲୋକେ ଏକତ୍ର ହେଉଥିଲେ ଓ କେବଳ ହେତୁବାଦ (Rational) ଦୃଷ୍ଟିରୁ ନୁହେଁ, ସବୁ ଦୃଷ୍ଟିରୁ ସବୁ ବିଷୟର ଆଲୋଚନା ଓ ତର୍କ କରାଯାଉଥିଲା ।

କିନ୍ତୁ ଆରବମାନେ ଖାସ ଭାରତକୁ ଆସି ନ ଥିଲେ ! ସେମାନେ ସିନ୍ଧରେ ଅଟକିଗଲେ ଏବଂ ଭାରତର ପ୍ରଭାବ ତାଙ୍କ ଉପରେ ବେଶୀ ପଡ଼ି ନ ଥିଲା । ତୁର୍କି ଓ ଅନ୍ୟମାନଙ୍କଦ୍ୱାରା ଇସଲାମ ଭାରତକୁ ଆସିଲା । ସେମାନଙ୍କର ଆରବମାନଙ୍କ ପରି ସହିଷ୍ଣୁତା ବା ସଂସ୍କୃତି ନ ଥିଲା ଏବଂ ସେମାନେ ମୁଖ୍ୟତଃ ସୈନିକ ଥିଲେ ।

ତଥାପି ପ୍ରଗତି ଓ ରଚନାତ୍ମକ ପ୍ରଯତ୍ନ ପାଇଁ ଭାରତ ଏକ ନୂତନ ପ୍ରେରଣା ପାଇଲା । ଏହା କିପରି ଭାବରେ ଭାରତରେ କେତେକ ପରିମାଣରେ ନୂତନ ଜୀବନ ଦାନକଲା ଏବଂ ପରେ କିପରି ଏହାର ଶକ୍ତି କ୍ଷୟ ହେଲା ତାହା ଆମେ ପରେ ବିଚାର କରିବା ।

ଭାରତୀୟ ସଭ୍ୟତାର ଦୁର୍ବଳତାର ଗୋଟିଏ ଫଳ ଏବେ ପରିଲକ୍ଷିତ ହୁଏ । ଆକ୍ରମଣ ହେଉ ମାଡ଼ି ଆସିଥିବା ଜୁଆରରୁ ନିଜକୁ ରକ୍ଷାକରିବା ନିମନ୍ତେ ଏହା ନିଜକୁ

ଚତୁର୍ଦିଗରେ ଏକ ଆବରଣ ଗଢ଼ିଲା ଏବଂ ଆପଣାକୁ ସେଥିରେ ବନ୍ଦୀ କରିଦେଲା । ଏହା ମଧ୍ୟ ଏକ ଦୁର୍ବଳତା ଓ ଭୟଙ୍କର ଚିହ୍ନ ଏବଂ ଔଷଧ ହିଁ ରୋଗକୁ ବେଶୀ ବଢ଼ାଇଦେଲା । ପ୍ରକୃତ ରୋଗ ବିଦେଶୀ ଆକ୍ରମଣ ନୁହେଁ, ତାହା ହେଉଛି ଗତିହୀନ ଭାବ । ଏପରି ବିଚ୍ଛିନ୍ନତା ହେତୁରୁ କଷ୍ଟଲତା ବଢ଼ିଲା ଏବଂ ସମସ୍ତ ବିକାଶର ବାଟ ବନ୍ଦ ହୋଇଗଲା । ପରେ ଆମେ ଦେଖିବା ଚୀନ୍ ମଧ୍ୟ ନିଜ ଘରେ ସେହିପରି କରିଥିଲା ଏବଂ ଜାପାନ ମଧ୍ୟ । ଏକ ସାମୁକ ପରି ବନ୍ଦ ହୋଇଯାଇଥିବା ସମାଜରେ ବାସ କରିବା ନିଶ୍ଚୟ ବିପଜ୍ଜନକ । ଆମେ ସେଠାରେ ରୁଦ୍ଧ ହୋଇପଡ଼ୁ, ଏବଂ ନିର୍ମଳ ବାୟୁ ଓ ନୂତନ ଭାବ ନ ପାଇ ବୃଦ୍ଧି ସମ୍ଭବ ହୁଏନା । ମଣିଷ ଦେହ ପରି ସମାଜ ପକ୍ଷରେ ନିର୍ମଳ ବାୟୁ ଅତ୍ୟନ୍ତ ଆବଶ୍ୟକ ।

ଏସିଆ ସମ୍ବନ୍ଧରେ ଏତିକି । ଆମେ ଦେଖିଲେ ଏତେବେଳେ ଇଉରୋପ ଅନୁନ୍ନତ ଓ କଳହପ୍ରିୟ ଥିଲା; କିନ୍ତୁ ଏହି ବିଶୃଙ୍ଖଳା ଓ ବିରୂପତା ପଶ୍ଚାତରେ ଅନ୍ତତଃ ତେଜ ଓ ପ୍ରାଣ ଦେଖିବାକୁ ମିଳେ । ଦୀର୍ଘକାଳ ପ୍ରାଧାନ୍ୟ କଲାପରେ ଏସିଆ ଅଧୋଗତି ଆଡ଼କୁ ଗ୍ଲୁଲିଥିଲା । ଇଉରୋପ ସଂଗ୍ରାମରେ ଲାଗିଥିଲା; କିନ୍ତୁ ଏସିଆ ସୀମା ପର୍ଯ୍ୟନ୍ତ ଆସିବା ନିମନ୍ତେ ତାକୁ ଆହୁ ବହୁଦୂର ଯିବାକୁ ପଡ଼ିଲା ।

ଆଜି ଇଉରୋପ ପ୍ରାଧାନ୍ୟ ଲାଭ କରିଛି ଏବଂ ଏସିଆ କଷ୍ଟ ସହକାରେ ସ୍ୱାଧୀନତା ପାଇଁ ସଂଗ୍ରାମ କରୁଛି । ତଥାପି ପୁନର୍ବାର ସ୍ତରର ତଳକୁ ଦୃଷ୍ଟି ପକାଅ । ତୁମେ ଦେଖିବ, ଏସିଆରେ ଏକ ନୂତନ ଶକ୍ତି, ଏକ ନୂତନ ଉଜ୍ଜୀବନଭାବ ଓ ନୂତନ ଜୀବନ ଦେଖାଦେଉଛି । ଏସିଆ ଯେ ପୁନର୍ବାର ଜାଗ୍ରତ ହେଉଛି, ଏଥିରେ ସନ୍ଦେହ ନାହିଁ । ଇଉରୋପ ଅଥବା ଏକ ପ୍ରକାର ପାଶ୍ଚାତ୍ୟ ଇଉରୋପର ବିଶାଳତା ସତ୍ତ୍ୱେ ଧ୍ୱଂସର ଲକ୍ଷଣ ଦେଖାଯାଉଛି । ଇଉରୋପୀୟ ସଭ୍ୟତା ଧ୍ୱଂସ କରିବା ପାଇଁ ପୂର୍ବପରି ଆଉ ଶକ୍ତିଶାଳୀ ବର୍ବର ଜାତି ନାହାନ୍ତି; କିନ୍ତୁ ବେଳେ ବେଳେ ସଭ୍ୟ ଲୋକମାନେ ନିଜେ ଅସଭ୍ୟ ବର୍ବରଙ୍କ ପରି କାର୍ଯ୍ୟ କରନ୍ତି ଏବଂ ଏହାହେଲେ ସଭ୍ୟତା ଆପେ ଆପେ ଧ୍ୱଂସ ହୋଇଯାଇପାରେ ।

ମୁଁ ଏସିଆ ଓ ଇଉରୋପର କଥା କହୁଛି; କିନ୍ତୁ ଏଗୁଡ଼ିକ କେବଳ ଭୌଗୋଳିକ ଶବ୍ଦ ଏବଂ ଆମ ସମ୍ମୁଖରେ ଯେଉଁସବୁ ସମସ୍ୟା ରହିଛି, ତାହା ଏସିଆ ବା ଇଉରୋପର ସମସ୍ୟା ନୁହେଁ, ମାତ୍ର ତାହା ବିଶ୍ୱସମସ୍ୟା ଅଥବା ମାନବସମାଜର ସମସ୍ୟା । ଆମେ ଯଦି ସମଗ୍ର ଜଗତ ଲାଗି ଏହାର ସମାଧାନ ନ କରୁ, ତାହାହେଲେ ଗୋଳମାଳ ଲାଗିଥିବ । ପ୍ରତ୍ୟେକ ସ୍ଥାନରେ ଦାରିଦ୍ର୍ୟ ଓ ଦୁର୍ଦ୍ଦଶା ଦୂର ହେଲେ କେବଳ ଏପରି ସମାଧାନ ସମ୍ଭବ ହୋଇପାରେ । ଏହା ହୁଏତ ଦୀର୍ଘକାଳ ଲାଗିପାରେ; କିନ୍ତୁ ଆମର ଏହା ଲକ୍ଷ୍ୟ ହେବା ଉଚିତ ଏବଂ ଏଥିରୁ କୌଣସି ପ୍ରକାର କମ କରିବୁ ନାହିଁ । ତାହାହେଲେ ଯାଇ ଆମେ ସମାନତା ଉପରେ ପ୍ରତିଷ୍ଠିତ ପ୍ରକୃତ

ସଂସ୍କୃତି ଓ ସଭ୍ୟତା ଗଢ଼ି ପାରିବା । ଯେଉଁଠାରେ କୌଣସି ଦେଶ ବା ଶ୍ରେଣୀର ଶୋଷଣ ନ ଥିବ । ଏପରି ଏକ ସମାଜ ସୃଷ୍ଟି ପ୍ରଜାତନ୍ତ୍ରଶାଳୀ ସମାଜରେ ପରିଣତ ହେବ; ପରିବର୍ତ୍ତିତ ଅବସ୍ଥା ସହ ନିଜକୁ ଖାପ ଖୁଆଇ ନେବ; ଏହାର ସଦସ୍ୟମାନଙ୍କର ସହଯୋଗରେ ହିଁ ଆପଣାକୁ ପ୍ରତିଷ୍ଠିତ କରିବ । ଶେଷରେ ଏହା ଅବଶ୍ୟ ସମଗ୍ର ଜଗତରେ ବିସ୍ତାର ଲାଭ କରିବ । ପୁରାତନ ସଭ୍ୟତା ପରି ଏପରି ଏକ ସଭ୍ୟତା ମଉଳିଯିବାର ବା ଧ୍ୱଂସ ପାଇବାର ଆଶଙ୍କା ନାହିଁ ।

ତେଣୁ ଆମେ ଯେତେବେଳେ ଭାରତର ସ୍ୱାଧୀନତା ଲାଗି ସଂଗ୍ରାମ କରୁଛେ ସେତେବେଳେ ମାନବିକ ସ୍ୱାଧୀନତାର ଏହି ମହାନ୍ ଲକ୍ଷ୍ୟ ଆମର ଅବଶ୍ୟ ସ୍ମରଣ ରଖିବା ଦରକାର । ଏହାର ଅର୍ଥ ଆମ ନିଜ ଲୋକ ତଥା ଅନ୍ୟ ଲୋକମାନଙ୍କର ସ୍ୱାଧୀନତା ଏହାର ଅନ୍ତର୍ଗତ ।

## ୬୯ । ଆମେରିକାର 'ମାୟା' ସଭ୍ୟତା

ଜୁନ୍ ୧୩, ୧୯୩୨

ମୁଁ ଏହି ଚିଠିଗୁଡ଼ିକରେ ପୃଥିବୀ ଇତିହାସର ସୂଚନା ଦେବାର ଚେଷ୍ଟା କରୁଛି ବୋଲି ତୋତେ କହୁଛି, କିନ୍ତୁ ପ୍ରକୃତରେ ଏହା ଏସିଆ ଓ ଇଉରୋପର ଏବଂ ଆଫ୍ରିକାର ଉତ୍ତରାଞ୍ଚଳର ଇତିହାସ ହୋଇଛି । ଆମେରିକା ଓ ଅଷ୍ଟ୍ରେଲିଆ ସମ୍ବନ୍ଧରେ ମୁଁ କିଛି କହି ନାହିଁ । ଯାହାହେଉ ମୁଁ ତୋତେ ସତର୍କ ବାଣୀ ଶୁଣାଇଛି ଯେ ଏହି ଆଦିମକାଳରେ ଆମେରିକାରେ ଏକ ସଭ୍ୟତା ଥିଲା । ଏ ସମ୍ବନ୍ଧରେ ବିଶେଷରୂପେ ଜଣା ନାହିଁ ଏବଂ ମୁଁ ବାସ୍ତବିକ ଖୁବ୍ କମ୍ ଜାଣେ । ତଥାପି ଏଠାରେ ସେ ସମ୍ବନ୍ଧରେ କିଛି କହିବାର ଲୋଭ ମୁଁ ସମ୍ଭାଳି ପାରୁ ନାହିଁ । ତାହାହେଲେ ତୁ ସାଧାରଣ ଯେପରି ଭୁଲ ଭାବନ୍ତି ସେପରି ଭାବିବୁ ନାହିଁ ଯେ କଲମ୍ବସ ଓ ଅନ୍ୟ ଇଉରୋପୀୟମାନେ ଆମେରିକାରେ ପହଞ୍ଚିବା ପୂର୍ବରୁ ତାହା ଏକ ଅସଭ୍ୟ ବର୍ବର ଦେଶ ଥିଲା ।

ସମ୍ଭବତଃ ବହୁକାଳ ପୂର୍ବେ ପ୍ରସ୍ତର ଯୁଗ ବେଳେ ମନୁଷ୍ୟ କୌଣସି ସ୍ଥାନରେ ବସତି କରିବା ପୂର୍ବରୁ ଯେତେବେଳେ ବୁଲା ଓ ଶିକାରୀ ହୋଇ ରହିଥିଲା, ସେତେବେଳେ ଏସିଆ ଓ ଉତ୍ତର-ଆମେରିକା ମଧ୍ୟରେ ସ୍ଥଳ ଗମନାଗମନ ପଥ ରହିଥିଲା । ଅଲାସ୍କା ମଧ୍ୟଦେଇ ମଣିଷଗୋଷ୍ଠୀ ବା ଜାତି ଅବଶ୍ୟ ଏକ ମହାଦେଶରୁ ଅନ୍ୟ ମହାଦେଶକୁ ଯାଇଥିଲେ । ପରେ ଏହି ଯାତାୟାତ ପଥ ବିଚ୍ଛିନ୍ନ ହୋଇଥିଲା ଏବଂ ଧୀରେ ଧୀରେ

ଆମେରିକାର ଲୋକେ ନିଜର ସଭ୍ୟତା ବୃଦ୍ଧି କଲେ । ଏ କଥା ସ୍ମରଣ ରଖିଥା; ମୋଟେ ଯେତେଦୂର ଜଣା ଏଗୁଡ଼ିକର ଏସିଆ ବା ଇଉରୋପ ସହିତ କିଛି ସମ୍ପର୍କ ନ ଥିଲା । ଅନେକ ଦିନ ପରେ ୧୬ଶ ଶତାବ୍ଦୀରେ ତଥାକଥିତ ନୂତନ ଜଗତର ଆବିଷ୍କାର ପର୍ଯ୍ୟନ୍ତ କୌଣସି କାର୍ଯ୍ୟକାରୀ ସମ୍ପର୍କ ଥିବାର ବିବରଣୀ ମିଳେ ନାହିଁ । ଏହି ଆମେରିକା ଜଗତଟି ସୁଦୂର ଓ ପୃଥକ୍ ଦୁନିଆ; ଏହା ଇଉରୋପ ବା ଏସିଆର ଘଟଣାଦ୍ୱାରା ପ୍ରଭାବିତ ହୋଇ ନ ଥିଲା ।

ମନେହୁଏ ସେଠାରେ ତିନୋଟି ସଭ୍ୟତାର କେନ୍ଦ୍ର ଥିଲା—ମେକ୍ସିକୋ, ଦକ୍ଷିଣ-ଆମେରିକା ଏବଂ ପେରୁ । ଏହା କେବେ ଆରମ୍ଭ ହେଲା, ତାହା ସ୍ପଷ୍ଟରୂପେ ଜଣାଯାଇ ନାହିଁ; କିନ୍ତୁ ଖ୍ରୀ: ପୂ: ୬୧୩ ବେଳକୁ ମେକ୍ସିକୋ ପାଞ୍ଜି (କାଲେଣ୍ଡର) ଆରମ୍ଭ ହେବାର ଦେଖାଯାଏ । ଖ୍ରୀଷ୍ଟୀୟ ଯୁଗର ଆରମ୍ଭ ବର୍ଷମାନଙ୍କରେ ୧ମ ଶତାବ୍ଦୀ ପରଠାରୁ ଅନେକଗୁଡ଼ିଏ ସହର ଗଢି ଉଠିଥିବାର ଆମେ ଦେଖୁଁ । ସେଠାରେ ପଥରକାମ, ମାଟିକାମ, ଲୁଗାବୁଣା ଓ ଅତି ସୁନ୍ଦର ରଙ୍ଗକାମ ହେଉଥିବାର ଦେଖାଯାଏ । ତମ୍ବା ଓ ସୁନା ପ୍ରଚୁର ପରିମାଣରେ ଥିଲା, କିନ୍ତୁ ଆଦୌ ଲୁହା ନ ଥିଲା । ସ୍ଥାପତ୍ୟ ବୃଦ୍ଧି ପାଇଥିଲା ଏବଂ ସହରଗୁଡ଼ିକ ନିର୍ମାଣକାର୍ଯ୍ୟରେ ପରସ୍ପର ପ୍ରତିଯୋଗିତା କରୁଥିଲେ । ସେଠାରେ ବିଶେଷ ଢଙ୍ଗର ଏକପ୍ରକାର ଜଟିଳ ଲେଖା ଚଳୁଥିଲା । କଳା ବିଶେଷତଃ ମୂର୍ତ୍ତିଗଢ଼ା ଅଧିକ ଭାବରେ ପରିଲକ୍ଷିତ ହୁଏ ଏବଂ ସେଥିରେ ଯଥେଷ୍ଟ ସୌନ୍ଦର୍ଯ୍ୟ ରହିଥିଲା ।

ଏହିସବୁ ପ୍ରତ୍ୟେକ ସଭ୍ୟ ଅଞ୍ଚଳରେ କେତେକ ରାଷ୍ଟ୍ର ଥିଲା । ସେଠାରେ କେତେକ ଭାଷା ଓ ବିଭିନ୍ନ ପରିମାଣରେ ସାହିତ୍ୟ ଥିଲା । ସୁସଂଗଠିତ ଏବଂ ଶକ୍ତିଶାଳୀ ଶାସନ ରହିଥିଲା ଏବଂ ସହରମାନଙ୍କରେ ଏକ ସଂସ୍କୃତ ଓ ବୁଦ୍ଧିଜୀବୀ ସମାଜ ଥିଲା । ଏହି ରାଷ୍ଟ୍ରଗୁଡ଼ିକର ବୈଧାନିକ ଓ ଆର୍ଥିକ ଉଭୟ ବ୍ୟବସ୍ଥା ଅତ୍ୟନ୍ତ ଉନ୍ନତ ଧରଣର ଥିଲା । ପ୍ରାୟ ୯୬୦ ଖ୍ରୀ: ବେଳକୁ ଉକସମାଲ ସହର ସ୍ଥାପିତ ହୋଇଥିଲା ଏବଂ କଥିତ ଅଛି ଯେ ଏହା ଶୀଘ୍ର ବିରାଟ ସହରରେ ପରିଣତ ହୋଇଥିଲା । ସେହି କାଳର ଏସିଆର ପ୍ରଧାନ ସହରମାନଙ୍କ ସହିତ ଏହା ତୁଳନାଯୋଗ୍ୟ । ଲବୁଆ, ମାୟାପାନ ଓ ଗୁଓମୁଲଗୁନ୍ ଆଦି ବଡ଼ ବଡ଼ ନଗରମାନ ଥିଲା ।

ମଧ୍ୟ-ଆମେରିକାର ତିନୋଟି ପ୍ରଧାନ ରାଷ୍ଟ୍ର ଏକ ମିଳିତ ସ୍ଥାପନ କଲେ । ଏହାକୁ ଏବେ ମାୟାପାନ ଲିଗ୍ ବୋଲି କହୁଥିଲେ । ଏହା ଖ୍ରୀଷ୍ଟ ପରେ ଠିକ୍ ଏକ ହଜାର ବର୍ଷ ବେଳର କଥା । ଏସିଆ ଓ ଇଉରୋପରେ ଏହି କାଳ କଥା ଆମେ ଆଲୋଚନା କରିସାରିଛେ । ତେଣୁ ଖ୍ରୀଷ୍ଟଜନ୍ମ ପରେ ୧୦୦୦ ବର୍ଷ ପରେ ମଧ୍ୟ-ଆମେରିକାରେ

ସଭ୍ୟ ରାଷ୍ଟ୍ରଗୁଡ଼ିକର ଏକ ଶକ୍ତିଶାଳୀ ଶ୍ରେଣୀ ହୋଇଥିଲା । କିନ୍ତୁ ଏହିସବୁ ରାଷ୍ଟ୍ର ଓ ମାୟା ସଭ୍ୟତା ପୁରୋହିତପ୍ରଧାନ ଥିଲା । ଜ୍ୟୋତିଷ-ଗଣିତ ବିଜ୍ଞାନରେ ଅଧିକ ଆଦର ଥିଲା ଏବଂ ପୁରୋହିତମାନେ ଏହି ବିଜ୍ଞାନ ଜାଣିଥିବା ହେତୁ ଲୋକଙ୍କ ଅଜ୍ଞତାର ଫାଇଦା ଉଠାଉଥିଲେ—ଠିକ୍ ଯେପରି ସୂର୍ଯ୍ୟ ଓ ଚନ୍ଦ୍ର ଗ୍ରହଣ ବେଳେ ଭାରତରେ ଲକ୍ଷ ଲକ୍ଷ ଲୋକଙ୍କୁ ସ୍ନାନ କରିବା ଓ ଉପବାସ କରିବା ଲାଗି ଶିକ୍ଷା ଦିଆଯାଉଛି ।

ମାୟାପାନ ଲିଗ ଶହେ ବର୍ଷରୁ ଅଧିକକାଳ ପର୍ଯ୍ୟନ୍ତ ରହିଥିଲା । ସେତେବେଳେ ଏକ ସାମାଜିକ ବିପ୍ଳବ ହୋଇଥିଲା ପରି ମନେହୁଏ ଏବଂ ସୀମାନ୍ତରୁ ଏକ ବିଦେଶୀ ଶକ୍ତି ହସ୍ତକ୍ଷେପ କରିଥିଲା । ୧୧୯୦ ଖ୍ରୀ: ବେଳକୁ ମାୟାପାନ ଧ୍ୱଂସ ହୋଇଗଲା । ଯାହାହେଉ ଅନ୍ୟ ବଡ଼ ବଡ଼ ସହରଗୁଡ଼ିକ ରହିଥିଲା । ଆଉ ଏକଶହ ବର୍ଷ ଭିତରେ ଆଉ ଏକ ଅଧିବାସୀ ପ୍ରାଧାନ୍ୟ ଲାଭକଲେ । ଏମାନେ ହେଉଛନ୍ତି ମେକ୍ସିକୋର ଆଜ୍‌ଟେକ (Aztecs) । ୧୪ଶ ଶତାବ୍ଦୀର ଆରମ୍ଭରେ ସେମାନେ ମାୟାରାଜ୍ୟ ଜୟ କଲେ ଏବଂ ୧୩୨୫ ଖ୍ରୀ: ବେଳକୁ ଟେନୋଚ୍‌ଟିଟ୍‌ଲାନ ସହର ସ୍ଥାପନା କଲେ । ଅତିଶୀଘ୍ର ଏହା ହିଁ ସମଗ୍ର ମେକ୍ସିକାନ ଜଗତର ରାଜଧାନୀ ହେଲା, ଆଜ୍‌ଟେକଙ୍କ ସାମ୍ରାଜ୍ୟର କେନ୍ଦ୍ର ହେଲା । ଏହାର ଖୁବ୍ ବେଶୀ ଲୋକସଂଖ୍ୟା ଥିଲା ।

ଆଜ୍‌ଟେକମାନେ ଏକ ସାମରିକ ଜାତି । ସେମାନଙ୍କର ସାମରିକ ଦ୍ୱିସହନବେଶ ଓ ସେନାବାହିନୀ ଥିଲେ ଏବଂ ସାମରିକ ରାସ୍ତା ବନ୍ଧୁତ ଥିଲା । କଥିତ ଅଛି ଯେ ସେମାନେ ଚତୁର ଭାବରେ ତାଙ୍କ ଅଧୀନ ରାଜ୍ୟଗୁଡ଼ିକରେ ପରସ୍ପର ଭିତରେ କଳିଆ ଲଗାଇ ଦେଉଥିଲେ । ସେମାନେ ବିଭକ୍ତ ହୋଇଗଲେ ଏମାନଙ୍କ ପକ୍ଷରେ ଶାସନ କରିବା ସହଜ । ସବୁ ସାମ୍ରାଜ୍ୟର ଏହା ହିଁ ପୁରୁଣା ନୀତି ହୋଇଆସିଛି । ଏହାକୁ ରୋମ "ଡିଭାଇଡ୍ ଏଟ୍ ଇମ୍ପେରା"—ଭେଦ ସୃଷ୍ଟି କରି ଶାସନ କର—ନାମ ଦେଇଛି ।

ଆଜ୍‌ଟେକମାନଙ୍କର ଅନ୍ୟ ବ୍ୟାପାରରେ ଚତୁରତା ସତ୍ତ୍ୱେ ସେମାନେ ବି ପୁରୋହିତପ୍ରାଧାନ୍ୟ ମାନୁଥିଲେ ଏବଂ ଆହୁରି ଖରାପ କଥା ହେଉଛି ଯେ ତାଙ୍କ ଧର୍ମରେ ନରବଳି ଦେବା ପ୍ରଚଳିତ ଥିଲା । ଏହିରୂପେ ପ୍ରତ୍ୟେକ ବର୍ଷ ଅତି ନିର୍ମମ ଭାବରେ ହଜାର ହଜାର ମାନବଜୀବନ ବଳି ଦିଆଯାଉଥିଲା ।

ପ୍ରାୟ ୨୦୦ ବର୍ଷ ପର୍ଯ୍ୟନ୍ତ ଖୁବ୍ କଡ଼ାଭାବରେ ଆଜ୍‌ଟେକମାନେ ତାଙ୍କର ସାମ୍ରାଜ୍ୟ ଶାସନ କରିଥିଲେ । ସାମ୍ରାଜ୍ୟରେ ବାହ୍ୟିକ ଜାକଜମକ ଓ ଶାନ୍ତି ଥିଲା । କିନ୍ତୁ ଲୋକମାନଙ୍କୁ ନିର୍ମମ ଭାବରେ ଶୋଷଣ କରାଯାଉଥିଲା ଏବଂ ସେମାନେ ଦରିଦ୍ର ହୋଇ ଯାଇଥିଲେ । ଏପରି ଭାବରେ ଗଠିତ ଓ ପରିଚାଳିତ ରାଷ୍ଟ୍ର ବେଶୀ

ପର ନଷ୍ଟ ପାରେ ନାହିଁ । ଏହା ହିଁ ଘଟିଲା । ୧୬ଶ ଶତାବ୍ଦୀର ଆରମ୍ଭରେ (୧୫୧୯ରେ) ଯେତେବେଳେ ଆଜ୍‌ଟେକମାନେ ଆପାତତଃ କ୍ଷମତାର ଚୂଡ଼ାନ୍ତରେ ଥିଲେ, ସେତେବେଳେ କେତେକ ମୁଷ୍ଟିମେୟ ବିଦେଶୀ ଦସ୍ୟୁ ଓ ଦୁଃସାହସିକ ଲୋକଙ୍କ ସମକ୍ଷରେ ସମଗ୍ର ସାମ୍ରାଜ୍ୟ ଭୂଷୁଡ଼ି ପଡ଼ିଥିଲା । ଏକ ସାମ୍ରାଜ୍ୟ ପତନର ଏହା ଅତି ଅଦ୍ଭୁତ ଦୃଷ୍ଟାନ୍ତ । ହର୍ନାନ କୋର୍ଟିସ ନାମକ ଜଣେ ସ୍ପେନବାସୀ ତାଙ୍କ ସହିତ ଅଳ୍ପ କେତେକ ସେନା ନେଇ ଏହା କରିଥିଲେ । କୋର୍ଟିସ ଜଣେ ସାହସୀ ଓ ଦାମ୍ଭିକ ଲୋକ ଥିଲେ । ତାଙ୍କର ଦୁଇଟି ଜିନିଷ—ବନ୍ଧୁକ ଓ ଘୋଡ଼ା—ତାଙ୍କୁ ଖୁବ୍ ସାହାଯ୍ୟ କରିଥିଲା । ସମ୍ଭବତଃ ମେକ୍‌ସିକୋ ସାମ୍ରାଜ୍ୟରେ ଘୋଡ଼ା ନ ଥିଲା ଏବଂ ନିଶ୍ଚୟ ସେଠାରେ କୌଣସି ବନ୍ଧୁକ ନ ଥିଲା । କିନ୍ତୁ ଆଜ୍‌ଟେକ ସାମ୍ରାଜ୍ୟ ପଚାସଢ଼ା ହୋଇଯାଇ ନ ଥିଲେ କୋର୍ଟିସଙ୍କ ସାହସ, ବନ୍ଧୁକ ବା ଘୋଡ଼ା କିଛି ତାଙ୍କର ଉପଯୋଗରେ ଆସିପାରି ନ ଥାନ୍ତା । ଆଜ୍‌ଟେକ ସାମ୍ରାଜ୍ୟ ଅନ୍ତଃସାରଶୂନ୍ୟ ହୋଇଯାଇଥିଲା, କେବଳ ବାହ୍ୟରୂପ ମାତ୍ର ରହିଥିଲା ଏବଂ ଏହାକୁ ଭାଙ୍ଗିଦେବା ନିମନ୍ତେ ସାମାନ୍ୟ ପଦାଘାତ ଯଥେଷ୍ଟ । ଏହି ସାମ୍ରାଜ୍ୟ ଶୋଷଣ ଉପରେ ପ୍ରତିଷ୍ଠିତ ଥିଲା ଏବଂ ଲୋକେ ଅତ୍ୟନ୍ତ ଅସନ୍ତୁଷ୍ଟ ଥିଲେ । ତେଣୁ ଯେତେବେଳେ ଏହା ଉପରେ ଆକ୍ରମଣ ହେଲା, ସେତେବେଳେ ସାଧାରଣ ଲୋକେ ସାମ୍ରାଜ୍ୟବାଦୀଙ୍କର ବିପଦକୁ ସ୍ୱାଗତ କରିଥିଲେ । ସାଧାରଣତଃ ଏପରି ଅବସ୍ଥାରେ ଯାହା ହୋଇଥାଏ, ସେପରି ଏଠାରେ ବି ଏକ ସାମାଜିକ ବିପ୍ଳବ ହୋଇଥିଲା ।

କୋର୍ଟିସଙ୍କୁ ଥରେ ତଡ଼ି ଦିଆଯାଇଥିଲା ଏବଂ ସେ ଅଳ୍ପକେ ନିଜର ଜୀବନ ଘେନି ପଳାଇ ଆସିଥିଲେ । କିନ୍ତୁ ସେ ଫେରିଆସିଲେ ଓ ପରେ କେତେକ ଅଧିବାସୀଙ୍କ ସାହାଯ୍ୟରେ ଜୟଲାଭ କଲେ । ଏଥର ଖାଲି ଯେ ଆଜ୍‌ଟେକ ଶାସନ ଲୋପ ପାଇଗଲା, ତାହା ନୁହେଁ; ମାତ୍ର ବିଚିତ୍ର କଥା ହେଉଛି, ଏହା ସହିତ ସମଗ୍ର ମେକ୍‌ସିକୋ ସଭ୍ୟତାର ହିଁ ପତନ ଘଟିଲା ଏବଂ ଅତିଶୀଘ୍ର ବିରାଟ ଟେନୋଚ୍‌ଟିଟଲାନ୍ ସହରରେ କିଛି ଆଉ ରହିଲା ନାହିଁ । ଏହାର ଏବେ ଗୋଟିଏ ହେଲେ ପଥର ନାହିଁ ଏବଂ ଏଠାରେ ସ୍ପେନବାସୀ ଏକ ଧର୍ମମନ୍ଦିର ସ୍ଥାପନା କଲେ । ଅନ୍ୟ ବିରାଟ ମାୟାନଗରୀସବୁ ଖଣ୍ଡ ଖଣ୍ଡ ହୋଇଗଲା ଏବଂ ୟୁକାଟାନର ଅରଣ୍ୟସବୁ ବ୍ୟାପ୍ତ ହୋଇଗଲା । ଶେଷକୁ ଏପରି କି ସେଗୁଡ଼ିକର ନାମ ସୁଦ୍ଧା ପାଶୋରି ଗଲା ଏବଂ ଆଜି ନିକଟସ୍ଥ ଗ୍ରାମମାନଙ୍କ ନାମରେ ହିଁ ତାହାର ସ୍ମୃତି ରହିଛି । ତାଙ୍କର ସମସ୍ତ ସାହିତ୍ୟ ଧ୍ୱଂସ ପାଇଗଲା ଓ କେବଳ ତିନୋଟି ପୁସ୍ତକ ରହିଛି ଏବଂ ଏଗୁଡ଼ିକ ବି ଆଜିପର୍ଯ୍ୟନ୍ତ କେହି ପଢ଼ିପାରି ନାହାନ୍ତି ।

ପ୍ରାୟ ୧୫୦୦ ବର୍ଷ ପର୍ଯ୍ୟନ୍ତ ପ୍ରଚଳିତ ଥିବା ଏକ ପୁରାତନ ସଭ୍ୟତା ଓ ପୁରାତନ ଜାତି ଇଉରୋପର ନୂତନ ଲୋକଙ୍କ ସହିତ ସମ୍ପର୍କରେ ଆସିବା ମାତ୍ରକେ

ତା'ର ଏପରି ହଠାତ୍ ବିଲୋପ ଘଟିବା ବିଷୟ ବୁଝାଇବା ଅତୀବ କଷ୍ଟକର । ପ୍ରାୟ ମନେହୁଏ ଯେପରି କି ଏହି ସମ୍ପର୍କ ଏକ ରୋଗ ଆକାରରେ ହୋଇଥିଲା, ଏକ ନୂତନ ପ୍ଲେଗ ତାଙ୍କୁ ନିପାତ କରିଦେଲା । କେତେକ ଭାବରେ ସେମାନଙ୍କର ଉଚ୍ଚ ସଭ୍ୟତା ଥିବା ସଙ୍ଗେ ସଙ୍ଗେ ଅନ୍ୟ ଦିଗରେ ସେମାନେ ଅତ୍ୟନ୍ତ ଅନୁନ୍ନତ ଥିଲେ । ସେଗୁଡ଼ିକ ଇତିହାସର ବିଭିନ୍ନ କାଳର ବିଚିତ୍ର ସଂମିଶ୍ରଣ ।

ଦକ୍ଷିଣ-ଆମେରିକାର ପେରୁରେ ଆଉ ଏକ ସଭ୍ୟତାର କେନ୍ଦ୍ର ଥିଲା ଏବଂ ଇଙ୍କା ଏହା ଶାସନ କରୁଥିଲେ । ସେ ଏକ ପ୍ରକାର ଈଶ୍ୱରଭାବାପନ୍ନ ଶାସକ ଥିଲେ । ଅଦ୍ଭୁତ କଥା ଯେ, ଅନ୍ତତଃ ଶେଷବେଳକୁ ଏହି ପେରୁଭିଆନ ସଭ୍ୟତା ମେକ୍ସିକୋ ସଭ୍ୟତାଠାରୁ ସମ୍ପୂର୍ଣ୍ଣରୂପେ ବିଚ୍ଛିନ୍ନ ହୋଇଯାଇଥିଲା । ସେଗୁଡ଼ିକର ଦୂରତା ଅଧିକ ନୁହେଁ, ଅଥଚ ପରସ୍ପର ସମ୍ପର୍କରେ ସେମାନେ କିଛି ଜାଣି ନ ଥିଲେ ଏବଂ କେତେକ ଦିଗରେ ସେଗୁଡ଼ିକ ଯେ ଅଦ୍ଭୁତ ଭାବରେ ଅନୁନ୍ନତ ଥିଲା, ଏଥିରୁ ହିଁ ଦେଖାଯାଏ । କୋର୍ଟିସ ମେକ୍ସିକୋରେ କୃତକାର୍ଯ୍ୟ ହେବାର ଅଳ୍ପଦିନ ପରେ ଜଣେ ସ୍ପେନବାସୀ ପେରୁଭିଆନ ରାଜ୍ୟକୁ ବି ଶେଷକରି ଦେଇଥିଲେ । ତାଙ୍କର ନାମ ହେଉଛି ପିଜାରୋ । ସେ ୧୫୩୦ରେ ଆସିଥିଲେ ଏବଂ ବିଶ୍ୱାସଘାତକତା କରି ଇଙ୍କାଙ୍କୁ ବନ୍ଦୀ କଲେ । ଏହି "ନରଦେବ" ସମ୍ରାଟଙ୍କୁ ବନ୍ଦୀ କରିବାରେ ଲୋକେ ଭୟଭୀତ ହୋଇଗଲେ । ପିଜାରୋ କେତେକ କାଳ ପର୍ଯ୍ୟନ୍ତ ଇଙ୍କାଙ୍କ ନାମରେ ଶାସନ କରିବାକୁ ଚେଷ୍ଟା କଲେ ଏବଂ ପ୍ରଚୁର ସମ୍ପଦ ଆଦାୟ କଲେ । ପରେ ଏହି ଛଳନା ଶେଷ ପାଇଗଲା ଏବଂ ସ୍ପେନବାସୀ ପେରୁକୁ ତାଙ୍କ ରାଜ୍ୟର ଏକ ଅଂଶରୂପେ ମିଶାଇ ନେଇଥିଲେ ।

କୋର୍ଟିସ ଯେତେବେଳେ ପ୍ରଥମେ ତେନୋଚ୍‌ଟିଟ୍‌ଲାନ ନଗର ଦେଖିଲେ, ସେ ତାର ମହତ୍ତ୍ୱରେ ଅବାକ୍ ହୋଇ ଯାଇଥିଲେ । ଇଉରୋପରେ ସେ ଏପରି କୌଣସି ସହର ଦେଖି ନ ଥିଲେ ।

ମାୟା ଓ ପେରୁଭିଆନ କଳାର କେତେକ ଧ୍ୱଂସାବଶେଷ ଏବେ ବାହାର କରାଯାଇଛି ଏବଂ ମୋର ମନେହୁଏ ମେକ୍ସିକୋରେ ଆମେରିକାର ଯାଦୁଘରେ ଏହା ଦେଖିବାକୁ ମିଳିବ । ଏଥିରୁ ଏକ ସୁନ୍ଦର କଳାଗତ ପରମ୍ପରା ଜଣାପଡ଼େ । ପେରୁଭିଆନ ବଣିକମାନଙ୍କର କାର୍ଯ୍ୟ ଅତୀବ ସୁନ୍ଦର । କେତେକ ମୂର୍ତ୍ତି ଦେଖାଯାଏ; ସେଥିଭିତରୁ ବିଶେଷ ଭାବରେ ପଥରନିର୍ମିତ ସାପସବୁ ଭାରି ସୁନ୍ଦର । ଅନ୍ୟସବୁ ଆପାତତଃ ଆତଙ୍କ ଜନ୍ମାଇବା ଲାଗି କରାଯାଇଥିଲା ଏବଂ ପ୍ରକୃତରେ ସେଗୁଡ଼ିକ ଦେଖିଲେ ଡର ମାଡ଼େ ।

# ୭୦ । ମହେଞ୍ଜୋଦାରୋକୁ ପ୍ରତ୍ୟାବର୍ତ୍ତନ

ଜୁନ୍ ୧୪, ୧୯୩୨

ମୁଁ ମହେଞ୍ଜୋଦାରୋ ଓ ଭାରତର ପୁରାତନ ସିନ୍ଧୁ ଉପତ୍ୟକା ସଭ୍ୟତା ସମ୍ବନ୍ଧରେ ପଢ଼ୁଛି । ଏହା ବର୍ଣ୍ଣନା କରି ଏକ ବୃହତ୍ ନୂତନ ପୁସ୍ତକ ପ୍ରକାଶିତ ହୋଇଛି ଏବଂ ଏ ସମ୍ବନ୍ଧରେ ଏପର୍ଯ୍ୟନ୍ତ ଯାହା ଜଣାଅଛି, ସେଥିରେ ତାହା ଲିପିବଦ୍ଧ ହୋଇଛି । ଯେଉଁମାନେ ଖୋଳିବା କାର୍ଯ୍ୟର ଭାର ନେଇଛନ୍ତି ଏବଂ ଯେଉଁମାନେ ମୃତ୍ତିକା ଭିତରୁ ଗଭୀରରୁ ଗଭୀରତମ ପ୍ରଦେଶରୁ ଖୋଳିଲାବେଳେ ଏହି ନଗର ବାହାରିବା ନିଜ ଆଖିରେ ଦେଖିଥିଲେ, ସେହି ଲୋକେ ଏହି ପୁସ୍ତକକୁ ଲେଖିଛନ୍ତି । ମୁଁ ଏହି ପୁସ୍ତକ ଏପର୍ଯ୍ୟନ୍ତ ଦେଖି ନାହିଁ । ମୋର ଇଚ୍ଛା, ଏଠି ମୋତେ ମିଳନ୍ତା କି ? କିନ୍ତୁ ମୁଁ ଏହାର ଏକ ସମାଲୋଚନା ପଢ଼ିଛି ଏବଂ ସେଥିରେ ଯାହା ଉଦ୍ଧୃତ କରାଯାଇଛି, ସେଥିରୁ ତୋତେ କିଛି ଜଣାଇବାକୁ ଚାହେଁ । ସିନ୍ଧୁ ଉପତ୍ୟକାର ଏହି ସଭ୍ୟତା ଏକ ଅଦ୍ଭୁତ ଜିନିଷ ଏବଂ ଜଣେ ଏ ସମ୍ବନ୍ଧରେ ଯେତେ ଅଧିକ ଜାଣିବ ତେତେ ବେଶୀ ବିସ୍ମିତ ହେବ । ତେଣୁ ଆମେ ଯଦି ଆମର ଅତୀତ ଇତିହାସ-କାହାଣୀ ବନ୍ଦ କରି ଏହି ଚିଠିରେ ୫୦୦୦ ବର୍ଷ ପୂର୍ବକୁ ଫେରିଯାଉ, ତେବେ ମୋର ବିଶ୍ୱାସ, ତୁ କିଛି ମନେ କରିବୁ ନାହିଁ ।

କଥିତ ଅଛି ଯେ ମହେଞ୍ଜୋଦାରୋ ଅନ୍ତତଃ ୫୦୦୦ ବର୍ଷ ଅତୀତର କଥା । କିନ୍ତୁ ଆମେ ଯେପରି ଦେଖୁଛୁ ମହେଞ୍ଜୋଦାରୋ ଏକ ସୁନ୍ଦର ନଗର । ଏହା ସଂସ୍କୃତ ଓ ସଭ୍ୟ ଲୋକମାନଙ୍କର ବାସଭୂମି ଥିଲା । ଏହା ନିଶ୍ଚୟ ଦୀର୍ଘକାଳ ପୂର୍ବରୁ ବୃଦ୍ଧି ହୋଇ ଏପରି ହୋଇଥିବ । ଏହିରୂପେ ପୁସ୍ତକରେ ବର୍ଣ୍ଣିତ ଅଛି । ଏହାର ଖନନକାର୍ଯ୍ୟର ଭାର ଗ୍ରହଣ କରିଥିବା ସାର ଜନ୍ ମାର୍ସାଲ କହିଛନ୍ତି :—

"ମହେଞ୍ଜୋଦାରୋ ଓ ହରପ୍ପାରେ ଗୋଟିଏ ଜିନିଷ ସ୍ପଷ୍ଟ ଓ ଅଭ୍ରାନ୍ତ ଭାବରେ ପ୍ରମାଣିତ ହେଉଛି; ଏହା ହେଉଛି ଏଇ ଦୁଇ ସ୍ଥାନରେ ଏପର୍ଯ୍ୟନ୍ତ ଯେଉଁ ସଭ୍ୟତାର ରୂପ ପ୍ରକାଶିତ ହୋଇଛି, ତାହା ଏକ ପ୍ରାରମ୍ଭସୂଚକ ସଭ୍ୟତା ନୁହେଁ; ମାତ୍ର ହଜାର ହଜାର ବର୍ଷର ମାନବ ଉଦ୍ୟମଦ୍ୱାରା ଭାରତ-ମୃତ୍ତିକାରେ ବହୁଯୁଗର ପୁରାତନ ଏବଂ ଏକଚ୍ଛତ୍ରରେ ଗଢ଼ାହୋଇଥିବା ସଭ୍ୟତାର ଏକ ଚିହ୍ନ ମାତ୍ର । ତେଣୁ ଆଜିଠାରୁ ମେସୋ-ପୋଟାମିଆ, ଇରାନ୍ ଓ ଇଜିପ୍ଟ ସହିତ ଭାରତକୁ ଗଣ୍ୟ କରିବାକୁ ହେବ । ଏହା ଏକ ପ୍ରଧାନ ଅଞ୍ଚଳ, ଯେଉଁଠି ସଭ୍ୟତାର ପ୍ରକ୍ରିୟା ଆରମ୍ଭ ହୋଇଥିଲା ଏବଂ ବୃଦ୍ଧି ପାଇଥିଲା ।"

ମୋର ମହେଞ୍ଜୁଏ ମୁଁ ତୋତେ ହରପ୍ପା ବିଷୟରେ ଏପର୍ଯ୍ୟନ୍ତ କହି ନାହିଁ । ଏହା ଆଉ ଏକ ସ୍ଥାନ ଯେଉଁଠି ମହେଞ୍ଜୋଦାରୋ ପରି ପୁରାତନ ଭଗ୍ନାବଶେଷ ଖୋଲାହୋଇ ବାହାର କରାଯାଇଛି । ଏହା ପଶ୍ଚିମ-ପଞ୍ଜାବରେ ଅବସ୍ଥିତ ।

ତେଣୁ ଆମେ ଦେଖୁ ଯେ ସିନ୍ଧୁ ଉପତ୍ୟକାରେ କେବଳ ୫୦୦୦ ବର୍ଷ ନୁହେଁ, ଆହୁରି ଅନେକ ହଜାର ବର୍ଷ ପୂର୍ବର ବିବରଣୀ ମିଳେ । ଶେଷରେ ଆମେ ପୁରାତନର ଘନ ଆଚ୍ଛାଦନ ଭିତରେ ଯେତେବେଳେ ମନୁଷ୍ୟ ପ୍ରଥମେ ବସତି ସ୍ଥାପନ କରିଥିଲା, ସେକଥା ଦେଖି ଆଶ୍ଚର୍ଯ୍ୟ ହୋଇଯାଉ । ମହେଞ୍ଜୋଦାରୋ ଖ୍ୟାତ ଥିଲାବେଳେ ଆର୍ଯ୍ୟମାନେ ଭାରତକୁ ଆସି ନ ଥିଲେ, ତଥାପି ଏଥିରେ ସନ୍ଦେହ ନାହିଁ ଯେ—

"ଭାରତର ଅନ୍ୟ ଅଞ୍ଚଳ ନ ହେଲେ ସୁଦ୍ଧା ପଞ୍ଜାବ ଓ ସିନ୍ଧୁରେ ଏକ ଉନ୍ନତ ଓ ସମ୍ପୂର୍ଣ୍ଣରୂପେ ନଗର ଏକା ଢଙ୍ଗର ସଭ୍ୟତା ପ୍ରଚଳିତ ଥିଲା । ଏହା ସମସାମୟିକ ମେସପୋଟାମିଆ ଓ ଇଜିପ୍ଟର ସଭ୍ୟତା ସହିତ ଖୁବ୍ ସାମଞ୍ଜସ୍ୟ ଏବଂ କେତେକ ଦିଗରେ ଅଧିକ ଉଚ୍ଚ ଧରଣର ଥିଲା ।"

ମହେଞ୍ଜୋଦାରୋ ଓ ହରପ୍ପା ଖୋଲାହେବା ପରେ ଏହି ପୁରାତନ ଓ ମନୋମୁଗ୍ଧକର ସଭ୍ୟତା ଆମ ଆଗରେ ପ୍ରକଟିତ ହୋଇଛି । ଭାରତର ମୃତ୍ତିକା ଭିତରେ ଅନ୍ୟାନ୍ୟ କେତେ ଜିନିଷ ଲୁଚି ରହି ନ ଥିବ ! ମହେଞ୍ଜୁଏ ସମ୍ଭବତଃ ଏହି ସଭ୍ୟତା ଭାରତରେ ଭଲ ଭାବରେ ବିସ୍ତୃତ ଥିଲା—କେବଳ ମହେଞ୍ଜୋଦାରୋ ଓ ହରପ୍ପା ଭିତରେ ସୀମାବଦ୍ଧ ନ ଥିଲା । ଏହି ଦୁଇଟି ସ୍ଥାନ ଭିତରେ ବି ଦୂରତା ବହୁତ ବେଶି ।

ଏହି ଯୁଗରେ "ତମ୍ବା ଓ ପିତ୍ତଳ ସହିତ ଏକ ସଙ୍ଗରେ ପଥରର ଅସ୍ତ୍ରଶସ୍ତ୍ର ଓ ବାସନକୁସନ ବ୍ୟବହୃତ ହେଉଥିଲା ।" ସମସାମୟିକ ଇଜିପ୍ଟ ଓ ମେସପୋଟାମିଆ ଲୋକଙ୍କ ସହିତ ସିନ୍ଧୁ ଉପତ୍ୟକାର ଲୋକଙ୍କର ଶ୍ରେଷ୍ଠତ୍ୱ ଓ ପାର୍ଥକ୍ୟ ସମ୍ବନ୍ଧରେ ସାର ଜନ୍ ମାର୍ସଲ୍ ଲେଖିଯାଇଛନ୍ତି ।

ସେ କହନ୍ତି, "କେତେକ ପ୍ରଧାନ ବିଷୟ ଭିତରୁ ସାମାନ୍ୟ କେତୋଟି ଉଲ୍ଲେଖ କରିବି । ଏହି କାଳରେ ଲୁଗାପଟା ପାଇଁ ତୂଳା ବ୍ୟବହାର କରିବାଟା କେବଳ ଭାରତରେ ସୀମାବଦ୍ଧ ଥିଲା ଏବଂ ଏହାପରେ ଦୁଇ ହଜାର ବା ତିନି ହଜାର ବର୍ଷ ପର୍ଯ୍ୟନ୍ତ ପାଶ୍ଚାତ୍ୟ ଜଗତରେ ଏହା ପ୍ରଚଳିତ ହୋଇ ନ ଥିଲା । ଆହୁରି ମଧ୍ୟ ମହେଞ୍ଜୋଦାରୋର ନାଗରିକଙ୍କ-ଦ୍ୱାରା ସୁନିର୍ମିତ ସ୍ନାନାଗାର ଓ ସଙ୍ଗୀତାଗାରସବୁ ଯେପରି ସୁନ୍ଦରରୂପେ ସୁନିର୍ମିତ ହୋଇଥିଲା, ଆମେ ପ୍ରାଗୈତିହାସିକ ଇଜିପ୍ଟ, ମେସପୋଟାମିଆ ବା ପଶ୍ଚିମ-ଏସିଆରେ ଅନ୍ୟାନ୍ୟ କେଉଁଠି ଏହାକୁ ତୁଳନା କଲାପରି ଜିନିଷ ଦେଖିପାରୁନା । ସେସବୁ ଦେଶରେ ଦେବତାମାନଙ୍କ ପାଇଁ ବିରାଟ ମନ୍ଦିର, ରାଜପ୍ରାସାଦ ଓ ରାଜାଙ୍କର କବର ଆଦି ନିର୍ମାଣରେ

ପ୍ରଚୁର ଧନ ଓ ଚନ୍ଦ୍ରା ଲଗାଯାଇଥିଲା; କିନ୍ତୁ ଅବଶିଷ୍ଟ ଲୋକେ ନଗଣ୍ୟ କ୍ଷୁଦ୍ର ମାଟି-କୁଡ଼ିଆରେ ରହୁଥିଲେ ପରି ମନେହୁଏ । ସିନ୍ଧୁ ଉପତ୍ୟକାରେ ଏହାର ଠିକ୍ ବିପରୀତ ଦେଖାଯାଏ ଏବଂ ନାଗରିକମାନଙ୍କର ସୁବିଧା ନିମନ୍ତେ ହିଁ ସର୍ବୋତ୍କୃଷ୍ଟ ଘର ନିର୍ମିତ ହୋଇଥିଲା ।”

ପୁନର୍ବାର ସେ କହୁଛନ୍ତି —

“ସିନ୍ଧୁ ‘ଉପତ୍ୟକାରେ କଳା ଓ ଧର୍ମରେ ତାର ସ୍ପଷ୍ଟ ଚରିତ୍ରଲକ୍ଷଣ ହୋଇଛି ଏବଂ ଏହା ହିଁ ଏହି ସ୍ଥାନର ବିଶେଷତ୍ୱ । ଏହି କାଳ ସମ୍ବନ୍ଧରେ ଅନ୍ୟ ଦେଶ ବିଷୟରେ ଆମେ ଯାହା ଜାଣୁ, ସେଥିରେ ମେଣ୍ଢା, କୁକୁର ଓ ଅନ୍ୟ ଜୀବମାନଙ୍କର ଯେଉଁ ସୁନ୍ଦର ମୂର୍ତ୍ତିସବୁ ରହିଛି ବା ପ୍ରସ୍ତରଖୋଦିତ ଯେଉଁ ଛବିସବୁ ରହିଛି, ତାହା ଭିତରେ କୁଜ ଓ ଛୋଟ ଶିଙ୍ଘ ଥିବା ଷଣ୍ଢମାନଙ୍କ ଛବି ପ୍ରସିଦ୍ଧ । ଏହା ଯେପରିଭାବରେ ପ୍ରତିଫଳିତ ହୋଇଛି, ସେଥିଲାଗି ପ୍ରସିଦ୍ଧ ଏବଂ ଏହାର ରେଖା ଓ ରୂପଗଠନ ଯେପରି ଢଙ୍ଗରେ ହୋଇଛି ଏବେ ହୀରକାର ଖନନ-କୌଶଳରେ ଅନ୍ୟ କିଛି ତାହାଠାରୁ ଉତ୍କୃଷ୍ଟ ହୋଇଥିଲା ପରି ଜଣାଯାଏ ନାହିଁ । ଆମକୁ ଯେତେଦୂର ଜଣା ଅନ୍ୟ ଦେଶରେ କେଉଁଠି ଏହାର ସାମଞ୍ଜସ୍ୟ ଦେଖାଯାଏ ନାହିଁ । କିମ୍ବା ହରପ୍ପାରେ ଦଶ ଓ ଏଗାର ନମ୍ବର ପଥରରେ ଯେଉଁ ଦୁଇଟି ମନୁଷ୍ୟର ସୁନ୍ଦର ପ୍ରତିମା ରହିଛି, ଗ୍ରୀସର ସମୃଦ୍ଧିକାଳ ପୂର୍ବରୁ ଅନ୍ୟତ୍ର କେଉଁଠି ତାହା ସହିତ ତୁଳନା କଳ୍ପନା କିଛି ହୋଇ ନ ଥିଲା । ଧର୍ମ ଦୃଷ୍ଟିରେ ଅବଶ୍ୟ ସିନ୍ଧୁ ଅଧିବାସୀମାନଙ୍କର ଅନେକ ଜିନିଷ ସହିତ ଅନ୍ୟ ଦେଶର ତୁଳନା କରାଯାଇପାରେ । ପ୍ରତ୍ୟେକ ପ୍ରାଗୈତିହାସିକ ଓ ଐତିହାସିକ ଧର୍ମରେ ଏହା ଦେଖାଯାଏ; କିନ୍ତୁ ସ୍ଥୂଳତଃ ବିଚାର କଲେ ତାଙ୍କ ଧର୍ମରେ ଭାରତୀୟ ଭାବର ଏପରି ଚରିତ୍ରଲକ୍ଷଣ ହୋଇଥିଲା ଯାହା ପ୍ରଚଳିତ ହିନ୍ଦୁ ଧର୍ମଠାରୁ ବିଚ୍ଛିନ୍ନ କରିବା ପ୍ରାୟ ସମ୍ଭବ ନୁହେଁ ।”

ଏଥିରେ ଦେଇଥିବା କେତେକ ଶବ୍ଦ ତୁ ହୁଏତ ବୁଝିପାରୁ ନ ଥିବୁ । ଫାଏନ୍ସ (Faience)ର ଅର୍ଥ ହେଉଛି ମାଟିପାତ୍ର ବା ଚିକଣ ମାଟିକାମ; ଇଣ୍ଟାଗ୍ଲିଓ (Intaglio) ଓ ଗ୍ଲିପ୍ଟିକ (Glyptic)ର ଅର୍ଥ ହେଉଛି କୌଣସି ବସ୍ତୁ ଉପରେ ଖୋଦନକାର୍ଯ୍ୟ, ଅନେକ ସମୟରେ ମୂଲ୍ୟବାନ ପ୍ରସ୍ତର ବା ହୀରାରେ ଏହା କରାଯାଏ ।

ମୋର ଇଚ୍ଛା, ହରପ୍ପାରେ ଥିବା ଏହି ପ୍ରତିମୂର୍ତ୍ତି ଏବଂ ଏପରି କି ତାର ଛବି ଯଦି ମିଳନ୍ତା ଦେଖନ୍ତି । ସମ୍ଭବତଃ ଦିନେ ତୁ ଆଉ ମୁଁ ହରପ୍ପା ଓ ମହେଞ୍ଜୋଦାରୋକୁ ଯିବା ଏବଂ ସେଠାର ଦୃଶ୍ୟ ଦେଖି ମନସାଧ ମେଣ୍ଟାଇବା । ଏଥିଭିତରେ ଆମେ ଆମର ଲେଖା ଚଳାଇଥିବା । ତୁ ପୁନାରେ ତୋ ସ୍କୁଲରେ ଅଛୁ ଏବଂ ମୁଁ ଏଠି ମୋ ସ୍କୁଲରେ ରହିଛି, ଯାହାକୁ ଡେରାଡୁନ ଜିଲ୍ଲା ଜେଲ ବୋଲି କୁହାହେଉଛି ।

# ୭୧ । କୋର୍ଡୋଭା ଓ ଗ୍ରାନାଡ଼ା

ଜୁନ୍ ୧୭, ୧୯୩୨

ଆମେ ଏସିଆ ଓ ଇଉରୋପର ଇତିହାସ ବର୍ଷ ବର୍ଷ ଧରି ଅନୁସରଣ କରିଛେ ଏବଂ ଖ୍ରୀଷ୍ଟ ପରେ ହଜାର ବର୍ଷ ଶେଷରେ ଏକସ୍ଥାନରେ ଅଟକିଯାଇ ପଶ୍ଚାତ୍‌ଦୃଷ୍ଟି ନିକ୍ଷେପ କରିଛେ । ମାତ୍ର କୌଣସି ପ୍ରକାରେ ଆମେ ସ୍ପେନକୁ ଛାଡ଼ିଯାଇଛେ; ବିଶେଷତଃ ଆରବ-ମାନଙ୍କ ଅଧୀନରେ ସ୍ପେନ କିପରି ଥିଲା, ତାହା ଉଲ୍ଲେଖ କରି ନାହେଁ ଏବଂ ପୁଣି ପଛକୁ ଫେରିଯାଇ ଆମକୁ ତାକୁ ମିଶାଇ ଆମର ଚିତ୍ର ପୂର୍ଣ୍ଣ କରିବାକୁ ହେବ ।

ତୁ ଏ ବିଷୟରେ ଯାହା ତୋର ମନେଥାଏ ନିଶ୍ଚୟ କିଛି ଜାଣିଛୁ । ୭୧୧ ଖ୍ରୀ:ରେ ଜଣେ ଆରବ ସେନାପତି ଆଫ୍ରିକାରୁ ସ୍ପେନକୁ ଯାଇଥିଲେ । ତାଙ୍କର ନାମ ହେଉଛି ତାରିକ୍ ଏବଂ ସେ ଜିବ୍ରାଲଟର (ଜବାଲ-ଉତ୍ ତାରିକ, ତାରିକ ପାହାଡ଼)ରେ ଓହ୍ଲାଇଲେ । ଦୁଇ ବର୍ଷ ଭିତରେ ଆରବମାନେ ସମଗ୍ର ସ୍ପେନ ଜୟକଲେ ଏବଂ କିଛିଦିନ ପରେ ପର୍ତ୍ତୁଗାଲକୁ ବି ସେଥିରେ ଯୋଗକଲେ । ସେମାନେ ଅଗ୍ରସର ହେବାକୁ ଲାଗିଲେ, ଫ୍ରାନ୍‌ସ ଭିତରକୁ ପ୍ରବେଶ କଲେ ଏବଂ ସମଗ୍ର ଦକ୍ଷିଣରେ ବ୍ୟାପିଗଲେ । ଏଥିରେ ଭୟଭୀତ ହୋଇଯାଇ ଚାର୍ଲସ ମାର୍ଟେଲଙ୍କ ଅଧୀନରେ ଫ୍ରାଙ୍କ୍ ଓ ଅନ୍ୟ ଜାତିମାନେ ଏକତ୍ର ମିଳିତ ହୋଇଗଲେ ଏବଂ ଆରବମାନଙ୍କୁ ବନ୍ଦ କରିବା ନିମନ୍ତେ ପ୍ରବଳ ଉଦ୍ୟମ କରିଥିଲେ । ସେମାନେ କୃତକାର୍ଯ୍ୟ ହେଲେ ଏବଂ ଫ୍ରାନ୍‌ସର ପଏଷ୍ଟିୟର୍ସ ନିକଟସ୍ଥ ଟୁରସ୍ ଯୁଦ୍ଧରେ ଫ୍ରାଙ୍କମାନେ ଆରବମାନଙ୍କୁ ପରାସ୍ତ କଲେ । ଏହା ଏକ ଭୀଷଣ ପରାଜୟ ଏବଂ ଇଉରୋପରେ ଆରବ-ମାନଙ୍କର ବିଜୟ ସ୍ୱପ୍ନ ଭାଙ୍ଗିଗଲା । ଅନେକ କାଳ ପରେ ଫ୍ରାନ୍‌ସରେ ଆରବ, ଫ୍ରାଙ୍କ ଓ ଅନ୍ୟ ଖ୍ରୀଷ୍ଟୀୟ ଲୋକଙ୍କ ଭିତରେ ପରସ୍ପର ସହିତ ଯୁଦ୍ଧ ଲାଗିଥିଲା; ବେଳେ ବେଳେ ଆରବମାନେ ଜିଣି ଫ୍ରାନ୍‌ସ ଭିତରେ ପ୍ରବେଶ କରୁଥିଲେ ଏବଂ ବେଳେ ବେଳେ ସ୍ପେନ୍‌ରେ ସେମାନଙ୍କୁ ପଛକୁ ହଟାଇ ଦିଆଯାଉଥିଲା । ଏପରି କି ଚାର୍ଲମାନେ ସେମାନଙ୍କୁ ସ୍ପେନ୍‌ରେ ଆକ୍ରମଣ କରିଥିଲେ; କିନ୍ତୁ ସେ ପରାସ୍ତ ହେଲେ । ଯାହାହେଉ ମୋଟାମୋଟି ଦୀର୍ଘକାଳ ପର୍ଯ୍ୟନ୍ତ କୌଣସି ରକମ ଏମାନେ ସମକକ୍ଷ ହୋଇ ରହିଲେ ଏବଂ ଆରବମାନେ ସ୍ପେନ୍ ଶାସନ କରୁଥିଲେ, କିନ୍ତୁ ଆଉ ଭିତରକୁ ଯାଇ ନ ଥିଲେ ।

ସ୍ପେନ ଏହିରୂପେ ବିଶାଳ ଆରବ ସାମ୍ରାଜ୍ୟର ଏକ ଅଙ୍ଗହେଲା । ଆରବସାମ୍ରାଜ୍ୟ ଆଫ୍ରିକାଠାରୁ ମଙ୍ଗୋଲିଆ ସୀମାନ୍ତ ପର୍ଯ୍ୟନ୍ତ ବିସ୍ତୃତ ଥିଲା । କିନ୍ତୁ ବେଶି ଦିନ ପାଇଁ ନୁହେଁ । ତୋର ମନେଥିବ, ଆରବରେ ଗୃହଯୁଦ୍ଧ ହୋଇଥିଲା ଏବଂ ଆବ୍ବାସୀମାନେ ଓମେୟା ଖଲିଫାମାନଙ୍କୁ ତଡ଼ି ଦେଇଥିଲେ । ସ୍ପେନରେ ଥିବା ଆରବଶାସକ ଜଣେ

ଓମ୍ମେୟ୍ଦ ଥିଲେ ଏବଂ ସେ ନୂତନ ଅବ୍ବାସୀ ଖଲିଫାଙ୍କୁ ସ୍ୱୀକାର କଲେ ନାହିଁ । ତେଣୁ ସ୍ପେନ ଆରବ ସାମ୍ରାଜ୍ୟଠାରୁ ବିଚ୍ଛିନ୍ନ ହେଲା ଏବଂ ବାଗ୍‌ଦାଦର ଖଲିଫା ବହୁତ ଦୂରରେ ଥିଲେ ଏବଂ ନିଜ ବ୍ୟାପାରରେ ଏତେ ବ୍ୟସ୍ତ ଥିଲେ ଯେ ଅନ୍ୟ କିଛି କରିବା ତାଙ୍କ ପକ୍ଷେ ସମ୍ଭବ ନ ଥିଲା; କିନ୍ତୁ ସ୍ପେନ ଓ ବାଗ୍‌ଦାଦ ଭିତରେ ବିଦ୍ୱେଷ ବଢ଼ିଲା ଏବଂ ବିପଦବେଳେ ଦୁଇଟିଯାକ ଆରବ ରାଜ୍ୟ ପରସ୍ପରକୁ ସାହାଯ୍ୟ କରିବା ପରିବର୍ତ୍ତେ ବରଂ ପରସ୍ପରର ବିପଦକୁ ସ୍ୱାଗତ କଲେ ।

ସ୍ପେନରେ ଥିବା ଆରବମାନେ ନିଜର ମାତୃଭୂମିଠାରୁ ସମ୍ପର୍କ ତୁଟାଇ ଏକପ୍ରକାର ତରତରରେ କାମ କରିଥିଲେ । ସେମାନେ ଦୂରଦେଶରେ ବିଦେଶୀ ଅଧିବାସୀଙ୍କ ଭିତରେ ଥିଲେ ଏବଂ ଚତୁର୍ଦ୍ଦିଗରେ ଶତ୍ରୁବେଷ୍ଟିତ ହୋଇଥିଲେ । ସେମାନଙ୍କ ସଂଖ୍ୟା ଖୁବ୍ କମ୍ ଥିଲା । ବିପଦ ଓ ଅସୁବିଧାବେଳେ ତାଙ୍କୁ ସାହାଯ୍ୟ କରିବାକୁ କେହି ନ ଥିଲେ । କିନ୍ତୁ ସେତେବେଳେ ସେମାନେ ଆତ୍ମବିଶ୍ୱାସୀ ଥିଲେ ଏବଂ ଏହିସବୁ ବିପଦକୁ ଖାତିର କରୁ ନ ଥିଲେ । ପ୍ରକୃତରେ ଦେଖିବାକୁ ଗଲେ ଉତ୍ତରରେ ଖ୍ରୀଷ୍ଟୀୟ ଜାତିମାନଙ୍କର ଅବିଶ୍ରାନ୍ତ ଘାତ ସତ୍ତ୍ୱେ ସେମାନେ ଅଲୌକିକ ଭାବରେ ନିଜର ମହତ୍ତ୍ୱ ରକ୍ଷା କରିଥିଲେ ଏବଂ ଏକାକୀ ୫୦୦ ବର୍ଷ ପର୍ଯ୍ୟନ୍ତ ସ୍ପେନର ଅଧିକାଂଶ ଅଞ୍ଚଳ ଉପରେ ନିଜର କର୍ତ୍ତୃତ୍ୱ ଜାରି କରିଥିଲେ । ଏହା ପରେ ପୁଣି ଆହୁରି ୨୦୦ ବର୍ଷ ପର୍ଯ୍ୟନ୍ତ ସ୍ପେନର ଦକ୍ଷିଣରେ ଏକ ଗ୍ରେନେଡ଼ ରାଜ୍ୟରେ ସେମାନେ କର୍ତ୍ତୃତ୍ୱ ବଜାୟ ରଖିପାରିଲେ । ତେଣୁ ପ୍ରକୃତରେ ସେମାନେ ବିଶାଳ ବାଗ୍‌ଦାଦ ସାମ୍ରାଜ୍ୟ ପରେ ମଧ୍ୟ ବେଶି ଦିନ ରହିଥିଲେ ଏବଂ ଦୀର୍ଘକାଳ ପୂର୍ବରୁ ବାଗ୍‌ଦାଦ ନଗରଟି ଧୂଳିସାତ୍ ହୋଇଯାଇଥିଲା । ଆରବମାନେ ସ୍ପେନରୁ ବିଦାୟ ନେଇ ଚାଲି ଆସିଥିଲେ ।

ସ୍ପେନର କେତେକାଂଶରେ ୭୦୦ ବର୍ଷ ପର୍ଯ୍ୟନ୍ତ ଏହି ଆରବ ଶାସନ ଏକ ବିସ୍ମୟକର ଘଟଣା, କିନ୍ତୁ ଆହୁରି କୌତୁକପ୍ରଦ ହେଉଛି ସ୍ପେନସ୍ଥ ଆରବମାନଙ୍କର ଉଚ୍ଚ ସଭ୍ୟତା ଓ ସଂସ୍କୃତି । ସେମାନଙ୍କୁ ମୁର୍ (Moor) ବୋଲି କୁହାଯାଉଥିଲା । ଜଣେ ଐତିହାସିକ ଟିକିଏ ଉତ୍ସାହରେ ଭାସିଯାଇ କହିଛନ୍ତି—

"ମୁର୍‌ମାନେ ଅଦ୍ଭୁତ କୋର୍ଡ଼ୋବା ରାଜ୍ୟ ସଙ୍ଗଠନ କରିଥିଲେ, ଏହା ମଧ୍ୟଯୁଗର ଏକ ବିସ୍ମୟଜନକ ବସ୍ତୁ ଥିଲା ଏବଂ ଯେତେବେଳେ ସମଗ୍ର ୟୁରୋପ ବର୍ବର, ଅଜ୍ଞତା ଓ ବିବାଦରେ ବ୍ୟାପ୍ତ ଥିଲା, ସେତେବେଳେ ଏହା ଏକାକୀ ଶିକ୍ଷା ଓ ସଭ୍ୟତାର ଆଲୋକ ଜଳାଇ ରଖିଥିଲା, ଏବଂ ପାଶ୍ଚାତ୍ୟ ଜଗତରେ ଝଲସୁଥିଲା ।"

୫୦୦ ବର୍ଷ ପର୍ଯ୍ୟନ୍ତ କର୍ଡ଼ୋବା ଏହି ରାଜ୍ୟର ରାଜଧାନୀ ଥିଲା । ଏହାକୁ ସାଧାରଣତଃ ଇଂରାଜୀରେ କୋର୍ଡ଼ୋବା, ବେଳେ ବେଳେ ବା କୋର୍ଡ଼ୋଭ ବୋଲି କହନ୍ତି ।

ମୋର ଆଶଙ୍କା ହୁଏ ଯେ ବେଳେ ବେଳେ ଏକା ନାମକୁ ମୁଁ ଭିନ୍ନ ଭିନ୍ନ ପ୍ରକାର ବନାନ କରେ । କିନ୍ତୁ ମୁଁ ଏଥିରେ କାର୍ଡୋବା ହିଁ ଲେଖିବାକୁ ଚେଷ୍ଟା କରିବି । ଏହା ଏକ ପ୍ରଧାନ ସହର ଥିଲା, ଦଶ ଲକ୍ଷ ଅଧିବାସୀ ଥିଲେ । ଦଶମାଇଲ ଦୀର୍ଘ ଏକ ଉଦ୍ୟାନ ସହର ଏବଂ ୨୪ ମାଇଲ ବ୍ୟାପୀ ସହରର ସଂଲଗ୍ନ ଅଞ୍ଚଳସବୁ ଥିଲା । କଥିତ ଅଛି, ୬୦,୦୦୦ ସୌଧ ଓ ପ୍ରାସାଦ, ୨,୦୦,୦୦୦ କ୍ଷୁଦ୍ର ଗୃହ, ୮୦,୦୦୦ ଦୋକାନ, ୩୮୦୦ ମସଜିଦ୍ ଓ ୭୦୦ ସାଧାରଣ ସ୍ନାନଗୃହ ଥିଲା । ଏହି ସଂଖ୍ୟା ଅତିରଞ୍ଜିତ ହୋଇପାରିଥାଏ; ମାତ୍ର ଏହା ସେ ନଗର ସମ୍ବନ୍ଧରେ ଗୋଟିଏ ଧାରଣା ଦିଏ । ଅନେକ ପୁସ୍ତକାଗାର ଥିଲା, ସେଥିରୁ ପ୍ରଧାନ ହେଉଛି ଅମୀରଙ୍କ ରାଜକୀୟ ପୁସ୍ତକାଗାର । ଏଥିରେ ୪,୦୦,୦୦୦ ପୁସ୍ତକ ଥିଲା । ସମସ୍ତ ଇଉରୋପର ଏବଂ ଏପରି କି ପଶ୍ଚିମ ଏସିଆରେ ବି କାର୍ଡୋବାର ବିଶ୍ୱବିଦ୍ୟାଳୟ ପ୍ରସିଦ୍ଧ ଥିଲା । ଦରିଦ୍ରମାନଙ୍କୁ ବହୁ ପରିମାଣରେ ଅବୈତନିକ ପ୍ରାଥମିକ ଶିକ୍ଷା ଦିଆଯାଉଥିଲା । ଜଣେ ଐତିହାସିକ ଲେଖିଛନ୍ତି—

"ସ୍ପେନରେ ପ୍ରାୟ ପ୍ରତ୍ୟେକ ଲୋକ ଲେଖାପଢ଼ା ଜାଣିଥିଲା, ଅଥଚ ଖ୍ରୀଷ୍ଟୀୟ ଇଉରୋପରେ ପାଦ୍ରୀମାନଙ୍କ ବ୍ୟତୀତ ଏପରି କି ଉଚ୍ଚ ଶ୍ରେଣୀର ଲୋକ ସୁଦ୍ଧା ନିତାନ୍ତ ମୂର୍ଖ ଥିଲେ ।

କୋର୍ଡୋବା ନଗର ଏହି ପ୍ରକାର ଥିଲା; ବାଗଦାଦର ଅନ୍ୟ ପ୍ରଧାନ ପ୍ରଧାନ ଆରବ ନଗର ସହ ପ୍ରତିଯୋଗିତା କରୁଥିଲା । ଏହାର ଯଶ ସମଗ୍ର ଇଉରୋପରେ ପ୍ରସାରିତ ହୋଇଥିଲା ଏବଂ ଦଶମ ଶତାବ୍ଦୀର ଜଣେ ଜର୍ମାନ ଲେଖକ ଏହାକୁ "ପୃଥିବୀର ଭୂଷଣ" ବୋଲି କହିଛନ୍ତି । ଏହି ବିଶ୍ୱବିଦ୍ୟାଳୟକୁ ଦୂର ସ୍ଥାନମାନଙ୍କରୁ ଛାତ୍ର ଆସୁଥିଲେ । ଆରବ ଦର୍ଶନର ପ୍ରଭାବ ଇଉରୋପର ପ୍ୟାରିସ, ଅକ୍ସଫୋର୍ଡ ଓ ଉତ୍ତର-ଇଟାଲୀର ବିଶ୍ୱବିଦ୍ୟାଳୟ-ମାନଙ୍କରେ ବିସ୍ତାର ଲଭିଥିଲା । ୧୨ଶ ଶତାବ୍ଦୀରେ ଆଭେରୋଜ ବା ଇବନରସଦ କୋର୍ଡୋବାର ପ୍ରସିଦ୍ଧ ଦାର୍ଶନିକ ଥିଲେ । ତାଙ୍କର ବୃଦ୍ଧ ବୟସକୁ ସ୍ପେନ ଅମୀରଙ୍କ ସହିତ ବିବାଦ ଲାଗିଲା ଓ ତାଙ୍କୁ ସ୍ପେନରୁ ନିର୍ବାସନ କରାଗଲା । ସେ ପ୍ୟାରିସକୁ ଯାଇ ସେଠାରେ ବସବାସ କଲେ ।

ଇଉରୋପର ଅନ୍ୟାଞ୍ଚଳ ପରି ସ୍ପେନରେ ମଧ୍ୟ ଏକ ପ୍ରକାର ସାମନ୍ତପ୍ରଥା ଚାଲୁଥିଲା । ମହାନ୍ ଓ କ୍ଷମତାଶାଳୀ ସାମନ୍ତମାନେ ଗଢ଼ିଉଠିଲେ ଏବଂ ଶାସକ ଅମୀର ଓ ତାଙ୍କ ଭିତରେ ବାରମ୍ବାର ଯୁଦ୍ଧ ଲାଗୁଥିଲା । ବାହାର ଆକ୍ରମଣ ଅପେକ୍ଷା ଏହି ଗୃହଯୁଦ୍ଧ ଯୋଗୁଁ ଆରବରାଜ୍ୟ ଅଧିକ ଦୁର୍ବଳ ହୋଇପଡ଼ିଲା । ଏହା ସଙ୍ଗେ ସଙ୍ଗେ ଉତ୍ତର-ସ୍ପେନର କ୍ଷୁଦ୍ର ଖ୍ରୀଷ୍ଟୀୟାନ ରାଜ୍ୟମାନଙ୍କର ଶକ୍ତି ବୃଦ୍ଧି ହେଲା ଏବଂ ସେମାନେ ଆରବମାନଙ୍କୁ ତଡ଼ିଦେବାକୁ ଲାଗିଲେ ।

୧୦୦୦ ଖ୍ରୀଷ୍ଟାବ୍ଦ ବେଳକୁ ଅର୍ଥାତ୍ ୧୦୦୦ ବର୍ଷ ଶେଷ ବେଳକୁ ଅମୀରଙ୍କ ରାଜ୍ୟ ପ୍ରାୟ ସମଗ୍ର ସ୍ପେନରେ ବିସ୍ତୃତ ଥିଲା । ଦକ୍ଷିଣ-ଫ୍ରାନ୍ସର ଅଳ୍ପାଂଶ ବି ଏହାର ଅନ୍ତର୍ଭୁକ୍ତ ଥିଲା । କିନ୍ତୁ ଶୀଘ୍ର ପତନ ହେଲା ଏବଂ ସାଧାରଣତଃ ଯେପରି ହୋଇଥାଏ, ଆଭ୍ୟନ୍ତରୀଣ ଦୁର୍ବଳତା ହେତୁ ଏହା ଘଟିଲା । ଆରବ ସଭ୍ୟତାର ସୁନ୍ଦର ଗଠନ, ଏହାର କଳା, ବିଳାସ ଓ ମର୍ଯ୍ୟାଦା ଅବଶ୍ୟ ଏକ ଧନିକ ସଭ୍ୟତାର ଚିହ୍ନ । ଅନାହାରୀ ଦରିଦ୍ର ଲୋକଙ୍କ ବିଦ୍ରୋହ ଓ ଶ୍ରମିକ ଦଙ୍ଗା ସବୁ ହେଉଥିଲା । କ୍ରମେ ଗୃହଯୁଦ୍ଧ ବ୍ୟାପିଲା ଏବଂ ଗୋଟିକ ପରେ ଗୋଟିଏ ପ୍ରଦେଶ ସ୍ୱାଧୀନ ହୋଇଗଲେ ଓ ଆରବମାନଙ୍କ ସ୍ପେନ ସାମ୍ରାଜ୍ୟ ଖଣ୍ଡ ଖଣ୍ଡ ହୋଇଗଲା । ତଥାପି ଖଣ୍ଡ ଖଣ୍ଡ ହୋଇ ସୁଦ୍ଧା ଆରବମାନେ ରହିଥିଲେ ଏବଂ ଶେଷରେ ୧୨୩୬ ଖ୍ରୀଷ୍ଟାବ୍ଦରେ କୋର୍ଡୋବା କାଷ୍ଟାଇଲର ଖ୍ରୀଷ୍ଟୀୟ ରାଜାଙ୍କ ହାତରେ ପଡ଼ିଥିଲା ।

ଆରବମାନଙ୍କୁ ଦକ୍ଷିଣକୁ ତଡ଼ି ଦିଆଗଲା; ତଥାପି ସେମାନେ ପ୍ରତିରୋଧ କଲେ । ସ୍ପେନର ଦକ୍ଷିଣରେ ସେମାନେ ଏକ କ୍ଷୁଦ୍ର ରାଜ୍ୟ ଅଲଗା କରିନେଲେ । ଏହା ଗ୍ରାନାଡ଼ା ରାଜ୍ୟ ରାଜ୍ୟ ଏବଂ ଏଠାରେ ସେମାନେ କର୍ତ୍ତୃତ୍ୱ କଲେ । ଆକାରରେ ଦେଖିଲେ ଏହି ରାଜ୍ୟ ଅତି କ୍ଷୁଦ୍ର ଥିଲା; କିନ୍ତୁ ଏହି କ୍ଷୁଦ୍ର ଆକାରରେ ଆରବ ସଭ୍ୟତା ପ୍ରତିଫଳିତ ହେଉଥିଲା । ଗ୍ରାନାଡ଼ାରେ ପ୍ରସିଦ୍ଧ ଆଲହାମ୍ବ୍ରା ଏପର୍ଯ୍ୟନ୍ତ ରହିଛି । ଏହାର ସୁନ୍ଦର ତୋରଣ, ସ୍ତମ୍ଭ, କାଳ୍ପନିକ ଲତାଦିର ଚିତ୍ରସବୁ ସେହିକାଳର ସ୍ମୃତିଚିହ୍ନ । ଏହାକୁ ମୂଳ ଆରବୀ ଭାଷାରେ "ଅଲ ହାମ୍ରା" ଅର୍ଥାତ୍ ଲାଲ ମହଲ କହୁଥିଲେ । ଇସ୍‌ଲାମ୍‌ଦ୍ୱାରା ପ୍ରଭାବିତ ଆରବ ଓ ଅନ୍ୟ କୋଠାମାନଙ୍କରେ ଏହି କାଳ୍ପନିକ ଲତାଦିର ସୁନ୍ଦର ଚିତ୍ରସବୁ ଅନେକ ସମୟରେ ଦେଖିବାକୁ ମିଳେ । ଇସ୍‌ଲାମ୍ ଚିତ୍ରସବୁ ରଙ୍ଗ କରିବା ଉତ୍ସାହିତ କରେନା । ତେଣୁ କାରିଗରମାନେ କୌତୁକପୂର୍ଣ୍ଣ ଓ ଜଟିଳ ଚିତ୍ରସବୁ କରିବାରେ ଲାଗିଲେ । ସେମାନେ ଅନେକ ସମୟରେ ତୋରଣ ଓ ଅନ୍ୟତ୍ର କୋରାନରୁ ଆରବୀ ପଦ୍ୟମାନ ଲେଖୁଥିଲେ ଏବଂ ତାକୁ ସୁନ୍ଦର ଭାବରେ ସଜ୍ଜିତ କରୁଥିଲେ । ଆରବୀ ଲିପି ଏପରି ଲିପି ଯେ ସେଥିରେ ସାଜସଜ୍ଜା ସହଜରେ ହୋଇପାରେ ।

ଗ୍ରାନାଡ଼ା ରାଜ୍ୟ ଦୁଇଶହ ବର୍ଷ ପର୍ଯ୍ୟନ୍ତ ରହିଲା । ସ୍ପେନର ଖ୍ରୀଷ୍ଟୀୟ ରାଜ୍ୟସବୁ ବିଶେଷତଃ କାଷ୍ଟାଇଲ୍ ଏହା ଉପରେ ଚାପ ପକାଇଲା ଏବଂ ସାମୟିକ ଭାବରେ କାଷ୍ଟାଇଲକୁ କର ଦେବା ନିମନ୍ତେ ଏହା ସମ୍ମତ ହୋଇଥିଲା । ଖ୍ରୀଷ୍ଟୀୟ ରାଜ୍ୟଗୁଡ଼ିକ ଭିତରେ ବିବାଦ ନ ଥିଲେ ସମ୍ଭବତଃ ଏହା ଏତେ ଦିନ ରହିପାରି ନ ଥାଆନ୍ତା; କିନ୍ତୁ ୧୪୬୯ ଖ୍ରୀ: ରେ ଦୁଇଟି ପ୍ରଧାନ ରାଜ୍ୟର ଶାସକ ଫର୍ଡିନାଣ୍ଡ ଓ ଇସାବେଲାଙ୍କ ଭିତରେ ଏକ ବିବାହ ହେଲା । ଏହା ଫଳରେ କାଷ୍ଟାଇଲ୍, ଆରାଗନ ଓ ଲିଅନ୍ ମିଳିତ ହେଲେ । ଫର୍ଡିନାଣ୍ଡ ଓ ଇସାବେଲା ଗ୍ରାନାଡ଼ାର ଆରବ ରାଜ୍ୟକୁ ଘେରି କରିଦେଲେ । କେତେ ବର୍ଷ

ପର୍ଯ୍ୟନ୍ତ ଆରବ୍‌ମାନେ ସାହସର ସହିତ ଯୁଦ୍ଧ କରିଥିଲେ । ଶେଷରେ ସେମାନେ ଚାରିଆଡ଼ୁ ଆକ୍ରାନ୍ତ ହେଲେ ଓ ଗ୍ରାନାଡ଼ାରେ ସେମାନଙ୍କୁ ଆବଦ୍ଧ କରି ଦିଆଗଲା । ଖାଦ୍ୟ ଅଭାବରୁ ୧୪୯୨ ଖ୍ରୀ: ରେ ଆରବମାନେ ଆତ୍ମସମର୍ପଣ କଲେ ।

ଅନେକ ସାରାସେନ ବା ଆରବ ସ୍ପେନ ଛାଡ଼ି ଆଫ୍ରିକାକୁ ଗଲେ । ଗ୍ରାନାଡ଼ା ନିକଟରେ ଠିକ୍ ନଗର ଉପରକୁ ଗୋଟିଏ ସ୍ଥାନ ଏବେ ସୁଦ୍ଧା ରହିଛି, ଯାହାର ନାମ ହେଉଛି "ଏଲ୍ ଅଲ୍ ଟିମୋ ସୋସ୍ପିରେ ଡେଲ୍ ମୋରେ", ଅର୍ଥାତ୍ ମୁର୍‌ମାନଙ୍କର ଶେଷ ନିଃଶ୍ୱାସ ।

କିନ୍ତୁ ବହୁସଂଖ୍ୟକ ଆରବ ସ୍ପେନରେ ରହିଲେ । ଏହି ଆରବମାନଙ୍କ ପ୍ରତି ଦୁର୍ବ୍ୟବହାର ସ୍ପେନ ଇତିହାସରେ ଏକ ଅତି କାଳିମାର ଚିହ୍ନ । କ୍ରୂରତା ଓ ହତ୍ୟାକାଣ୍ଡ ଚାଲିଲା ଏବଂ ଯେଉଁ ସହିଷ୍ଣୁତା ଦେଖାଇବାର ପ୍ରତିଶ୍ରୁତି ଦିଆଯାଇଥିଲା, ତାହା ସେମାନେ ପାଶୋରିଗଲେ । ଏହି ସମୟ ବେଳକୁ "ଦି ଇନ୍‌କୁଇଜିସନ" ରୂପୀ ଯେଉଁ ପ୍ରଚଣ୍ଡ ଅସ୍ତ୍ରବଳରେ ରୋମାନ ଚର୍ଚ୍ଚ ତାହା ନିକଟରେ ବଶ୍ୟତା ସ୍ୱୀକାର ନ କରୁଥିବା ଲୋକମାନଙ୍କୁ ଦମନ କରିବାର ଚେଷ୍ଟା କରୁଥିଲା, ତାହା ସ୍ପେନରେ ସ୍ଥାପିତ ହେଲା । ସାରାସେନଙ୍କ ଅଧୀନରେ ଯେଉଁ ଇହୁଦୀମାନେ ସମୃଦ୍ଧିଲାଭ କରିଥିଲେ, ସେମାନେ ସେମାନଙ୍କର ଧର୍ମ ପରିବର୍ତ୍ତନ କରିବାକୁ ଏବେ ବାଧ୍ୟ ହେଲେ ଏବଂ ଅନେକଙ୍କୁ ପୋଡ଼ି ମାରି ଦିଆଯାଇଥିଲା । ସ୍ତ୍ରୀ ବା ପିଲାମାନଙ୍କୁ ବି ବାଦ ଦିଆଗଲା ନାହିଁ । ଜଣେ ଐତିହାସିକ କହିଛନ୍ତି—"ବିଧର୍ମୀ (ଅର୍ଥାତ୍ ସାରାସେନ) ମାନଙ୍କୁ ତାଙ୍କର ଛବିଳ ପୋଷାକ ଛାଡ଼ିବାକୁ ହୁକୁମ ହୋଇଥିଲା ଏବଂ ତାଙ୍କୁ ବିଜେତାମାନଙ୍କର ପାଇଜାମା ଓ ଟୋପି ପିନ୍ଧିବାକୁ କୁହାଗଲା । ସେମାନଙ୍କର ଭାଷା, ରୀତିନୀତି ଏବଂ ଏପରି କି ନାମ ସୁଦ୍ଧା ଛାଡ଼ିଦେବାକୁ ହୁକୁମ ହେଲା ଓ ସ୍ପେନ ଭାଷାରେ କହିବା ପାଇଁ, ସ୍ପେନ ରୀତିରେ ଆଚରଣ କରିବା ପାଇଁ ଏବଂ ସ୍ପେନବାସୀଙ୍କ ପରି ନିଜର ନାମକରଣ ପୁନର୍ବାର କରିବା ନିମନ୍ତେ କୁହାଯାଇଥିଲା ।" ଅବଶ୍ୟ ଏହି ବର୍ବରତା ବିରୁଦ୍ଧରେ ଜାଗରଣ ଓ ବିଦ୍ରୋହ ହୋଇଛି । କିନ୍ତୁ ନିର୍ଦ୍ଦୟ ଭାବରେ ତାହା ଦମନ କରି ଦିଆଯାଇଛି ।

ସ୍ପେନର ଖ୍ରୀଷ୍ଟିୟାନମାନେ ଧୋଇବା ଓ ଗାଧୋଇବାର ଖୁବ୍ ବିରୁଦ୍ଧରେ ଥିଲା ପରି ମନେହୁଏ । ବୋଧହୁଏ ସ୍ପେନସ୍ଥ ଆରବମାନେ କେବଳ ଏହାର ଖୁବ୍ ପ୍ରିୟ ଥିବାରୁ ଏବଂ ଚାରିଆଡ଼େ ବିରାଟ ସାଧାରଣ ସ୍ନାନାଗାରମାନ ତିଆରି କରିଥିବାରୁ ସେମାନେ ଏହାକୁ ଆପତ୍ତି କରୁଥିଲେ । ଖ୍ରୀଷ୍ଟିୟାନମାନେ ଏପର୍ଯ୍ୟନ୍ତ ଗଲେ ଯେ ହୁକୁମ ବାହାରିଲା "ମୁର୍‌ମାନଙ୍କର ସଂସ୍କାର ନିମନ୍ତେ" ଅର୍ଥାତ୍ ଆରବମାନଙ୍କର ସଂସ୍କାର ନିମନ୍ତେ ଦରକାର ଯେ "ସେମାନେ ନିଜେ ତାଙ୍କର ନାସି କିମ୍ବା ଅନ୍ୟ କୌଣସି ବ୍ୟକ୍ତିକୁ ନିଜ ଘରେ ବା

ଅନ୍ୟତ୍ର ଧୋଇବାକୁ ବା ସ୍ନାନ କରିବାକୁ ଅନୁମତି ଦିଆଯିବ ନାହିଁ ଏବଂ ସମସ୍ତ ସ୍ନାନଗୃହ ଗୁଡ଼ିକ ଦିଆଯାଇ ଧ୍ୱଂସ କରି ଦିଆଯିବ ।"

ଧୋଇ ହେବାର ଅପରାଧ ଛଡ଼ା ମୁରମାନଙ୍କ (Moriscos) ବିରୁଦ୍ଧରେ ଆଉ ଏକ ଅଭିଯୋଗ ଅଣାଗଲା, ସେମାନେ ଧର୍ମରେ ଖୁବ୍ ସହିଷ୍ଣୁଭାବ ଦେଖାଉଅଛନ୍ତି । ଏହା ପଢ଼ିଲବେଳକୁ ଅସାଧାରଣ ପରି ମନେ ହେଉଅଛି; ଅଥଚ ୧୬୦୨ରେ ଭାଲେନ୍‌ସିଆର ପ୍ରଧାନ ଧର୍ମଯାଜକ ସ୍ପେନରୁ ସାରାସେନମାନଙ୍କୁ ତଡ଼ିବା ପାଇଁ ସୁପାରିଶ କରି ଯେଉଁ 'ମରିସ୍କୋମାନଙ୍କ କପଟତା ଓ ବିଶ୍ୱାସଘାତକତା''ର ବିବରଣୀ ଦେଇଥିଲେ, ସେଥିରେ ଏହା ଏକ ଅଭିଯୋଗରୂପେ ଲିଖିତ ଅଛି । ଏହି ସମ୍ବନ୍ଧରେ ସେ କହିଛନ୍ତି, 'ସେମାନେ ମରିସ୍କୋମାନେ ସକଳପ୍ରକାର ଧର୍ମବିଷୟରେ ସ୍ୱାଧୀନତାର ଯେପରି ପକ୍ଷପାତୀ, ତାହା ଅପେକ୍ଷା ଅନ୍ୟ କୌଣସି ଜିନିଷର ସେପରି ନୁହନ୍ତି; ତୁର୍କ ଓ ଅନ୍ୟ ସବୁ ମୁସଲମାନମାନେ ଅଥଚ ତାଙ୍କର ପ୍ରଜାମାନଙ୍କୁ ଧର୍ମ ଗ୍ରହଣ କରିବାକୁ ବାଧ କରନ୍ତି ।'' ସୁତରାଂ ସ୍ପେନରେ ସାରାସେନମାନଙ୍କୁ ଅଜ୍ଞାତ ଭାବରେ କେଡ଼େ ପ୍ରଶଂସା କରି ନ ଯାଇଛି ଏବଂ ସ୍ପେନସ୍ଥ ଖ୍ରୀଷ୍ଟୀୟମାନଙ୍କର ଦୃଷ୍ଟିକୋଣ କିପରି ସ୍ୱତନ୍ତ୍ର ଓ ଅସହିଷ୍ଣୁ, ତାହା ଦେଖାଇ ଦିଆ ନ ଯାଇଛି !

ଲକ୍ଷ ଲକ୍ଷ ସାରାସେନମାନଙ୍କୁ ଜବରଦସ୍ତ ତଡ଼ି ଦିଆଗଲା । ଅଧିକାଂଶ ଆଫ୍ରିକାକୁ ଗଲେ, କେତେକ ଫ୍ରାନ୍‌ସକୁ ଗଲେ; କିନ୍ତୁ ତୁ ଅବଶ୍ୟ ମନେରଖିବୁ ଯେ ଆରବମାନେ ସ୍ପେନରେ ୭୦୦ ବର୍ଷ ପର୍ଯ୍ୟନ୍ତ ରହିଥିଲେ ଏବଂ ଏହି ଦୀର୍ଘକାଳ ଭିତରେ ସ୍ପେନ ଲୋକଙ୍କ ସହ ଅଧିକ ଭାବରେ ମିଶିଯାଇଥିଲେ । ମୂଳତଃ ଆରବରୁ ବଦଳି ସେମାନେ କ୍ରମେ କ୍ରମେ ଅଧିକରୁ ଅଧିକ ସ୍ପେନଜାତୀୟ ହୋଇଗଲେ । ସମ୍ଭବତଃ ପରବର୍ତ୍ତୀ କାଳରେ ବାଗଦାଦର ଆରବମାନଙ୍କଠାରୁ ଏହି ସ୍ପେନର ଆରବମାନେ ସମ୍ପୂର୍ଣ୍ଣ ଭିନ୍ନ ଥିଲେ । ଆଜିସୁଦ୍ଧା ସ୍ପେନ ଜାତିଙ୍କ ଧମନୀରେ ପ୍ରଚୁର ଆରବ-ରକ୍ତ ପ୍ରବାହିତ ହେଉଛି ।

ସାରାସେନମାନେ ଶାସକ ଭାବରେ ନୁହେଁ, ବସତି କରିବା ପାଇଁ ଫ୍ରାନ୍‌ସର ଦକ୍ଷିଣାଂଶ ଓ ଏପରି କି ସୁଇଜରଲଣ୍ଡ ପର୍ଯ୍ୟନ୍ତ ମାଡ଼ି ଯାଇଥିଲେ । ଏବେ ସୁଦ୍ଧା ସମୟ ସମୟରେ ସିଠାରୁ ଆସୁଥିବା ଫରାସୀ ଲୋକଙ୍କ ଚେହେରା ଆରବମାନଙ୍କ ପରି ଦେଖାଯାଏ ।

ଏହିରୂପେ ସ୍ପେନରେ କେବଳ ସାରାସେନ ଶାସନ ନୁହେଁ, ଆରବ ସଭ୍ୟତା ବି ଶେଷ ପାଇଲା । କାରଣ ଆମେ ଏବେ ଦେଖିବା ଯେ ଆହୁରି ଆଗରୁ ଏସିଆରେ ଏହି ସଭ୍ୟତାର ପତନ ହୋଇଯାଇଥିଲା । ଏହା ଅନେକ ଦେଶ ଓ ସଂସ୍କୃତି ଉପରେ ପ୍ରଭାବ ପକାଇଥିଲା ଏବଂ ଅନେକ ଉଜ୍ଜ୍ୱଳ ସ୍ମୃତିଚିହ୍ନ ରଖି ଯାଇଥିଲା । କିନ୍ତୁ ପରବର୍ତ୍ତୀ ଇତିହାସରେ ଏହାର ଆଉ ଉଦୟ ହୋଇ ନାହିଁ ।

ସାରାସେନମାନେ ଆସିଲା ପରେ ଫର୍ଡିନାଣ୍ଡ୍ ଓ ଇସାବେଲା ଅଧୀନରେ ସ୍ପେନର କ୍ଷମତା ବଢ଼ିଲା । ଅଳ୍ପଦିନ ପରେ ଆମେରିକା ଆବିଷ୍କାର ହେତୁ ଏଠାକୁ ବିଶାଳ ସମ୍ପଦ ଆସିଲା ଏବଂ କେତେକ କାଳ ପର୍ଯ୍ୟନ୍ତ ଏହା ଇଉରୋପରେ ସର୍ବାପେକ୍ଷା ପ୍ରଭାବଶାଳୀ ରାଜ୍ୟ ଥିଲା ଓ ଅନ୍ୟମାନଙ୍କ ଉପରେ ପ୍ରାଧାନ୍ୟ କରୁଥିଲା । କିନ୍ତୁ ଏହାର ପତନ ଦ୍ରୁତଗତିରେ ହେଲା ଓ ଏହା ଅତଳ ଗର୍ଭରେ ବୁଡ଼ିଗଲା ଏବଂ ଇଉରୋପର ଅନ୍ୟ ଦେଶଗୁଡ଼ିକ ଉନ୍ନତି କଲାବେଳେ ସ୍ପେନ ସ୍ଥାଣୁ ହୋଇ ରହିଲା; ତଥାପି ସେ ମଧ୍ୟ-ଯୁଗର ସ୍ୱପ୍ନ ଦେଖୁଥାଏ ଏବଂ ଉପଲବ୍ଧି କରୁ ନ ଥାଏ ଯେ ସେହିଦିନଠାରୁ ଦୁନିଆର କେତେ ପରିବର୍ତ୍ତନ ହୋଇଗଲାଣି ।

ଲେନ୍‌ପୁଲ୍ ନାମକ ଜଣେ ଇଂରେଜ ଐତିହାସିକ ସ୍ପେନର ସାରାସେନମାନଙ୍କ ବିଷୟରେ ଲେଖିଛନ୍ତି :—

"ଶତାବ୍ଦୀ ଶତାବ୍ଦୀ ଧରି ସ୍ପେନ ସଭ୍ୟତାର କେନ୍ଦ୍ର, କଳା ଓ ବିଜ୍ଞାନର ମୁଖ୍ୟ ସ୍ଥଳୀ, ଶିକ୍ଷା ଓ ପ୍ରତ୍ୟେକ ପ୍ରକାର ସଂସ୍କୃତ ରୁଚିର କେନ୍ଦ୍ର ହୋଇଥିଲା । ଇଉରୋପର କୌଣସି ରାଜ୍ୟ ଏପର୍ଯ୍ୟନ୍ତ ମୁରମାନଙ୍କ ଶାସିତ ରାଜ୍ୟର ସ୍ତରକୁ ଯାଇ ନ ଥିଲା । ଫର୍ଡିନାଣ୍ଡ, ଇସାବେଲା ଓ ଚାର୍ଲସଙ୍କ ସାମ୍ରାଜ୍ୟର କ୍ଷଣିକ ଦୀପ୍ତି ଏପରି ସ୍ଥାୟୀ ହୋଇ ରହିପାରି ନ ଥିଲା । ମୁରମାନଙ୍କୁ ନିର୍ବାସନ କରାଗଲା । କେତେଦିନ ପର୍ଯ୍ୟନ୍ତ ଖ୍ରୀଷ୍ଟୀୟ ସ୍ପେନ ଚନ୍ଦ୍ର ପରି ଅନ୍ୟଠୁ ଆଲୋକ ଆଣି କିରଣ ଦାନ କଲା । ତାପରେ ଗ୍ରହଣ ଲାଗିଲା ଏବଂ ସେହି ଅନ୍ଧକାର ସେହିଦିନଠାରୁ ସ୍ପେନକୁ ଗ୍ରାସ କରି ରହିଛି । ସ୍ପେନର ଊଷର ଓ ନିର୍ଜନ ଅଞ୍ଚଳମାନଙ୍କରେ ମୁରମାନଙ୍କର ପ୍ରକୃତ ସ୍ମୃତିଚିହ୍ନ ରହିଛି । ସେଠାରେ ମୁରମାନେ ସୁନ୍ଦର ଅଙ୍ଗୁର, ଅଲିଭ ଓ ଶସ୍ୟ ଜାତ କରୁଥିଲେ; ଏକ ନିର୍ବୋଧ ଓ ଅଜ୍ଞ ଅଧିବାସୀଙ୍କ ଭିତରେ ଜ୍ଞାନ ଓ ଶିକ୍ଷା ବୃଦ୍ଧି ପାଇଥିଲା । ଏଠାରେ ଏକ ସାଧାରଣ ନିଶ୍ଚଳ ଭାବ ଓ ଅଧୋଗତି ଲୋକଙ୍କ ଭିତରେ ଦେଖାଦେଇଛି, ଯାହା କି ଅନ୍ୟ ଦେଶ ତୁଳନାରେ ଅତ୍ୟନ୍ତ ପଛରେ ପଡ଼ିଛି ଏବଂ ଏପରି ଅପମାନ ସହ୍ୟ ହେବାର ପାତ୍ର ହୋଇଛି ।"

ଏହା ଏକ କଠୋର ବିଚାର । ବର୍ଷେ ତଳେ ସ୍ପେନରେ ଏକ ବିପ୍ଳବ ହୋଇ ରାଜାଙ୍କୁ ତଡ଼ି ଦିଆଗଲା । ଏବେ ସେଠାରେ ଏକ ପ୍ରଜାତନ୍ତ୍ର ରହିଛି । ବୋଧହୁଏ ଏହି ଶିଶୁ ପ୍ରଜାତନ୍ତ୍ରଟି ଭଲ କାମ କରିବ ଏବଂ ସ୍ପେନକୁ ଅନ୍ୟ ଦେଶରେ ସମକକ୍ଷ କରିଦେବ ।

# ୭୨ । କ୍ରୁସେଡ୍

ଜୁନ୍ ୧୧, ୧୯୩୨

ଅଳ୍ପଦିନ ତଳେ ଲେଖିଥିବା ଏକ ଚିଠିରେ (ନଂ ୬୭) ଜେରୁଜେଲମ ନଗରକୁ ମୁକ୍ତ କରିବାପାଇଁ ମୁସଲମାନମାନଙ୍କ ବିରୁଦ୍ଧରେ ପୋପ ଓ ତାଙ୍କର ଧର୍ମସଂଘ ଧର୍ମଯୁଦ୍ଧ ଘୋଷଣା କରିବା କଥା ମୁଁ କହିଥିଲି । ସେଲ୍‌ଜୁକ୍ ତୁର୍କମାନଙ୍କର ଜାଗ୍ରତ ଶକ୍ତି ଦେଖି ଇଉରୋପ ଭୟଗ୍ରସ୍ତ ହୋଇଗଲା ଏବଂ ବିଶେଷତଃ କନଷ୍ଟାଣ୍ଟିନୋପଲ ସରକାର ଉପରେ ପ୍ରତ୍ୟକ୍ଷ ଚାପ ପଡ଼ିଲା । ଜେରୁଜେଲମ ଓ ପାଲେଷ୍ଟାଇନକୁ ଯାଉଥିବା ଖ୍ରୀଷ୍ଟୀୟ ଯାତ୍ରୀମାନଙ୍କ ପ୍ରତି ତୁର୍କମାନଙ୍କର ଦୁର୍ବ୍ୟବହାରରେ ଇଉରୋପର ଲୋକେ ଉତ୍ତ୍ୟକ୍ତ ଓ କ୍ରୋଧାନ୍ୱିତ ହୋଇଥିଲେ; ତେଣୁ ଏକ "ଧର୍ମଯୁଦ୍ଧ" ଘୋଷଣା ହେଲା ଏବଂ ଏହି "ଧର୍ମନଗରୀ" ରକ୍ଷା କରିବା ନିମନ୍ତେ ସେଠାକୁ ଯିବା ପାଇଁ ଇଉରୋପର ସମସ୍ତ ଖ୍ରୀଷ୍ଟୀୟ ଲୋକଙ୍କୁ ପୋପ ଓ ଧର୍ମମନ୍ଦିର ଆହ୍ୱାନ କଲା ।

ଏହିରୂପେ ୧୦୯୫ ଖ୍ରୀ: ରେ ଧର୍ମଯୁଦ୍ଧ (କ୍ରୁସେଡ୍) ଆରମ୍ଭ ହେଲା ଏବଂ ୧୫୦ ବର୍ଷରୁ ଅଧିକ କାଳ ପର୍ଯ୍ୟନ୍ତ ଖ୍ରୀଷ୍ଟଧର୍ମ ଓ ଇସଲାମ ଭିତରେ, କ୍ରସ ଓ କ୍ରିସେଣ୍ଟ ଭିତରେ ସଂଗ୍ରାମ ଲାଗିଲା । ମଝିରେ ଦୀର୍ଘକାଳ ପର୍ଯ୍ୟନ୍ତ ବିରାମ ଥିଲା । କିନ୍ତୁ ପ୍ରାୟ ଅନବରତ ଯୁଦ୍ଧ ଅବସ୍ଥା ରହିଥିଲା ଏବଂ ଦଳକୁ ଦଳ ଖ୍ରୀଷ୍ଟୀୟ କ୍ରୁସେଡ଼ରମାନେ ଯୁଦ୍ଧ କରିବାକୁ ଆସିଲେ ଏବଂ ଅଧିକାଂଶ "ଧର୍ମକ୍ଷେତ୍ର"ରେ ପ୍ରାଣ ହରାଇଲେ । ଏହି ଦୀର୍ଘକାଳ ସଂଗ୍ରାମରେ କ୍ରୁସେଡ଼ରମାନେ କିଛି ଭଲ ଫଳ ପାଇଲେ ନାହିଁ । କ୍ଷଣକାଳ ନିମନ୍ତେ ଜେରୁଜେଲମ ତାଙ୍କ ହାତରେ ଥିଲା । କିନ୍ତୁ ପରେ ଏହା ପୁଣି ତୁର୍କମାନଙ୍କ ହାତକୁ ଫେରିଗଲା ଏବଂ ତାଙ୍କରି ହାତରେ ରହିଲା । କ୍ରୁସେଡ଼ର ପ୍ରଧାନ ପରିଣାମ ହେଲା ଲକ୍ଷ ଲକ୍ଷ ସଂଖ୍ୟାରେ ଖ୍ରୀଷ୍ଟୀୟ ଓ ମୁସଲମାନମାନଙ୍କ ଦୁର୍ଦ୍ଦଶା ଓ ମୃତ୍ୟୁ ଏବଂ ପୁନର୍ବାର ଏସିଆ ମାଇନର ଓ ପାଲେଷ୍ଟାଇନ ମନିଷ୍ୟରକ୍ତରେ ରଞ୍ଜିତ ହେଲା ।

ଏତେବେଳେ ବାଗଦାଦ ସାମ୍ରାଜ୍ୟର ଅବସ୍ଥା କିପରି ଥିଲା ? ଏତେବେଳେ ଆବ୍‌ବାସୀମାନେ ରାଜତ୍ୱ କରୁଥିଲେ । ସେମାନେ ଏବେ ସୁଦ୍ଧା ଖଲିଫା ଥିଲେ, ଧର୍ମାବଲମ୍ବୀଙ୍କର ସେନାପତି ଥିଲେ । କିନ୍ତୁ ସେମାନେ ନାମକୁ ମାତ୍ର ମୁଖିଆ ହୋଇ ରହିଥିଲେ । ବିଶେଷ କିଛି କ୍ଷମତା ନ ଥିଲା । ଆମେ ଦେଖିବେ ତାଙ୍କ ସାମ୍ରାଜ୍ୟ କିପରି ବିଭକ୍ତ ହୋଇ ଯାଇଥିଲା ଏବଂ ପ୍ରାଦେଶିକ ଶାସକମାନେ କିପରି ସ୍ୱାଧୀନ ହୋଇଯାଇଥିଲେ । ଅନେକଥର ଭାରତ ଆକ୍ରମଣ କରିଥିବା ଗଜନୀର ମାମୁଦ ଜଣେ ଶକ୍ତିଶାଳୀ ଶାସ ଥିଲେ । ଖଲିଫା ତାଙ୍କ ଇଚ୍ଛା ଅନୁସାରେ ଆଚରଣ ନ କଲେ ତାଙ୍କୁ ତଡ଼ିଦେବାର

ଧମକ ଦେ ଦେଉଥିଲେ । ବାଗଦାଦରେ ମଧ୍ୟ ତୁର୍କମାନେ ହିଁ ପ୍ରକୃତ ପ୍ରଭୁ ଥିଲେ । ତାପରେ ତୁର୍କମାନଙ୍କର ଆଉ ଗୋଟିଏ ଶାଖା ସେଲଜୁକ୍‌ମାନେ ଆସିଲେ ଏବଂ ସେମାନେ ଶୀଘ୍ର ସେମାନଙ୍କର କ୍ଷମତା ସ୍ଥାପନ କଲେ ଓ ଜୟଯୁକ୍ତ ହୋଇ କନ୍‌ଷ୍ଟାଣ୍ଟି-ନୋପଲ ଦ୍ୱାରପର୍ଯ୍ୟନ୍ତ ବିସ୍ତାର ଲାଭ କରିଥିଲେ । କିନ୍ତୁ ଖଲିଫାଙ୍କ ହାତରେ କୌଣସି ରାଜନୈତିକ କ୍ଷମତା ନ ଥିଲେ ସୁଦ୍ଧା ସେ ସେହିପରି ଖଲିଫା ହୋଇଥିଲେ । ସେ ସେଲଜୁକ୍ ସାମନ୍ତମାନଙ୍କୁ ସୁଲତାନ ଉପାଧି ଦେଲେ ଏବଂ ସୁଲତାନ ହିଁ ଶାସନ କଲେ । ଏହିରୂପେ ଏହି ସେଲଜୁକ୍ ସୁଲତାନ ଓ ତାଙ୍କ ଅନୁଚରଙ୍କ ବିରୁଦ୍ଧରେ କ୍ରୁସେଡ଼ର-ମାନଙ୍କୁ ଯୁଦ୍ଧ କରିବାକୁ ପଡ଼ିଥିଲା ।

କ୍ରୁସେଡ୍ ହିଁ ଇଉରୋପରେ ସମସ୍ତ ଅଖ୍ରୀଷ୍ଟୀୟଙ୍କ ବିରୁଦ୍ଧରେ "ଖ୍ରୀଷ୍ଟରାଜ୍ୟ" ଅର୍ଥାତ୍ ଖ୍ରୀଷ୍ଟଜଗତ ଧାରଣା ବୃଦ୍ଧି କଲା । ଇଉରୋପର ଏକ ଧାରଣା ଓ ଏକ ଉଦ୍ଦେଶ୍ୟ ହେଲା—ତାହା ହେଉଛି ତଥାକଥିତ ବିଧର୍ମୀଙ୍କ ହାତରୁ 'ଧର୍ମଭୂମି"କୁ ମୁକ୍ତ କରିବା । ଏହି ସାଧାରଣ ଉଦ୍ଦେଶ୍ୟ ଲୋକଙ୍କ ଭିତରେ ଉତ୍ସାହ ଭରିଦେଲା ଏବଂ ଅନେକ ଲୋକ ଏହି ମହତ୍ ଉଦ୍ଦେଶ୍ୟ ଲାଗି ସମ୍ପତ୍ତି ଛାଡ଼ି ବାହାରିପଡ଼ିଲେ । ଅନେକେ ଉଦାର ଭାବ ନେଇ ଯାଇଥିଲେ । ଯେଉଁମାନେ ଯିବେ ତାଙ୍କର ପାପ ଦୂର ହୋଇଯିବ ବୋଲି ପୋପଙ୍କର ପ୍ରତିଶ୍ରୁତିଦ୍ୱାରା ଅନେକ ଲୋକ ଆକୃଷ୍ଟ ହୋଇଗଲେ । କ୍ରୁସେଡ୍‌ର ଅନ୍ୟ କାରଣ ବି ଥିଲା । ରୋମ ଚର୍ଚ୍ଚ ପାଇଁ କନଷ୍ଟାଣ୍ଟିନୋପଲର ପ୍ରଭୁ ହେବାକୁ ଇଚ୍ଛା କରୁଥିଲା । ତୋର ମନେଥିବ, କନଷ୍ଟାଣ୍ଟିନୋପଲର ଧର୍ମସଂପ୍ରଦାୟ ରୋମଠାରୁ ପୃଥକ୍ ଥିଲା; ଏହା ଆପଣାକୁ ରକ୍ଷଣଶୀଳ ବୋଲି କହୁଥିଲା ଏବଂ ରୋମ ଗିର୍ଜାକୁ ଅତ୍ୟନ୍ତ ଘୃଣା କରୁଥିଲା; ପୋପ ହଠାତ୍ ବଡ଼ ହୋଇଛନ୍ତି ବୋଲି ବିଚାର କରୁଥିଲା । କନଷ୍ଟାଣ୍ଟିନୋପଲର ଏହି ଗର୍ବ ଭାଙ୍ଗିଦେବା ପାଇଁ ଏବଂ ତାକୁ ନିଜ ଅଧିକାର ଭିତରକୁ ଆଣିବା ଲାଗି ପୋପ ଚାହୁଁଥିଲେ । ବିଧର୍ମୀ ତୁର୍କମାନଙ୍କ ବିରୁଦ୍ଧରେ ଧର୍ମଯୁଦ୍ଧର ଆବରଣରେ ଦୀର୍ଘକାଳ ବାଞ୍ଛିତ ଜିନିଷ ପାଇବାର ଚେଷ୍ଟା କରୁଥିଲେ । ରାଜନୀତିଜ୍ଞ ଓ ଯେଉଁମାନେ ନିଜକୁ ରାଜନୀତିଜ୍ଞ ବୋଲି ବିଚାରନ୍ତି, ସେମାନଙ୍କର ପନ୍ଥା ହେଉଛି ଏହିପରି । ରୋମ ଓ କନ୍‌ଷ୍ଟାଣ୍ଟିନୋପଲ ଭିତରେ ଏହି ବିବାଦକୁ ସ୍ମରଣ ରଖିବା ଭଲ, କାରଣ କ୍ରୁସେଡ୍ ବେଳେ ଏହା ବାରମ୍ବାର ଦେଖା ଦେଇଥିଲା ।

କ୍ରୁସେଡ୍ ହେବାର ଆଉ ଏକ ବ୍ୟବସାୟ ସମ୍ବନ୍ଧୀୟ କାରଣ ରହିଛି । ବ୍ୟବସାୟୀ ଲୋକେ ବିଶେଷତଃ ଭେନିସ୍ ଓ ଜେନୋଆ ବନ୍ଦରମାନଙ୍କର ଲୋକେ ନିଜର ବେପାର କ୍ଷତିଗ୍ରସ୍ତ ହୋଇଥିବାରୁ ଏଗୁଡ଼ିକ ଚାହୁଁଥିଲେ । ସେଲଜୁକ୍ ତୁର୍କମାନେ ପୂର୍ବରେ ଅନେକ ବାଣିଜ୍ୟପଥ ବନ୍ଦ କରି ଦେଇଥିଲେ ।

ଅବଶ୍ୟ ସାଧାରଣ ଲୋକେ ଏହିସବୁ କାରଣ କିଛି ଜାଣି ନ ଥିଲେ । ସେମାନଙ୍କୁ କେହି ଏହା କହି ନ ଥିଲେ । ରାଜନୀତିଜ୍ଞମାନେ ସାଧାରଣତଃ ପ୍ରକୃତ କାରଣ ଲୁଚାଇ ରଖନ୍ତି ଏବଂ ଖୁବ୍ ଜାକ୍‌ଜମକ ଭାବରେ ଧର୍ମ, ନ୍ୟାୟ ଓ ସତ୍ୟ ଆଦି କଥା କହନ୍ତି । କ୍ରୁଜେଡ୍ ବେଳେ ବି ଏହିପରି ଥିଲା । ଏବେ ମଧ୍ୟ ସେଇଆ ରହିଛି । ଲୋକେ ସେତେବେଳେ ପ୍ରତାରିତ ହୋଇଥିଲେ; ଏବେ ବି ଅଧିକ ସଂଖ୍ୟକ ଲୋକ ରାଜନୀତିଜ୍ଞମାନଙ୍କର କୋମଳ କଥାରେ ଭୁଲିଯାଆନ୍ତି ।

ତେଣୁ କ୍ରୁଜେଡ୍ ନାମରେ ବହୁସଂଖ୍ୟକ ଲୋକ ଏକଜୁଟ ହେଲେ । ତାଙ୍କ ଭିତରେ ଭଲ ଓ ନିଷ୍ଠାବାନ ଲୋକ ଥିଲେ; କିନ୍ତୁ ଅନେକ ଲୋକ ଏପରି ଥିଲେ କି ଯେଉଁମାନେ ଆଦୌ ସାଧୁ ନୁହନ୍ତି—ଲୁଣ୍ଠନର ଆକାଂକ୍ଷାରେ ଆକୃଷ୍ଟ ହୋଇ ଯାଇଥିଲେ । ଏହା ସାଧୁ, ଧାର୍ମିକ ଓ ବଦମାସ୍ ଲୋକଙ୍କର ଅଦ୍ଭୁତ ସମ୍ମିଶ୍ରଣ ଥିଲା । ସେମାନେ ପ୍ରତ୍ୟେକ ପ୍ରକାର ଅପରାଧ କରିପାରୁଥିଲେ । ବାସ୍ତବିକ୍ ଏହି କ୍ରୁଜେଡ୍‌ର ବା ତାଙ୍କ ଭିତରୁ ଅନେକେ ଏକ ମହତ୍ତର ଉଦ୍ଦେଶ୍ୟରେ କାର୍ଯ୍ୟ କରିବାକୁ ଯାଉଛନ୍ତି ବୋଲି କୁହାହେଉଥିଲା; ମାତ୍ର ସେମାନେ ଅତି ନିଷ୍ଠୁର ଓ ଉତ୍ତେଜନାକାରୀ ଅପରାଧ କରୁଥିଲେ । ଅନେକେ ପଥରେ ଲୁଣ୍ଠନ ଓ ଅସଦାଚରଣ କରିବାରେ ଏତେ ବ୍ୟସ୍ତ ରହିଥିଲେ ଯେ ପାଲେଷ୍ଟାଇନ ନିକଟରେ ଆଦୌ ପହଞ୍ଚିପାରି ନ ଥିଲେ । କେତେକ ବାଟରେ ଇହୁଦୀମାନଙ୍କୁ ହତ୍ୟା କରିବାରେ ଲାଗିଲେ, କେତେକ ତାଙ୍କର ଭାଇ ଖ୍ରୀଷ୍ଟୀୟାନମାନଙ୍କୁ ବି ହତ୍ୟା କରିଥିଲେ । ଅସଦାଚରଣରେ ବ୍ୟସ୍ତ ହୋଇ ବେଳେ ବେଳେ ସେମାନେ ଯେଉଁ ଦେଶ ଦେଇ ଯାଉଥିଲେ, ସେସବୁ ଖ୍ରୀଷ୍ଟୀୟ ଦେଶର କୃଷକମାନେ ଉତ୍ତ୍ୟକ୍ତ ହୋଇ ସେମାନଙ୍କୁ ଆକ୍ରମଣ କରୁଥିଲେ । ଅନେକଙ୍କୁ ହତ୍ୟା କରୁଥିଲେ ଓ ଅନ୍ୟମାନଙ୍କୁ ତଡ଼ି ଦେଉଥିଲେ ।

ଶେଷରେ ବୁଇଲେଁର ଗଡ଼ଫ୍ରେ ନାମକ ଜଣେ ନର୍ମାନ୍‌ଙ୍କ ଅଧୀନରେ କ୍ରୁଜେଡ଼ରମାନେ ପାଲେଷ୍ଟାଇନରେ ପହଞ୍ଚିଲେ । ଜେରୁଜେଲମ ତାଙ୍କ ହାତରେ ପଡ଼ିଲା । ତାପରେ ବି "ଧ୍ୱଂସଲୀଳା ଏକସପ୍ତାହ ପର୍ଯ୍ୟନ୍ତ ଚାଲିଲା ।" ପ୍ରଚଣ୍ଡ ହତ୍ୟାକାଣ୍ଡ ଲାଗିଲା । ଏହି ସମ୍ବନ୍ଧରେ ଜଣେ ଫରାସୀ ଦର୍ଶକ କହିଛନ୍ତି, "ମସ୍‌ଜିଦ୍ ତଳେ ଆଣ୍ଠୁଏ ବହଳ ରକ୍ତ ଜମା ହୋଇ ଯାଇଥିଲା ଏବଂ ଘୋଡ଼ାମାନଙ୍କର ଜିନ୍ ପର୍ଯ୍ୟନ୍ତ ହୋଇ ଯାଇଥିଲା ।" ଗଡ଼୍‌ଫ୍ରେ ଜେରୁଜେଲମର ରାଜା ହୋଇଥିଲେ ।

୭୦ ବର୍ଷ ପରେ ଇଜିପ୍ଟର ସୁଲତାନ ସାଲାଦିନ ଖ୍ରୀଷ୍ଟୀୟମାନଙ୍କ ହାତରୁ ଜେରୁଜେଲମ ପୁଣି ନେଇଗଲେ । ଏଥିରେ ଇଉରୋପର ଲୋକେ ପୁନର୍ବାର ଉତ୍ତେଜିତ ହେଲେ ଏବଂ ପୁଣି କେତେ ଧର୍ମଯୁଦ୍ଧ ହେଲା । ଏଥରକ ଇଉରୋପର ରାଜା ଓ ସମ୍ରାଟମାନେ ନିଜେ ଆସିଲେ; କିନ୍ତୁ ସେମାନେ ବିଶେଷ ସଫଳ ହୋଇପାରି ନ ଥିଲେ ।

ସେମାନେ ଆଗ ସ୍ଥାନ ପାଇଁ ନିଜ ଭିତରେ କଳହ କରୁଥିଲେ ଓ ପରସ୍ପରକୁ ଈର୍ଷା କରୁଥିଲେ । ଏହା ଏକ ପ୍ରଚଣ୍ଡ ଓ କ୍ରୂର ଯୁଦ୍ଧର ଭୟାନକ କାହାଣୀ ଏବଂ ଶ୍ରେଷ୍ଠ ଶ୍ରେଷ୍ଠ ନିନ୍ଦାର୍ଜନ ଓ ଅକ୍ଷମଣୀୟ ଅପରାଧର କାହାଣୀ; କିନ୍ତୁ ବେଳେ ବେଳେ ଏହି ଆତଙ୍କ ଭିତରେ ମନୁଷ୍ୟ ପ୍ରକୃତିର ସଦ୍‌ଭାବ ବି କାର୍ଯ୍ୟ କରୁଥିଲା ଏବଂ ଏପରି କେତେ ଘଟଣା ଘଟିଥିଲା, ଯେତେବେଳେ କି ଶତ୍ରୁମାନେ ପରସ୍ପର ପ୍ରତି ଭଦ୍ରତା ଦେଖାଉଥିଲେ । ପାଲେଷ୍ଟାଇନରେ ବିଦେଶୀ ରାଜାମାନଙ୍କ ଭିତରେ ଇଂଲଣ୍ଡର ରିଚାର୍ଡ୍ କୋର୍-ଡି-ଲାୟନ ଅର୍ଥାତ୍ ସିଂହ-ହୃଦୟ ନିଜର ଶାରୀରିକ ଶକ୍ତି ଓ ସାହସ ସକାଶେ ପ୍ରସିଦ୍ଧ ଥିଲେ । ସାଲାଦିନ ମଧ୍ୟ ଜଣେ ବଡ଼ ଯୋଦ୍ଧା ଥିଲେ ଓ ନିଜର ବୀରତ୍ୱ ଲାଗି ବିଖ୍ୟାତ ଥିଲେ । ଏପରିକି ଯେଉଁ କ୍ରୁଜେଡ଼ରମାନେ ସାଲାଦିନଙ୍କ ସହ ଯୁଦ୍ଧ କରିଥିଲେ, ସେମାନେ ବି ତାଙ୍କ ବୀରତ୍ୱର ପ୍ରଶଂସା କରିଥିଲେ । ଏକ କାହାଣୀ ଅଛି ଯେ ଥରେ ରିଚାର୍ଡ୍ ଖୁବ ପୀଡ଼ିତ ଥିଲେ ଏବଂ ଜ୍ୱର ହେତୁ କଷ୍ଟ ପାଉଥିଲେ । ସାଲାଦିନ୍ ଏ ଖବର ପାଇ ତାଙ୍କ ପାଖକୁ ପର୍ବତରେ ତଟକା ବରଫ ପଠାଇବାର ବ୍ୟବସ୍ଥା କରିଦେଲେ । ଆଜିକାଲି ଆମେ ଯେପରି ପାଣିକୁ ଜମାଇ ବରଫ କରୁଛୁ, ସେତେବେଳେ ସେପରି ବରଫ ହୋଇପାରୁ ନ ଥିଲା । ତେଣୁ ପର୍ବତରୁ ବରଫ ଦ୍ରୁତଗାମୀ ଦୂତଙ୍କଦ୍ୱାରା ଅଣା ଯାଉଥିଲା ।

କ୍ରୁଜେଡ଼୍ ବେଳର ଅନେକ ଗପ ଅଛି । ବୋଧହୁଏ ତୁ ଓ୍ୱାଲଟର ସ୍କଟ୍‌ଙ୍କ "ଟାଲିସ୍‌ମାନ" ପଢ଼ିଛୁ ।

ଚତୁର୍ଥ କ୍ରୁଜେଡ଼ର କନଷ୍ଟାଣ୍ଟିନୋପଲ ଗଲେ ଓ ତାହା ଦଖଲ କଲେ । ସେମାନେ ପୂର୍ବ ସାମ୍ରାଜ୍ୟର ଗ୍ରୀକ୍ ସମ୍ରାଟଙ୍କୁ ତଡ଼ିଦେଲେ ଓ ଏକ ଲାଟିନ ରାଜ୍ୟ ଏବଂ ରୋମାନ ଧର୍ମସମ୍ପ୍ରଦାୟ ସ୍ଥାପନ କଲେ । କନଷ୍ଟାଣ୍ଟିନୋପଲରେ ଭୀଷଣ ହତ୍ୟାକାଣ୍ଡ ଘଟିଲା ଏବଂ ନଗରଟି ମଧ୍ୟ କ୍ରୁଜେଡ଼ରମାନଙ୍କ ଦ୍ୱାରା ଆଂଶିକ ଭାବରେ ପୋଡ଼ି ଦିଆଗଲା । କିନ୍ତୁ ଏହି ଲାଟିନ୍ ରାଜତ୍ୱ ବେଶିଦିନ ରହିଲା ନାହିଁ । ପୂର୍ବ ସାମ୍ରାଜ୍ୟର ଗ୍ରୀକ୍‌ମାନେ ପୁଷ୍ଟ ହୋଇ ଫେରି ଆସିଲେ ଏବଂ ୫୦ ବର୍ଷ ପରେ ଲାଟିନ୍‌ମାନଙ୍କୁ ତଡ଼ିଦେଲେ । ୧୪୫୩ରେ ତୁର୍କମାନେ ଆସି କନଷ୍ଟାଣ୍ଟିନୋପଲର ପୂର୍ବ ସାମ୍ରାଜ୍ୟକୁ ଚିରଦିନ ପାଇଁ ଲୋପ କରିଦେଲେ । ଏଥି ଭିତରେ ଏହା ୨୦୦ ବର୍ଷକାଳ ତିଷ୍ଠି ରହିଥିଲା ।

କ୍ରୁଜେଡ଼ରମାନଙ୍କ ଦ୍ୱାରା କନଷ୍ଟାଣ୍ଟିନୋପଲ ଦଖଲ ହେବାରେ ରୋମାନ ଗୀର୍ଜା ଓ ପୋପଙ୍କ ନିଜ ପ୍ରଭାବ ବିସ୍ତାର କରିବାର ଅଭିଳାଷ ପୂର୍ଣ୍ଣ ହେଲା । ଯଦିଓ ଗ୍ରୀକ୍‌ମାନେ ଆତଙ୍କିତ ହୋଇ ତୁର୍କଙ୍କ ବିରୁଦ୍ଧରେ ନଗର ରକ୍ଷାଲାଗି ରୋମକୁ ନିବେଦନ କରିଥିଲେ, ସେମାନେ କ୍ରୁଜେଡ଼ରଙ୍କୁ ବିଶେଷ ସାହାଯ୍ୟ କରି ନ ଥିଲେ ଏବଂ ସେମାନଙ୍କୁ ଅତ୍ୟନ୍ତ ଘୃଣା କରୁଥିଲେ ।

କିନ୍ତୁ ଏହିସବୁ କ୍ରୁଜେଡ଼ ଭିତରେ ଯାହାକୁ କହନ୍ତି ପିଲାଙ୍କ କ୍ରୁଜେଡ଼, ତାହାହିଁ ଅତି ପ୍ରଚଣ୍ଡ ଥିଲା । ଉତ୍ସାହରେ ବହୁସଂଖ୍ୟକ ଶ୍ରେଷ୍ଠ ବାଳକ ବିଶେଷତଃ ଫରାସୀ ଓ ଜର୍ମାନୀରୁ କେତେକ ନିଜ ଘର ଛାଡ଼ି ଆସିଲେ ଏବଂ ପାଲେଷ୍ଟାଇନକୁ ଯିବାକୁ ସ୍ଥିର କଲେ । ଅନେକ ରାସ୍ତାରେ ମରଗଲେ ଓ ଅନେକ ହଜିଗଲେ । ସେମାନଙ୍କ ଭିତରୁ ଅଧିକାଂଶ ମାର୍ଶେଲ୍‌ରେ ପହଞ୍ଚିଲେ । ଏହିଠାରେ ଏହି ଦରିଦ୍ର ଶିଶୁମାନଙ୍କ ପ୍ରତି ପ୍ରତାରଣା କରାଯାଇଥିଲା ଏବଂ ବଦମାସ ଲୋକେ ତାଙ୍କ ଉତ୍ସାହର ସୁବିଧା ଉଠାଇଥିଲେ । ସେମାନଙ୍କୁ "ଧର୍ମଭୂମି"କୁ ନେବାର ଛଳନା ଦେଖାଇ ଦାସ ବେପାରୀମାନେ ସେମାନଙ୍କୁ ଜାହାଜରେ ଇଜିପ୍ଟକୁ ନେଇଗଲେ ଓ ସେଠାରେ ଦାସତ୍ୱ କରିବା ନିମନ୍ତେ ବିକ୍ରୀ କରିଦେଲେ ।

ଇଂଲଣ୍ଡର ରିଚାର୍ଡ଼ ପାଲେଷ୍ଟାଇନରୁ ଫେରିଲାବେଳେ ପୂର୍ବ ଇଉରୋପର ତାଙ୍କ ଶତ୍ରୁମାନେ ତାଙ୍କୁ ଗିରଫ କଲେ ଏବଂ ତାଙ୍କର ଖଲାସ ନିମନ୍ତେ ଅତ୍ୟଧିକ କ୍ଷତିପୂରଣ ଦେବାକୁ ପଡ଼ିଲା । ପାଲେଷ୍ଟାଇନରେ ବି ଫ୍ରାନ୍ସର ଜଣେ ରାଜାଙ୍କୁ ଗିରଫ କରାଯାଇଥିଲା ଏବଂ ସେଥିପାଇଁ କ୍ଷତିପୂରଣ ଦେବାକୁ ପଡ଼ିଲା । ପବିତ୍ର ରୋମାନ ସାମ୍ରାଜ୍ୟର ଜଣେ ସମ୍ରାଟ ଫେଡ଼ରିକ ବାର୍ବାରୋସା ପାଲେଷ୍ଟାଇନର ଏକ ନଦୀରେ ବୁଡ଼ି ଯାଇଥିଲେ । ଇତ୍ୟବସରରେ କାଳକ୍ରମେ କ୍ରୁଜେଡ଼ର ମୋହ ଭାଙ୍ଗି ଯାଇଥିଲା । ଲୋକେ ଏଥିରେ ବିରକ୍ତ ହୋଇଗଲେ । ଜେରୁଜେଲମ ମୁସଲମାନମାନଙ୍କ ହାତରେ ରହିଲା, କିନ୍ତୁ ଏହାର ମୁକ୍ତି ନିମନ୍ତେ ଆଉ ଅଧିକ ଜୀବନ ଓ ଧନ ବ୍ୟୟ କରିବା ପାଇଁ ଇଉରୋପର ରାଜା ଓ ଲୋକେ ଆଗ୍ରହ ଦେଖାଇଲେ ନାହିଁ । ସେହିଦିନଠାରୁ ପ୍ରାୟ ୭୦୦ ବର୍ଷ ପର୍ଯ୍ୟନ୍ତ ଜେରୁଜେଲମ ମୁସଲମାନମାନଙ୍କ ହାତରେ ରହିଲା । ଖୁବ୍ ନିକଟରେ ମହାସମର ବେଳେ ୧୯୧୮ ଖ୍ରୀ:ରେ ଏହି ତୁର୍କମାନଙ୍କ ହାତରୁ ଜଣେ ଇଂରେଜ ସେନାପତି ନେଇଥିଲେ ।

ପରବର୍ତ୍ତୀ ଏକ କ୍ରୁଜେଡ଼୍ ଆଗ୍ରହଦାୟକ ଓ ଅସାଧାରଣ ଥିଲା । ବାସ୍ତବିକ କ୍ରୁଜେଡ଼୍ ଶବ୍ଦର ପୁରୁଣା ଅର୍ଥ ଯାହା ଥିଲା, ଏହା ସେପରି ନୁହେଁ । ପବିତ୍ର ରୋମାନ ସାମ୍ରାଜ୍ୟର ସମ୍ରାଟ ୨ୟ ଫ୍ରେଡ଼ରିକ ଆସିଲେ ଏବଂ ଯୁଦ୍ଧକରିବା ପରିବର୍ତ୍ତେ ସେ ସେତେ-ବେଳର ଇଜିପ୍ଟ ସୁଲତାନଙ୍କ ସହିତ ସାକ୍ଷାତ କଲେ ଓ ଦୁହିଁଙ୍କ ଭିତରେ ବନ୍ଧୁଭାବରେ ରାଜିନାମା ହେଲା । ଫ୍ରେଡ଼ରିକ ଜଣେ ଅସାଧାରଣ ଲୋକ ଥିଲେ । ଯେତେବେଳେ ଅଧିକାଂଶ ରାଜା ପ୍ରାୟ ସାକ୍ଷର ନ ଥିଲେ, ସେତେବେଳେ ସେ ଆରବୀ ଭାଷା ସମେତ ଅନେକ ଭାଷା ଜାଣିଥିଲେ । ସେ "ପୃଥିବୀର ଆଶ୍ଚର୍ଯ୍ୟ" ରୂପେ ପରିଚିତ । ସେ ପୋପଙ୍କୁ ଆଦୌ ଖାତିର କଲେ ନାହିଁ । ତେଣୁ ପୋପ ତାଙ୍କୁ ଜାତି-ବାହାର କଲେ; କିନ୍ତୁ ଏହା ତାଙ୍କ ଉପରେ କୌଣସି ପ୍ରଭାବ ପକାଇଲା ନାହିଁ ।

ଏହିରୂପେ କ୍ରୁସେଡ଼୍‌ଦ୍ୱାରା କିଛି ଫଳ ହେଲା ନାହିଁ; କିନ୍ତୁ ବାରମ୍ବାର ଯୁଦ୍ଧ ଫଳରେ ସେଲଜୁକ୍ ତୁର୍କମାନେ ଦୁର୍ବଳ ହୋଇପଡ଼ିଲେ । ଯାହାହେଉ, ଏଥିରୁ ଅଧିକ ଅଧିକ କଥା ହେଉଛି ଯେ ସାମନ୍ତବାଦ ହିଁ ସେଲଜୁକ୍ ସାମ୍ରାଜ୍ୟର ମୂଳକୁ ଖାଇ ଯାଇଥିଲା । ବଡ଼ ବଡ଼ ସାମନ୍ତମାନେ ନିଜକୁ ପ୍ରାୟ ସ୍ୱାଧୀନ ବୋଲି ଭାବୁଥିଲେ । ନିଜ ନିଜ ଭିତରେ ଯୁଦ୍ଧ କଲେ । ବେଳେ ବେଳେ ସେମାନେ ଏତେ ଦୂର ଗଲେ ଯେ ପରସ୍ପର ବିରୁଦ୍ଧରେ ଖ୍ରୀଷ୍ଟୀୟାନମାନଙ୍କର ସାହାଯ୍ୟ ଭିକ୍ଷା କଲେ । ତୁର୍କମାନଙ୍କର ଏହି ଆଭ୍ୟନ୍ତରୀଣ ଦୁର୍ବଳତା ହିଁ ବେଳେ ବେଳେ କ୍ରୁସେଡ଼ର୍‌ମାନଙ୍କ ହାତରେ ଏକ ଖେଳ ହେଲା । ଯାହାହେଉ, ଯେତେବେଳେ ସାଲାଦିନଙ୍କ ପରି ଜଣେ ବଳିଷ୍ଠ ଶାସକ ବାହାରିଲେ, ସେତେବେଳେ ସେମାନେ କିଛିଟା ଉନ୍ନତି କଲେ ।

କ୍ରୁସେଡ଼୍ ସମ୍ବନ୍ଧରେ ଆଉ ଏକ ମତ ରହିଛି । ଇଂରେଜ ଐତିହାସିକ ଜି ଏମ୍. ଟ୍ରେଭେଲିଆନ୍ ( ଜୁ ଜାଣ୍ଡ, ଯେ ଗାରିବାଲ୍ଡି ପୁସ୍ତକାବଳୀର ଲେଖକ ) ଏକ ଆଧୁନିକ ମତ ଦେଇଛନ୍ତି । ଏହା ଆଗ୍ରହପ୍ରଦ । ଟ୍ରେଭେଲିଆନ କହନ୍ତି, "କ୍ରୁସେଡ଼୍ ହିଁ ଇଉରୋପର ପୁନର୍ଜାଗ୍ରତ ଶକ୍ତିର ପୂର୍ବଦିଗକୁ ଯାତ୍ରା କରିବାର ସାମରିକ ଓ ଧାର୍ମିକ ପ୍ରେରଣାର ଚିହ୍ନ ସ୍ୱରୂପ ହୋଇଥିଲା । କ୍ରୁସେଡ଼ରୁ ଇଉରୋପ ଯାହା ପୁରସ୍କାର ଲାଭକଲା, ସେଥିରେ ପବିତ୍ର ଧର୍ମଭୂମିର ସ୍ଥାୟୀ ମୁକ୍ତି ହୋଇ ନ ଥିଲା କିମ୍ବା ଖ୍ରୀଷ୍ଟରାଜ୍ୟର ଏକତା ହୋଇ ନ ଥିଲା । କ୍ରୁସେଡ଼୍‌ମାନଙ୍କ କାହାଣୀ ଏକ ଦୀର୍ଘ ନାସ୍ତି ସୂଚକ କାହାଣୀ । ଏହା ପରିବର୍ତ୍ତେ ସେ ସୁନ୍ଦର କଳା, ହସ୍ତଶିଳ୍ପ, ବିଳାସ, ବିଜ୍ଞାନ ଓ ବୁଦ୍ଧିଗତ କୌତୂହଳ ଫେରାଇ ଆଣିଲା—'ପିଟର ଦ ହର୍ମିଟ' ଏ ପ୍ରତ୍ୟେକଟିକୁ ଅତ୍ୟନ୍ତ ଘୃଣା କରୁଥିଲେ ।"

୧୧୯୩ରେ ସାଲାଦିନ ମଲେ ଏବଂ ପୁଣିଥରେ ଆରବ ସାମ୍ରାଜ୍ୟ ଯାହା ବା ଥିଲା, ତାହା ଗଲା । ପଶ୍ଚିମ-ଏସିଆର ଅନେକ ଅଂଶରେ ଛୋଟ ଛୋଟ ସାମନ୍ତ ପ୍ରଭୁଙ୍କ ଅଧୀନରେ ବିଶୃଙ୍ଖଳା ଦେଖାଦେଲା । ଶେଷ କ୍ରୁସେଡ଼୍ ୧୨୪୯ରେ ହୋଇଥିଲା । ଏହାର ନେତୃତ୍ୱ ଫ୍ରାନ୍‌ସର ରାଜା ନବମ ଲୁଇ ନେଇଥିଲେ । ସେ ପରାସ୍ତ ଓ ବନ୍ଦୀ ହୋଇଥିଲେ ।

ଇତ୍ୟବସରରେ ପୂର୍ବ ଓ ମଧ୍ୟ-ଏସିଆର ଗୁରୁତ୍ୱ ଘଟଣାମାନ ଘଟିଥିଲା । ଜଣେ ପ୍ରବଳପରାକ୍ରାନ୍ତ ସେନାପତି ଚେଙ୍ଗିଜ୍ ବା ଜେଙ୍ଗିଜ ଖାଁଙ୍କ ଅଧୀନରେ ମଙ୍ଗୋଲ୍‌ମାନେ ଅଗ୍ରସର ହେଉଥିଲେ ଏବଂ ଏକ ପ୍ରକାଣ୍ଡ କୃଷ୍ଣମେଘ ପରି ପୂର୍ବ ଆକାଶକୁ ଆଚ୍ଛାଦନ କଲେ । କ୍ରୁସେଡ଼ର ଓ ତାର ପ୍ରତିରୋଧଶକ୍ତି—ଖ୍ରୀଷ୍ଟୀୟ ଓ ମୁସଲମାନ ଉଭୟେ ଏହି ଆସନ୍ନ ଅଭିଯାନ ଦେଖି ଭୟ କଲେ । ଚେଙ୍ଗିଜ୍‌ଖାଁ ଓ ମଙ୍ଗୋଲଙ୍କ ସମ୍ବନ୍ଧରେ ଆମେ ଏକ ଚିଠିରେ ଆଲୋଚନା କରିବା ।

ଏହି ଚିଠି ଶେଷ କରିବା ପୂର୍ବରୁ ମୁଁ ଆଉ ଏକ କଥା ଉଲ୍ଲେଖ କରିବାକୁ ଚାହେଁ । ମଧ୍ୟ-ଏସିଆର ବୋଖାରାରେ ଜଣେ ଅତି ମହାନ୍ ଆରବ ଚିକିତ୍ସକ ବାସ କରୁଥିଲେ । ସେ ଏସିଆ ତଥା ଇଉରୋପରେ ସେ ପ୍ରସିଦ୍ଧ ଥିଲେ । ତାଙ୍କ ନାମ ହେଉଛି ଇବନ୍‌ସିନ୍; କିନ୍ତୁ ଇଉରୋପରେ ଆଭିସେନା ନାମରେ ଭଲରୂପେ ପରିଚିତ । ଚିକିତ୍ସକରାଜ ବୋଲି ତାଙ୍କୁ କୁହାଯାଉଥିଲା । କ୍ରୁଜେଡ୍ ଆରମ୍ଭ ହେବା ପୂର୍ବରୁ ୧୦୩୭ ଖ୍ରୀ ରେ ସେ ମଲେ ।

ଇବନ୍‌ସିନଙ୍କ ଖ୍ୟାତି ନିମନ୍ତେ ମୁଁ ତାଙ୍କ ନାମ ଉଲ୍ଲେଖ କଲି । କିନ୍ତୁ ମନେରଖ ଯେ ଏହି କାଳରେ ଆରବ ସାମ୍ରାଜ୍ୟ ପତନ ଅବସ୍ଥାରେ ଥିଲା । ପଶ୍ଚିମ ଓ ମଧ୍ୟ-ଏସିଆର କେତେକ ଅଞ୍ଚଳରେ ଆରବ ସଭ୍ୟତା ରହିଥିଲା । ସାଲାଦିନ କ୍ରୁଜେଡ଼ର୍‌-ମାନଙ୍କ ସହିତ ଯୁଦ୍ଧରେ ବ୍ୟସ୍ତ ରହି ସୁଦ୍ଧା ଅନେକ କଲେଜ ଓ ହାସପାତାଳ ନିର୍ମାଣ କରିଥିଲେ । କିନ୍ତୁ ଏହି ସଭ୍ୟତା ଏକ ହଠାତ୍ ଓ ପୂର୍ଣ୍ଣ ପତନର ପୂର୍ବାବସ୍ଥାରେ ଥିଲା । ମଙ୍ଗୋଲମାନେ ପୂର୍ବଦିଗରୁ ଆସୁଥିଲେ ।

## ୬୩ । କ୍ରୁଜେଡ୍ ବେଳର ଇଉରୋପ

ଜୁନ୍ ୨୦, ୧୯୩୨

ଆମର ଗତ ଚିଠିରେ ଏକାଦଶ, ଦ୍ୱାଦଶ ଓ ତ୍ରୟୋଦଶ ଶତାବ୍ଦୀରେ ଖ୍ରୀଷ୍ଟଧର୍ମ ଓ ଇସଲାମ ଭିତରେ ହୋଇଥିବା ସଂଘର୍ଷ ବିଷୟ କିଛି ଆମେ ଜାଣିଲେ । ଖ୍ରୀଷ୍ଟସାମ୍ରାଜ୍ୟର ସ୍ଥାନ ଇଉରୋପରେ ବୃଦ୍ଧି ପାଇଲା । ଏତେବେଳକୁ ସମଗ୍ର ଇଉରୋପରେ ଖ୍ରୀଷ୍ଟଧର୍ମ ବିସ୍ତାର ହୋଇଥାଏ । ପୂର୍ବ-ଇଉରୋପର ସ୍ଲାଭ୍ ଜାତି, ରୁଷବାସୀ ଓ ଅନ୍ୟମାନେ ଏହା ଶେଷରେ ଗ୍ରହଣ କଲେ । କେତେଦୂର ସତ୍ୟ ମୁଁ ଜାଣେନା, ତେବେ ଏକ ମଜାର ଗପ ଅଛି ଯେ ପୁରାତନ ରୁଷର ଲୋକେ ଖ୍ରୀଷ୍ଟୀୟ ହେବା ପୂର୍ବରୁ ନିଜର ପୁରୁଣା ଧର୍ମ ବଦଳାଇବା ଏବଂ ଏକ ନୂତନ ଧର୍ମ ଗ୍ରହଣ କରିବା ପ୍ରଶ୍ନ ଆଲୋଚନା କରୁଥିଲେ । ସେମାନେ ଖ୍ରୀଷ୍ଟଧର୍ମ ଓ ଇସଲାମ ଏହି ଦୁଇଟି ନୂତନ ଧର୍ମ ବିଷୟରେ ଶୁଣିଥିଲେ; ତେଣୁ ସମ୍ପୂର୍ଣ୍ଣ ଆଧୁନିକ ରୀତିରେ ଯେଉଁଠାରେ ଏହି ଧର୍ମଗୁଡ଼ିକ ପ୍ରଚଳିତ ଥିଲା, ତାହା ପରୀକ୍ଷା କରିବା ପାଇଁ ଓ ତାଙ୍କୁ ରିପୋର୍ଟ ଦେବା ପାଇଁ ସେମାନେ ଏହିସବୁ ଦେଶକୁ ଦେଖିବା ନିମନ୍ତେ ଏକ ଡେପୁଟେସନ (ପ୍ରତିନିଧିମଣ୍ଡଳୀ) ପଠାଇଲେ । କଥିତ ଅଛି ଯେ ପଶ୍ଚିମ-ଏସିଆରେ ଇସଲାମ ପ୍ରଚଳିତ କେତେକ ସ୍ଥାନ ଏହି ପ୍ରତିନିଧିମାନେ ଦେଖି ତାପରେ କନ୍‌ଷ୍ଟାଣ୍ଟି-ନୋପଲକୁ ଗଲେ । କନ୍‌ଷ୍ଟାଣ୍ଟିନୋପଲରେ ଯାହା ଦେଖିଲେ, ସେଥିରେ ଏମାନେ

ଆକୃଷ୍ଟ ହୋଇଗଲେ । ରକ୍ଷଣଶୀଳ ଗୀର୍ଜାର ଉତ୍ସବମାନ ସଙ୍ଗୀତ ଓ ସୁନ୍ଦର ଗାନ ସହ ଅତି ଆଡ଼ମ୍ବରପୂର୍ଣ୍ଣ ଥିଲା । ପୁରୋହିତମାନେ ଅତି ଉଜ୍ଜ୍ୱଳ ଆଡ଼ମ୍ବରପୂର୍ଣ୍ଣ ପୋଷାକପତ୍ର ପିନ୍ଧି ଆସୁଥିଲେ ଏବଂ ସୁଗନ୍ଧ ଧୂପ ଦିଆଯାଉଥିଲା । ଉତ୍ତରର ଏହି ସରଳ ଓ ଅର୍ଦ୍ଧସଭ୍ୟ ଲୋକେ ଏହି ପୂଜାବିଧି ଦେଖି ଅତ୍ୟନ୍ତ ମୁଗ୍‌ଧ ହୋଇଗଲେ । ଇସଲାମରେ ସେପରି କୌଣସି ଆଡ଼ମ୍ବର ନ ଥିଲା । ତେଣୁ ସେମାନେ ଖ୍ରୀଷ୍ଟଧର୍ମ ସପକ୍ଷରେ ମତ ଦେଲେ ଓ ସେହି ଅନୁସାରେ ଫେରିଯାଇ ରାଜାଙ୍କୁ ଜଣାଇଲେ । ତା'ପରେ ରୁଷରାଜା ଓ ତାଙ୍କର ଲୋକେ ଖ୍ରୀଷ୍ଟିୟାନ୍ ହେଲେ ଏବଂ ସେମାନେ କନ୍‌ଷ୍ଟାଣ୍ଟିନୋପଲର ଖ୍ରୀଷ୍ଟଧର୍ମ ଗ୍ରହଣ କରିଥିବାରୁ ରକ୍ଷଣଶୀଳ ଗ୍ରୀକ୍ ଗୀର୍ଜାର ଅନୁବର୍ତ୍ତୀ ହେଲେ, ରୋମର ନୁହେଁ । ପରବର୍ତ୍ତୀ କାଳରେ କେବେହେଲେ ରୁଷ ରୋମର ଧର୍ମଯାଜକଙ୍କୁ ସ୍ୱୀକାର କରି ନାହିଁ ।

ରୁଷର ଏହି ଦୀକ୍ଷାଗ୍ରହଣ କ୍ରୁସେଡ୍‌ର ବହୁପୂର୍ବରୁ ହୋଇଥିଲା । କଥିତ ଅଛି ଯେ ଏକ ସମୟରେ ବୁଲଗେରିୟମାନେ ମୁସଲମାନ ହେବା ପାଇଁ ଅଧାଅଧି ଇଚ୍ଛା ପ୍ରକାଶ କରିଥିଲେ । କିନ୍ତୁ କନ୍‌ଷ୍ଟାଣ୍ଟିନୋପଲର ଆକର୍ଷଣ ଅଧିକ ଥିଲା । ତାଙ୍କର ରାଜା ଏକ ବିଜାଣ୍ଟାଇନ ରାଜକନ୍ୟାକୁ ବିବାହ କରିଥିଲେ (ତୋର ମନେଥିବ କନ୍‌ଷ୍ଟାଣ୍ଟିନୋପଲର ପୁରୁଣା ନାମ ଥିଲା ବିଜାଣ୍ଟିଅମ) ଏବଂ ଖ୍ରୀଷ୍ଟିୟାନ୍ ହେଲେ । ସେହିପରି ଅନ୍ୟ ପଡ଼ୋଶୀ ଲୋକମାନେ ଖ୍ରୀଷ୍ଟଧର୍ମ ଗ୍ରହଣ କରିଥିଲେ ।

କ୍ରୁସେଡ୍ ସମୟରେ ଇଉରୋପରେ କ'ଣ ହେଉଥିଲା ? ତୁ ଦେଖିଛୁ ଯେ କେତେକ ରାଜା ଓ ସମ୍ରାଟ ପାଲେଷ୍ଟାଇନକୁ ଯାତ୍ରା କରୁଥିଲେ ଏବଂ ତାଙ୍କ ଭିତରୁ କେତେକ ସେଠି ହରିଗଲେ । ଏଥି ଭିତରେ ପୋପ ରୋମରେ ବସିଥାନ୍ତି ଏବଂ 'ବିଧର୍ମୀ' ତୁର୍କମାନଙ୍କ ବିରୁଦ୍ଧରେ 'ଧର୍ମଯୁଦ୍ଧ' କରିବା ଲାଗି ଆଦେଶ ଓ ନିବେଦନମାନ ପ୍ରକାଶ କରୁଥାନ୍ତି ! ସମ୍ଭବତଃ ଏତେବେଳେ ଧର୍ମଯାଜକ ଅତି କ୍ଷମତାଶାଳୀ ଥିଲେ । ମୁଁ ତୋତେ କହିଛି ଧର୍ମଯାଜକଙ୍କ ଆଗରେ କ୍ଷମାଭିକ୍ଷା ପାଇଁ ଜଣେ ଗର୍ବୀ ସମ୍ରାଟଙ୍କୁ କାନୋସାରେ ଖାଲିଗୋଡ଼ରେ ବରଫରେ ଛିଡ଼ା ହେବାକୁ ପଡ଼ିଥିଲା । ଏହି ପୋପ ସପ୍ତମ ଗ୍ରେଗରି, ଯାହାଙ୍କର ପୂର୍ବ ନାମ ହେଉଛି ହିଲ୍‌ଡେବ୍ରାଣ୍ଡ । ସେ ଧର୍ମଯାଜକ ନିର୍ବାଚନର ଏକ ନୂତନ ପ୍ରଣାଳୀ ବାହାର କରିଥିଲେ । ରୋମାନ କାଥଲିକ୍ ଜଗତରେ କାର୍ଡିନାଲମାନେ ହିଁ ବଡ଼ ପୁରୋହିତ ଥିଲେ । ଧର୍ମଯାଜକଙ୍କର ଏକ କଲେଜ ସୃଷ୍ଟି କରାଗଲା —ଏହାକୁ ଧର୍ମ କଲେଜ କହୁଥିଲେ ଏବଂ ଏହି କଲେଜ ପୋପ ନିର୍ବାଚନ କରୁଥିଲେ । ୧୦୫୯ ଖ୍ରୀ:ରେ ଏହି ପ୍ରଥା ପ୍ରଚଳନ କରାଗଲା ଏବଂ ସମ୍ଭବତଃ କେତେକ ସଂଶୋଧନ ସହ ଏହା ଆଜିପର୍ଯ୍ୟନ୍ତ ଚାଲିଆସିଛି । ଏବେ ମଧ୍ୟ ପୋପ ମରିଗଲେ କାର୍ଡିନାଲ କଲେଜ ତତ୍‌କ୍ଷଣାତ୍ ବସେ ଏବଂ ସେମାନେ ଏକ ଆବଦ୍ଧ ଗୃହଭିତରେ ବସନ୍ତି । ନିର୍ବାଚନ ଶେଷପର୍ଯ୍ୟନ୍ତ କେହି ସେ ଘରେ ପ୍ରବେଶ କରିପାରନ୍ତି ନାହିଁ ବା ବାହାରି ଆସିପାରନ୍ତି

ନାହିଁ । ଅନେକ ସମୟରେ ସେମାନେ ଦୀର୍ଘକାଳ ପର୍ଯ୍ୟନ୍ତ ବସି ସୁଦ୍ଧା କୌଣସି ଗୋଟିଏ ଲୋକ ବିଷୟରେ ସମ୍ମତ ହୋଇପାରନ୍ତି ନାହିଁ । ତଥାପି ସେମାନେ ଆସିପାରନ୍ତି ନାହିଁ; ତେଣୁ ସେମାନଙ୍କୁ ଶେଷରେ ବାଧ୍ୟ ହୋଇ ରାଜି ହେବାକୁ ପଡ଼େ ଏବଂ ନିର୍ବାଚନ ହୋଇଗଲେ ବାହାରେ ଆଲୋକ ଦିଆଯାଏ । ତାହାହେଲେ ବାହାରେ ଅପେକ୍ଷା କରୁଥିବା ଲୋକେ ଜାଣି ପାରନ୍ତି ଯେ ନିର୍ବାଚନ ହୋଇଗଲା ।

ଯେପରି ଧର୍ମଯାଜକ ପୋପ ନିର୍ବାଚିତ ହେଉଥିଲେ, ସେହିପରି ପବିତ୍ର ରୋମାନ ସାମ୍ରାଜ୍ୟର ସମ୍ରାଟ ବି ନିର୍ବାଚିତ ହେଉଥିଲେ; କିନ୍ତୁ ବଡ଼ ସାମନ୍ତମାନେ ତାଙ୍କୁ ନିର୍ବାଚନ କରୁଥିଲେ । ଏହିପରି ୭ ଜଣ ଥିଲେ—ଏମାନଙ୍କୁ ନିର୍ବାଚକ-ରାଜା ବୋଲି କୁହାଯାଉଥିଲା । ଏହିରୂପେ କୌଣସି ଏକ ପରିବାରରୁ ସର୍ବଦା ସମ୍ରାଟ ହେବାରେ ସେମାନେ ବାଧା ଦେଉଥିଲେ । ଯାହାହେଉ, ବ୍ୟବହାରରେ ପ୍ରାୟ ଦୀର୍ଘକାଳ ପର୍ଯ୍ୟନ୍ତ ଏହିସବୁ ନିର୍ବାଚନରେ ଏକ ପରିବାର ହିଁ ପ୍ରାଧାନ୍ୟ ବିସ୍ତାର କରୁଥିଲା ।

ସୁତରାଂ ଆମେ ଦେଖୁ ଯେ ୧୨ଶ ଓ ୧୩ଶ ଶତାବ୍ଦୀରେ ସାମ୍ରାଜ୍ୟ ଉପରେ ହୋଏନ୍‌ଷ୍ଟାଉଫେନ ବଂଶ କର୍ତ୍ତୃତ୍ୱ କରୁଥିଲା । ମୋର ବିଶ୍ୱାସ, ହୋଏନ୍‌ଷ୍ଟାଉଫେନ୍ ଜର୍ମାନୀର କୌଣସି ଏକ କ୍ଷୁଦ୍ର ସହର ବା ଗ୍ରାମର ନାମ । ସେଠାରୁ ସେମାନେ ଆସିଥିବାରୁ ଏପରି ନାମ ନେଇଥିଲେ । ହୋଏନ୍‌ଷ୍ଟାଉଫେନର ପ୍ରଥମ ଫ୍ରେଡ଼୍‌ରିକ ୧୧୫୨ ଖ୍ରୀଃ ରେ ସମ୍ରାଟ ହେଲେ । ତାଙ୍କୁ ସାଧାରଣତଃ ଫ୍ରେଡ୍‌ରିକ ବାର୍ବାରୋସା କହନ୍ତି । କ୍ରୁଜେଡ୍‌କୁ ଯିବା ପଥରେ ସେ ବୁଡ଼ି ମରି ଯାଇଥିଲେ । କଥିତ ଅଛି ଯେ ରୋମାନ ସାମ୍ରାଜ୍ୟର ଇତିହାସରେ ତାଙ୍କର ରାଜତ୍ୱ ହିଁ ସବୁଠାରୁ ଉଜ୍ଜ୍ୱଳ ଥିଲା । ଜର୍ମାନ୍ ଲୋକେ ଅନେକ ଦିନ ପର୍ଯ୍ୟନ୍ତ ତାଙ୍କୁ ଏକ ବୀର ପରି ମନେକରି ଆସିଛନ୍ତି । ଅନେକ କାହାଣୀ ତାଙ୍କ ବିଷୟରେ ପ୍ରଚଳିତ ଅଛି । କଥିତ ଅଛି ଯେ ସେ ଏକ ଗଭୀର ପର୍ବତଗୁହା ଭିତରେ ଶୋଇପଡ଼ିଛନ୍ତି ଏବଂ ଯେତେବେଳେ ଠିକଣା ବେଳ ପହଞ୍ଚିବ ସେ ନିଦରୁ ଉଠିବେ ଓ ନିଜ ଲୋକଙ୍କୁ ରକ୍ଷାକରିବା ନିମନ୍ତେ ବାହାରି ଆସିବେ ।

ଫ୍ରେଡ୍‌ରିକ ବାର୍ବାରୋସା ଧର୍ମଯାଜକଙ୍କ ବିରୁଦ୍ଧରେ ଏକ ବିରାଟ ଯୁଦ୍ଧ ଚଳାଇଥିଲେ; କିନ୍ତୁ ଏଥିରେ ପୋପଙ୍କ ଜୟ ହେଲା ଏବଂ ଫ୍ରେଡ଼ରିକଙ୍କୁ ତାଙ୍କ ନିକଟରେ ମୁଣ୍ଡ ନୁଆଁଇବାକୁ ପଡ଼ିଲା । ସେ ଜଣେ ଏକଛତ୍ର ସମ୍ରାଟ ଥିଲେ । କିନ୍ତୁ ତାଙ୍କର ଅଧୀନସ୍ଥ ବଡ଼ ବଡ଼ ସାମନ୍ତମାନେ ତାଙ୍କୁ ଖୁବ୍ ହଇରାଣ କରୁଥିଲେ । ଇଟାଲୀରେ ବଡ ବଡ଼ ନଗର ଗଢ଼ି ଉଠିଥିଲା । ଫ୍ରେଡ଼ରିକ ସେଗୁଡ଼ିକର ସ୍ୱାଧୀନତା ଦମନ କରିବାକୁ ଚେଷ୍ଟା କରିଥିଲେ; କିନ୍ତୁ ସେ ସଫଳ ହେଲେ ନାହିଁ । ଜର୍ମାନୀରେ ବଡ଼ ବଡ଼ ସହର ଗଢ଼ିଉଠିଲା, ବିଶେଷତଃ ନଦୀକୂଳରେ କଲୋନ, ହାମ୍‌ବର୍ଗ, ଫ୍ରାଙ୍କଫର୍ଟ ଇତ୍ୟାଦି ଅନେକ ସହର । ସେଠାରେ

ଫ୍ରେଡ୍‌ରିକଙ୍କ ଅଲଗା ନୀତି ଥିଲା । ସେ ସାମନ୍ତ ଓ ସାମନ୍ତ ପ୍ରଭୁମାନଙ୍କର କ୍ଷମତା କମାଇବା ନିମନ୍ତେ ସ୍ୱାଧୀନ ଜର୍ମାନ ନଗରଗୁଡ଼ିକୁ ସମର୍ଥନ କରିଥିଲେ ।

ରାଜା ବୋଇଲେ ପୁରାତନ ଭାରତୀୟ ଧାରଣା କ'ଣ ଥିଲା, ସେ ବିଷୟରେ ମୁଁ ଅନେକ ଥର ତୋତେ କହିଛି । ପୁରାତନ ଆର୍ଯ୍ୟକାଳରୁ ଅଶୋକଙ୍କ ବେଳ ପର୍ଯ୍ୟନ୍ତ ଏବଂ ଅର୍ଥଶାସ୍ତ୍ରଠାରୁ ଶୁକ୍ରାଚାର୍ଯ୍ୟଙ୍କ ନୀତିସାର ପର୍ଯ୍ୟନ୍ତ ବାରମ୍ବାର କୁହାହୋଇଛି ଯେ ରାଜା ସାଧାରଣ ଜନମତ ନିକଟରେ ଅବଶ୍ୟ ବଶ୍ୟତା ସ୍ୱୀକାର କରିବ । ଲୋକସାଧାରଣ ହିଁ ପ୍ରକୃତ ପ୍ରଭୁ । ଯଦିଓ ଅନ୍ୟ ସ୍ଥାନ ପରି ଭାରତରେ ବ୍ୟବହାରରେ ରାଜାମାନେ ଏକଛତ୍ର ଥିଲେ, ତଥାପି ଭାରତୀୟ ମତ ଏହା ହିଁ ଥିଲା । ଏହା ସହିତ ପୁରାତନ ଇଉରୋପ ମତର ତୁଳନା କର । ସେ କାଳର ଆଇନଜ୍ଞମାନଙ୍କର ମତାନୁସାରେ ସମ୍ରାଟଙ୍କର ସମ୍ପୂର୍ଣ୍ଣ କର୍ତ୍ତୃତ୍ୱ ଥିଲା । ତାଙ୍କର ଇଚ୍ଛା ହିଁ ଆଇନ୍ ଥିଲା । କୁହାଯାଏ, "ସମ୍ରାଟ ହିଁ ପୃଥିବୀ ଉପରେ ଜୀବନ୍ତ ଆଇନ ।" ଫ୍ରେଡ଼ରିକ ବାର୍ବାରୋସା ନିଜେ କହିଥିଲେ, "ଲୋକମାନେ କିଛି ରାଜାକୁ ଆଇନ୍ ଦେବେ ନାହିଁ; ମାତ୍ର ସେମାନଙ୍କୁ ତାଙ୍କ ଆଦେଶ ମାନିବାକୁ ହେବ ।"

ଚୀନ ମତ ସହିତ ମଧ୍ୟ ଏହାକୁ ତୁଳନା କର । ସେଠାରେ ସ୍ୱର୍ଗପୁତ୍ର ପରି ଓ ବଡ଼ ବଡ଼ ଉପାଧିରେ ସମ୍ରାଟ ବା ରାଜାର ନାମକରଣ କରାଯାଉଥିଲା; କିନ୍ତୁ ଏଥିରେ ଆମର କିଛି ଭୁଲ ବୁଝିବା ଉଚିତ ନୁହେଁ । ତାତ୍ତ୍ୱିକ ଦୃଷ୍ଟିରେ ସର୍ବଶକ୍ତିମାନ ଇଉରୋପୀୟ ସମ୍ରାଟଙ୍କଠାରୁ ଏହାଙ୍କ ସ୍ଥାନ ସମ୍ପୂର୍ଣ୍ଣ ଭିନ୍ନ ଥିଲା । ଜଣେ ପୁରାତନ ଚୀନ ଲେଖକ ମେଙ୍ଗ୍ ସି କହିଛନ୍ତି, "ଦେଶରେ ଲୋକେ ହିଁ ସର୍ବପ୍ରଧାନ ଶକ୍ତି; ତା ପର ଦରକାରୀ ଦେବତା ହେଉଛନ୍ତି ମାଟି ଓ ଶସ୍ୟ ଏବଂ ଶେଷ ଜିନିଷ ହେଉଛି ଶାସନ ।"

ସୁତରାଂ ଇଉରୋପରେ ସମ୍ରାଟ ହିଁ ସର୍ବେସର୍ବା ବୋଲି ଧରାଯାଉଥିଲେ ଏବଂ ଏହିଠାରୁ ରାଜା ଏକ ଐଶ୍ୱରିକ ଅଧିକାରୀ ବୋଲି ଧାରଣା ଜାତ ହେଲା । ଅବଶ୍ୟ ବ୍ୟାବହାରିକ ରୂପେ ସେ ସେପରି ସର୍ବେସର୍ବା ନ ଥିଲେ । ତାଙ୍କ ଅଧୀନସ୍ଥ ସାମନ୍ତମାନେ ଅତ୍ୟନ୍ତ ଦୁର୍ଦ୍ଦାନ୍ତ ଥିଲେ ଏବଂ ଆମେ ଦେଖିବା, କ୍ରମେ ନଗରମାନଙ୍କରେ ନୂତନ ଶ୍ରେଣୀ ବାହାରି କ୍ଷମତାର ଭାଗୀଦାର ହେବାକୁ ଦାବୀ କଲେ । ଅନ୍ୟ ପକ୍ଷରେ ଧର୍ମଯାଜକ ବି ପୃଥିବୀରେ ସର୍ବେସର୍ବା ହେବାକୁ ଦାବୀ କଲେ । ଯେଉଁଠି ଦୁଇଜଣ ସର୍ବେସର୍ବା ହେଲେ, ସେଠାରେ ଗୋଳମାଳ ହେବାକୁ ବାଧ୍ୟ ।

ଫ୍ରେଡ଼ରିକ ବାର୍ବାରୋସାଙ୍କ ନାତିଙ୍କୁ ମଧ୍ୟ ଫ୍ରେଡ଼ରିକ କୁହାଯାଉଥିଲା । ସେ ଅଳ୍ପ ବୟସରେ ସମ୍ରାଟ୍ ହେଲେ ଏବଂ ୨ୟ ଫ୍ରେଡ଼ରିକ୍ ନାମ ନେଲେ । ଏହାଙ୍କୁ ହିଁ "ୱେପର ମୁଣ୍ଡି" ବା ପୃଥିବୀର ଆଶ୍ଚର୍ଯ୍ୟ କୁହାଯାଉଥିଲା । ସେ ପାଲେଷ୍ଟାଇନ୍‌କୁ ଯାଇଥିଲେ ଓ

ଇଜିପ୍ଟର ସୁଲତାନଙ୍କ ସହିତ ବନ୍ଧୁଭାବରେ କଥାବାର୍ତ୍ତା କରିଥିଲେ । ସେ ବି ତାଙ୍କ ପିତାମହଙ୍କ ପରି ଧର୍ମଯାଜକଙ୍କୁ ଅବଜ୍ଞା କଲେ ଏବଂ ତାଙ୍କୁ ମାନିବାକୁ ଅସ୍ୱୀକାର କଲେ । ପୋପ ତାଙ୍କୁ ଜାତିବାରଣ କରି ପ୍ରତିଶୋଧ ନେଲେ । ଧର୍ମଯାଜକଙ୍କ ଏହା ଏକ ପୁରାତନ ଓ ଶକ୍ତିଶାଳୀ ଅସ୍ତ୍ର, କିନ୍ତୁ ଏବେ ଏଥିରେ ଟିକିଏ କଳଙ୍କି ଲାଗିଗଲାଣି । ଧର୍ମଯାଜକଙ୍କର କ୍ରୋଧକୁ ୨ୟ ଫ୍ରେଡ଼ରିକ ଆଦୌ ଖାତିର କଲେ ନାହିଁ ଏବଂ ଦୁନିଆ ବି ବଦଳୁଥିଲା । ଧର୍ମଯାଜକ ରାଜାଙ୍କ କାର୍ଯ୍ୟରେ ହସ୍ତକ୍ଷେପ କରିବାର କୌଣସି ଆବଶ୍ୟକତା ନାହିଁ ବୋଲି ଦର୍ଶାଇ ଫ୍ରେଡ଼ରିକ ଇଉରୋପର ସମସ୍ତ ରାଜା ଓ ଶାସକମାନଙ୍କ ପାଖକୁ ଦୀର୍ଘ ଚିଠି ଲେଖିଲେ । ଧର୍ମଯାଜକଙ୍କର କାର୍ଯ୍ୟ ହେଉଛି ଧାର୍ମିକ ଓ ଆଧ୍ୟାତ୍ମିକ ବ୍ୟାପାର ପ୍ରତି ଦୃଷ୍ଟି ଦେବା; କିନ୍ତୁ ରାଜନୀତିରେ ପ୍ରବେଶ କରିବା ନୁହେଁ । ସେ ମଧ୍ୟ ପାଦ୍ରୀମାନଙ୍କର ବ୍ୟଭିଚାର ବିଷୟରେ ବର୍ଣ୍ଣନା କରିଥିଲେ । ଫ୍ରେଡ଼ରିକ ଧର୍ମଯାଜକଙ୍କ ସହିତ ଖୁବ୍ ଭଲ ଯୁକ୍ତି କରିଥିଲେ । ତାଙ୍କ ଚିଠିଗୁଡ଼ିକ ଅତ୍ୟନ୍ତ ଆଗ୍ରହଜନକ । କାରଣ ସମ୍ରାଟ୍ ଓ ଧର୍ମଯାଜକଙ୍କ ଭିତରେ ପୁରାତନ ସଂଗ୍ରାମରେ . ଆଧୁନିକ ଭାବରେ ଏହା ହିଁ ପ୍ରଥମ ସୂଚନା ।

୨ୟ ଫ୍ରେଡ଼ରିକ ଧର୍ମ ବିଷୟରେ ଖୁବ୍ ଉଦାର ଥିଲେ ଏବଂ ତାଙ୍କ ଦରବାରକୁ ଆରବ ଓ ଇହୁଦୀର ଦାର୍ଶନିକମାନେ ଆସିଥିଲେ । କଥିତ ଅଛି ଯେ, ତାଙ୍କରି ଜରିଆରେ ଆରବୀ ସଂଖ୍ୟାଗଣିତ ଓ ବୀଜଗଣିତ (ତୋର ମନେଥିବ ଏହା ପ୍ରଥମେ ଭାରତରୁ ଆସିଥିଲା) ଇଉରୋପକୁ ଆସିଥିଲା । ସେ ନେପଲ୍ସରେ ବିଶ୍ୱବିଦ୍ୟାଳୟ ସ୍ଥାପନ କଲେ ଏବଂ ସାଲେର୍ଣ୍ଣୋର ପୁରାତନ ବିଶ୍ୱବିଦ୍ୟାଳୟଠାରେ ବଡ଼ ଡାକ୍ତରୀ ସ୍କୁଲ ତିଆରି କରିଥିଲେ ।

୨ୟ ଫ୍ରେଡ଼ରିକ ଖ୍ରୀ: ୧୨୧୨ ଠାରୁ ୧୨୫୦ ପର୍ଯ୍ୟନ୍ତ ଶାସନ କରିଥିଲେ । ତାଙ୍କ ମୃତ୍ୟୁ ପରେ ସାମ୍ରାଜ୍ୟ ଉପରେ ହୋଏନ୍‌ଷ୍ଟଉଫେନ କର୍ତ୍ତୃତ୍ୱ ଚାଲିଗଲା । ବାସ୍ତବିକ୍ ସାମ୍ରାଜ୍ୟ ହିଁ କାର୍ଯ୍ୟତଃ ଶେଷ ପାଇଗଲା । ଇଟାଲୀ ଅଲଗା ହୋଇଗଲା । ଜର୍ମାନୀ ଖଣ୍ଡ ଖଣ୍ଡ ହୋଇଗଲା ଏବଂ ଅନେକ ବର୍ଷ ପର୍ଯ୍ୟନ୍ତ ଭୀଷଣ ବିଶୃଙ୍ଖଳା ଦେଖାଦେଲା । ଦସ୍ୟୁ ସାମନ୍ତମାନେ ଲୁଣ୍ଠନ କଲେ ଏବଂ ତାଙ୍କୁ ବାଧା ଦେବାକୁ କେହି ନ ଥିଲେ । ପବିତ୍ର ରୋମାନ ସାମ୍ରାଜ୍ୟର ବୋଝ ସହିବା ଜର୍ମାନ୍ ରାଜ୍ୟ ପକ୍ଷରେ ଅତ୍ୟଧିକ ହୋଇଯାଇଥିଲା । ଫ୍ରାନ୍ସ ଓ ଇଂଲଣ୍ଡରେ ରାଜାମାନେ କ୍ରମେ ନିଜର ସ୍ଥିତି ଦୃଢ଼ କରୁଥିଲେ ଏବଂ କଳହପ୍ରିୟ ସାମନ୍ତମାନଙ୍କୁ ଦବାଇ ଦେଉଥିଲେ । ଜର୍ମାନୀରେ ରାଜା ବି ସମ୍ରାଟ ଥିଲେ ଏବଂ ସେ ଧର୍ମଯାଜକ ଓ ଇଟାଲୀ ନଗରମାନଙ୍କ ସହିତ ଯୁଦ୍ଧରେ ଏତେ ବ୍ୟସ୍ତ ଥିଲେ ଯେ ସାମନ୍ତମାନଙ୍କୁ ଦମନ କରିବା ନିମନ୍ତେ ସମୟ ପାଉ ନ ଥିଲେ । ନିଜର ସମ୍ରାଟଙ୍କ ଲାଗି ଜର୍ମାନୀ ବୃଥା ଗର୍ବ କରୁଥିଲା । ମାତ୍ର ଏହାଦ୍ୱାରା ନିଜ ଦେଶରେ ଦୁର୍ବଳତା ଓ ବିବାଦ ବଢ଼ିଲା । ଜର୍ମାନୀ ଏକତ୍ର ହେବାର ବହୁପୂର୍ବରୁ ଫ୍ରାନ୍ସ ଓ ଇଂଲଣ୍ଡ ଶକ୍ତିଶାଳୀ ଜାତିରୂପେ

ଗଢ଼ି ଉଠିଥିଲେ । କେତେ ଶହ ବର୍ଷ ପର୍ଯ୍ୟନ୍ତ ଜର୍ମାନୀରେ ଅସଂଖ୍ୟ ଶ୍ରେଷ୍ଠ ଶ୍ରେଷ୍ଠ ରାଜା ଥିଲେ । କେବଳ ୭୦ ବର୍ଷ ପୂର୍ବେ ଜର୍ମାନୀ ଏକତ୍ରୀଭୂତ ହେଲା ଏବଂ ସେତେବେଳେ ସୁଦ୍ଧା ଶ୍ରେଷ୍ଠ ଶ୍ରେଷ୍ଠ ରାଜା ଓ ଯୁବରାଜମାନେ ରହିଥାନ୍ତି । ୧୯୧୪—୧୮ର ମହାସମର ଏହିସବୁ ରାଜାମାନଙ୍କୁ ଶେଷ କରି ଦେଇଥିଲା ।

୨ୟ ଫ୍ରେଡ଼ରିକଙ୍କ ପରେ ଜର୍ମାନୀରେ ଏତେ ବିଶୃଙ୍ଖଳା ଥିଲା ଯେ ୨୩ ବର୍ଷ ପର୍ଯ୍ୟନ୍ତ କୌଣସି ସମ୍ରାଟ ନିର୍ବାଚିତ ହୋଇପାରିଲେ ନାହିଁ । ୧୨୭୩ରେ ହାପସ୍‌ବର୍ଗର ରୁଡୋଲ୍‌ଫ ସମ୍ରାଟ ରୂପେ ବରିହେଲେ । ହାପସ୍‌ବର୍ଗ ନାମକ ନୂତନ ପରିବାର ଏବେ ଦେଖାଦେଲେ । ଏହା ଶେଷପର୍ଯ୍ୟନ୍ତ ସାମ୍ରାଜ୍ୟକୁ ଧରି ରହିଲା । ଏହି ପରିବାରର ଶାସନ ମହାସମର ବେଳେ ଲୋପ ହେଲା । ଯୁଦ୍ଧବେଳେ ଫ୍ରାନ୍‌ସିସ୍ ଜୋସେଫ ନାମକ ଜଣେ ହାପସ୍‌ବର୍ଗ ଅଷ୍ଟ୍ରିଆ ହଙ୍ଗେରିର ସମ୍ରାଟ ଥିଲେ । ସେ ଜଣେ ଅତି ବୃଦ୍ଧ ଲୋକ । ସେ ୭୦ ବର୍ଷରୁ ଅଧିକ କାଳ ପର୍ଯ୍ୟନ୍ତ ରାଜଗାଦିରେ ବସିଥିଲେ । ତାଙ୍କ ପୁତୁରା ଫ୍ରାନ୍ତ ଫର୍ଡିନାଣ୍ଡ ସିଂହାସନର ଉତ୍ତରାଧିକାରୀ ହେଲେ । ୧୯୧୪ରେ ବୋସନିଆର (ବଲକାନ ରାଜ୍ୟ ଭିତରେ) ସେରାଜେଭୋଠାରେ ତାଙ୍କୁ ଓ ତାଙ୍କ ଭାର୍ଯ୍ୟାଙ୍କୁ ହତ୍ୟା କରାଯାଇଥିଲା । ଏହି ହତ୍ୟା ହେତୁ ମହାସମର ଆରମ୍ଭ ହେଲା ଏବଂ ଏହି ଯୁଦ୍ଧରେ ଅନେକ ରାଜା ଲୋପ ହେଲେ । ତାଙ୍କ ସହିତ ହାପସ୍‌ବର୍ଗ ବଂଶ ବିଲୋପ ପାଇଲେ ।

ପବିତ୍ର ରୋମାନ୍ ସାମ୍ରାଜ୍ୟ ସମ୍ବନ୍ଧରେ ଏତିକି । ଏହାର ପଶ୍ଚିମରେ ଫ୍ରାନ୍‌ସ ଓ ଓ ଇଂଲଣ୍ଡ ଭିତରେ ବରାବର ଯୁଦ୍ଧ ଲାଗୁଥିଲା ଏବଂ ପ୍ରତ୍ୟେକ ଦେଶର ରାଜା ନିଜର ବଡ଼ ସାମନ୍ତଙ୍କ ସହିତ ଅଧିକ ଯୁଦ୍ଧରେ ଲିପ୍ତ ରହୁଥିଲେ । ଜର୍ମାନୀରେ ସମ୍ରାଟ ବା ରାଜାଙ୍କ ଅପେକ୍ଷା ଏ ଦେଶର ରାଜାମାନେ ସାମନ୍ତଙ୍କୁ ଜୟ କରୁଥିଲେ । ତେଣୁ ଇଂଲଣ୍ଡ ଓ ଫ୍ରାନ୍‌ସ ଅଧିକ ଅବିଭକ୍ତ ଦେଶ ହେଲେ ଏବଂ ତାଙ୍କର ଏକତା ହିଁ ତାଙ୍କୁ ଶକ୍ତି ଦାନ କଲା ।

ଏତେବେଳେ ଇଂଲଣ୍ଡରେ ଏକ ଘଟଣା ଘଟିଥିଲା, ତୁ ଏ ସମ୍ବନ୍ଧରେ ହୁଏତ ପଢ଼ିଥାଇପାରୁ । ୧୨୧୫ ଖ୍ରୀ:ରେ ରାଜା ଜନ୍‌ଙ୍କୁ ମାଗ୍ନାକାର୍ଟାରେ ଦସ୍ତଖତ କରିବାକୁ ପଡ଼ିଲା । ଜନ୍‌ଙ୍କ ପରେ ତାଙ୍କ ଭାଇ 'ଶେର୍‌ଡ଼ କୋର-ଡି ଲାୟନ ରାଜା ହେଲେ । ସେ ଅତ୍ୟନ୍ତ ଭ୍ରମଣପ୍ରିୟ ଥିଲେ । କିନ୍ତୁ ସେ ବଡ଼ ଦୁର୍ବଳ ଥିଲେ ଓ ପ୍ରତ୍ୟେକ ଲୋକଙ୍କୁ ବିରକ୍ତ କରିଦେବାରେ କୃତକାର୍ଯ୍ୟ ହୋଇଥିଲେ । ସାମନ୍ତମାନେ ତାଙ୍କୁ ଟେମ୍‌ସ ନଦୀର ରୁନମେଡ଼ ଦ୍ୱୀପରେ ଘେରିଗଲେ ଏବଂ ବନ୍ଧୁକମୁନ ତଳରେ ମାଗ୍ନାକାର୍ଟା ବା ବିରାଟ ଅଧିକାରପତ୍ରରେ ଦସ୍ତଖତ କରିବାକୁ ବାଧ୍ୟ କରିଥିଲେ । ଏଥିରେ ଥିଲା ଯେ ଇଂଲଣ୍ଡର ଲୋକ ଓ ସାମନ୍ତମାନଙ୍କର କେତେକ ସ୍ୱାଧୀନତା ସେ ଅବଶ୍ୟ ପାଳନ କରିବାକୁ ପ୍ରତିଶ୍ରୁତି

ହେବେ । ଇଂଲଣ୍ଡରେ ରାଜନୈତିକ ସ୍ୱାଧୀନତା ନିମନ୍ତେ ଦୀର୍ଘକାଳ ଯୁଦ୍ଧରେ ଏହା ହିଁ ପ୍ରଥମ ଓ ପ୍ରଧାନ ପାହାଚ । ବିଶେଷତଃ ସେଥିରେ ଧାର୍ଯ୍ୟ ଥିଲା ଯେ ରାଜା ଲୋକମାନଙ୍କର ସମ୍ମତି ବ୍ୟତିରେକେ କୌଣସି ନାଗରିକର ସମ୍ପତ୍ତି ଓ ସ୍ୱାଧୀନତାରେ ହସ୍ତକ୍ଷେପ କରିପାରିବେ ନାହିଁ । ଏଥିରୁ ଜୁରିପ୍ରଥା ଆରମ୍ଭ ହେଲା, ଅର୍ଥାତ୍ ସମାନ ସ୍ତରର ଲୋକେ ବିଚାରପତି ହେଲେ । ସୁତରାଂ ଆମେ ଦେଖୁ ଯେ ଇଂଲଣ୍ଡରେ ରାଜାଙ୍କର କ୍ଷମତା ଆରମ୍ଭରୁ ସଙ୍କୁଚିତ କରି ଦିଆଯାଇଥିଲା । ଯଦିଓ ରୋମାନ୍ ସାମ୍ରାଜ୍ୟରେ ଶାସକର ପ୍ରାଧାନ୍ୟ ରହିବ ବୋଲି ଯେଉଁ ମତ ପ୍ରଚଳିତ ଥିଲା, ସେତେବେଳେ ସୁଦ୍ଧା ଇଂଲଣ୍ଡ ତାହା ଗ୍ରହଣ କରି ନ ଥିଲା ।

ମଜାର କଥା ଯେ ୭୦୦ ବର୍ଷ ପୂର୍ବେ ଇଂଲଣ୍ଡରେ ଯେଉଁ ନିୟମ ଧାର୍ଯ୍ୟ କରାଯାଇଛି, ତାହା ବ୍ରିଟିଶ ଶାସନ ଅଧୀନରେ ୧୯୩୭ ଖ୍ରୀ:ରେ ସୁଦ୍ଧା ଭାରତ ପ୍ରତି ପ୍ରଯୁଜ୍ୟ ହେଉ ନାହିଁ । ଆଜି ବଡ଼ଲାଟଙ୍କ ପରି ଜଣେ ବ୍ୟକ୍ତିବିଶେଷଙ୍କ ହାତରେ ଅର୍ଡିନାନ୍ସ ବାହାର କରିବାର, ଆଇନ ଗଢ଼ିବାର ଏବଂ ଲୋକଙ୍କଠାରୁ ସ୍ୱାଧୀନତା କାଢ଼ିନେବାର ଓ ତାଙ୍କ ସମ୍ପତ୍ତିରୁ ତାଙ୍କୁ ବଞ୍ଚିତ କରିବାର କ୍ଷମତା ରହିଛି ।

ମାଗ୍ନାକାର୍ଟାର ଅଳ୍ପଦିନ ପରେ ଇଂଲଣ୍ଡରେ ଆଉ ଏକ ଉଲ୍ଲେଖଯୋଗ୍ୟ ଘଟଣା ଘଟିଲା । କ୍ରମେ ଏକ ଜାତୀୟ ପରିଷଦ ଗଢ଼ାହେଲା । ବିଭିନ୍ନ ମଫସଲ ଅଞ୍ଚଳ ଓ ନଗରମାନଙ୍କରୁ ସାମନ୍ତ ନାଗରିକମାନେ ଏଠିକି ଆସିଲେ । ଏହା ହିଁ ଇଂରେଜ ପାର୍ଲାମେଣ୍ଟର ଆରମ୍ଭ । ସାମନ୍ତ ଓ ନାଗରିକମାନେ ଆସି କମନ୍ସ ସଭା (ଗଣସଭା) ଗଢ଼ିଲେ । ବଡ଼ ସାମନ୍ତ ଓ ଧର୍ମାଧ୍ୟକ୍ଷମାନଙ୍କୁ ନେଇ ଲର୍ଡ଼ସ ସଭା (ସାମନ୍ତ ସଭା) ଗଠିତ ହେଲା । ପ୍ରଥମେ ଏହି ପାର୍ଲାମେଣ୍ଟର କିଛି କ୍ଷମତା ନ ଥିଲା; କିନ୍ତୁ କ୍ରମେ ଏହା ବୃଦ୍ଧି ପାଇଲା । ଶେଷରେ ରାଜା ବଡ଼ କି ପାର୍ଲାମେଣ୍ଟ ବଡ଼ ଏହି ନେଇ ଶେଷ ପରୀକ୍ଷା ହେଲା । ରାଜା ନିଜର ମସ୍ତକ ହରାଇଲେ ଏବଂ ପାର୍ଲାମେଣ୍ଟ ଅପ୍ରତିଦ୍ୱନ୍ଦୀ ପ୍ରଭୁ ହେଲା । କିନ୍ତୁ ଏହା ପ୍ରାୟ ୪୦୦ ବର୍ଷ ପରେ ୧୭ଶ ଶତାବ୍ଦୀରେ ହୋଇଥିଲା ।

ଫ୍ରାନ୍ସରେ ମଧ୍ୟ 'ତିନୋଟି ଇଷ୍ଟେଟର (ରାଷ୍ଟ୍ର) ପରିଷଦ' ହେଲା; ଏହା ହିଁ ତାକୁ କହୁଥିଲେ । ଏହି ତିନୋଟି ରାଷ୍ଟ୍ର ହେଉଛି—ସାମନ୍ତ (ଲର୍ଡ଼ସ୍), ଚର୍ଚ୍ଚ (ଧର୍ମରାଷ୍ଟ୍ର) ଓ ଗଣରାଷ୍ଟ୍ର (କମନ୍ସ) । ରାଜା ଯେତେବେଳେ ଇଚ୍ଛା କରୁଥିଲେ, ଏହି ପରିଷଦର ବୈଠକ ହେଉଥିଲା । କିନ୍ତୁ ଏହାର ସଭା ଖୁବ୍ କମ୍ ହେଉଥିଲା ଏବଂ ଇଂରେଜ ପାର୍ଲାମେଣ୍ଟ ଯେପରି କ୍ଷମତା ପାଇବାରେ କୃତକାର୍ଯ୍ୟ ହୋଇଥିଲା, ଏହା ସେପରି ହୋଇ ନ ଥିଲା । ଫ୍ରାନ୍ସରେ ରାଜାଙ୍କର କ୍ଷମତା ଖର୍ବ ହେବା ପୂର୍ବରୁ ଜଣେ ରାଜାଙ୍କୁ ନିଜର ମସ୍ତକ ହରାଇବାକୁ ପଡ଼ିଥିଲା ।

ପୂର୍ବରେ ଗ୍ରୀକ୍‌ମାନଙ୍କର ପୂର୍ବୀୟ ରୋମାନ ସାମ୍ରାଜ୍ୟ ତଥାପି ଗୃହୁଥିଲା । ଆରମ୍ଭ କାଳରୁ ଏହାକୁ କୌଣସି ନା କୌଣସି ଶତ୍ରୁ ସହିତ ଲଢ଼ାଇ କରିବାକୁ ପଡ଼ିଛି ଏବଂ ଅନେକ ସମୟରେ ଏହା ଧ୍ୱଂସ ପାଇଯିବା ଅବସ୍ଥାରେ ପହଞ୍ଚିଛି । ତଥାପି ଏହା ବଞ୍ଚି ରହିଥିଲା । ପ୍ରଥମେ ଉତ୍ତରାଞ୍ଚଳର ବର୍ବରମାନଙ୍କର ଆକ୍ରମଣ ଓ ପରେ ମୁସଲମାନମାନଙ୍କ ଆକ୍ରମଣରୁ ରକ୍ଷା ପାଇଲା । ସାମ୍ରାଜ୍ୟ ଉପରେ ରୁଷ, ବୁଲଗେରିଆ, ଆରବ ଓ ସେଲଜୁକ ତୁର୍କ ପ୍ରଭୃତିଙ୍କର ସମସ୍ତ ଆକ୍ରମଣ ଭିତରେ ଧର୍ମଯୋଦ୍ଧା (କ୍ରୁଜେଡ଼ର) ମାନଙ୍କର ଆକ୍ରମଣ ହିଁ ଅତ୍ୟନ୍ତ ଭୀଷଣ ଓ କ୍ଷତିକାରକ ହୋଇଥିଲା । ଏହି ଖ୍ରୀଷ୍ଟୀୟ ସାମନ୍ତମାନେ ଅନ୍ୟ ଯେ କୌଣସି 'ବିଧର୍ମୀ'ଙ୍କ ଅପେକ୍ଷା ଢେର ଖ୍ରୀଷ୍ଟୀୟ କନ୍‌ଷ୍ଟାଣ୍ଟିନୋପଲର ଅଧିକ କ୍ଷତି କରିଥିଲେ । ଏହି ମହାବିପଦରୁ ସାମ୍ରାଜ୍ୟ ଓ କନଷ୍ଟାଣ୍ଟିନୋପଲର ନଗର କେବେହେଁ ମୁକ୍ତ ହୋଇ ନ ଥିଲା ।

ପଶ୍ଚିମ ଇଉରୋପ ପୂର୍ବ ଦେଶୀୟ ସାମ୍ରାଜ୍ୟ ସମ୍ବନ୍ଧରେ ସମ୍ପୂର୍ଣ୍ଣ ଅଜ୍ଞାତ ଥିଲା । ଏହା ଏଥିପ୍ରତି ଆଦୌ ଖାତିର କରୁ ନ ଥିଲା । ଏହା "ଖ୍ରୀଷ୍ଟରାଜ୍ୟ"ର ଅଂଶ ବୋଲି ଧରା ଯାଉ ନ ଥିଲା । ଏହାର ଭାଷା ଥିଲା ଗ୍ରୀକ୍, ଅଥଚ ପାଶ୍ଚାତ୍ୟ ଇଉରୋପର ପ୍ରଚଳିତ ଭାଷା ଥିଲା ଲାଟିନ୍ । ପ୍ରକୃତରେ ଦେଖିବାକୁ ଗଲେ ସେହି ପତନ କାଳରେ ବି ପଶ୍ଚିମ ଅପେକ୍ଷା କନଷ୍ଟାଣ୍ଟିନୋପଲରେ ଶିକ୍ଷା ଓ ସାହିତ୍ୟର ଅଧିକ ଚର୍ଚ୍ଚା ଥିଲା । କିନ୍ତୁ ଏହା ବୃଦ୍ଧର ପାଣ୍ଡିତ୍ୟ, ଏଥିରେ କୌଣସି ଶକ୍ତି ବା ସର୍ଜନାର କ୍ଷମତା ନ ଥିଲା । ପାଶ୍ଚାତ୍ୟ ଖୁବ୍ କମ୍ ଶିକ୍ଷିତ ଥିଲା, କିନ୍ତୁ ଏହା ଥିଲା ଯୁବକ ଓ ଏହାର ଥିଲା ସର୍ଜନଶକ୍ତି ଏବଂ ଅତିଶୀଘ୍ର ସୌନ୍ଦର୍ଯ୍ୟପ୍ରଦ କାର୍ଯ୍ୟ ସୃଷ୍ଟି କରିବାରେ ଏହି କ୍ଷମତାର ପ୍ରୟୋଗ କରାଗଲା । ରୋମ୍‌ର ପୂର୍ବ ସାମ୍ରାଜ୍ୟରେ ଧର୍ମ ଓ ସମ୍ରାଟଙ୍କ ଭିତରେ କୌଣସି ସଂଘର୍ଷ ନ ଥିଲା । ସମ୍ରାଟ ସେଠାରେ ସର୍ବେସର୍ବା ଥିଲେ ଏବଂ ସେ ନିତାନ୍ତ ସ୍ୱେଚ୍ଛାଚାରୀ ଥିଲେ । ସେଠାରେ କୌଣସି ସ୍ୱାଧୀନତାର ପ୍ରଶ୍ନ ନ ଥିଲା । ବଳବାନ ବା ଅତ୍ୟନ୍ତ ବିବେକବାନ ଲୋକ ହିଁ ସିଂହାସନ ପାଉଥିଲେ । ହତ୍ୟା ଓ କୌଶଳଦ୍ୱାରା ରକ୍ତ ଓ ହୀନକାର୍ଯ୍ୟ ଭିତରେ ଲୋକେ ମୁକୁଟ ପାଉଥିଲେ ଏବଂ ଲୋକସାଧାରଣ ତାହାସବୁ ଛେଳି ମେଣ୍ଢା ପରି ମାନି ନେଉଥିଲେ । କିଏ ଶାସନ କରୁଛି, ତାହା ଜାଣିବା ସେମାନଙ୍କର କିଛି ଦରକାର ନ ଥିଲା ।

ଇଉରୋପର ଦ୍ୱାରରେ ଏସିଆର ଆକ୍ରମଣରୁ ରକ୍ଷାକରିବା ଲାଗି ପୂର୍ବ ସାମ୍ରାଜ୍ୟ ଏକ ପ୍ରହରୀରୂପେ ରହିଥିଲା । ଅନେକ ଶହ ବର୍ଷ ପର୍ଯ୍ୟନ୍ତ ଏହା କୃତକାର୍ଯ୍ୟ ହେଲା । ଆରବମାନେ କନଷ୍ଟାଣ୍ଟିନୋପଲ ନେଇପାରିଲେ ନାହିଁ । ସେଲଜୁକ ତୁର୍କମାନେ ନିକଟ ପର୍ଯ୍ୟନ୍ତ ଆସି ସୁଦ୍ଧା ଏହାକୁ ନେଇପାରି ନ ଥିଲେ । ମଙ୍ଗୋଲମାନେ ଏହାକୁ ଅତିକ୍ରମ କରିଗଲେ ଏବଂ ଉତ୍ତର-ରୁଷିଆରେ ପ୍ରବେଶ କଲେ । ଶେଷରେ ଅଟୋମାନ ତୁର୍କମାନେ ଆସିଲେ ଏବଂ ୧୪୫୩ ଖ୍ରୀ:ରେ କନଷ୍ଟାଣ୍ଟିନୋପଲ ନଗରଟି ତାଙ୍କ ହାତରେ ପଡ଼ିଲା । ଏହି ନଗରର ପତନ ସଙ୍ଗେ ସଙ୍ଗେ ପୂର୍ବ ସାମ୍ରାଜ୍ୟର ବି ପତନ ହେଲା ।

# ୭୪ । ଇଉରୋପୀୟ ନଗରମାନଙ୍କର ଉଦୟ

ଜୁନ୍ ୨୦, ୧୯୩୦

କ୍ରୁସେଡ୍ କାଳରେ ଇଉରୋପରେ ଲୋକଙ୍କ ଭିତରେ ଧର୍ମବିଶ୍ୱାସର ଏକା ଅଭିଳାଷ ଓ ଆଶା ପୂରି ରହିଥିଲା ଏବଂ ଏହି ବିଶ୍ୱାସ ଓ ଆଶାରେ ଲୋକେ ତାଙ୍କର ଦୈନନ୍ଦିନ ଦୁର୍ଦ୍ଦଶାରୁ ମୁକ୍ତି ପାଇବାର ବାଞ୍ଛା କରୁଥିଲେ । ସେତେବେଳେ କୌଣସି ବିଜ୍ଞାନ ନ ଥିଲା, ବିଶେଷ କିଛି ଶିକ୍ଷା ନ ଥିଲା; କାରଣ ବିଶ୍ୱାସ, ବିଜ୍ଞାନ ଓ ଶିକ୍ଷା ଏଗୁଡ଼ିକ ସହଜରେ ଏକାଠି ଯାଏନା । ବିଦ୍ୟା ଓ ଜ୍ଞାନ ଲୋକଙ୍କୁ ଚିନ୍ତା କରିବାକୁ ଶିଖାଏ ଏବଂ ସନ୍ଦେହ ଓ ପ୍ରଶ୍ନ କରିବା ଧର୍ମବିଶ୍ୱାସର ଏକ ଅତି ବିପଜ୍ଜନକ ସାଥି । ବିଜ୍ଞାନର ପଥ ହେଉଛି ଅନୁସନ୍ଧାନ ଓ ପ୍ରୟୋଗ କରିବାର ପଥ; ଏହା ଧର୍ମ ବିଶ୍ୱାସର ପନ୍ଥା ନୁହେଁ । ଆମେ ଦେଖିବା ପରେ କପରି ଏହି ବିଶ୍ୱାସ ଦୁର୍ବଳ ହୋଇପଡ଼ିଲା ଓ ସନ୍ଦେହ ବଢ଼ିଲା ।

କିନ୍ତୁ ଆମେ ଯେଉଁ କାଳ କଥା ଆଲୋଚନା କରୁଛେ, ସେତେବେଳେ ଧର୍ମ ବିଶ୍ୱାସ ବୃଦ୍ଧି ପାଇବାର ଆମେ ଦେଖିଛେ ଏବଂ ରୋମାନ୍ ଗୀର୍ଜା ନିଜକୁ 'ଧର୍ମାବଲମ୍ବୀ'-ମାନଙ୍କର ମୁଖିଆ କଲା ଏବଂ ଅନେକ ସମୟରେ ସେମାନଙ୍କୁ ଶୋଷଣ କଲା । ହଜାର ହଜାର 'ଧର୍ମାବଲମ୍ବୀ'ମାନଙ୍କୁ କ୍ରୁସେଡ୍ ପାଇଁ ପାଲେଷ୍ଟାଇନକୁ ପଠାଗଲା । ସେମାନେ ଆଉ ଦେଶକୁ ଫେରି ନାହାନ୍ତି । ଯେଉଁ ଖ୍ରୀଷ୍ଟୀୟ ଲୋକେ ଇଉରୋପରେ ପୋପଙ୍କର ପ୍ରତ୍ୟେକ କଥା ମାନୁ ନ ଥିଲେ, ତାଙ୍କ ବିରୁଦ୍ଧରେ କ୍ରୁସେଡ୍ ଘୋଷଣା ହେଲା । ଧର୍ମଯାଜକ ଓ ଗୀର୍ଜା ଲୋକଙ୍କର ଏହି ଧର୍ମବିଶ୍ୱାସର ସୁଯୋଗ ଉଠାଇ ଇସ୍ତାହାରମାନ ପ୍ରକାଶ କଲେ ଓ ଅନେକ ସମୟରେ Dispensions (ନିୟମଭଙ୍ଗାନୁମତି) ଓ In ulgences ( ପାପ ମୁକ୍ତିର ଅନୁଜ୍ଞା)କୁ ପ୍ରଚୁର ଏବଂ ପ୍ରାୟଶଃ ବିକ୍ରୀ କରୁଥିଲେ । 'ଡିସ୍‌ପେନ୍‌ସନ୍‌ସ' ହେଉଛି କେତେକ ଆଇନ ବା ଚୁକ୍ତିଭଙ୍ଗ କରିବା ପାଇଁ ଅନୁମତି । ସୁତରାଂ ଧର୍ମମଣ୍ଡଳୀ ଯେଉଁ ଆଇନ କରିଥିଲା, ସେହି ଆଇନ ବିଶେଷ ଅବସ୍ଥାରେ ଭାଙ୍ଗିବା ପାଇଁ ନିଜେ ଅନୁମତି ଦେଲା । ଏପରି ଆଇନ ପ୍ରତି ଆଦର ବଢ଼ୁଥିବା ପ୍ରବୃତ୍ତିପାରେ ନାହିଁ । 'ଇଣ୍ଡୁଲଜେନ୍‌ସସ' ଆହୁରି ଖରାପ ଜିନିଷ । ରୋମାନ ଗୀର୍ଜା ମତାନୁସାରେ ମୃତ୍ୟୁ ପରେ ଆତ୍ମା ପ୍ରେତ ଲୋକକୁ ଯାଏ, ଯାହା ସ୍ୱର୍ଗ ଓ ନରକ ମଝିରେ କୌଣସି ଗୋଟିଏ ସ୍ଥାନ ଏବଂ ମରଜଗତରେ କରିଥିବା ପାପ ଲାଗି ସେ ଏହିଠାରେ କଷ୍ଟ ଭୋଗ କରେ । ପରେ ଏହି ଆତ୍ମା ସ୍ୱର୍ଗକୁ ଯାଏ ବୋଲି କୁହାଯାଏ । ପଇସା ନେଇ ପୋପ ଲୋକମାନଙ୍କୁ ପ୍ରତିଶ୍ରୁତି ଦିଅନ୍ତି ଯେ ସେମାନେ ପ୍ରେତଲୋକରୁ ରକ୍ଷା ପାଇବେ ଏବଂ ସିଧାସଳଖ ସ୍ୱର୍ଗକୁ ଯିବେ । ସୁତରାଂ ସରଳ ଲୋକଙ୍କ ବିଶ୍ୱାସକୁ ଏହିରୂପେ ଶୋଷଣ କରାଯାଏ ଏବଂ ଅପରାଧରୁ, ଯାହାକୁ କି ଏହା ପାପ ବୋଲି ବିଚାରେ ସେଥିରୁ ପଇସା ଆଦାୟ କରେ । ଏହି 'ଇଣ୍ଡୁଲଜେନ୍‌ସ' ବିକ୍ରୀ କରିବା

ଫ୍ରାଙ୍କଫୋର୍ଟ ପରେ ଆଗମ୍ଭ ହୋଇଥିଲା । ଏଥିରେ ବଡ଼ ବଦନାମ ହେଲା ଏବଂ ରୋମ୍ ଗୀର୍ଜା ବିରୁଦ୍ଧରେ ଅନେକ ଲୋକ ଉତ୍ତ୍ୟକ୍ତ ହେବା ଆଉ ଏକ କାରଣ ।

ଅଧିକ ସରଳବିଶ୍ୱାସୀ ଲୋକ କପରି ବୋକାମି କରନ୍ତି, ବାସ୍ତବିକ୍ ଆଶ୍ଚର୍ଯ୍ୟ କଥା । ଏହି କାରଣରୁ ଅନେକ ଦେଶରେ ଧର୍ମ ଏକ ଅଧିକ ଓ ଭଲ ରୋଜଗାର କରିବା ବ୍ୟବସାୟ ହୋଇଛି । ମନ୍ଦିରମାନଙ୍କର ପୂଜାରୀଙ୍କୁ ଦେଖ, ବିଚାରି ଭକ୍ତଙ୍କୁ ସେମାନେ କପରି ଶୋଷଣ କରନ୍ତି । ଗଙ୍ଗାନଦୀ କୂଳକୁ ଯାଅ, ଦେଖିବ, ଅଜ୍ଞ ଗ୍ରାମବାସୀ କିଛି ନ ଦେବା ପର୍ଯ୍ୟନ୍ତ ପଣ୍ଡା କିଛି କର୍ମ କରିବାକୁ କପରି ଅସ୍ୱୀକାର କରେ । କୌଣସି ପରିବାରର ଜନ୍ମ, ବିବାହ, ମୃତ୍ୟୁ ଯାହା ଘଟୁ, ପୁରୋହିତ ଦରକାର ଓ ଦକ୍ଷିଣା ବି ଲୋଡ଼ା ।

ହିନ୍ଦୁ, ଖ୍ରୀଷ୍ଟ, ଇସଲାମ ଓ ପାର୍ସୀ ପ୍ରତ୍ୟେକ ଧର୍ମରେ ଏପରି ଅଛି । ଧର୍ମାବଲମ୍ବୀ-ମାନଙ୍କ ବିଶ୍ୱାସରୁ ପ୍ରତ୍ୟେକେ ଟଙ୍କା ରୋଜଗାର କରିବାର ନୂତନ କୌଶଳମାନ କରନ୍ତି । ହିନ୍ଦୁଧର୍ମରେ ଏହି କୌଶଳ ସୁସ୍ପଷ୍ଟ ଦେଖାଯାଏ । ଇସଲାମରେ ପୌରୋହିତ୍ୟ ନାହିଁ ବୋଲି ଧରାଯାଏ ଏବଂ ଅତୀତରେ ଏହା ଅନୁଗାମୀମାନଙ୍କୁ ଧର୍ମ ସଙ୍କାନ୍ତରେ ଶୋଷଣରୁ ରକ୍ଷା କରିବାରେ କିଛିଟା ସାହାଯ୍ୟ କରିଥିଲା । କିନ୍ତୁ ପରେ ବ୍ୟକ୍ତିବିଶେଷ ବା ଶ୍ରେଣୀ ନିଜକୁ ଧର୍ମର ବିଶେଷଜ୍ଞ ବୋଲି ଆଖ୍ୟା ଦେଇ ବାହାରିଲେ; ଯଥା—ବିଦ୍ୱାନ୍ ଲୋକ, ମୌଲବି, ମୋଲ୍ଲା ଇତ୍ୟାଦି ଏବଂ ସରଳବିଶ୍ୱାସୀ ମୁସଲମାନମାନଙ୍କ ଉପରେ ସେମାନେ ଗଲଗ୍ରହ ହୋଇ ତାଙ୍କୁ ଶୋଷଣ କଲେ । ଯେଉଁଠି ଏକ ଲମ୍ବା ଦାଢ଼ି ବା ମସ୍ତକର ପୃଷ୍ଠଦେଶରେ କିଛି ଚୁଟି, କପାଳରେ ଦୀର୍ଘ ତିଳକ ଚିହ୍ନ, ଫକୀରର ପୋଷାକ ବା ସନ୍ନ୍ୟାସୀର ହଳଦିଆ ବା କେଶର ରଙ୍ଗର ପୋଷାକ କିମ୍ବା ସାଧୁର ପରିଚୟପତ୍ର, ସେଠାରେ ଲୋକଙ୍କ ଉପରେ ପ୍ରାଧାନ୍ୟ କରିବା କିଛି କଷ୍ଟକର ନୁହେଁ । ତମେ ଯଦି ସବୁ ଦେଶଠାରୁ ଉନ୍ନତ ଆମେରିକା ରାଜ୍ୟକୁ ଯାଅ, ସେଠାରେ ବି ଦେଖିବ, ଧର୍ମ ଏକ ରୋଜଗାରର ପନ୍ଥା ହୋଇ ରହିଛି—ଲୋକଶୋଷଣ ଉପରେ ବଞ୍ଚିଛି ।

ମୁଁ ମଧ୍ୟଯୁଗ ଓ ଧର୍ମଯୁଗରୁ ବହୁ ଦୂରକୁ ଚାଲିଆସିଛି । ଆମକୁ ବର୍ତ୍ତମାନ ସେଠିକି ଫେରିଯିବାକୁ ହେବ । ଆମେ ଦେଖୁଁ ଯେ ଲୋକଙ୍କର ଧର୍ମବିଶ୍ୱାସ ଏକ ଦୃଶ୍ୟମାନ ଓ ସର୍ବଜନାକ୍ଷମ ଆକୃତି ଧାରଣ କରୁଛି । ୧୧ଶ ଓ ୧୨ଶ ଶତାବ୍ଦୀ ଏକ ମହାନ୍ ନିର୍ମାଣର ଯୁଗ ଏବଂ ପଶ୍ଚିମ-ଇଉରୋପର ସବୁ ସ୍ଥାନରେ ଧର୍ମ ମନ୍ଦିରମାନ ତିଆରି ହୋଇଛି । ପୂର୍ବରୁ ଦେଖା ନ ଥିବା ନୂତନ ସ୍ଥାପତ୍ୟ ଇଉରୋପରେ ଦେଖାଯାଏ । ଚତୁର ନିର୍ମାଣ କୌଶଳ ଦ୍ୱାରା ଘର ଗୁଡ଼ିକର ବୋଝ ଓ ଛାପ କୋଠା ବାହାରେ ଥିବା ମହାନ୍ ସ୍ତମ୍ଭରେ ବାଣ୍ଟି ହୋଇପଡ଼େ । ଭିତରେ ମଧ୍ୟ ଉପରର ଗୁରୁତର ଛାପ ସହିବା ସକାଶେ ଅତି ସୁନ୍ଦର ପାତଳ ସ୍ତମ୍ଭମାନ ଦେଖିଲେ ଆଶ୍ଚର୍ଯ୍ୟ ହେବାକୁ ହୁଏ । ଆରବ ସ୍ଥାପତ୍ୟ ଢଙ୍ଗ ଅନୁସାରେ

ସୂକ୍ଷ୍ମ ଖିଲାଣସବୁ ହୋଇଥାଏ । ସମଗ୍ର କୋଠାର ଅଗ୍ରଭାଗରେ ଗଗନଚୁମ୍ବୀ ଏକ ଚୂଡ଼ା ରହିଥାଏ । ଏହା ସ୍ଥାପତ୍ୟର ଗୋଥିକୀୟ ପ୍ରଣାଳୀ; ଇଉରୋପରେ ହିଁ ଏହା ବୃଦ୍ଧି ପାଇଥିଲା । ଏହା ଅତ୍ୟନ୍ତ ସୁନ୍ଦର ଏବଂ ପ୍ରଖର ବିଶ୍ୱାସ ଓ ଅଭିଳାଷର ଅଭିବ୍ୟକ୍ତି ପରି ମନେହୁଏ । ପ୍ରକୃତରେ ଏହା ଧର୍ମବିଶ୍ୱାସ ଯୁଗର ଅଭିବ୍ୟକ୍ତି । କେବଳ ଯେଉଁ କାରିଗର ଓ ଶିଳ୍ପୀମାନଙ୍କର ନିଜ କାର୍ଯ୍ୟ ପ୍ରତି ଶ୍ରଦ୍ଧା ଥିବ ଏବଂ ମହାନ୍ ଉଦ୍ଦେଶ୍ୟ ପୂରଣ ଲାଗି ପରସ୍ପର ଭିତରେ ସହଯୋଗ କରୁଥିବେ, ସେହିମାନେ ହିଁ ଏପରି ପ୍ରାସାଦମାନ ତିଆରି କରିପାରନ୍ତି ।

ପଶ୍ଚିମ-ଇଉରୋପରେ ଗୋଥୀୟ ଶୈଳୀର ଏହି ଆବିର୍ଭାବ ଏକ ଆଶ୍ଚର୍ଯ୍ୟଜନକ ଜିନିଷ । ବିଶୃଙ୍ଖଳା, ଅରାଜକତା, ଅଜ୍ଞତା ଓ ଅସହିଷ୍ଣୁତା ଭିତରୁ ପ୍ରାପ୍ତ ସ୍ୱର୍ଗକୁ ପ୍ରାର୍ଥନା ପରି ଏହି ସୌନ୍ଦର୍ଯ୍ୟକର ଜିନିଷସବୁ ଗଢ଼ିଉଠିଲା । ଫ୍ରାନ୍ସ, ଉତ୍ତର-ଇଟାଲୀ, ଜର୍ମାନୀ ଓ ଇଂଲଣ୍ଡରେ ପ୍ରାୟ ଏକା ସମୟରେ ଗୋଥୀୟ ଧର୍ମମନ୍ଦିରମାନ ଗଢ଼ିଉଠିଥିଲା । ଏହା କିପରି ଆରମ୍ଭ ହେଲା, କେହି ଜାଣନ୍ତି ନାହିଁ । ସେମାନଙ୍କ କାରିଗରଙ୍କ ନାମ ମଧ୍ୟ ଜଣା ନାହିଁ । ମନେହୁଏ କୌଣସି ଗୋଟିଏ କାରିଗର ନୁହେଁ, କେତେକ ଲୋକସମଷ୍ଟିର ମିଳିତ ଇଚ୍ଛା, ଶକ୍ତି ଓ ଶ୍ରମର ଏହା ଅଭିବ୍ୟକ୍ତି । ଧର୍ମମନ୍ଦିରମାନଙ୍କର ଝରକାମାନଙ୍କରେ ବ୍ୟବହୃତ ଚିତ୍ରିତ କାଚ ଆଉ ଏକ ନୂତନ ଜିନିଷ । ଏହିସବୁ ଝରକାରେ ସୁନ୍ଦର ରଙ୍ଗରେ ସୂକ୍ଷ୍ମ ଚିତ୍ର ଅଙ୍କା ଯାଇଥିଲା ଏବଂ ତାହା ମଧ୍ୟଦେଇ ଯେଉଁ ଆଲୋକ ଆସେ, ତାହା ସୌଧସ୍ଥ ଗମ୍ଭୀର ଓ ସ୍ୱପ୍ନଜନକ ଭାବ ବଢ଼ାଇଦିଏ ।

କେତେଦିନ ତଳେ ମୋର ଏକ ଚିଠିରେ ମୁଁ ଏସିଆ ସହିତ ଇଉରୋପର ତୁଳନା କରିଥିଲି । ଆମେ ଦେଖିଥିଲେ ଯେ ସେତେବେଳେ ଇଉରୋପ ଅପେକ୍ଷା ଏସିଆ ଅଧିକ ସଂସ୍କୃତିସମ୍ପନ୍ନ ଓ ସଭ୍ୟ ଥିଲା; କିନ୍ତୁ ତଥାପି ଭାରତରେ ସେତେବେଳେ କୌଣସି ସର୍ଜନକ୍ଷମ କାର୍ଯ୍ୟ ହେଉ ନ ଥିଲା ଏବଂ ମୁଁ କହିଥିଲି ସୃଷ୍ଟି ହିଁ ଜୀବନର ଚିହ୍ନ । ଅର୍ଦ୍ଧସଭ୍ୟ ଇଉରୋପର ଏହି ଗୋଥୀୟ କାର୍ଯ୍ୟରୁ ସେଠାରେ ପ୍ରଚୁର ଜୀବନ ଥିବାର ଦେଖାଯାଏ । ବିଶୃଙ୍ଖଳା ଓ ସଭ୍ୟତାର ଅନୁନ୍ନତ ଅବସ୍ଥାରେ ନିହିତ ଅସୁବିଧାସତ୍ତ୍ୱେ ଏହି ଜୀବନ କାର୍ଯ୍ୟକାରୀ ହୁଏ ଏବଂ ନିଜକୁ ପ୍ରକାଶ କରିବାର ବାଟ ଖୋଜେ । ଏହିସବୁ ଆତ୍ମପ୍ରକାଶର କାରଣ ସ୍ୱରୂପ ଗୋଥୀୟ ସୌଧମାନ ସୃଷ୍ଟି ହୋଇଥିଲା । ଏଥିରୁ ଆମେ ଦେଖିବା, ପରେ ଅଙ୍କନବିଦ୍ୟା, ମୂର୍ତ୍ତିଗଠନ ଓ ଦୁଃସାହସିକ କାର୍ଯ୍ୟ କରିବା ଲାଗି ଇଚ୍ଛା ବଢ଼ିଲା ।

ତୁ କେତେକ ଗୋଥୀୟ ଧର୍ମମନ୍ଦିର ଦେଖିଛୁ । ତୋର ମନେ ଅଛି କି ନାହିଁ ମୋର ସନ୍ଦେହ । ଜର୍ମାନୀର କଲୋନଠାରେ ଥିବା ସୁନ୍ଦର ଧର୍ମମନ୍ଦିର ଆମେ ଦେଖିଥିଲେ ।

ଇଟାଲୀର ମିଲନଠାରେ ଅତି ସୁନ୍ଦର ଗୋଥିକ୍ ଧର୍ମମନ୍ଦିର ଅଛି । ସେହିପରି ଫ୍ରାନସର ସ୍ଟ୍ରାସ୍‌ବର୍ଗଠାରେ ବି ଅଛି; କିନ୍ତୁ ମୁଁ ସବୁ ସ୍ଥାନର ନାମ ଦେଇପାରିବି ନାହିଁ । ଏହିସବୁ ଧର୍ମମନ୍ଦିର ଜର୍ମାନୀ, ଫ୍ରାନ୍ସ, ଇଂଲଣ୍ଡ ଓ ଉତ୍ତର-ଇଟାଲୀରେ ବ୍ୟାପିରହିଛି । ଆଶ୍ଚର୍ଯ୍ୟ କଥା ଖାସ୍ ରୋମ୍‌ରେ କୌଣସି ପ୍ରସିଦ୍ଧ ଗୋଥିକ୍ ସୌଧ ନାହିଁ ।

୧୧ଶ ଓ ୧୨ଶ ଶତାବ୍ଦୀର ଏହି ମହାନ୍ ଗଠନଯୁଗ ଭିତରେ ଅଗୋଥିକ୍ ଗିର୍ଜାମାନ ମଧ୍ୟ ତିଆରି ହୋଇଥିଲା; ଯଥା—ପ୍ୟାରିସରେ ନୋତ୍ରେ ଡେମ୍‌ର ବା ବୃହତ୍ତ ଧର୍ମମନ୍ଦିର ଏବଂ ସମ୍ଭବତଃ ଭେନିସର ସେଣ୍ଟମାର୍କର ଧର୍ମମନ୍ଦିର ତୁ ଦେଖିଛୁ । ଏହା ବିଜାଣ୍ଟାଇନ କାର୍ଯ୍ୟର ଏକ ନମୁନା ଏବଂ ଏଥିରେ ସୁନ୍ଦର କାର୍ଯ୍ୟସବୁ ରହିଛି ।

ଧର୍ମବିଶ୍ୱାସ ଯୁଗରେ ପତନ ହେଲା ଏବଂ ତା ସଙ୍ଗେ ସଙ୍ଗେ ଗିର୍ଜା ଓ ଧର୍ମ ମନ୍ଦିର ନିର୍ମାଣ ବି ଗଲା । ଲୋକଙ୍କର ଚିନ୍ତା ଅନ୍ୟ ଦିଗରେ, ଯଥା—ନିଜର ବ୍ୟବସାୟ ବାଣିଜ୍ୟ, ନାଗରିକ ଜୀବନ ପ୍ରତି ପଡ଼ିଲା । ଧର୍ମ ମନ୍ଦିର ପରିବର୍ତ୍ତେ ନଗରର ହଲମାନ ତିଆରି ହେବାକୁ ଆରମ୍ଭ କଲା । ଏଣୁ ଆମେ ଦେଖୁ ଯେ ୧୪ଶ ଶତାବ୍ଦୀର ଆରମ୍ଭରୁ ସମଗ୍ର ଉତ୍ତର ଓ ପଶ୍ଚିମ-ଇଉରୋପରେ ସୁନ୍ଦର ଗୋଥିକ୍ ଟାଉନହଲ ବା ବ୍ୟବସାୟ ସଂଘର ହଲ ବିକ୍ଷିପ୍ତ ହୋଇ ଥିଲା । ଲଣ୍ଡନରେ ପାର୍ଲାମେଣ୍ଟ ଗୃହ ଗୋଥିକ୍ ଅଟେ, କିନ୍ତୁ କେବେ ଏଗୁଡ଼ିକ ତିଆରି ହୋଇଥିଲା ଏହା ମୁଁ ଜାଣେନା। ମୋର ଗୋଟିଏ ଧାରଣା ଅଛି, ମୂଳ ଗୋଥିକ୍ କୋଠାକୁ ଜାଳି ଦିଆଯାଇଥିଲା ଏବଂ ପରେ ସେହି ଗୋଥିକ୍ ଷ୍ଟାଇଲରେ ଆଉ ଏକ ସୌଧ ନିର୍ମାଣ କରାଯାଇଥିଲା ।

୧୧ଶ ୧୨ଶ ଶତାବ୍ଦୀରେ ଯେଉଁସବୁ ମହାନ୍ ଗୋଥିକ୍ ଧର୍ମମନ୍ଦିର ଗଢ଼ି ଉଠିଥିଲା, ତାହା ସହର ଓ ନଗରମାନଙ୍କରେ ଅବସ୍ଥିତ ଥିଲା । ପୁରାତନ ନଗରଗୁଡ଼ିକ ବେଢ଼ି ଉଠୁଥିଲା ଏବଂ ନୂତନ ନଗର ବୃଦ୍ଧି ପାଉଥିଲା । ସମଗ୍ର ଇଉରୋପରେ ପରିବର୍ତ୍ତନ ଦେଖାଦେଲା ଏବଂ ପ୍ରତ୍ୟେକ ସ୍ଥାନରେ ସହର ଜୀବନ ବୃଦ୍ଧି ପାଇଲା । ଅବଶ୍ୟ ରୋମାନ୍ ସାମ୍ରାଜ୍ୟ ପୂର୍ବକାଳରେ ଭୂମଧ୍ୟସାଗର ଉପକୂଳ ଚତୁର୍ଦ୍ଦିଗରେ ବଡ଼ ବଡ଼ ସହର ଗଢ଼ି ଉଠିଥିଲା; କିନ୍ତୁ ରୋମ ଓ ଗ୍ରୀକ୍-ରୋମାନ ସଭ୍ୟତାର ପତନ ପରେ ଏହି ସହରଗୁଡ଼ିକ ମଧ୍ୟ ଧ୍ୱଂସ ପାଇଲା । କନ୍‌ଷ୍ଟାଣ୍ଟିନୋପଲ ବ୍ୟତୀତ ଇଉରୋପର ପ୍ରାୟ ଆଉ ବଡ଼ ନଗର ନ ଥିଲା । ସ୍ପେନ କଥା ସ୍ୱତନ୍ତ୍ର; ସେଠାରେ ଆରବମାନେ ଥିଲେ । ଏହି ସମୟରେ ଏସିଆରେ ଭାରତ, ଚୀନ ଓ ଆରବୀୟ ଜଗତରେ ବଡ଼ ବଡ଼ ନଗରମାନ ସମୃଦ୍ଧିଶାଳୀ ହୋଇଥିଲା; କିନ୍ତୁ ଇଉରୋପରେ ଏସବୁ ନ ଥିଲା । ନଗର, ସଂସ୍କୃତି ଓ ସଭ୍ୟତା ଏକାଠି ଗ୍ଲଲା ପରି ମନେହୁଏ ଏବଂ ରୋମାନ ବ୍ୟବସ୍ଥାର ପତନ ପରେ ଦୀର୍ଘକାଳ ପର୍ଯ୍ୟନ୍ତ ଇଉରୋପରେ ଏସବୁ କିଛି ନ ଥିଲା ।

କିନ୍ତୁ ବର୍ତ୍ତମାନ ପୁନର୍ବାର ନାଗରିକ ଜୀବନର ପୁନରୁଦ୍ଧାର ହେଲା । ବିଶେଷ ଭାବରେ ଇଟାଲୀରେ ଏହିସବୁ ନଗର ବୃଦ୍ଧି ପାଇଲା । ପବିତ୍ର ରୋମାନ୍ ସାମ୍ରାଜ୍ୟର ସମ୍ରାଟଙ୍କର ଏଗୁଡ଼ିକ କଣ୍ଟକରୂପେ ରହିଥିଲା । କାରଣ ଏଗୁଡ଼ିକ ନିଜର କେତେକ ସ୍ୱାଧୀନତା ଛାଡ଼ିବାକୁ ସମ୍ମତ ନ ଥିଲା । ଇଟାଲୀ ଓ ଅନ୍ୟ ସ୍ଥାନର ଏହିସବୁ ନଗରମାନ ବଣିକଶ୍ରେଣୀ ଏବଂ ବୁର୍ଜୋୟା ବା ମଧ୍ୟବିତ୍ତ ଶ୍ରେଣୀର ବୃଦ୍ଧିର ପରିଚାୟକ ।

ଅଡ୍ରିଆଟିକ ସାଗର ଉପରେ କର୍ତ୍ତୃତ୍ୱ କରୁଥିବା ଭେନିସ୍ ଏକ ସ୍ୱାଧୀନ ପ୍ରଜାତନ୍ତ୍ର ହୋଇଥିଲା । ଆଜି ମଧ୍ୟ ଏହା ଖୁବ୍ ସୁନ୍ଦର । ଏହାର ନାଳଗୁଡ଼ିକର ମଧ୍ୟଦେଇ ସମୁଦ୍ରଜଳ ଯାତାୟାତ କରେ । କଥିତ ଅଛି ଯେ ଏହି ନଗର ନିର୍ମିତ ହେବା ପୂର୍ବରୁ ଏହା ଏକ ସନ୍ତସନ୍ତିଆ ଜାଗା ଥିଲା । ଯେତେବେଳେ ହୁନ୍ ଆଟିଲା ନିଆଁ ଓ ଖଣ୍ଡା ଘେନି ଆକ୍ୱିଲିଆ ଭିତରକୁ ପ୍ରବେଶ କଲେ, ସେତେବେଳେ କେତେକ ପଳାତକ ଭେନିସର ସନ୍ତସନ୍ତିଆ ଜାଗାକୁ ପଳାଇ ଯାଇଥିଲେ । ସେମାନେ ସେଠାରେ ଭେନିସ ନଗର ସ୍ଥାପନ କଲେ । ଏହା ପୂର୍ବ ଓ ପଶ୍ଚିମ ରୋମ ସାମ୍ରାଜ୍ୟ ମଧ୍ୟରେ ଅବସ୍ଥିତ ଥିବାରୁ ଏମାନେ ସ୍ୱାଧୀନ ହୋଇପାରିଥିଲେ । ଭାରତ ଓ ପ୍ରାଚ୍ୟ ଦେଶମାନଙ୍କରୁ ଭେନିସକୁ ବେପାର ଚାଲିଥିଲା ଯଦ୍ୱାରା ଅନେକ ସମ୍ପଦ ଆଣୁଥିଲା ଏବଂ ଏହା ଏକ ନୌଶକ୍ତି ଗଢ଼ିବା ସଙ୍ଗେ ସଙ୍ଗେ ସମୁଦ୍ରରେ ପ୍ରଭାବଶାଳୀ ହେଲା । ଏହା ଏକ ପ୍ରଜାତନ୍ତ୍ର; ଏଥିରେ ଧନୀ ଲୋକ ଥିଲେ ଏବଂ ଏହାର ଏକ ସଭାପତି ଥିଲେ । ତାଙ୍କୁ ଡୋଗେ ବୋଲି କୁହାଯାଉଥିଲା । ୧୭୯୭ ଖ୍ରୀ:ରେ ଏକ ବିଜେତା ଭାବରେ ନେପୋଲିଅନ୍ ଭେନିସରେ ପ୍ରବେଶ କଲା ପର୍ଯ୍ୟନ୍ତ ଏହି ପ୍ରଜାତନ୍ତ୍ର ତିଷ୍ଠି ରହିଥିଲା । କଥିତ ଅଛି ଯେ ଡୋଗେ ଅତ୍ୟନ୍ତ ବୃଦ୍ଧ ହୋଇ ଯାଇଥିଲେ ଏବଂ ସେହିଦିନ ମରି ଯାଇଥିଲେ । ସେ ହିଁ ଭେନିସର ଶେଷ ଡୋଗେ ।

ଇଟାଲୀର ଅନ୍ୟପାଖରେ ଜେନେଓ୍ୱା । ଏହା ମଧ୍ୟ ସମୁଦ୍ରବାହୀ ଜାହାଜର ଏକ ପ୍ରଧାନ ବାଣିଜ୍ୟକେନ୍ଦ୍ର । ଭେନିସର ପ୍ରତିଦ୍ୱନ୍ଦୀ ଏହା ମଧ୍ୟରେ ବଲୋଗ୍ନା, ପିସା, ଭେରୋନା ଓ ଫ୍ଲୋରେନ୍ସର ବିଶ୍ୱବିଦ୍ୟାଳୟ ସହରମାନ ଥିଲା । ସେଠାରେ ଖୁବ୍ ଶୀଘ୍ର ଏତେ ଅଧିକ କଳାବିତ୍ ବାହାରିଥିଲେ ଏବଂ ଏହା ଅଳ୍ପଦିନ ପରେ ପ୍ରସିଦ୍ଧ ମେଡ଼ିସି ପରିବାରର ଶାସନାଧୀନରେ ମୁଣ୍ଡ ଟେକିଥିଲେ । ଉତ୍ତର-ଇଟାଲୀରେ ମିଲାନ ମଧ୍ୟ ଆଗରୁ ଜିନିଷ ତିଆରିର ପ୍ରଧାନ କେନ୍ଦ୍ର ଥିଲା ଏବଂ ଦକ୍ଷିଣରେ ନେପ୍‌ଲସ ବି ବୃଦ୍ଧି ପାଉଥିଲା ।

ଫ୍ରାନ୍ସରେ ହିଉ କାପେଟ୍ ରାଜଧାନୀ କରିଥିବା ପ୍ୟାରିସ ନଗର ବି ଫ୍ରାନ୍ସର ବୃଦ୍ଧି ସଙ୍ଗେ ସଙ୍ଗେ ବଢ଼ୁଥିଲା । ପ୍ୟାରିସ୍ ସର୍ବଦା ଫ୍ରାନ୍ସର ହୃତ୍‌ପିଣ୍ଡ ଓ କେନ୍ଦ୍ରସ୍ଥଳୀ ହୋଇଆସିଛି । ଅନ୍ୟ ଦେଶମାନଙ୍କର ଅନ୍ୟ ରାଜଧାନୀମାନ ବି ହୋଇଛି, କିନ୍ତୁ ଗତ ୧୦୦୦ ବର୍ଷ ଭିତରେ ପ୍ୟାରିସ ଫ୍ରାନ୍ସ ଉପରେ ଯେତେ କର୍ତ୍ତୃତ୍ୱ କରିଛି, ସେପରି କେହି କରି

ନାହିଁ । ଫ୍ରାନ୍‌ସ୍‌ରେ ଲ୍ୟନ୍‌ସ୍, ମାର୍ସେଲ୍‌ସ (ଏହା ଏକ ଅତି ପୁରାତନ ବନ୍ଦର), ଅର୍ଲିଅନ୍‌ସ୍, ବୋର୍ଦୋ ଓ ବୁଲୋନ ପ୍ରଭୃତି ପ୍ରଧାନ ସହର ଥିଲା ।

ଇଟାଲି ପରି ଜର୍ମାନୀରେ ବିଶେଷତଃ ୧୩ଶ ଓ ୧୪ଶ ଶତାବ୍ଦୀରେ ଅନେକଗୁଡ଼ିଏ ସ୍ୱାଧୀନ ନଗର ବୃଦ୍ଧି ପାଇଥିଲା । ସେଗୁଡ଼ିକର ଲୋକସଂଖ୍ୟା ବୃଦ୍ଧି ହେଲା ଏବଂ ସେଗୁଡ଼ିକ କ୍ଷମତା ଓ ଧନବୃଦ୍ଧି ସଙ୍ଗେ ସଙ୍ଗେ ସାହସୀ ହେଲେ ଓ ସାମନ୍ତ-ମାନଙ୍କ ସହିତ ଯୁଦ୍ଧ କଲେ । ସମ୍ରାଟ ବଡ଼ ସାମନ୍ତମାନଙ୍କୁ ଦବାଇ ରଖିବା ନିମନ୍ତେ ଗ୍ରହୁ-ଥିବାରୁ ବେଳେ ବେଳେ ଏଗୁଡ଼ିକୁ ଉତ୍ସାହିତ କରୁଥିଲେ । ନିଜକୁ ରକ୍ଷାକରିବା ନିମନ୍ତେ ଏହି ନଗରମାନଙ୍କର ବଡ଼ ବଡ଼ ବାଣିଜ୍ୟସଙ୍ଘ ଓ ସମିତି ଗଢ଼ାଗଲା । ବେଳେ ବେଳେ ଏହିସବୁ ସମିତିଗୁଡ଼ିକ ସାମନ୍ତମାନଙ୍କର ଗଠିତ ସମିତି ସହ ପ୍ରକୃତରେ ଯୁଦ୍ଧ କରୁଥିଲେ । ଏହିସବୁ ବର୍ଦ୍ଧିଷ୍ଣୁ ସହରମାନଙ୍କ ଭିତରୁ ହାମ୍ବର୍ଗ, ବ୍ରେମେନ, କଲୋନ, ଫ୍ରାଙ୍କଫର୍ଟ, ମ୍ୟୁନିକ, ଡାନ୍‌ଜିଗ, ନ୍ୟୁରେମ୍ବର୍ଗ ଓ ଡ୍ରେସ୍‌ଡେନ୍ ପ୍ରଧାନ । ନେଦରଲାଣ୍ଡସରେ ( ଏବେ ହଲାଣ୍ଡ ଓ ବେଲଜିଅମ ନାମରେ ପରିଚିତ ) ଘ୍ୟାଣ୍ଟ୍, ଓ୍ୱାର୍ପ, ବ୍ରୁଗେସ୍ ଓ ଘେଣ୍ଟ ସହର ଥିଲା । ଏଠାରେ ସର୍ବଦା ବାଣିଜ୍ୟ ବୃଦ୍ଧି ପାଉଥିଲା । ଇଂଲଣ୍ଡରେ ଅବଶ୍ୟ ଲଣ୍ଡନ ଥିଲା; କିନ୍ତୁ ଏହା ସେତେବେଳେ ଆକାର, ଧନ ବା ବାଣିଜ୍ୟରେ ମହାଦେଶର କୌଣସି ପ୍ରଧାନ ନଗର ସହିତ ପ୍ରତିଯୋଗିତା କରିପାରୁ ନ ଥିଲା । ଅକ୍‌ସଫୋର୍ଡ ଓ କେମ୍ବ୍ରିଜର ଦୁଇଟି ବିଶ୍ୱବିଦ୍ୟାଳୟ ସେତେବେଳେ ଶିକ୍ଷାକେନ୍ଦ୍ର ରୂପେ ପ୍ରାଧାନ୍ୟ ଲଭିଥିଲା । ଇଉରୋପର ପୂର୍ବରେ ଭିଏନା ନଗର ଥିଲା । ଏହା ଇଉରୋପରେ ସବୁଠାରୁ ପୁରାତନ ସହର । ରୁଷରେ ମସ୍କୋ, କିଏଭ ଓ ନଭୋଗୋରଡ଼ ଥିଲା ।

ଏହିସବୁ ନୂତନ ନଗର ବା ସେଥିରୁ ଅଧିକାଂଶ ପୁରୁଣା ଢଙ୍ଗର ରାଜକୀୟ ନଗରମାନଙ୍କଠାରୁ ଅବଶ୍ୟ ପୃଥକ ଢଙ୍ଗର । ଇଉରୋପର ଜାଗ୍ରତ ନଗରମାନଙ୍କର ଗୁରୁତ୍ୱ କୌଣସି ସମ୍ରାଟ ବା ରାଜା ଯୋଗୁଁ ନୁହେଁ—ଏହା ଯେଉଁସବୁ ବେପାର ନିୟନ୍ତ୍ରଣ କରୁଥିଲା ସେଥିଯୋଗୁଁ ପ୍ରାଧାନ୍ୟ ଲଭିଥିଲା । ଶ୍ରେଷ୍ଠ ସାମନ୍ତମାନଙ୍କଠାରେ ନୁହେଁ, ବଣିକ ଶ୍ରେଣୀରେ ହିଁ ତାର ଶକ୍ତି ନିର୍ଭର କରୁଥିଲା । ଏଗୁଡ଼ିକ ବଣିକସହର ଥିଲା । ସୁତରାଂ ଏହିସବୁ ନଗରର ଆବିର୍ଭାବ ଅର୍ଥ ବୁର୍ଜୋୟା ଶ୍ରେଣୀର ଆବିର୍ଭାବ । ଆମେ ପରେ ଦେଖିବା ଏହି ବୁର୍ଜୋୟା ଶ୍ରେଣୀର ଶକ୍ତି ବୃଦ୍ଧି ହେବାରେ ଲାଗିଲା, ଏହା ଫଳରେ ତାର ସହିତ ରାଜା ଓ ସାମନ୍ତମାନଙ୍କ ସହିତ ଲଢ଼ାଇ କଲା ଏବଂ ତାଙ୍କଠୁଁ କ୍ଷମତା ଛଡ଼ାଇନେଲା; କିନ୍ତୁ ଆମେ ଯେଉଁ କାଳର କଥା ବିଚାର କରୁଛେ, ଏହା ତାର ଦୀର୍ଘକାଳ ପରେ ଘଟିଥିଲା ।

ମୁଁ କହିଛି ଯେ ନଗର ସହିତ ସଭ୍ୟତା ପ୍ରାୟ ବଢ଼ିଥାଏ । ନଗରର ବୃଦ୍ଧି ସଙ୍ଗେ ସଙ୍ଗେ ଶିକ୍ଷା ଓ ସ୍ୱାଧୀନତାର ଭାବ ବି ବୃଦ୍ଧି ପାଏ । ଗ୍ରାମ୍ୟ ଅଞ୍ଚଳରେ ବାସକରୁଥିବା

ଲୋକେ ବିକ୍ଷିପ୍ତ ହୋଇ ଯାଆନ୍ତି ଏବଂ ଅନେକ ସମୟରେ ବଡ଼ କୃଷସ୍ଥା ବିଚ୍ଛିନ୍ନ ହୋଇଯାନ୍ତି । ସେମାନଙ୍କୁ ପ୍ରକୃତିର ଦୟା ଉପରେ ନିର୍ଭର କରିବାକୁ ପଡ଼େ । ସେମାନେ କଠିନ ଶ୍ରମ କରନ୍ତି ଓ ପ୍ରାୟ ବିଶ୍ରାମ ପାଆନ୍ତି ନାହିଁ ଏବଂ ତାଙ୍କର ପ୍ରଭୁମାନଙ୍କୁ ଅମାନ୍ୟ କରିବାର ସାହସ କରନ୍ତି ନାହିଁ । ନଗରଗୁଡ଼ିକରେ ବହୁସଂଖ୍ୟକ ଲୋକେ ଏକତ୍ର ବାସ କରନ୍ତି, ଅଧିକ ସଭ୍ୟ ଜୀବନଯାପନ କରନ୍ତି, ଶିକ୍ଷା ପାଇବା, ଆଲୋଚନା ସମାଲୋଚନା ଓ ଚିନ୍ତା କରିବା ସୁବିଧା ସେମାନଙ୍କର ଥାଏ ।

ତେଣୁ ସାମନ୍ତ ପ୍ରଭୁମାନଙ୍କର ରାଜନୈତିକ କର୍ତ୍ତୃତ୍ୱ ଓ ଗୀର୍ଜାମାନଙ୍କର ଆଧ୍ୟାତ୍ମିକ କର୍ତ୍ତୃତ୍ୱ ବିରୁଦ୍ଧରେ ସ୍ୱାଧୀନତାର ଭାବ ବୃଦ୍ଧି ପାଇଲା । ଧର୍ମବିଶ୍ୱାସର ଯୁଗ ଲୋପହେଲା ଏବଂ ସନ୍ଦେହ ଆରମ୍ଭ ହେଲା । ପୋପ ଓ ଗୀର୍ଜାର କର୍ତ୍ତୃତ୍ୱ ଆଉ ସବଦା ଅନ୍ଧଭାବରେ ପାଳନ କରାଗଲା ନାହିଁ । ସମ୍ରାଟ ଦ୍ୱିତୀୟ ଫ୍ରେଡ଼ରିକ ପୋପଙ୍କୁ କିପରି ବ୍ୟବହାର କଲେ, ଆମେ ଦେଖିଛେ । ଏହି ଅବଜ୍ଞାର ଭାବ ବୃଦ୍ଧି ପାଇବାର ଆମେ ଦେଖୁଁ ।

୧୨ଶ ଶତାବ୍ଦୀଠାରୁ ଏଣିକି ଶିକ୍ଷାର ପୁନରୁଦ୍ଧାର ବି ହୋଇଥିଲା । ଇଉରୋପରେ ଲାଟିନ୍ ହିଁ ଶିକ୍ଷିତ ଲୋକଙ୍କ ଭିତରେ ସାଧାରଣ ପ୍ରଚଳିତ ଭାଷା ଥିଲା ଏବଂ ଲୋକେ ଶିକ୍ଷା ଅନ୍ୱେଷଣରେ ଏକ ବିଶ୍ୱବିଦ୍ୟାଳୟରୁ ଅନ୍ୟ ବିଶ୍ୱବିଦ୍ୟାଳୟକୁ ଯାତ୍ରା କରୁଥିଲେ । ବିଖ୍ୟାତ ଇଟାଲୀ କବି ଦାନ୍ତେ ଆଲିଗୋଏରି ୧୨୬୫ ଖ୍ରୀଃରେ ଜନ୍ମ ହୋଇଥିଲେ । ଇଟାଲୀର ଆଉ ଏକ ମହାନ୍ କବି ପେଟ୍ରାର୍କ ୧୩୦୪ ରେ ଜନ୍ମ ହୋଇଥିଲେ । କିଛିଦିନ ପରେ ଆଦିମ ଇଂରେଜ କବି ଚସର ଇଂଲଣ୍ଡରେ ଖ୍ୟାତି ଲଭିଥିଲେ ।

କିନ୍ତୁ ଶିକ୍ଷାର ପୁନରୁଦ୍ଧାର ଅପେକ୍ଷା ବୈଜ୍ଞାନିକ ଭାବର କ୍ଷୀଣ ସୂଚନା ଆହୁରି ଅଧିକ ଆଗ୍ରହଜନକ । ପରବର୍ତ୍ତୀ ବର୍ଷମାନଙ୍କରେ ଇଉରୋପରେ ଏହା ଖୁବ ଅଧିକ ଭାବରେ ବୃଦ୍ଧି ପାଇଥିଲା । ତୋର ମନେଥିବ, ମୁଁ ତୋତେ କହିଥିଲି ଯେ ଆରବମାନଙ୍କ ମଧ୍ୟରେ ଏହି ଭାବ ଥିଲା ଏବଂ ଏହି ଅନୁସାରେ ସେମାନେ କେତେକ ପରୀକ୍ଷାଗାରରେ କାର୍ଯ୍ୟ କରିଥିଲେ । ମଧ୍ୟଯୁଗରେ ଇଉରୋପରେ ଏକ ଖୋଲା ମନରେ ଏପରି ଅନୁସନ୍ଧାନ ବା ପ୍ରୟୋଗର ଭାବ ରହିବା କଷ୍ଟକର ଥିଲା । ଧର୍ମ ଏହା ସହ୍ୟ କରୁ ନ ଥିଲା; କିନ୍ତୁ ଧର୍ମର ବାରଣ ସତ୍ତ୍ୱେ ଏହି ଭାବନା ଦୃଷ୍ଟିଗୋଚର ହେବାକୁ ଲାଗିଲା । ରୋଜର ବେକନ ନାମକ ଜଣେ ଇଂରେଜ, ଯେଉଁମାନଙ୍କଠାରେ ଏତେବେଳେ ଇଉରୋପର ଏହି ବୈଜ୍ଞାନିକ ଭାବର ପ୍ରଥମ ଗୁଣ ଦେଖାଯାଇଥିଲା, ତାଙ୍କ ଭିତରୁ ସେ ଜଣେ । ସେ ୧୩ଶ ଶତାବ୍ଦୀରେ ଅକ୍ସଫୋର୍ଡରେ ବାସ କରୁଥିଲେ ।

# ୭୫ । ଆଫଗାନମାନେ ଭାରତ ଆକ୍ରମଣ କଲେ

ଜୁନ୍ ୨୩, ୧୯୩୨

କାଲି ତୋତେ କିଛି ଲେଖିପାରି ନାହିଁ । ମୁଁ ଲେଖିବାକୁ ବସିଲାବେଳକୁ ମୋର ଜେଲ ଓ ଚତୁଃପାର୍ଶ୍ୱସ୍ଥ ଅବସ୍ଥା ଭୁଲିଗଲି ଏବଂ ଚନ୍ଦ୍ରାର ଗଡ ସଙ୍ଗେ ସଙ୍ଗେ ମଧ୍ୟଯୁଗର ଦୁନିଆରେ ଭ୍ରମଣ କରିବାରେ ଲାଗିଲି; କିନ୍ତୁ ଆହୁରି ଅଧିକ ବେଗରେ ବର୍ତ୍ତମାନ ଦୁନିଆ ମୋତେ ଟାଣିଆଣିଲା ଏବଂ ଏକପ୍ରକାର ଯନ୍ତ୍ରଣାଦାୟକ ଭାବରେ ଜେଲ ଚେତନା ପଶିଲା । ମୋତେ କୁହାଗଲା ଯେ ଉପରୁ ହୁକୁମ ଆସିଛି ମାସକ ପର୍ଯ୍ୟନ୍ତ ମମି ଓ ଦିଦାଙ୍କଙ୍କ* ସହିତ ସାକ୍ଷାତ କରିପାରିବି ନାହିଁ । କାହିଁକି ? ତା ମୋତେ ଜଣାଇ ଦିଆଗଲା ନାହିଁ । ବନ୍ଦୀକୁ କାରଣ କାହିଁକି କୁହାଯିବ ? ସେମାନେ ଏହିଠାରେ ଦିଶଦିନ ହେଲା ଆସନ୍ତା ମୁଲାକାତ୍ ଦିନକୁ ଅପେକ୍ଷା କରି ରହିଛନ୍ତି ଏବଂ ତାଙ୍କର ଅପେକ୍ଷା କରିବାର କିଛି ଫଳ ହେଉ ନାହିଁ ଏବଂ ସେମାନେ ଅବଶ୍ୟ ଫେରିଯିବେ । ଆମ ପ୍ରତି ଏହିପରି ଭଦ୍ର ବ୍ୟବହାର କରାଯାଉଛି ! ଆଚ୍ଛା ଏଥିକି ଆମର ଅବଶ୍ୟ ଖାତିର କରିବା ଉଚିତ୍ ନୁହେଁ । ଆମର ଦୈନନ୍ଦିନ କାର୍ଯ୍ୟର ଏହା ଗୋଟିଏ ଅଙ୍ଗ ଏବଂ ଜେଲଖାନା ତ ଜେଲଖାନା— ଏଇଟା ଆମର ଭୁଲିବା ଉଚିତ୍ ନୁହେଁ ।

ଏକ କଠୋର ଜାଗରଣ ପରେ ଅତୀତ ପାଇଁ ବର୍ତ୍ତମାନକୁ ଛାଡ଼ିବା ମୋ ପକ୍ଷରେ ସମ୍ଭବ ନୁହେଁ । କିନ୍ତୁ ଏକ ରାତି ବିଶ୍ରାମ ପରେ ଆଜି ମୁଁ ଟିକିଏ ଭଲ ବୋଧ କରୁଛି; ତେଣୁ ଚିଠିକା ଲେଖା ଆରମ୍ଭ କରିଛି ।

ଆମେ ଏବେ ଭାରତକୁ ଫେରିଆସିବା । ଆମେ ଅନେକ ଦିନ ହେଲା ଦୂରରେ ଥିଲେ । ଇଉରୋପ ମଧ୍ୟଯୁଗର ଅନ୍ଧକାର ଭିତରୁ ବାହାରି ଆସିବାକୁ ସଂଗ୍ରାମ କରୁଥିବା ବେଳେ ଏଠାରେ କ'ଣ ହେଉଥିଲା ?— ଯେତେବେଳେ ସାମନ୍ତ ପ୍ରଥାର ସ୍ତୂପ ଅଧୀନରେ ଲୋକେ ପେଷିହୋଇ ଯାଉଥିଲେ ଏବଂ ସାଧାରଣ ବିଶୃଙ୍ଖଳା ଓ କୁଶାସନ ପ୍ରଚଳିତ ଥିଲା, ଯେତେବେଳେ ପୋପ ଏବଂ ସମ୍ରାଟ ପରସ୍ପର ବିରୁଦ୍ଧରେ ସଂଗ୍ରାମ କରୁଥିଲେ ଏବଂ ଇଉରୋପର ରାଜ୍ୟସବୁ ପ୍ରକୃତ ରୂପ ଧାରଣ କରୁଥିଲା, କ୍ରୁଜେଡ଼ ସମୟରେ ପ୍ରଭୁତ୍ୱ ଲାଗି ଇସଲାମ ଓ ଖ୍ରୀଷ୍ଟୀୟ ଭିତରେ ସଂଗ୍ରାମ ଲାଗିଲା, ସେତେବେଳେ ଏଠାରେ କି ଅବସ୍ଥା ଥିଲା ?

---

* ଇନ୍ଦିରାର ସାଆନ୍ତ ମା ଶ୍ରୀମତୀ ସ୍ୱରୂପାରାଣୀ ନେହେରୁ ।

ମଧ୍ୟଯୁଗର ପ୍ରଥମ କାଳରେ ଭାରତ ଅବସ୍ଥା ବିଷୟରେ ଆମେ କିଞ୍ଚିତ ଦୃଷ୍ଟିପାତ କରିବେ । ଆମେ ଦେଖିବେ ସୁଲତାନ ମାମୁଦ ଉତ୍ତର-ପଶ୍ଚିମରେ ଗଜନୀରୁ ଉତ୍ତର-ଭାରତର ସମୃଦ୍ଧଶୀଳ ସମତଳଭୂମିକୁ ମାଡ଼ି ଆସିଥିଲେ ଏବଂ ଲୁଣ୍ଠନ ଓ ଧ୍ୱଂସ କରିଥିଲେ । ମାମୁଦଙ୍କ ଆକ୍ରମଣ ପ୍ରଚଣ୍ଡ ହେଲେ ସୁଦ୍ଧା ଭାରତରେ ଏହା କୌଣସି ବିଶେଷ ବା ସ୍ଥାୟୀ ପରିବର୍ତ୍ତନ କରିପାରି ନ ଥିଲା । ଏଗୁଡ଼ିକ ଫଳରେ ଦେଶ ବିଶେଷତଃ ଉତ୍ତରାଞ୍ଚଳ ବଡ଼ ଆଘାତ ପାଇଲା ଏବଂ ସେ ଅସଂଖ୍ୟ ସୁନ୍ଦର ମନ୍ଦିର ଓ ସହର କୋଠାମାନ ଧ୍ୱଂସ କରିଦେଲେ । ମାତ୍ର କେବଳ ସିନ୍ଧୁ ଓ ପଞ୍ଜାବର ଏକାଂଶ ଗଜନୀ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହୋଇଥିଲା । ଉତ୍ତରର ଅବଶିଷ୍ଟାଂଶ ଅଚିରେ ଏଥିରୁ ମୁକ୍ତ ହୋଇଗଲା; ଦକ୍ଷିଣ ବା ବଙ୍ଗଳା କିଛି ସ୍ପର୍ଶ ହୋଇ ନ ଥିଲା । ମାମୁଦଙ୍କ ପରେ ଆନୁମାନିକ ୧୫୦ ବର୍ଷ ବା ଅଧିକ କାଳ ପର୍ଯ୍ୟନ୍ତ ମୁସଲମାନ ଅଭିଯାନ ବା ଇସଲାମ ଭାରତରେ ଅଧିକ ଉନ୍ନତି କରିପାରି ନ ଥିଲା ।

୧୨ଶ ଶତାବ୍ଦୀର (ପ୍ରାୟ ୧୧୮୬ ଖ୍ରୀଷ୍ଟାବ୍ଦ) ଶେଷବେଳକୁ ଉତ୍ତର-ପଶ୍ଚିମରୁ ଏକ ନୂତନ ଆକ୍ରମଣର ଢେଉ ଆସିଲା । ଆଫଗାନିସ୍ଥାନରେ ଜଣେ ଆଫଗାନ ଦଳପତି ଜାଗ୍ରତ ହେଲେ । ସେ ଗଜନୀ ଅଧିକାର କଲେ ଏବଂ ଗଜନୀ ସାମ୍ରାଜ୍ୟକୁ ଶେଷ କରିଦେଲେ । ତାଙ୍କୁ ସାହାବୁଦ୍ଦିନ ଘୋରି ବୋଲି କହନ୍ତି (ଆଫଗାନିସ୍ଥାନର କୌଣସି କ୍ଷୁଦ୍ର ସହରର ନାମ ଘୁର) । ସେ ଲାହୋରକୁ ଆସିଲେ, ତାହା ଅଧିକାର କଲେ ଏବଂ ତାପରେ ଦିଲ୍ଲୀ ଯାତ୍ରାକଲେ । ପୃଥ୍ୱୀରାଜ ଚୌହାନ ଦିଲ୍ଲୀର ରାଜା ଥିଲେ ଏବଂ ତାଙ୍କ ନେତୃତ୍ୱରେ ଉତ୍ତର-ଭାରତର ଅନେକ ସାମନ୍ତ ଆକ୍ରମଣକାରୀ ବିରୁଦ୍ଧରେ ଲଢ଼ିଲେ ଏବଂ ସେମାନଙ୍କୁ ସମ୍ପୂର୍ଣ୍ଣରୂପେ ପରାସ୍ତ କରିଦେଲେ; କିନ୍ତୁ ଏହା ଅଳକ୍ଷଣ ଲାଗି । ତତ୍ପର ବର୍ଷ ସାହାବୁଦ୍ଦିନ ଅଧିକ ସୈନ୍ୟ ନେଇ ପୁନର୍ବାର ଆସିଲେ ଏବଂ ଏଥରକ ପୃଥ୍ୱୀରାଜକୁ ପରାସ୍ତ କରି ହତ୍ୟା କଲେ ।

ପୃଥ୍ୱୀରାଜ ଜଣେ ଲୋକପ୍ରିୟ ବୀର ଭାବରେ ପରିଚିତ ଏବଂ ତାଙ୍କ ବିଷୟରେ ଅନେକ କିମ୍ବଦନ୍ତୀ ଓ ଗୀତ ପ୍ରଚଳିତ ଅଛି । ଏଗୁଡ଼ିକ ଭିତରେ କନୌଜର ରାଜା ଜୟଚନ୍ଦ୍ରଙ୍କ ଝିଅଙ୍କୁ ହରଣ କରିଥିବା କାହାଣୀଟି ଖୁବ୍ ପ୍ରସିଦ୍ଧ; କିନ୍ତୁ ଏପରି କରିବାରେ ତାଙ୍କର ବହୁତ କ୍ଷତି ହେଲା । ଏଥିରେ ତାଙ୍କର ସାହସିକ ଅନୁଗାମୀମାନଙ୍କର ଜୀବନ ଦେବାକୁ ପଡ଼ିଲା ଏବଂ ଏକ ପ୍ରଭାବଶାଳୀ ରାଜା ସହିତ ଶତ୍ରୁ ହେବାକୁ ପଡ଼ିଲା । ଏହା ବିବାଦ ଓ ପରସ୍ପର କଳହର ବୀଜ ବପନ କଲା; ତେଣୁ ଆକ୍ରମଣକାରୀ ପକ୍ଷରେ ଜୟ କରିବା ସହଜ କରିଦେଲା ।

ଏହାପରେ ୧୧୯୨ ଖ୍ରୀଷ୍ଟାବ୍ଦରେ ସାହାବୁଦ୍ଦିନଙ୍କ ପ୍ରଥମ ବିଜୟ ହେଲା । ଏହା ଫଳରେ ଭାରତରେ ମୁସଲମାନ ଶାସନ ସ୍ଥାପିତ ହେଲା । ଧୀରେ ଧୀରେ ପୂର୍ବ ଓ ଦକ୍ଷିଣକୁ ଆକ୍ରମଣକାରୀମାନେ ମାଡ଼ିଗଲେ । ଅଧିକ ୧୫୦ ବର୍ଷ ଭିତରେ (୧୩୪୦ ବେଳକୁ) ମୁସଲମାନ ଶାସନ ଦକ୍ଷିଣର ଅନେକ ଅଞ୍ଚଳରେ ବିସ୍ତୃତି ଲଭିଲା । ତାପରେ ଦକ୍ଷିଣରେ ଏହାର ପତନ ହେଲା । ନୂଆ ରାଜ୍ୟମାନ ଗଢ଼ି ଉଠିଲା । ସେଥିଭିତରୁ କେତେକ ହିନ୍ଦୁ ଓ କେତେକ ମୁସଲମାନ । ବିଜୟନଗର ହିନ୍ଦୁ ସାମ୍ରାଜ୍ୟ ହିଁ ଉଲ୍ଲେଖଯୋଗ୍ୟ । ଦୁଇ ଶହ ବର୍ଷ ପର୍ଯ୍ୟନ୍ତ ଇସ୍‌ଲାମ କେତେକ ପରିମାଣରେ କ୍ଷୀଣ ହୋଇଗଲା ଏବଂ ୧୬ଶ ଶତାବ୍ଦୀର ମଧ୍ୟଭାଗରେ ଯେତେବେଳେ ଆକବର ଆସିଲେ, ସେତେବେଳେ ପ୍ରାୟ ସମଗ୍ର ଭାରତରେ ସେମାନେ ବିସ୍ତୃତି ଲଭ କଲେ ।

ଭାରତକୁ ମୁସଲମାନ ଆକ୍ରମଣକାରୀମାନଙ୍କ ଆଗମନ ଫଳରେ ଅନେକ ପ୍ରତିକ୍ରିୟା ଜାତ ହେଲା । ମନେରଖ, ଏହି ଆକ୍ରମଣକାରୀ ହେଉଛନ୍ତି ଆଫଗାନ ଏବଂ ସେମାନେ ଆରବ, ଇରାନୀ, ବା ପଶ୍ଚିମ ଏସିଆର ସଂସ୍କୃତ ଓ ସୁସଭ୍ୟ ମୁସଲମାନ ନୁହନ୍ତି । ସଭ୍ୟତା ଦୃଷ୍ଟିରୁ ଏହି ଆଫଗାନମାନେ ଭାରତୀୟଙ୍କ ତୁଳନାରେ ପଛରେ ପଡ଼ିଥିଲେ; କିନ୍ତୁ ସେମାନଙ୍କର ଶକ୍ତି ଥିଲା ଏବଂ ସେତେବେଳେ ଭାରତ ଅପେକ୍ଷା ଅତ୍ୟଧିକ ଜୀବନ୍ତ ଥିଲେ । ଭାରତ ଅଧିମାତ୍ରାରେ ପୁରୁଣା ଦିହରେ ପଡ଼ିଥିଲା । ଏହା ଅପରିବର୍ତ୍ତନୀୟ ଓ ଅପ୍ରଗତିଶୀଳ ହୋଇ ଆସୁଥିଲା । ଏହା ପୁରୁଣାଢଙ୍ଗକୁ ଧରି ରହିଲା ଏବଂ ତାହା ସଂସ୍କାର କରି ଉନ୍ନତ କରିବା ନିମନ୍ତେ କୌଣସି ଉଦ୍ୟମ କଲା ନାହିଁ । ଏପରିକି ଯୁଦ୍ଧକୌଶଳ ଦୃଷ୍ଟିରୁ ମଧ୍ୟ ଭାରତ ପଛରେ ପଡ଼ିଥିଲା ଏବଂ ଆଫଗାନମାନେ ଖୁବ୍ ଭଲଭାବରେ ସଂଗଠିତ ଥିଲେ । ତେଣୁ ତାର ସାହସ ସତ୍ତ୍ୱେ ମୁସଲମାନ ଆକ୍ରମଣକାରୀଙ୍କ ସମକ୍ଷରେ ପୁରାତନ ଭାରତ ତଳେ ପଡ଼ିଗଲା ।

ପ୍ରଥମେ ଏହି ମୁସଲମାନମାନେ ଅତ୍ୟନ୍ତ ଭୀଷଣ ଓ କ୍ରୂର ଥିଲେ । ସେମାନେ ଏକ ପାହାଡ଼ିଆ ରାଜ୍ୟରୁ ଆସିଥିଲେ । ସେଠାରେ 'କୋମଳତା' ବିଶେଷ ପସନ୍ଦ କରାଯାଏ ନାହିଁ । ଏହା ସାଙ୍ଗକୁ ପୁଣି ସେମାନେ ଏକ ନୂତନ ବିଜିତ ଦେଶରେ ଥିଲେ, ଯେଉଁଠି ଯେକୌଣସି ମୁହୂର୍ତ୍ତରେ ଚାରିଆଡ଼ର ଶତ୍ରୁ ଆକ୍ରମଣ କରିବାର ଆଶଙ୍କା ଥିଲା । ବିଦ୍ରୋହର ଆଶଙ୍କା ତ ବରାବର ରହିଥିବ ! ଭୟ ଅନେକ ସମୟରେ ନିଷ୍ଠୁରତା ଓ ଆତଙ୍କ ଜାତ କରାଏ । ତେଣୁ ଲୋକଙ୍କୁ ଦବାଇବା ନିମନ୍ତେ ହତ୍ୟାକାଣ୍ଡ କରାଗଲା । ଧର୍ମ ଦୃଷ୍ଟିରୁ ମୁସଲମାନ ହିନ୍ଦୁକୁ ମାରିବାର ପ୍ରଶ୍ନ ନୁହେଁ; ମାତ୍ର ଏକ ବିଦେଶୀ ବିଜେତା ବିଜିତର ମନବଳ ଭାଙ୍ଗିବାକୁ ଚେଷ୍ଟା କରିବାର ପ୍ରଶ୍ନ ଆସି ପଡ଼ୁଥିଲା । ସବଦା ଏପରି କ୍ରୂର କାର୍ଯ୍ୟର ସଫେଇ ଦେବାପାଇଁ ଧର୍ମର ସାହାଯ୍ୟ ଲୋଡ଼ା ହୁଏ; ମାତ୍ର ଏହା ଠିକ୍ ନୁହେଁ । ବେଳେ

ବେଳେ ଧର୍ମକୁ ଏକ ଛଳନାରୂପେ ବ୍ୟବହାର କରାଯାଏ । କିନ୍ତୁ ପ୍ରକୃତ କାରଣ ହେଉଛି ରାଜନୈତିକ ବା ସାମାଜିକ । ମଧ୍ୟ-ଏସିଆର ଯେଉଁ ଲୋକମାନେ ଭାରତ ଆକ୍ରମଣ କରିଥିଲେ, ସେମାନେ ବି ନିଜ ମାତୃଭୂମିରେ ନିଷ୍ଠୁର ଓ ନିର୍ଦ୍ଦୟ ଥିଲେ ଏବଂ ଦୀର୍ଘକାଳ ପୂର୍ବରୁ ସେମାନେ ଇସଲାମ ଧର୍ମ ଗ୍ରହଣ କରିଥିଲେ । ଏକ ନୂତନ ଦେଶ ଜୟ କରିସାରି ଏହାକୁ ନିଜ ଆୟତ୍ତରେ ରଖିବା ଲାଗି ଗୋଟିଏ ମାତ୍ର ପନ୍ଥା ତାଙ୍କୁ ଜଣାଥିଲା—ତାହା ହେଉଛି ଆତଙ୍କର ପନ୍ଥା ।

ଯାହାହେଉ ଆମେ ଦେଖୁ ଯେ ଭାରତ ଏହି ନିଷ୍ଠୁର ଯୋଦ୍ଧାମାନଙ୍କୁ ନରମ କରିଦେଲା ଏବଂ ସେମାନଙ୍କୁ ସଭ୍ୟ କଲା । ସେମାନେ ବିଦେଶୀ ଆକ୍ରମଣକାରୀ ନୁହନ୍ତି, ଭାରତୀୟ ବୋଲି ଅନୁଭବ କରିବାକୁ ଲାଗିଲେ । ସେମାନେ ଏ ଦେଶର ନାରୀ ବିବାହ କଲେ ଏବଂ ଆକ୍ରମଣକାରୀ ଓ ଆକ୍ରାନ୍ତ ଭିତରେ ପାର୍ଥକ୍ୟ ଧୀରେ ଧୀରେ କମିଗଲା ।

ଗଜନୀର ମାମୁଦ ଉତ୍ତର-ଭାରତର ସବୁଠୁ ବଡ଼ ଧ୍ୱଂସକାରୀରୂପେ ପରିଚିତ ଏବଂ ସେ 'ମୂର୍ତ୍ତିପୂଜା' ବିରୋଧୀ ଇସଲାମ ଧର୍ମରକ୍ଷକ ବୋଲି କଥିତ ଅଛି । ତାଙ୍କର ତିଲକ ନାମକ ଜଣେ ହିନ୍ଦୁ ସେନାପତିଙ୍କ ଅଧୀନରେ ଏକ ହିନ୍ଦୁ ସେନାବାହିନୀ ଥିବା କଥା ଜାଣିଲେ ବେଶ୍ ଖୁସି ଲାଗେ । ସେ ତିଲକ ଓ ତାଙ୍କ ସେନାକୁ ଗଜନୀକୁ ନେଇଥିଲେ ଏବଂ ସେଠାରେ ତାଙ୍କ ସାହାଯ୍ୟରେ ବିଦ୍ରୋହୀ ମୁସଲମାନମାନଙ୍କୁ ଦବାଇଲେ । ତେଣୁ ତୁ ଦେଖିବୁ ଯେ ମାମୁଦଙ୍କର ବିଜୟହାସଲ ହିଁ ଅସଲ ଉଦ୍ଦେଶ୍ୟ ଥିଲା । ଭାରତରେ ତାଙ୍କର ମୁସଲମାନ ସୈନ୍ୟଙ୍କ ସାହାଯ୍ୟରେ ସେ 'ମୂର୍ତ୍ତିପୂଜକ'ଙ୍କୁ ବଧ କରିବାକୁ ଯେପରି ପ୍ରସ୍ତୁତ ଥିଲେ, ମଧ୍ୟ-ଏସିଆର ହିନ୍ଦୁ ସୈନ୍ୟଙ୍କ ସାହାଯ୍ୟରେ ମୁସଲମାନମାନଙ୍କୁ ବଧ କରିବା ନିମନ୍ତେ ସେହିପରି ଭାବରେ ପ୍ରସ୍ତୁତ ଥିଲେ ।

ଇସଲାମ ଭାରତକୁ ଦୋହଲାଇ ଦେଲା ଏବଂ ଯେଉଁ ସମାଜ ଅତ୍ୟନ୍ତ ଅପ୍ରଗତିଶୀଳ ହୋଇ ପଡ଼ିଥିଲା, ସେଥିରେ ପ୍ରଗତି ନିମନ୍ତେ ଏକ ଜୀବନ ଓ ପ୍ରେରଣା ଦାନକଲା । ଯେଉଁ ହିନ୍ଦୁକଳା ପତନୋନ୍ମୁଖୀ ଓ ମୃତ ହୋଇପଡ଼ିଥିଲା, କେବଳ ପୁନରୁକ୍ତି ଓ ବାହୁଲ୍ୟରେ ପରିପୂର୍ଣ୍ଣ ହୋଇଥିଲା, ତାହା ଉତ୍ତରରେ ପରିବର୍ତ୍ତିତ ହେଲା । ଏକ ନୂତନ କଳା ଗଢ଼ି ଉଠିଲା । ଏହା ସତେଜ ଓ ଜୀବନ୍ତ ଥିଲା । ଏହାକୁ ଭାରତୀୟ ମୁସଲମାନ କଳା ବୋଲି କୁହାଯାଇପାରେ । ମୁସଲମାନମାନେ ଯେଉଁ ନୂତନ ଭାବଧାରା ଆଣିଦେଲେ, ସେଥିରୁ ପୁରାତନ ଭାରତୀୟ ନିପୁଣ କାରିଗରମାନେ ପ୍ରେରଣା ଲାଭ କଲେ । ମୁସଲମାନ ଧର୍ମନୀତି ଓ ଜୀବନର ଦୃଷ୍ଟିକୋଣର ସରଳତା ହିଁ ସେକାଳର କାରୁକାର୍ଯ୍ୟ ଉପରେ ପ୍ରଭାବ ପକାଇଲା ଏବଂ ଗଢ଼ିବାର ଶୈଳୀରେ ସରଳତା ଓ ଉଦାତ୍ତତା ଫେରିଆସିଲା ।

ମୁସଲମାନ ଅଭିଯାନର ପ୍ରଥମ ଫଳସ୍ୱରୂପ କେତେକ ଲୋକ ଦକ୍ଷିଣକୁ ପଳାଇ ଗଲେ । ମାମୁଦଙ୍କ ଆକ୍ରମଣ ଓ ହତ୍ୟାକାଣ୍ଡ ପରେ ଉତ୍ତର-ଭାରତରେ ବର୍ବର କ୍ରୂରତା ଓ ଧ୍ୱଂସ ସହ ଇସଲାମର ନାମ ସଂପୃକ୍ତ ହୋଇଥିଲା । ତେଣୁ ଯେତେବେଳେ ନୂତନ ଅଭିଯାନ ଆସିଲା ଓ ତାର ଗତିରୋଧ କରାଯାଇ ପାରିଲା ନାହିଁ, ସେତେବେଳେ ଅନେକ ନିପୁଣ କାରିଗର ଓ ପଣ୍ଡିତ ଲୋକ ଦକ୍ଷିଣ-ଭାରତକୁ ଚାଲିଗଲେ । ଏହା ହିଁ ଦକ୍ଷିଣରେ ଆର୍ଯ୍ୟ ସଂସ୍କୃତିକୁ ଖୁବ୍ ଆଗେଇନେଲା ।

ଦକ୍ଷିଣ ସମ୍ବନ୍ଧରେ ମୁଁ ଆଗରୁ ତୋତେ କିଛି କହିଛି । ଷଷ୍ଠ ଶତାବ୍ଦୀର ମଧ୍ୟଭାଗ ଠାରୁ ୨୦୦ ବର୍ଷ ପଶ୍ଚିମ ଓ କେନ୍ଦ୍ର (ମହାରାଷ୍ଟ୍ର ଦେଶ) ଭାରତରେ ଚାଲୁକ୍ୟମାନେ ପ୍ରଧାନ ଶକ୍ତିଶାଳୀ ଥିଲେ । ଯେତେବେଳେ ଦ୍ୱିତୀୟ ପୁଲକେଶୀନ ରାଜା ଥିଲେ, ତାଙ୍କ ପାଖକୁ ହୁଏନ୍‌ସାଂ ଆସିଥିଲେ । ତା ପରେ ରାଷ୍ଟ୍ରକୂଟମାନେ ଆସିଲେ । ସେମାନେ ଚାଲୁକ୍ୟଙ୍କୁ ପରାସ୍ତ କଲେ ଏବଂ ୮ମ ଶତାବ୍ଦୀଠାରୁ ୧୦ମ ଶତାବ୍ଦୀର ପ୍ରାୟ ଶେଷପର୍ଯ୍ୟନ୍ତ ଆହୁରି ୨୦୦ ବର୍ଷ କର୍ତ୍ତୃତ୍ୱ ବିସ୍ତାର କଲେ । ଏହି ରାଷ୍ଟ୍ରକୂଟମାନଙ୍କର ସିନ୍ଧୁର ଆରବ ଶାସକ-ମାନଙ୍କ ସହିତ ଭଲ ସମ୍ବନ୍ଧ ହୋଇଥିଲା ଏବଂ ଅନେକ ଆରବବେପାରୀ ଓ ପରିବ୍ରାଜକ ସେଠାକୁ ଆସିଥିଲେ । ଜଣେ ପରିବ୍ରାଜକ ତାଙ୍କ ପରିଦର୍ଶନର ବିବରଣୀ ଲେଖି ଯାଇଛନ୍ତି । ସେ କହନ୍ତି ସେତେବେଳର (୯ମ ଶତାବ୍ଦୀ) ରାଷ୍ଟ୍ରକୂଟ ଶାସକ ପୃଥିବୀର ଚାରୋଟି ସର୍ବ-ମହାନ୍ ନରପତିଙ୍କ ଭିତରୁ ଜଣେ ବୋଲି ଗଣ୍ୟ କରାହେଉଥିଲେ । ତାଙ୍କ ମତରେ ଆଉ ତିନୋଟି ମହାନ୍ ନରପତି ହେଉଛନ୍ତି ବାଗଦାଦର ଖଲିଫା, ଚୀନର ସମ୍ରାଟ ଓ ରମ (ଅର୍ଥାତ୍ କନଷ୍ଟାଣ୍ଟିନୋପଲ)ର ସମ୍ରାଟ । ସେତେବେଳେ ଏସିଆରେ କପରି ମତ ପ୍ରଚଳିତ ଥିଲା, ତାହା ଏଥିରୁ ଦେଖାଯାଏ । ଜଣେ ଆରବ ପରିବ୍ରାଜକ ପକ୍ଷରେ ବାଗଦାଦ ତାର ଗୌରବ ଓ କ୍ଷମତାର ଉଚ୍ଚ ସୋପାନରେ ଥିଲାବେଳେ ରାଷ୍ଟ୍ରକୂଟଙ୍କ ରାଜ୍ୟ ସହିତ ଖଲିଫାଙ୍କ ସାମ୍ରାଜ୍ୟ ତୁଳନା କରିବା ଅର୍ଥ ହେଉଛି ଯେ ଏହି ମହାରାଷ୍ଟ୍ର ରାଜ୍ୟ ସେ ସମୟରେ ଅବଶ୍ୟ ଅତି ବଳିଷ୍ଠ ଓ ପ୍ରଭାବଶାଳୀ ହୋଇଥିବ ।

ଦଶମ ଶତାବ୍ଦୀରେ (୯୭୩ ଖ୍ରୀ:ରେ) ରାଷ୍ଟ୍ରକୂଟଙ୍କ ସ୍ଥାନରେ ଚାଲୁକ୍ୟମାନେ କ୍ଷମତା ଗ୍ରହଣ କଲେ । ସେମାନେ ପୁନର୍ବାର ଦୁଇଶହ ବର୍ଷରୁ ଅଧିକ କାଳ ପର୍ଯ୍ୟନ୍ତ କ୍ଷମତାରେ ରହିଲେ (୧୧୯୦ ଖ୍ରୀ: ପର୍ଯ୍ୟନ୍ତ) । ଏହି ଚାଲୁକ୍ୟ ରାଜାମାନଙ୍କ ଭିତରୁ ଜଣଙ୍କ ବିଷୟରେ ଦୀର୍ଘ କବିତାଟିଏ ରହିଛି ଏବଂ ସେଥିରେ ଲିଖିତ ଅଛି ଯେ ଏକ ପ୍ରକାଶ୍ୟ ସ୍ୱୟମ୍ବରରେ ତାଙ୍କ ସ୍ତ୍ରୀ ତାଙ୍କୁ ବାଛିଥିଲେ । * ଏହି ପୁରାତନ ଆର୍ଯ୍ୟରୀତି ଏତେ ଦୀର୍ଘକାଳ ପର୍ଯ୍ୟନ୍ତ ରହିଥିବା ବାସ୍ତବିକ ଆଗ୍ରହଜନକ ବିଷୟ ।

---

* ପୂର୍ବକାଳରୁ ଭାରତରେ ଏକ ପ୍ରଥା ପ୍ରଚଳିତ ଥିଲା ଯେ ରାଜା ନିଜର କନ୍ୟାକୁ ବିବାହ ଦେବା ନିମନ୍ତେ ସମସ୍ତ ଯୋଗ୍ୟ ରାଜା ଓ ଯୁବରାଜଙ୍କୁ ନିମନ୍ତ୍ରଣ କରୁଥିଲେ ଏବଂ ତାଙ୍କ ଝିଅ ସେହିମାନଙ୍କ ଭିତରୁ ବର ବାଛୁଥିଲା ।

ଭାରତର ଆହୁରି ଦକ୍ଷିଣ-ପୂର୍ବକୁ ତାମିଲ ଦେଶ । ଏଠାରେ ତୃତୀୟ ଶତାବ୍ଦୀ ଠାରୁ ନବମ ଶତାବ୍ଦୀର ପ୍ରାୟ ୬୦୦ ବର୍ଷଯାଏ ପଲ୍ଲବମାନେ ଶାସନ କରିଥିଲେ ଏବଂ ୬ଷ୍ଠ ଶତାବ୍ଦୀର ମଧ୍ୟଭାଗରୁ ଦୁଇଶହ ବର୍ଷ ପର୍ଯ୍ୟନ୍ତ ସେମାନଙ୍କର ଦକ୍ଷିଣରେ ପ୍ରାଧାନ୍ୟ ଥିଲା । ତୋର ମନେଥିବ, ଏହି ପଲ୍ଲବମାନେ ମାଲୟସିଆ ଓ ପୂର୍ବ ଦ୍ୱୀପପୁଞ୍ଜରେ ଉପନିବେଶ ସ୍ଥାପନ କରିବା ନିମନ୍ତେ ଲୋକ ପଠାଇଥିଲେ । ପଲ୍ଲବ ରାଜ୍ୟର ରାଜଧାନୀ କାଞ୍ଚି ବା କାଞ୍ଜିଭରମ୍ ସେତେବେଳେ ଏକ ସୁନ୍ଦର ସହର ଥିଲା ଏବଂ ଆଜିସୁଦ୍ଧା ସହରର ଉତ୍ତମ ଯୋଜନା ନିମନ୍ତେ ଏହା ବିଖ୍ୟାତ ।

ଦଶମ ଶତାବ୍ଦୀର ପ୍ରଥମ ଭାଗରେ ଆକ୍ରମଣଶୀଳ ଚୋଳମାନେ ପଲ୍ଲବମାନଙ୍କର ସ୍ଥାନ ଅଧିକାର କଲେ । ମୁଁ ଚୋଳ ସାମ୍ରାଜ୍ୟର ରାଜରାଜା ଓ ରାଜେନ୍ଦ୍ରଙ୍କ ସମ୍ବନ୍ଧରେ ତୋତେ କିଛି କହିଛି । ସେମାନେ ବଡ଼ ନୌବାହିନୀ ନିର୍ମାଣ କରିଥିଲେ ଏବଂ ସିଂହଳ, ବର୍ମା ଓ ବଙ୍ଗଳାକୁ ଜୟ କରିବାକୁ ଯାଇଥିଲେ । ତାଙ୍କ ସମୟରେ ପ୍ରଚଳିତ ନିର୍ବାଚିତ ଗ୍ରାମ୍ୟ ପଞ୍ଚାୟତ ପ୍ରଥା ଆହୁରି ଆଗ୍ରହଜନକ । ଏହି ପ୍ରଥା ନିମ୍ନରୁ ଗଢ଼ା ହୋଇଥିଲା । ଗ୍ରାମ୍ୟ ଇଉନିୟନଦ୍ୱାରା ନାନା ପ୍ରକାର କାର୍ଯ୍ୟ ଦେଖିବା ନିମନ୍ତେ ଅନେକ କମିଟି ନିର୍ବାଚନ କରୁଥିଲା ଏବଂ ଜିଲ୍ଲା ଇଉନିୟନ ବି ନିର୍ବାଚନ କରୁଥିଲା । କେତେକ ଜିଲ୍ଲା ମିଳି ଗୋଟିଏ ପ୍ରଦେଶ ହେଉଥିଲା । ଏହି ଚିଠିଗୁଡ଼ିକରେ ମୁଁ ଅନେକ ସମୟରେ ଗ୍ରାମପଞ୍ଚାୟତ ପ୍ରଥା ବିଷୟରେ ଜୋର ଦେଇଛି । କାରଣ ଏହା ପୁରାତନ ଆର୍ଯ୍ୟ ରାଜନୀତିର ମେରୁଦଣ୍ଡ ଥିଲା ।

ଉତ୍ତର ଭାରତରେ ଆଫଗାନ ଆକ୍ରମଣ ଆରମ୍ଭ ହେବାବେଳକୁ ଦକ୍ଷିଣଭାରତରେ ଚୋଳମାନଙ୍କ ପ୍ରାଧାନ୍ୟ ଥିଲା । କିନ୍ତୁ ଅତିଶୀଘ୍ର ତାହାର ପତନ ହେବାକୁ ଆରମ୍ଭ କଲା ଏବଂ ଏହାର ଅଧୀନସ୍ଥ ଏକ କ୍ଷୁଦ୍ର ରାଜ୍ୟ ସ୍ୱାଧୀନ ହେଲା ଓ ତାର ଶକ୍ତି ବୃଦ୍ଧି ହେଲା । ଏହା ହେଉଛି ପାଣ୍ଡ୍ୟ ରାଜ୍ୟ; ମଦୁରା ଏହାର ରାଜଧାନୀ ଓ କାୟାଲ ଏହାର ବନ୍ଦର ଥିଲା । ଭେନିସରୁ ମାର୍କୋପୋଲୋ ନାମକ ଜଣେ ପ୍ରସିଦ୍ଧ ପରିବ୍ରାଜକ, ଯାହାଙ୍କ ସମ୍ବନ୍ଧରେ ମୁଁ ପରେ ବିଶେଷ କିଛି କହିବି, ସେ ୧୨୮୮ ଓ ୧୨୯୩ରେ ଦୁଇଥର କାୟାଲ ବନ୍ଦରକୁ ଆସିଥିଲେ । ସେ ଏହି ସହରକୁ—'ଏକ ମହାନ୍ ଓ ବିଶାଳ ସହର'କୁ ଆରବ ଓ ଚୀନରୁ ଆସିଥିବା ଜାହାଜଦ୍ୱାରା ପୂର୍ଣ୍ଣ ଏବଂ ବ୍ୟବସାୟରେ ପୂରିରହିଛି ବୋଲି ବର୍ଣ୍ଣନା କରି ଯାଇଛନ୍ତି । ମାର୍କୋ ନିଜେ ଚୀନରୁ ଜାହାଜରେ ଆସିଥିଲେ ।

ମାର୍କୋପୋଲୋ ମଧ୍ୟ କହି ଯାଇଛନ୍ତି ଯେ "ବୁଢ଼ିଆଣୀ ଜାଲ ସୂତା ପରି" ସୂକ୍ଷ୍ମ ମସ୍‌ଲିନ ଭାରତର ପୂର୍ବ ଉପକୂଳରେ ତିଆରି ହେଉଥିଲା । ମାର୍କୋ ମଧ୍ୟ ଉଲ୍ଲେଖ କରିଛନ୍ତି ଯେ ରୁଦ୍ରମଣି ଦେବୀ ନାମକ ଜଣେ ମହିଳା ତେଲଗୁ ଦେଶ ଅର୍ଥାତ୍ ମାନ୍ଦ୍ରାଜର

ଭିତ୍ତିରଣ୍ଟି ପୂର୍ବଉପକୂଳର ରାଣୀ ଥିଲେ । ଏହି ମହିଳା ୪୦ ବର୍ଷ ପର୍ଯ୍ୟନ୍ତ ଶାସନ କରିଥିଲେ ଏବଂ ମାର୍କୋ ତାଙ୍କର ଉଚ୍ଚ ପ୍ରଶଂସା କରିଯାଇଛନ୍ତି ।

ମାର୍କୋ ଆଉ ଏକ ଆଗ୍ରହପ୍ରଦ ସମ୍ବାଦ ଦିଅନ୍ତି । ଏହା ହେଉଛି ଯେ ସମୁଦ୍ରରେ ଆରବ ଓ ଇରାନରୁ ବହୁସଂଖ୍ୟକ ଘୋଡ଼ା ଦକ୍ଷିଣ ଭାରତକୁ ଆଣା ହୋଇଥିଲା । ଘୋଡ଼ା ପାଳିବା ପାଇଁ ଦକ୍ଷିଣର ଜଳବାୟୁ ଉପଯୁକ୍ତ ନୁହେଁ । କଥିତ ଅଛି ଯେ ମୁସଲମାନ ଆକ୍ରମଣକାରୀ ଭାରତରେ ଉତ୍ତମ ଯୋଦ୍ଧା ହେବାର ଏକ କାରଣ ହେଉଛି ସେମାନଙ୍କ ପାଖରେ ଭଲ ଘୋଡ଼ା ଥିଲା । ତାଙ୍କ ଆସୃତ୍ତିରେ ଏସିଆର ଘୋଡ଼ା ପାଳିବାର ଉତ୍କୃଷ୍ଟ ସ୍ଥାନ ଥିଲା ।

ଚୋଳଙ୍କ ପତନ ପରେ ୧୩ଶ ଶତାବ୍ଦୀରେ ଦକ୍ଷିଣ ପାଣ୍ଡ୍ୟ ରାଜ୍ୟ ହିଁ ମୁଖ୍ୟ ତାମିଲ ଶକ୍ତି ଥିଲା । ୧୪ଶ ଶତାବ୍ଦୀର ପ୍ରଥମ ଭାଗରେ (୧୩୧୦ରେ) ମୁସଲମାନ ଆକ୍ରମଣ-କାରୀମାନେ ଦକ୍ଷିଣରେ ପହଞ୍ଚିଲେ । ସେମାନେ ପାଣ୍ଡ୍ୟ ରାଜ୍ୟ ଭିତରକୁ ପ୍ରବେଶ କଲେ ଓ ଏହାର ଦ୍ରୁତ ପତନ ହୋଇଗଲା ।

ଏହି ଚିଠିରେ ମୁଁ ଦକ୍ଷିଣ ଭାରତର ଇତିହାସର ଆଲୋଚନା କଲି ଏବଂ ସମ୍ଭବତଃ ପୂର୍ବକଥିତ ବିଷୟର ପୁନରୁକ୍ତି କଲି । କିନ୍ତୁ ବିଷୟଟି ଟିକିଏ ଗୋଳମାଳିଆ ଏବଂ ଲୋକେ ପଲ୍ଲବ, ଚାଲୁକ୍ୟ ଓ ଚୋଳ ଇତ୍ୟାଦି ଶବ୍ଦ ମିଶାଇଦିଅନ୍ତି । ତୁ ଯଦି ଏହାକୁ ମୋଟାମୋଟି ଦେଖିବୁ, ତାହାହେଲେ ତୋ ମନରେ ଗୋଟାଏ ବ୍ୟାପକ ଚିତ୍ର ରହିଯିବ । ତୋର ମନେଥିବ, ଅଶୋକ ସମଗ୍ର ଭାରତ (ଛୋଟ କ୍ଷୁଦ୍ର ଅଞ୍ଚଳ ବ୍ୟତୀତ), ଆଫଗାନିସ୍ଥାନ ଓ ମଧ୍ୟ-ଏସିଆର ଏକାଂଶରେ ଶାସନ କରୁଥିଲେ । ଦକ୍ଷିଣରେ ତାଙ୍କ ପରେ ଆନ୍ଧ୍ର ଶକ୍ତିର ଜାଗରଣ ହେଲା । ଏହା ଦାକ୍ଷିଣାତ୍ୟ ଦେଇ ବିସ୍ତୃତ ଲାଭିଲା ଏବଂ ୪୦୦ ବର୍ଷ ପର୍ଯ୍ୟନ୍ତ ରହିଥିଲା । କୁଶାଣମାନେ ଉତ୍ତରରେ ସେମାନଙ୍କର ଧାମ୍ରାଜ୍ୟର ସୀମାନ୍ତକୁ ସେପର୍ଯ୍ୟନ୍ତ ଏତେବେଳେ ନେଇ ଆସିଥିଲେ । ତେଲୁଗୁ ଆନ୍ଧ୍ରମାନଙ୍କର ପତନ ହେବାରୁ ପୂର୍ବ ଉପକୂଳ ଓ ଦକ୍ଷିଣରେ ତାମିଲ ପଲ୍ଲବମାନଙ୍କର ଉଦୟ ହେଲା ଏବଂ ଦୀର୍ଘକାଳ ପର୍ଯ୍ୟନ୍ତ ସେମାନେ କର୍ତ୍ତୃତ୍ୱ କଲେ । ସେମାନେ ମାଲୟସିଆରେ ଉପନିବେଶ କଲେ । ୬୦୦ ବର୍ଷ ଶାସନ ପରେ ଚୋଳମାନେ ଆସିଲେ । ସେମାନେ ସୁଦୂର ରାଜ୍ୟ ଜୟକଲେ ଏବଂ ତାଙ୍କର ନୌବାହିନୀ ସାହାଯ୍ୟରେ ସମୁଦ୍ର ଅତିକ୍ରମ କରିଗଲେ । ୩୦୦ ବର୍ଷ ପରେ ସେମାନେ କ୍ଷେତ୍ରରୁ ଅପସରିଗଲେ ଓ ପାଣ୍ଡ୍ୟ ରାଜ୍ୟ ପ୍ରଧାନ ହୋଇ ବାହାରିଲା ଏବଂ ମଦୁରା ନଗର ଏକ କଳାକେନ୍ଦ୍ର ଏବଂ କାୟାଲ ସୁଦୂର ରାଜ୍ୟ ସହିତ ସମ୍ପର୍କ ରଖିଥିବା ହେତୁ ଏକ ମହାନ୍ ଓ ଶ୍ରେଷ୍ଠ ବନ୍ଦର ରୂପେ ଗଢ଼ିଉଠିଲା ।

ଦକ୍ଷିଣ ଓ ପୂର୍ବ ବିଷୟରେ ଏତିକି । ପଶ୍ଚିମରେ ମହାରାଷ୍ଟ୍ର ଦେଶରେ ଚାଲୁକ୍ୟ-ମାନେ ଥିଲେ । ତାଙ୍କ ପରେ ଆସିଲେ ରାଷ୍ଟ୍ରକୂଟ ଏବଂ ତା ପରେ ପୁଣି ୨ୟ ଥର ପାଇଁ ଚାଲୁକ୍ୟମାନେ ଆସିଲେ ।

ଏଗୁଡ଼ିକ କେବଳ ନାମ; କିନ୍ତୁ ଯେଉଁ କାର୍ଯ୍ୟକାଳ ପର୍ଯ୍ୟନ୍ତ ଏହିସବୁ ରାଜ୍ୟ ରହିଥିଲା ଏବଂ ଉଚ୍ଚ ସଭ୍ୟତା ଲାଭ କରିଥିଲା, ତାହା ବିଚାର କର । ଏହା ଭିତରେ ଏକ ଆଭ୍ୟନ୍ତରୀଣ ଶକ୍ତି ଥିଲା । ତାହା ଇଉରୋପର ରାଜ୍ୟଗୁଡ଼ିକ ଅପେକ୍ଷା ଏଗୁଡ଼ିକୁ ଅଧିକ ଦୃଢ଼ତା ଓ ଶାନ୍ତି ଦେଇଥିଲା; କିନ୍ତୁ ସାମାଜିକ ଗଠନର କାଳ ପୂରିଯାଇଥିଲା ଓ ସ୍ଥାୟିତ୍ୱ ଚାଲିଯାଇଥିଲା । ୧୪ଶ ଶତାବ୍ଦୀର ପ୍ରଥମ ଭାଗରେ ମୁସଲମାନ ସେନାବାହିନୀ ଦକ୍ଷିଣକୁ ଯେତେବେଳେ ଆସିଲେ ସେତେବେଳେ ଏହା ଶୀଘ୍ର ଓଲଟିପଡ଼ିଲା ।

## ୭୭ । ଦିଲ୍ଲୀର ଦାସ ରାଜାଗଣ

ଜୁନ୍ ୨୪, ୧୯୩୨

ମୁଁ ତୋତେ ଗଜନୀର ସୁଲତାନ ମାମୁଦଙ୍କ ବିଷୟ କହିଛି ଏବଂ ମାମୁଦଙ୍କ ଅନୁରୋଧରେ ପାରସୀ ଭାଷାରେ ଯେଉଁ କବି ଫିର୍ଦ୍ଦୁସୀ ସାହାନାମା ଲେଖିଥିଲେ, ତାଙ୍କ ବିଷୟରେ ବି କିଛି କହିଛି । କିନ୍ତୁ ମାମୁଦଙ୍କ ଅମଳରେ ଜଣେ ପ୍ରସିଦ୍ଧ ଲୋକ ଯେ କି ତାଙ୍କ ସହିତ ପଞ୍ଜାବରୁ ଆସିଥିଲେ ତାଙ୍କ ବିଷୟରେ ଏପର୍ଯ୍ୟନ୍ତ କହି ନାହିଁ । ସେ ହେଉଛନ୍ତି ଅଲବେରୁନି । ସେ ଜଣେ ବିଦ୍ୱାନ ଓ ପଣ୍ଡିତ ଲୋକ; ସେ କାଳର ପ୍ରଚଣ୍ଡ ଓ ଗର୍ବୀ ଯୋଦ୍ଧାମାନଙ୍କଠାରୁ ଭିନ୍ନ ଧରଣର । ସେ ସମସ୍ତ ଭାରତରେ ଭ୍ରମଣ କରିଥିଲେ, ନୂତନ ଦେଶ ଓ ଏହାର ଲୋକଙ୍କୁ ବୁଝିବାକୁ ଚେଷ୍ଟା କରିଥିଲେ । ସେ ଭାରତୀୟ ଦୃଷ୍ଟିକୋଣ ବୁଝିବା ନିମନ୍ତେ ଏତେ ବ୍ୟଗ୍ର ଥିଲେ ଯେ ସଂସ୍କୃତ ଶିକ୍ଷା କରିଥିଲେ ଏବଂ ହିନ୍ଦୁଙ୍କର ପ୍ରଧାନ ଗ୍ରନ୍ଥସବୁ ନିଜେ ପଢ଼ିଥିଲେ । ସେ ଭାରତର ଦର୍ଶନ ଅଧ୍ୟୟନ କରିଥିଲେ ଏବଂ ଏଠାରେ ବିଜ୍ଞାନ ଓ କଳା ଯାହା ଶିକ୍ଷା ଦିଆଯାଉଥିଲା, ତାହା ଜାଣିଥିଲେ । ଭଗବଦ୍ ଗୀତା ତାଙ୍କର ଖୁବ୍ ପ୍ରିୟ ହୋଇଥିଲା । ସେ ଦକ୍ଷିଣରେ ଚୋଳ ରାଜ୍ୟକୁ ଯାଇଥିଲେ ଏବଂ ସେଠାରେ ବିରାଟ ଜଳସେଚନପ୍ରଣାଳୀ ଦେଖି ଚକିତ ହୋଇଗଲେ । ତାଙ୍କର ଭାରତ ଭ୍ରମଣ ବିବରଣୀ ପୂର୍ବକାଳର ଏକ ପ୍ରକାଣ୍ଡ ଭ୍ରମଣ ପୁସ୍ତକ । ଏବେ ବି ମଧ୍ୟ ତାହା ଆମେ ପାଉ । ଧ୍ୱଂସ, ହତ୍ୟାକାଣ୍ଡ ଓ ଅସହିଷ୍ଣୁତା ଭିତରେ ସେ ଧୀର ପଣ୍ଡିତ ଭାବରେ କେଉଁଠି

ପ୍ରକୃତ ସତ୍ୟ ଅଛୁ, ତାହା ବାହାର କରିବା ଲାଗି ଶିକ୍ଷା କରୁଥିଲେ ଏବଂ ଚେଷ୍ଟା କରୁଥିଲେ ।

ପୃଥ୍ୱୀରାଜଙ୍କୁ ପରାସ୍ତ କରିଥିବା ଆଫଗାନ ସାହାବୁଦ୍ଦିନଙ୍କ ପରେ ଦିଲ୍ଲୀର ପରବର୍ତ୍ତୀ ସୁଲତାନମାନଙ୍କୁ ଦାସରାଜା ବୋଲି କହୁଥିଲେ । ତାଙ୍କ ଭିତରେ ପ୍ରଥମ ରାଜା ହେଲେ କୁତବୁଦ୍ଦିନ । ସେ ସାହାବୁଦ୍ଦିନଙ୍କର ଜଣେ ଦାସ ଥିଲେ; ମାତ୍ର ଦାସମାନେ ସୁଦ୍ଧା ଉଚ୍ଚ ସ୍ଥାନକୁ ଉଠି ପାରୁଥିଲେ ଏବଂ ସେ ଦିଲ୍ଲୀରେ ପ୍ରଥମ ସୁଲତାନ ହୋଇପାରିଥିଲେ । ତାଙ୍କ ପରେ ଆଉ କେତେକ ମଧ୍ୟ ମୂଳରୁ ଦାସ ଥିଲେ ଏବଂ ତେଣୁ ଏହାକୁ ଦାସବଂଶ ବୋଲି କୁହାଯାଏ । ସେମାନେ ସମସ୍ତେ ଖୁବ୍ କ୍ରୂର ଥିଲେ ଏବଂ ସେମାନଙ୍କ ଅମଳରେ ଆକ୍ରମଣ, ପ୍ରାସାଦ ଓ ପୁସ୍ତକାଗାର ଧ୍ୱଂସ ଓ ଆତଙ୍କିତ କରିବା—ସବୁ ଚାଲିଥିଲା । ସେମାନେ ମଧ୍ୟ ନିର୍ମାଣପ୍ରିୟ ଥିଲେ ଏବଂ କୋଠାର ବିଶାଳ ଆକାରକୁ ସେମାନେ ବିଶେଷ ପସନ୍ଦ କରୁଥିଲେ । କୁତବୁଦ୍ଦିନ କୁତବ୍‌ମୀନାର ନିର୍ମାଣ ଆରମ୍ଭ କରିଥିଲେ । ଦିଲ୍ଲୀ ନିକଟସ୍ଥ ଏକ ମହାନ୍ ସ୍ତମ୍ଭକୁ ତୁ ଭଲଭାବରେ ଜାଣ୍ତ । ତାଙ୍କର ଉତ୍ତରାଧିକାରୀ ଇଲତୁତ୍‌ମିସ୍ ଏହି ସ୍ତମ୍ଭ ନିର୍ମାଣ ସମାପ୍ତ କରିଥିଲେ ଏବଂ ଏହା ନିକଟରେ କେତେକ ସୁନ୍ଦର ତୋରଣ ନିର୍ମାଣ କଲେ, ଯାହା ଆଜିପର୍ଯ୍ୟନ୍ତ ଅଛୁ । ଏହିସବୁ କୋଠା ପାଇଁ ସାମଗ୍ରୀ ପୁରାତନ ଭାରତୀୟ କୋଠା, ମୁଖ୍ୟତଃ ମନ୍ଦିରମାନଙ୍କରୁ ନିଆ ହୋଇଥିଲା । ରାଜମିସ୍ତ୍ରୀମାନେ ଅବଶ୍ୟ ଭାରତୀୟ ଥିଲେ; କିନ୍ତୁ ମୁଁ ତ ତୋତେ କହିଛୁ ଯେ ସେମାନେ ମୁସଲମାନମାନଙ୍କ ନୂତନ ଭାବ-ଧାରାରେ ଅତ୍ୟନ୍ତ ପ୍ରଭାବିତ ହୋଇଥିଲେ ।

ଗଜନୀର ମାମୁଦଙ୍କଠାରୁ ପରେ ଭାରତରେ ପ୍ରତ୍ୟେକ ଆକ୍ରମଣକାରୀ ନିଜ ସହିତ ଅନେକ ଭାରତୀୟ କାରିଗର ଓ ରାଜମିସ୍ତ୍ରୀ ନେଇଯାଇଥିଲେ । ଏହିରୂପେ ମଧ୍ୟ-ଏସିଆରେ ଭାରତୀୟ କାରୁକାର୍ଯ୍ୟର ପ୍ରଭାବ ବିସ୍ତାର ଲାଭ କରିଥିଲା ।

ଆଫଗାନମାନେ ଅତି ସହଜରେ ବିହାର ଓ ବଙ୍ଗଳା ଜୟକଲେ । ସେମାନେ ବଡ଼ ସାହସୀ ଥିଲେ ଏବଂ ତାଙ୍କର ପ୍ରତିରୋଧୀମାନଙ୍କୁ ହଠାତ୍ ଆକ୍ରମଣ କରୁଥିଲେ ଏବଂ ଅନେକ ସମୟରେ ଏହି ସାହସର ଫଳ ଭଲ ହେଉଥିଲା । ଆମେରିକାରେ କୋର୍ଟେସ ଓ ପିଜାରୋଙ୍କ ବିଜୟ ପରି ଏହି ବଙ୍ଗଳା ବିଜୟ ଅତ୍ୟନ୍ତ ବିସ୍ମୟକର ।

ଇଲତୁତ୍‌ମିସଙ୍କ ରାଜୁତି ଭିତରେ (୧୨୧୧-୩୬ ପର୍ଯ୍ୟନ୍ତ) ଭାରତର ସୀମାନ୍ତରେ ଏକ ବିଶାଳ ଆତଙ୍କପ୍ରଦ ମେଘ ଦେଖା ଦେଇଥିଲା । ଚେଙ୍ଗିଜ୍ ଖାଁଙ୍କ ନେତୃତ୍ୱରେ ମଙ୍ଗୋଲମାନେ ଆସୁଥିଲେ । ସେମାନେ ଏକ ଶତ୍ରୁର ପଶ୍ଚାଦ୍ଧାବନ କରି ସିନ୍ଧୁନଦୀ ପର୍ଯ୍ୟନ୍ତ ଆସିଥିଲେ; କିନ୍ତୁ ସେଇଠାରେ ଅଟକିଗଲେ । ଭାରତ ତାଙ୍କଠାରୁ ରକ୍ଷାପାଇଲା । ପ୍ରାୟ ୧୦୦ ବର୍ଷ ପରେ ତାଙ୍କର ବଂଶରୁ ଆଉ ଜଣେ ଲୋକ ତୈମୁର ଭାରତକୁ ହତ୍ୟାକାଣ୍ଡ

ଓ ଧ୍ୱଂସ କରିବାକୁ ଆସିଲେ; କିନ୍ତୁ ଯଦିଓ ଚେଙ୍ଗିଜ୍ ନିଜେ ଆସି ନ ଥିଲେ, ଅନେକ ମଙ୍ଗୋଲ ଭାରତ ଆକ୍ରମଣ କରିବା ବାରମ୍ବାର ଚେଷ୍ଟା କରିଥିଲେ ଏବଂ ଏପରିକି ଲାହୋର ପର୍ଯ୍ୟନ୍ତ ଆସିଥିଲେ । ସେମାନେ ଲୋକଙ୍କ ଭିତରେ ଆତଙ୍କ ଜାତ କଲେ ଏବଂ ଏପରିକି ସୁଲତାନଙ୍କୁ ଭୟଭୀତ କଲେ । ସେମାନେ ସମୟେ ସମୟେ ତାଙ୍କୁ ଲାଞ୍ଚ ଦେଉଥିଲେ । ତାଙ୍କ ଭିତରୁ କେତେ ହଜାର ପଞ୍ଜାବରେ ବସତି କରିଗଲେ ।

ରେଜିଆ ନାମକ ଜଣେ ମହିଳା ସୁଲତାନ ହୋଇଥିଲେ । ସେ ଇଲତୁତ୍‌ମିସଙ୍କ ଝିଅ । ସେ ଜଣେ ଦକ୍ଷ ବ୍ୟକ୍ତି ଓ ସାହସିକ ଯୋଦ୍ଧା ପରି ମନେହୁଏ; ମାତ୍ର କ୍ରୂର ଆଫଗାନ ସାମନ୍ତ ଏବଂ ଆହୁରି ପ୍ରଚଣ୍ଡ ମଙ୍ଗୋଲମାନଙ୍କ ପଞ୍ଜାବ ଆକ୍ରମଣ ହେତୁ ତାଙ୍କୁ ବିପଦ ଭିତରଦେଇ ଦିନ କଟାଇବାକୁ ପଡ଼ିଥିଲା ।

୧୨୯୦ ଖ୍ରୀ:ରେ ଦାସରାଜାଙ୍କ ସମୟ ପୂରିଗଲା । ଅଳ୍ପଦିନ ପରେ ଆଲ୍ଲାଉଦ୍ଦିନ ଖିଲଜି ଆସିଲେ । ସେ ନିଜର ଖୁଡ଼ୁତା, ଯେ କି ତାଙ୍କର ଶ୍ୱଶୁର ମଧ୍ୟ ଥିଲେ, ତାଙ୍କୁ ହତ୍ୟାକରି ସିଂହାସନ ଆରୋହଣ କଲେ । ଏହାପରେ ସେ ଯେଉଁ ମୁସଲମାନ ସାମନ୍ତ-ମାନଙ୍କୁ ରାଜଦ୍ରୋହୀ ବୋଲି ସନ୍ଦେହ କରୁଥିଲେ, ସେମାନଙ୍କୁ ମଧ୍ୟ ହତ୍ୟାକଲେ । ମଙ୍ଗୋଲମାନେ ଷଡ଼ଯନ୍ତ୍ର କରୁଛନ୍ତି ବୋଲି ଭୟ କରି ସେ ହୁକୁମ କଲେ ଯେ ତାଙ୍କ ରାଜ୍ୟ ଭିତରେ ଥିବା ପ୍ରତ୍ୟେକ ମଙ୍ଗୋଲକୁ ହତ୍ୟା କରାଯିବ । ତାହାହେଲେ ପୃଥିବୀ ପୃଷ୍ଠରେ ଏହି ମଙ୍ଗୋଲମାନଙ୍କ ଭିତରୁ ଜଣେ କାହାରିକୁ ଜୀବିତାବସ୍ଥାରେ ଖୋଜି ହିଁ ଆସିବ ନାହିଁ । ନେଣ୍ଡ ୨୦,୦୦୦ ବା ୩୦,୦୦୦ ଲୋକ, ଯାହାଙ୍କ ଭିତରେ ଅଧିକାଂଶ ନିର୍ଦ୍ଦୋଷ ଥିଲେ, ତାଙ୍କୁ ହତ୍ୟା କରାଗଲା ।

ମୋର ଆଶଙ୍କା ହୁଏ, ବାରମ୍ବାର ଏହି ହତ୍ୟାକାଣ୍ଡର ଉଲ୍ଲେଖ ଆନନ୍ଦଦାୟକ ନୁହେଁ । ଇତିହାସର ବିସ୍ତୃତ ଦୃଷ୍ଟିକୋଣରୁ ମଧ୍ୟ ଏହାର ସେପରି କିଛି ଗୁରୁତ୍ୱ ନାହିଁ; ତଥାପି ସେ କାଳରେ ଉତ୍ତର ଭାରତର ଅବସ୍ଥା ଯେ କିପରି ସଭ୍ୟତାରୁ ବହୁତ ଦୂରରେ ଥିଲା, ଏହା ବୁଝିବାରେ ଆମକୁ ସାହାଯ୍ୟ କରେ । କେତେକ ପରିମାଣରେ ବର୍ବରତା ହିଁ ଫେରି ଆସିଥିଲା । ଇସଲାମ ଭାରତକୁ ପ୍ରଗତି ଆଣିଥିଲା; କିନ୍ତୁ ମୁସଲମାନ ଆଫଗାନମାନେ ବର୍ବରତା ଆଣିଥିଲେ । ଅନେକ ଲୋକ ଦୁହିଁଙ୍କୁ ମିଶାଇଦିଅନ୍ତି; କିନ୍ତୁ ସେଗୁଡ଼ିକର ପାର୍ଥକ୍ୟ ବୁଝିବା ଉଚିତ୍ ।

ଅନ୍ୟମାନଙ୍କ ପରି ଆଲ୍ଲାଉଦ୍ଦିନ ମଧ୍ୟ ଅସହିଷ୍ଣୁ ଥିଲେ; କିନ୍ତୁ ମନେହୁଏ, ସତେ କି ଭାରତରେ ଏହି ମଧ୍ୟ-ଏସିଆର ଶାସକମାନଙ୍କର ଦୃଷ୍ଟିକୋଣ ଏବେ ବଦଳିବାକୁ ଲାଗିଲା । ସେମାନେ ଭାରତକୁ ନିଜର ଘରରୂପେ ବିଚାରିବାକୁ ଆରମ୍ଭ କଲେ । ସେମାନେ ଆଉ ଏଠି ଅପରିଚିତ ନ ଥିଲେ । ଆଲ୍ଲାଉଦ୍ଦିନ ଜଣେ ହିନ୍ଦୁ ମହିଳାକୁ ବିବାହ କରିଥିଲେ ଏବଂ ତାଙ୍କ ପୁଅ ମଧ୍ୟ ସେଇଆ କରିଥିଲେ ।

ଆଲ୍ଲାଉଦ୍ଦିନଙ୍କ ଅମଳରେ ଉଦା ଅଧିକେ କୁଶଳ ଶାସନବ୍ୟବସ୍ଥା ପ୍ରଚଳନର ଉଦ୍ୟମ କରାଗଲା ପରି ମନେହୁଏ । ସୈନ୍ୟଚାଳନା ଠିକ୍ ରୂପେ କରିବା ନିମନ୍ତେ ଯାତାୟାତ ପଥର ବିଶେଷଭାବରେ ସୁରକ୍ଷିତ ହୋଇଥିଲା ଏବଂ ଆଲ୍ଲାଉଦ୍ଦିନ ସେନାବାହିନୀ ପ୍ରତି ବିଶେଷ ଯତ୍ନ ଦେଉଥିଲେ । ସେ ଏହାକୁ ଅତ୍ୟନ୍ତ ଶକ୍ତିଶାଳୀ କଲେ ଏବଂ ଏହା ସାହାଯ୍ୟରେ ଗୁଜରାଟ ଓ ଦକ୍ଷିଣର ଅନେକ ଅଂଶ ଜୟ କରିଥିଲେ । ପ୍ରଚୁର ସମ୍ପଦ ସେନା ତାଙ୍କର ସେନାପତି ଦକ୍ଷିଣରୁ ଫେରିଥିଲେ । କଥିତ ଅଛି ଯେ ସେ ସଙ୍ଗରେ ୫୦,୦୦୦ ମହଣ ସୁନା, ବହୁସଂଖ୍ୟାରେ ମୁକ୍ତା ଓ ହୀରା, ଏବଂ ୨୦,୦୦୦ ଘୋଡ଼ା ଓ ୩୧୨ ହାତୀ ଆଣିଥିଲେ ।

ଚିତୋର ରାଜପୁତମାନଙ୍କର କାହାଣୀ, ବୀରତ୍ୱ ଓ ସାହସ ନିମନ୍ତେ ପ୍ରସିଦ୍ଧ ଥିଲା; କିନ୍ତୁ ଯେତେବେଳେ ଯୁଦ୍ଧର ସେହି ପୁରୁଣାକାଳିଆ ଢଙ୍ଗକୁ ଧରି ରଖିଥିବାରୁ ଆଲ୍ଲାଉଦ୍ଦିନଙ୍କ କର୍ମକୁଶଳ ସେନା ସେମାନଙ୍କୁ ଅଭିଭୂତ କରି ପକାଇଲା । ୧୩୦୩ରେ ଚିତୋରକୁ ଘେରାଉ କରାଯାଇଥିଲା । କିନ୍ତୁ ଏହା ହେବା ପୂର୍ବରୁ ପୁରୁଣାପ୍ରଥା ଅନୁସାରେ ଦୁର୍ଗର ନରନାରୀ ଭୀଷଣ ଜହର ନୀତି ପାଳନ କରିଥିଲେ । ଏହା ଅନୁସାରେ ଯେତେବେଳେ ପରାଜୟ ଆସି ପହଞ୍ଚେ ଏବଂ ଆଉ ଅନ୍ୟ ଉପାୟ ନ ଥାଏ, ସେତେବେଳେ ଚରମ ଅବସ୍ଥାରେ ପୁରୁଷମାନଙ୍କର କର୍ତ୍ତବ୍ୟ ହେଉଛି ସେମାନେ ବାହାରକୁ ଯାଇ ଯୁଦ୍ଧକ୍ଷେତ୍ରରେ ପ୍ରାଣ ଦେବେ ଏବଂ ସ୍ତ୍ରୀଲୋକମାନେ ଚିତା ଜାଳି ସେଥିରେ ନିଜକୁ ଦଗ୍ଧ କରିବେ । ଏହା ଏକ ଭୀଷଣ କାଣ୍ଡ; ବିଶେଷତଃ ସ୍ତ୍ରୀ ଲୋକମାନଙ୍କ ପକ୍ଷରେ । ନାରୀମାନେ ଯଦି ହାତରେ ଖଣ୍ଡା ଧରି ଯାଇ ଯୁଦ୍ଧକ୍ଷେତ୍ରରେ ପ୍ରାଣ ହରାଉଥାନ୍ତେ, ତେବେ ଭଲ ହେଉଥାନ୍ତା; କିନ୍ତୁ ଯେ କୌଣସି ଅବସ୍ଥାରେ ଯେତେବେଳେ ଯୁଦ୍ଧରେ ବିଜୟର ଯାହା ଅର୍ଥଥିଲା, ସେଥିରେ ଦାସତ୍ୱ ଓ ଆତ୍ମାପମାନ ଅପେକ୍ଷା ମୃତ୍ୟୁ ହିଁ ଶ୍ରେୟସ୍କର ।

ଏଥିଭିତରେ ଏ ଦେଶର ଲୋକେ ହିନ୍ଦୁମାନଙ୍କୁ ଧୀରେ ଧୀରେ ଇସଲାମ ଧର୍ମରେ ଦୀକ୍ଷିତ କରାଉଥିଲେ । ଏହି ପ୍ରକ୍ରିୟା କ୍ଷିପ୍ରଗତିରେ ହେଉ ନ ଥିଲା । ଇସଲାମ ଧର୍ମ ହୃଦୟଗ୍ରାହୀ ହେବାରୁ କେତେକ ଲୋକ ଧର୍ମ ପରିବର୍ତ୍ତନ କଲେ ଏବଂ ଆଉ କେତେକ ଯେଉଁ ପାଖ ଜୟଲାଭ କରିବ, ସେ ପାଖରେ ରହିବା ସ୍ୱାଭାବିକ ଭାବି କରିଥିଲେ; କିନ୍ତୁ ପରିବର୍ତ୍ତନର ମୁଖ୍ୟ କାରଣ ହେଲା ଅର୍ଥନୈତିକ । ଯେଉଁ ଲୋକେ ମୁସଲମାନ ହୋଇ ନ ଥିଲେ ସେମାନଙ୍କୁ ବିଶେଷ ଟିକସ ଦେବାକୁ ପଡ଼ୁଥିଲା—ଏହାକୁ ଜିଜିୟା କର କହନ୍ତି । ଗରିବଙ୍କ ଉପରେ ଏହା ଶକ୍ତ ବୋଝ । ଅନେକେ କେବଳ ଏଥିରୁ ରକ୍ଷା ପାଇବା ପାଇଁ ଧର୍ମ ପରିବର୍ତ୍ତନ କରିଥିଲେ । ଉଚ୍ଚ ଶ୍ରେଣୀଙ୍କ ମଧ୍ୟରେ ଦରବାରର ଅନୁଗ୍ରହ ଓ ଉଚ୍ଚପଦବୀ ଲାଳସା ହିଁ ପ୍ରଧାନ ମତଲବ ଥିଲା । ଆଲ୍ଲାଉଦ୍ଦିନଙ୍କ ପ୍ରଧାନ ସେନାପତି ଯେ କି ଦକ୍ଷିଣ ବିଜୟ କରିଥିଲେ, ସେ ହିନ୍ଦୁଧର୍ମରୁ ମୁସଲମାନ ଧର୍ମରେ ଦୀକ୍ଷିତ ହୋଇଥିଲେ ।

ଦିଲ୍ଲୀର ଆଉ ଏକ ଅତି ଅସାଧାରଣ ସୁଲତାନଙ୍କ ସମ୍ବନ୍ଧରେ ମୁଁ ତୋତେ ଅବଶ୍ୟ କହିବି । ତାଙ୍କ ନାମ ହେଉଛି ମହମ୍ମଦ ବିନ୍ ତୋଗଲକ । ସେ ଫାର୍ସୀ ଓ ଆରବୀ ଭାଷାରେ ଜଣେ ଉଚ୍ଚ ଶିକ୍ଷାପ୍ରାପ୍ତ ଓ ପଣ୍ଡିତ ଲୋକ ଥିଲେ । ସେ ଦର୍ଶନ, ତର୍କଶାସ୍ତ୍ର ଏପରି କି ଗ୍ରୀକ୍ ଦର୍ଶନ ବି ଅଧ୍ୟୟନ କରିଥିଲେ । ସେ ଗଣିତ, ବିଜ୍ଞାନ ଓ ଚିକିତ୍ସାଶାସ୍ତ୍ର ସମ୍ବନ୍ଧରେ କିଛି ଜାଣିଥିଲେ । ସେ ଜଣେ ସାହସିକ ବ୍ୟକ୍ତି ଏବଂ ତାଙ୍କ ଅମଳରେ ଜଣେ ବିଦ୍ୟାଶ୍ରେଷ୍ଠ ଓ ବିସ୍ମୟକର ଲୋକ ଭାବରେ ପରିଚିତ ଥିଲେ; ତଥାପି ଏହି ଶ୍ରେଷ୍ଠବ୍ୟକ୍ତି ନିଷ୍ଠୁରତାର ଏକ ପ୍ରଚଣ୍ଡ ମୂର୍ତ୍ତି ଥିଲେ ଏବଂ ନିତାନ୍ତ ଉନ୍ମତ୍ତ ହେଲା ପରି ମନେହୁଏ । ସେ ନିଜର ପିତାଙ୍କୁ ବଧକରି ସିଂହାସନ ପାଇଲେ । ଇରାନ ଓ ଚୀନ ବିଜୟ କରିବା ବିଷୟରେ ତାଙ୍କର ଅଦ୍ଭୁତ ଧାରଣା ଥିଲା । ସ୍ୱାଭାବିକରୂପେ ଏଥିପାଇଁ ସେ ଦୁଃଖିତ ହୋଇଥିଲେ । ବେନାମୀ ନୋଟିସ ଦେଇ ତାଙ୍କ ନୀତିର ସମାଲୋଚନା କରିବାକୁ ଦିଲ୍ଲୀ ନଗରୀର କେତେକ ଲୋକ ସାହସ କରିଥିବା ହେତୁ ସେ ନିଜ ରାଜଧାନୀ ଦିଲ୍ଲୀକୁ ଧ୍ୱଂସ କରିଦେବାର ଯେଉଁ ସିଦ୍ଧାନ୍ତ କରିଥିଲେ, ତାହା ଅତ୍ୟନ୍ତ ନିଦାରୁଣ ବିଷୟ । ସେ ଆଦେଶ କଲେ ଯେ ରାଜଧାନୀ ଦିଲ୍ଲୀରୁ ଦକ୍ଷିଣରେ ଦେଓଗିରିକୁ ଉଠିଯିବ (ଏବେ ଏହା ହାଇଦ୍ରାବାଦ ଷ୍ଟେଟରେ ରହିଛି) । ଏହାକୁ ଦୌଲତାବାଦ ନାମ ଦେଲେ । କେତେକ ଘରର ମାଲିକଙ୍କୁ କିଛିଟା କ୍ଷତିପୂରଣ ଦିଆଗଲା ଏବଂ ତାପରେ ସମସ୍ତଙ୍କୁ ତିନି ଦିନ ଭିତରେ ନଗର ଛାଡ଼ିଯିବା ନିମନ୍ତେ ହୁକୁମ ହେଲା । କେହି ବାଦ ପଡ଼ିଲେ ନାହିଁ ।

ଅଧିକାଂଶ ଲୋକ ଛାଡ଼ିଗଲେ । କେତେକ ଲୁଚି ରହିଲେ । ସେମାନଙ୍କୁ ପାଇଲା ମାତ୍ରେ ନିଷ୍ଠୁର ଭାବରେ ଶାସ୍ତି ଦିଆଗଲା, ଯଦିଓ ତାଙ୍କ ଭିତରେ ଜଣେ ଅନ୍ଧ ଓ ଆଉ ଜଣେ ପକ୍ଷାଘାତ ରୋଗଗ୍ରସ୍ତ ଥିଲେ । ଦିଲ୍ଲୀରୁ ଦୌଲତାବାଦ ଯିବାକୁ ୪୦ ଦିନ ଲାଗିଲା । ଏହି ଯାତ୍ରା ଭିତରେ ଲୋକଙ୍କର କି ଦୁର୍ଦ୍ଦଶା ହୋଇଥିବ ଏବଂ କିପରି ଅନେକ ଲୋକ ଟଳି ପଡ଼ିଥିବେ, ତାହା ସହଜରେ ଅନୁମାନ କରାଯାଇପାରେ ।

ଦିଲ୍ଲୀ ନଗରର ଅବସ୍ଥା କ'ଣ ହେଲା ? ଦୁଇ ବର୍ଷ ପରେ ମହମ୍ମଦ ବିନ୍ ତୋଗଲକ ଦିଲ୍ଲୀରେ ପୁନର୍ବାର ଲୋକବସତିର ଚେଷ୍ଟା କଲେ; କିନ୍ତୁ ସେ କୃତକାର୍ଯ୍ୟ ହୋଇପାରିଲେ ନାହିଁ । ଜଣେ ସାକ୍ଷାତ୍ ଦର୍ଶକଙ୍କ ବର୍ଣ୍ଣନା ଅନୁସାରେ ସେ ପୂର୍ବରୁ ଏହାକୁ ଏକ "ସମ୍ପୂର୍ଣ୍ଣ ମରୁଭୂମି"ରେ ପରିଣତ କରିଥିଲେ । କୌଣସି ଉଦ୍ୟାନକୁ ଶୀଘ୍ର ଜଙ୍ଗଲରେ ପରିଣତ କରିବା ସମ୍ଭବ; କିନ୍ତୁ ଜଙ୍ଗଲକୁ ପୁନର୍ବାର ଉଦ୍ୟାନରେ ପରିଣତ କରିବା ସହଜ ନୁହେଁ । ସୁଲତାନଙ୍କ ସାଥିରେ ଥିବା ଇବନ୍‌ବାଟୁଟା ନାମକ ଜଣେ ଆଫ୍ରିକାର ମୁର୍ ପରିବ୍ରାଜକ ଦିଲ୍ଲୀକୁ ଫେରିଥିଲେ ଏବଂ ସେ କହିଛନ୍ତି, "ଏହା ପୃଥିବୀର ପ୍ରଧାନ ସହରମାନଙ୍କ ମଧ୍ୟରୁ ଏକତମ । ଆମେ ଏଥିରେ ପ୍ରବେଶ କଲାବେଳକୁ ଯାହା ବର୍ଣ୍ଣନା କରାହୋଇଛି, ସେହି ଅବସ୍ଥା ଦେଖିଲୁ । ଏହା ଖାଲି ପରିତ୍ୟକ୍ତ ଏବଂ ଏଥିରେ

।ବି ଅଲ୍ପ ଅଧିବାସୀ ଥିଲେ ।" ଆଉ ଜଣେ ବ୍ୟକ୍ତି ଏହି ନଗର ୮ରୁ ୧୦ ମାଇଲ ପର୍ଯ୍ୟନ୍ତ ବିସ୍ତୃତ ହୋଇଥିଲି ବୋଲି ବର୍ଣ୍ଣନା କରି ଲେଖିଛନ୍ତି, "ସବୁ ଧ୍ୱଂସ କରି ଦିଆଗଲା । ଏପରି ପୂର୍ଣ୍ଣ ଭାବରେ ଧ୍ୱଂସ କରାଗଲା ଯେ ନଗରର କୋଠା, ରାଜପ୍ରାସାଦ ବା ତାହାର ପାଖଆଖ ଅଞ୍ଚଳମାନଙ୍କରେ କେଉଁଠି ହେଲେ ଗୋଟିଏ ବିରାଡ଼ି ବା କୁକୁର ବାଦ ପଡ଼ି ନ ଥିଲା ।"

ଏହି ଉନ୍ମତ୍ତ ବ୍ୟକ୍ତି ୨୫ ବର୍ଷ ପର୍ଯ୍ୟନ୍ତ ୧୩୫୧ ଯାଏ ସୁଲତାନ ଭାବରେ ଶାସନ କରିଥିଲେ । ଲୋକେ ତାଙ୍କ ଶାସନର କପରି ଆସ୍ଫାଳନ, କ୍ରୂରତା ଓ ଅକର୍ମଣ୍ୟତା ସହ୍ୟ କରିଥିଲେ, ତାହା ଅତ୍ୟନ୍ତ ଆଶ୍ଚର୍ଯ୍ୟଜନକ । କିନ୍ତୁ ଲୋକଙ୍କର ଦାସତ୍ୱ ସତ୍ତ୍ୱେ ମହମ୍ମଦ ତୋଗଲକ ତାଙ୍କର ସାମ୍ରାଜ୍ୟ ଭାଙ୍ଗିବାରେ ସଫଳ ହେଲେ । ତାଙ୍କର ଉନ୍ମତ୍ତ ଯୋଜନା ଓ ଅତ୍ୟଧିକ କରଭାର ହେତୁ ଦେଶ ଧ୍ୱଂସ ହୋଇଗଲା । ଦୁର୍ଭିକ୍ଷ ପଡ଼ିଲା ଏବଂ ଶେଷରେ ବିଦ୍ରୋହ ବି ହେଲା । ଏପରି କି ତାଙ୍କ ଜୀବନକାଳ ଭିତରେ ୧୩୪୦ ପରେ ସାମ୍ରାଜ୍ୟର ଅନେକ ଅଞ୍ଚଳ ସ୍ୱାଧୀନ ହୋଇଗଲା । ବଙ୍ଗଳା ସ୍ୱାଧୀନ ହୋଇଥିଲା । ଦକ୍ଷିଣରେ କେତେକ ରାଜ୍ୟ ଗଠିତ ହେଲା । ଏମାନଙ୍କ ମଧ୍ୟରେ ମୁଖ୍ୟ ହେଉଛି ବିଜୟନଗରର ହିନ୍ଦୁ ରାଜ୍ୟ । ଏହା ୧୩୩୬ରେ ଗଢ଼ାହେଲା ଏବଂ ଦଶ ବର୍ଷ ଭିତରେ ଦକ୍ଷିଣରେ ଏକ ପ୍ରଧାନ ଶକ୍ତି ହୋଇଥିଲା ।

ଦିଲ୍ଲୀ ନିକଟରେ ମହମ୍ମଦଙ୍କ ପିତାଙ୍କ ନିର୍ମିତ ତୋଗଲକାବାଦର ଧ୍ୱଂସାବଶେଷ ରୁ ଏବେ ବି ଦେଖିପାରିବୁ ।

## ୬୭ । ଚେଙ୍ଗିଜ୍ ଖାଁ ଏସିଆ ଓ ଇଉରୋପକୁ ଦୋହଲାଇ ଦେଲା

ଜୁନ୍ ୨୫, ୧୯୩୨

ମୋର ଅନେକ ଚିଠିରେ ମୁଁ ମଙ୍ଗୋଲ ଓ ତାଙ୍କର ଆତଙ୍କ ଓ ଧ୍ୱଂସସୃଷ୍ଟି ବିଷୟରେ ଉଲ୍ଲେଖ କରିଛୁ । ଚୀନରେ ମଙ୍ଗୋଲମାନଙ୍କର ଆଗମନ ସହିତ ସୁଙ୍ଗବଂଶର ବର୍ଣ୍ଣନା ବନ୍ଦ କରିଛେ । ପଶ୍ଚିମ-ଏସିଆରେ ବି ସେହିମାନଙ୍କ ଆଗମନ ପର୍ଯ୍ୟନ୍ତ ଆମେ ବର୍ଣ୍ଣନା କରିଛେ ଏବଂ ପୁରୁଣା ବ୍ୟବସ୍ଥାର ଲୋପ ହୋଇଯାଇଛି । ଭାରତରେ ଦାସରାଜା-

ମାନେ ତାଙ୍କଠାରୁ ରକ୍ଷା ପାଇଥିଲେ; କିନ୍ତୁ ଯାହାହେଉ, ସେମାନେ ଯଥେଷ୍ଟ ବିଶୃଙ୍ଖଳା ସୃଷ୍ଟି କରିଥିଲେ । ମଙ୍ଗୋଲିଆର ଏହି ଯାଯାବରମାନେ ଏସିଆକୁ ଦବାଇ ରଖିଥିଲେ । ଖାଲି ଏସିଆ ନୁହେଁ, ଅର୍ଦ୍ଧେକ ଇଉରୋପକୁ ମଧ୍ୟ । ହଠାତ୍ ବାହାରିପଡ଼ି ପୃଥିବୀକୁ ଚମକାଇ ଦେଇଥିବା ଏହି ଅଦ୍ଭୁତ ଲୋକମାନେ କିଏ ? ଶକ, ହୁନ, ତୁର୍କ ଓ ତାତାର ଏ ସମସ୍ତେ ମଧ୍ୟ ଏସିଆରୁ ଆସିଥିଲେ ଏବଂ ଇତିହାସରେ ଉଲ୍ଲେଖନୀୟ କାର୍ଯ୍ୟ କରିଛନ୍ତି । ଏମାନଙ୍କ ଭିତରୁ କେତେକ ଏବେ ସୁଦ୍ଧା କର୍ତ୍ତୃତ୍ୱ କରୁଥିଲେ; ସେଲଜୁକ ତୁର୍କମାନେ ପଶ୍ଚିମ ଏସିଆରେ ଓ ଉତ୍ତର-ଚୀନ ଏବଂ ଅନ୍ୟାନ୍ୟ ତାତାରମାନେ ରହିଥିଲେ । କିନ୍ତୁ ଏପର୍ଯ୍ୟନ୍ତ ମଙ୍ଗୋଲମାନେ ବିଶେଷ କିଛି କରି ନ ଥିଲେ । ସମ୍ଭବତଃ ପଶ୍ଚିମ-ଏସିଆରେ ସେମାନଙ୍କ ସମ୍ବନ୍ଧରେ କେହି ବେଶି କିଛି ଜାଣି ନ ଥିଲେ । ମଙ୍ଗୋଲିଆର ଅନେକ ଅନାମଧେୟ ଜାତିରୁ ସେମାନେ ଆସିଥିଲେ, ଏବଂ ଯେଉଁ କିନ୍ ତାତାରମାନେ ଉତ୍ତର ଚୀନ୍ ଜୟ କରିଥିଲେ, ସେମାନଙ୍କର ପ୍ରଜାଥିଲେ ।

ହଠାତ୍ ସେମାନେ କ୍ଷମତା ଲାଭକଲେ । ସେମାନଙ୍କର ବିକ୍ଷିପ୍ତ ଜାତିସବୁ ଏକତ୍ର ମିଳିତ ହେଲେ ଏବଂ ବିଖ୍ୟାତ ଖାଁଙ୍କୁ ତାଙ୍କର ଏକମାତ୍ର ନେତା ରୂପେ ନିର୍ବାଚିତ କଲେ ଓ ତାଙ୍କର ବଶ୍ୟତା ସ୍ୱୀକାର କଲେ । ତାଙ୍କ ନେତୃତ୍ୱରେ ସେମାନେ ପେକିଂ ଯାତ୍ରା କଲେ ଓ କିନ୍ ସାମ୍ରାଜ୍ୟର ବିଲୋପ ସାଧନ କଲେ । ସେମାନେ ପଶ୍ଚିମକୁ ଯାତ୍ରା କଲେ ଏବଂ ପଥରେ ଥିବା ବିଶାଳ ରାଜ୍ୟଗୁଡ଼ିକୁ ଧ୍ୱଂସ କରିଦେଲେ । ସେମାନେ ରୁଷ ଯାଇ ତାକୁ ପରାହତ କଲେ । ପରେ ସେମାନେ ସମ୍ପୂର୍ଣ୍ଣ ଭାବରେ ବାଗଦାଦ ଓ ତାହାର ସାମ୍ରାଜ୍ୟକୁ ମୂଳପୋଛ କଲେ ଏବଂ ପୋଲଣ୍ଡ ଓ ମଧ୍ୟ ୟୁରୋପ ପର୍ଯ୍ୟନ୍ତ ଯାଇଥିଲେ । ତାଙ୍କୁ ରୋକିବାକୁ କେହି ନ ଥିଲେ । ଭାରତ କେବଳ ଭାଗ୍ୟକ୍ରମେ ରକ୍ଷା ପାଇ ଯାଇଥିଲା । ଏହି ଆଗ୍ନେୟ ଉଦ୍‌ଗୀରଣରେ ଇଉରେସିଆ ଜଗତ କିପରି ବିସ୍ମିତ ହୋଇଥିବ, ତାହା ଭଲରୂପେ ଅନୁମାନ କରାଯାଇପାରେ । ଭୂମିକମ୍ପରେ ଲୋକ କିଛି କରି ନ ପାରିଲା ପରି ଏହା ଏକ ବିରାଟ ପ୍ରାକୃତିକ ବିପଦ ଭଳି ମନେହେଲା ।

ସେମାନେ ଖୁବ୍ ବଳିଷ୍ଠ ଲୋକଥିଲେ । ମଙ୍ଗୋଲିଆର ଏହି ଯାଯାବରମାନେ କଷ୍ଟ ସହି ପାରୁଥିଲେ ଏବଂ ଉତ୍ତର-ଏସିଆର ବିସ୍ତୀର୍ଣ୍ଣ ପ୍ରାନ୍ତରରେ ତମ୍ବୁରେ ବାସ କରୁଥିଲେ; କିନ୍ତୁ ସେମାନେ ତାଙ୍କର ମୁଖିଆ ରୂପେ ଯଦି ଜଣେ ଅପୂର୍ବ ଦକ୍ଷ ଲୋକଙ୍କୁ ବାଛି ନ ଥାନ୍ତେ ତାହାହେଲେ ତାଙ୍କର ବଳ ବା କଠୋର ଶିକ୍ଷା କୌଣସି କାମରେ ଲାଗି ନ ଥାନ୍ତା । ଏହି ବ୍ୟକ୍ତି ଚେଙ୍ଗିଜ ଖାଁ ନାମରେ ପରିଚିତ (ଅଥବା ଗେଙ୍ଗିଜ, ଜେଙ୍ଗିଜ ବା ଜେଙ୍ଗିଜ ଖାଁ । ଇତ୍ୟାଦି ନାନା ପ୍ରକାର ବନାନ କରନ୍ତି) । ସେ ୧୧୫୫ରେ ଜନ୍ମ ହୋଇଥିଲେ ଏବଂ ତାଙ୍କର ମୂଳ ନାମଥିଲା ଟିମୁଚିନ । ସେ ଛୋଟ ବାଳକ ଥିଲା ବେଳେ ତାଙ୍କର ପିତା ୟେସୁକେଇ ବାଗାତୁର ମରିଯାଇଥିଲେ । ମୋଗଲ ସାମନ୍ତ-

ମାନଙ୍କର "ବାଗାତୁର" ଏକ ପ୍ରିୟ ନାମଥିଲା । ଏହାର ଅର୍ଥ "ବୀର" ଏବଂ ମୋର ମନେହୁଏ, ଉର୍ଦ୍ଦୁ "ବାହାଦୁର" ଶବ୍ଦ ଏଥିରୁ ଆସିଛି ।

୧୦ ବର୍ଷର ବାଳକ ଅବସ୍ଥାରୁ କାହାରି ସାହାଯ୍ୟ ନ ପାଇ ସେ ନିଜେ ସଂଗ୍ରାମ କରିବାରେ ଲାଗିଲେ ଏବଂ ଶେଷରେ ଉନ୍ନତି କଲେ । ପଦେ ପଦେ ସେ ଅଗ୍ରସର ହେଲେ । ଶେଷରେ ବିରାଟ ମଙ୍ଗୋଲ ଏସେମ୍ବ୍ଲି (ଯାହାକୁ କୁରୁଲତାଇ କହନ୍ତି) ବୈଠକ ହେଲା ଏବଂ ତାହାଙ୍କୁ ମହାନ୍ ଖାଁ, କାଗାନ ବା ସମ୍ରାଟରୂପେ ନିର୍ବାଚିତ କରିଗଲା । କେତେ ବର୍ଷ ପୂର୍ବରୁ ତାଙ୍କୁ ଚେଙ୍ଗିଜ୍ ନାମ ଦିଆଯାଇଥିଲା ।

୧୩ଶ ଶତାବ୍ଦୀରେ 'ମଙ୍ଗୋଲ ଲୋକଙ୍କର ଏକ ଗୁପ୍ତ ଇତିହାସ' ଲେଖା ହୋଇଥିଲା ଏବଂ ୧୪ଶ ଶତାବ୍ଦୀରେ ଏହା ଚୀନରେ ପ୍ରକାଶିତ ହେଲା । ଏହି ନିର୍ବାଚନ ସମ୍ବନ୍ଧରେ ସେଥିରେ ବର୍ଣ୍ଣନା ହୋଇଛି :—

"ତେଣୁ ଯେତେବେଳେ ଶତାବାସ ନାମକ ସମ୍ବତ୍ସରରେ ଯୁଗ ଯୁଗ ଧରି ତମ୍ବୁରେ ବାସ କରୁଥିବା ଲୋକେ ଏକ କର୍ତ୍ତୃତ୍ୱାଧୀନରେ ମିଳିତ ହେଲେ, ଯେତେବେଳେ ସେମାନେ ଓନନ୍ ନଦୀ ବାହାରିଥିବା ସ୍ଥାନ ନିକଟରେ ଏକତ୍ର ହେଲେ ଓ ନବପାଦ ଉପରେ ନିଜର ଶ୍ୱେତ ପତାକା ଉତ୍ତୋଳନ କରି ସେମାନେ ଚେଙ୍ଗିଜଙ୍କୁ 'କାଗାନ' ଉପାଧି ଦେଲେ ।"

ଚେଙ୍ଗିଜ ମହାନ ଖାଁ ବା କାଗାନ ହେଲାବେଳକୁ ତାଙ୍କର ୫୧ ବର୍ଷ ବୟସ ହୋଇଥିଲା । ସେ ଯୁବକ ନ ଥିଲେ ଏବଂ ତାଙ୍କ ବୟସରେ ଅଧିକାଂଶ ଲୋକ ଶାନ୍ତି ଓ ନୀରବତା ଖୋଜୁଥିଲେ; କିନ୍ତୁ ତାଙ୍କର ଅଭିଯାନ ପର୍ବର ଏହା ଆରମ୍ଭ ମାତ୍ର — ଏହା ଲକ୍ଷ୍ୟ କରିବାର କଥା । କାରଣ ଅଧିକାଂଶ ବିଜେତା ଖୁବ୍ ଯୁବାବସ୍ଥାରୁ ବିଜୟ ଅଭିଯାନ ଆରମ୍ଭ କରନ୍ତି । ଏଥିରୁ ଆହୁରି ମଧ୍ୟ ଜଣାଯାଏ ଯେ ଚେଙ୍ଗିଜ୍ କେବଳ ଯୁବକୋଚିତ ଉତ୍ସାହରେ ଏସିଆ ଆକ୍ରମଣ କରିବାକୁ ଆସି ନ ଥିଲେ । ସେ ଜଣେ ସତର୍କ ଓ ସଚେତ ମଧ୍ୟମ ବୟସ୍କ ପୁରୁଷ ଥିଲେ ଏବଂ ସେ ଗଭୀର ଚିନ୍ତା ଓ ଆୟୋଜନ କରିସାରି ଯେ କୌଣସି ବଡ଼ କାର୍ଯ୍ୟରେ ହାତ ଦେଉଥିଲେ ।

ମଙ୍ଗୋଲମାନେ ଯାଯାବର ଥିଲେ । ସେମାନେ ସହର ଓ ସହରର ଗୃହ-ଚାଳନକୁ ଘୃଣା କରୁଥିଲେ । ଅନେକ ଲୋକ ଭାବନ୍ତି ଯେ ସେ ଯାଯାବର ଥିବାରୁ ଅବଶ୍ୟ ବର୍ବର ହୋଇଥିବେ; ମାତ୍ର ଏହା ଏକ ଭୁଲ୍ ଧାରଣା । ଅବଶ୍ୟ ସେମାନେ ନଗର-କଳା ଅନେକ ଜାଣି ନ ଥିଲେ; କିନ୍ତୁ ସେ ନିଜ ଜୀବନରେ ଏକ ପନ୍ଥା ଅବଲମ୍ବନ କରିଥିଲେ ଓ ଏକ ଜଟିଳ ସଙ୍ଗଠନ ତାଙ୍କର ଥିଲା । ତାଙ୍କର ସଂଖ୍ୟା ହେତୁ ନୁହେଁ, ଶୃଙ୍ଖଳା ଓ

ସଙ୍ଗଠନ ହେତୁ ହିଁ ଯୁଦ୍ଧକ୍ଷେତ୍ରରେ ସେ ମହାନ ବିଜୟ ହାସଲ କରିପାରିଥିଲେ । ସର୍ବୋପରି ଚେଙ୍ଗିଜ୍‌ଙ୍କ ବିଚକ୍ଷଣ ନେତୃତ୍ୱ ଯୋଗୁଁ ଏହା ହୋଇଥିଲା, କାରଣ ଏଥିରେ ସନ୍ଦେହ ନାହିଁ ଯେ ଚେଙ୍ଗିଜ ଜଣେ ଇତିହାସ ପ୍ରସିଦ୍ଧ ସାମରିକ ପ୍ରତିଭାଶାଳୀ ନେତା ଥିଲେ । ତାଙ୍କ ସମକ୍ଷରେ ଆଲେକଜାଣ୍ଡର ଓ ସିଜର ଶ୍ରେଷ୍ଠ ପରି ବୋଧହୁଅନ୍ତି । ଚେଙ୍ଗିଜ କେବଳ ଯେ ନିଜେ ଜଣେ ପ୍ରସିଦ୍ଧ ସେନାପତି ଥିଲେ, ତାହା ନୁହେଁ, ସେ ମଧ୍ୟ ତାଙ୍କର ଅନେକ ସେନାପତିଙ୍କୁ ତାଲିମ କରିଥିଲେ ଓ ସେମାନଙ୍କୁ ବିଚକ୍ଷଣ ନେତା କରିଥିଲେ । ନିଜର ମାତୃଭୂମିରୁ ହଜାର ହଜାର ମାଇଲ ଦୂରରେ ଶତ୍ରୁ ଓ ବିରୋଧୀ ଅଧିବାସୀଙ୍କଦ୍ୱାରା ପରିବେଷ୍ଟିତ ହୋଇ ସେମାନେ ତାଙ୍କ ଅପେକ୍ଷା ବେଶୀ ସଂଖ୍ୟକ ଲୋକଙ୍କ ବିରୁଦ୍ଧରେ ଯୁଦ୍ଧ କରି ବିଜୟ ହାସଲ କରିଥିଲେ ।

ଚେଙ୍ଗିଜ ଖାଁ ଏସିଆ ଓ ଇଉରୋପକୁ ମାଡ଼ିଗଲାବେଳେ ଏହାର ମାନଚିତ୍ର କିପରି ଥିଲା ? ମଙ୍ଗୋଲିଆର ପୂର୍ବ ଓ ଦକ୍ଷିଣରେ ଚୀନ ଦେଶ ବିଭକ୍ତ ହୋଇଯାଇଥିଲା । ଦକ୍ଷିଣରେ ସୁଙ୍ଗ ସାମ୍ରାଜ୍ୟ ଥିଲା । ସେଠାରେ ଦକ୍ଷିଣସ୍ଥ ସୁଙ୍ଗମାନେ କର୍ତ୍ତୃତ୍ୱ କରୁଥିଲେ । ଉତ୍ତରରେ କିନ୍ ବା ସ୍ୱର୍ଣ୍ଣବର୍ଣ୍ଣ ତାତାରମାନଙ୍କର ସାମ୍ରାଜ୍ୟ ଥିଲା । ସେମାନେ ସୁଙ୍ଗମାନଙ୍କୁ ତଡ଼ି ଦେଇଥିଲେ । ତାଙ୍କ ରାଜଧାନୀ ଥିଲା ପେକିଂ । ପଶ୍ଚିମରେ ଗୋବି ମରୁଭୂମି ଓ ତା ପରବର୍ତ୍ତୀ ଅଞ୍ଚଳରେ ହିଆ ବା ତାଙ୍ଗୁତ୍ ସାମ୍ରାଜ୍ୟ ଥିଲା । ଏମାନେ ବି ଯାଯାବର ଜାତି ଥିଲେ । ଭାରତରେ ଦିଲ୍ଲୀରେ ଦାସ ରାଜାମାନେ ଶାସନ କରୁଥିବାର ଆମେ ଦେଖିଛେ । ଇରାନ ଓ ମେସୋପୋଟାମିଆ (ଇରାକ)ରେ ଭାରତର ସୀମାନ୍ତ ପର୍ଯ୍ୟନ୍ତ ଖ୍ୱାରିଜମ ବା ଖିଭାର ବିରାଟ ମୁସଲମାନ ରାଜ୍ୟ ଥିଲା । ଏହାର ରାଜଧାନୀ ଥିଲା ସମରକନ୍ଦ । ଏହାର ପଶ୍ଚିମକୁ ସେଲଜୁକମାନେ ଥିଲେ ଏବଂ ଇଜିପ୍ଟ ଓ ପାଲେଷ୍ଟାଇନରେ ସାଲାଦିନଙ୍କ ଉତ୍ତରାଧିକାରୀମାନେ ଥିଲେ । ବାଗଦାଦର ଚତୁର୍ଦ୍ଦିଗରେ ସେଲଜୁକମାନଙ୍କ ସାହାଯ୍ୟରେ ଖଲିଫା ଶାସନ କରୁଥିଲେ ।

ଏହା କ୍ରୁଜେଡ୍‌ର ପରକାଳ ଅବସ୍ଥା । ହୋଏନଷ୍ଟାଉଫେନର ୨ୟ ଫ୍ରେଡ଼ରିକ ( ଯାହାଙ୍କୁ ଦୁନିଆରେ ଆଶ୍ଚର୍ଯ୍ୟ କହନ୍ତି ) ପବିତ୍ର ରୋମାନ ସାମ୍ରାଜ୍ୟର ସମ୍ରାଟ ଥିଲେ । ଇଂଲଣ୍ଡରେ ମାଗ୍ନାକାର୍ଟା ଓ ତାର ପରବର୍ତ୍ତୀ ଅବସ୍ଥା ଥିଲା । ଫ୍ରାନ୍ସରେ ରାଜା ନବମ ଲୁଇ ଶାସନ କରୁଥିଲେ । ସେ କ୍ରୁଜେଡ୍‌କୁ ଗଲେ । ସେଠାରେ ତୁର୍କମାନଙ୍କଦ୍ୱାରା ଗିରଫ ହୋଇଥିଲେ ଏବଂ ତାଙ୍କୁ କ୍ଷତିପୂରଣ ଦେବାକୁ ପଡ଼ିଥିଲା । ପୂର୍ବ ଇଉରୋପରେ ରୁଷ, ଉତ୍ତରରେ ନଭ୍‌ଗୋରଡ଼ ଓ ଦକ୍ଷିଣରେ କିଏଭ ଆପାତତଃ ଏହି ଦୁଇଟି ରାଜ୍ୟରେ ବିଭକ୍ତ ହୋଇଥିଲା । ରୁଷ ଓ ପବିତ୍ର ରୋମାନ ସାମ୍ରାଜ୍ୟ ମଧ୍ୟରେ ଥିଲା ହଙ୍ଗେରୀ ଏବଂ ପୋଲାଣ୍ଡ । କନ୍‌ଷ୍ଟାଣ୍ଟିନୋପଲରେ ବିଜାଣ୍ଟାଇନ ସାମ୍ରାଜ୍ୟ ଏବେ ସୁଦ୍ଧା ସମୃଦ୍ଧିଶାଳୀ ଥିଲା ।

ଚେଙ୍ଗିଜ ସବୁ ସତର୍କତାରେ ତାଙ୍କର ଅଭିଯାନର ଯୋଗାଡ଼ କରୁଥିଲେ । ସେ ତାଙ୍କର ସୈନ୍ୟଙ୍କୁ ଯୁଦ୍ଧଶିକ୍ଷା ଦେଲେ ଏବଂ ସର୍ବୋପରି ଘୋଡ଼ାମାନଙ୍କୁ ବି ତାଲିମ ଦେଲେ । କାରଣ ଯାଯାବର ଜାତିଙ୍କ ପକ୍ଷରେ ଘୋଡ଼ା ଅପେକ୍ଷା ଅଧିକ ଗୁରୁତ୍ୱପୂର୍ଣ୍ଣ ଜିନିଷ ଆଉ କିଛି ନାହିଁ । ସେ ତାପରେ ପୂର୍ବକୁ ଯାତ୍ରା କଲେ ଏବଂ ଉତ୍ତର-ଚୀନ ଓ ମାଞ୍ଚୁରିଆର କିନ୍ ସାମ୍ରାଜ୍ୟକୁ ପ୍ରାୟ ଲୋପ କଲେ ଓ ପେକିଂ ଦଖଲ କଲେ । ସେ କୋରିଆକୁ ଅଧୀନସ୍ଥ କଲେ । ସେ ଦକ୍ଷିଣସ୍ଥ ସୁଙ୍ଗମାନଙ୍କ ସହିତ ବନ୍ଧୁତା କରିଥିଲେ ବୋଲି ଜଣାଯାଏ । ସେମାନେ କିନ୍‌ମାନଙ୍କ ବିରୁଦ୍ଧରେ ତାଙ୍କୁ ସାହାଯ୍ୟ କରିଥିଲେ । ପରେ ସେ ପୁଣି ତାଙ୍କ ପାଳି ପଡ଼ିବ ଏକଥା ସେମାନେ ବୁଝିପାରି ନ ଥିଲେ । ଚେଙ୍ଗିଜ ପରେ ତାଙ୍ଗୁତ୍‌ମାନଙ୍କୁ ବି ଜୟ କଲେ ।

ଏହାପରୁ ବୟସ୍କ ପରେ ଚେଙ୍ଗିଜ ବିଶ୍ରାମ ନେଇପାରିଥାଆନ୍ତେ । ପଶ୍ଚିମ ଆକ୍ରମଣ କରିବା ପାଇଁ ତାଙ୍କର କୌଣସି ଅଭିଳାଷ ଥିଲାପରି ଜଣାପଡ଼େ ନାହିଁ । ସେ ସାହା ବା ଖ୍ୱାରିଜମର ରାଜାଙ୍କ ସହିତ ବନ୍ଧୁତା ସମ୍ପର୍କ କରିବାକୁ ଚାହୁଁଥିଲେ; କିନ୍ତୁ ଏହା ହୋଇପାରିଲା ନାହିଁ । ଏକ ପୁରାତନ ଲାଟିନ ପ୍ରବଚନ ଅଛି ଯେ ଭଗବାନ ଯାହାକୁ ଧ୍ୱଂସ କରିବାକୁ ଚାହାନ୍ତି, ତାକୁ ପ୍ରଥମେ ପାଗଳ କରିଦିଅନ୍ତି । ଖ୍ୱାରିଜମର ସାହା ନିଜର ଧ୍ୱଂସ ନିଜେ ଆଣିବାରେ ଲାଗିପଡ଼ିଲେ ଏବଂ ଏହାପରି ନିଜର ଧ୍ୱଂସସାଧନ ଲାଗି ତାଙ୍କ ପକ୍ଷରେ ଯାହା ସମ୍ଭବ, ପ୍ରତ୍ୟେକ କାର୍ଯ୍ୟ ସେ କରିଥିଲେ । ତାଙ୍କର ଏକ ଶାସନକର୍ତ୍ତାଙ୍କ ଦ୍ୱାରା ମଙ୍ଗୋଲ ବଣିକମାନଙ୍କୁ ହତ୍ୟା କରାଗଲା । ସେତେବେଳେ ବୁଢ଼ା ଚେଙ୍ଗିଜ ଶାନ୍ତି କାମନା କରିଥିଲେ ଏବଂ ଶାସକଙ୍କୁ ଶାନ୍ତି ଦେବା ନିମନ୍ତେ କହି ରାଜଦୂତ ପ୍ରେରଣ କରିଥିଲେ । କିନ୍ତୁ ନିର୍ବୋଧ ସାହା ନିଜର ବୃଥା ଆତ୍ମବଡ଼ିମାରେ ଏହି ରାଜଦୂତଙ୍କୁ ଅପମାନ ଦେଲେ ଓ ମାରିଦେଲେ । ଚେଙ୍ଗିଜଙ୍କ ପକ୍ଷରେ ଏହା ସହ୍ୟ କରିବା ଅସମ୍ଭବ; କିନ୍ତୁ ସେ ତରବର ହୋଇ ନ ଥିଲେ । ସେ ସବୁ ସତର୍କତାରେ ଆୟୋଜନ କଲେ ଏବଂ ତାହା ପରେ ତାଙ୍କର ସେନା ନେଇ ପଶ୍ଚିମ ଆଡ଼କୁ ଯାତ୍ରା କଲେ ।

୧୨୧୯ ଖ୍ରୀ:ରେ ଏହି ଯାତ୍ରା ଆରମ୍ଭ ହେଲା; ଏସିଆ ଓ ଆଂଶିକ ଭାବରେ ଇଉରୋପର ଆଖି ଖୋଲିଦେଲା । ଏହି ନୂତନ ଆତଙ୍କ ଏକ ପେଷଣଦଣ୍ଡ ପରି ନିର୍ଦ୍ଦୟ ଭାବରେ ନଗର ଓ ଲକ୍ଷ ଲକ୍ଷ ଲୋକଙ୍କୁ ପେଷିଦେଇ ଚାଲିଗଲା । ଖ୍ୱାରିଜମ ସାମ୍ରାଜ୍ୟ ଲୋପ ହେଲା । ପ୍ରାସାଦପୂର୍ଣ୍ଣ ଓ ୧୦ ଲକ୍ଷରୁ ଅଧିକ ଅଧିବାସୀ ବାସ କରୁଥିବା ବିରାଟ ବୋଖାରା ନଗର ଧୂଳିସାତ୍ କରି ଦିଆଗଲା । ରାଜଧାନୀ ସମରକନ୍ଦ ଧ୍ୱଂସ କରାଗଲା ଏବଂ ତାହାର ୧୦ଲକ୍ଷ ଅଧିବାସୀଙ୍କ ମଧ୍ୟରୁ କେବଳ ୫୦୦୦୦ ଜୀବିତ ରହିଲେ । ହେରାଟ, ବାଲ୍‌ଖ ଓ ଆହୁରି ଅନେକ ସମୃଦ୍ଧିଶାଳୀ ନଗରକୁ ଧ୍ୱଂସ କରାଗଲା । ଲକ୍ଷ ଲକ୍ଷ ଲୋକ ନିହତ ହେଲେ । ମଧ୍ୟ-ଏସିଆରେ ଶହ ଶହ ବର୍ଷ ଧରି ଯେଉଁ କଳା ଓ ଶିଳ୍ପ ବୃଦ୍ଧି

ପାଇଥିଲା, ତାହା ଲୋପ ହେଲା । ଇରାନ୍ ଓ ମଧ୍ୟ-ଏସିଆରେ ସଭ୍ୟ ଜୀବନ ଲୋପ ହେଲା ପରି ବୋଧ ହେଲା । ଚେଙ୍ଗିଜ୍ ଯେଉଁ ସ୍ଥାନ ଦେଇ ଗଲେ, ତାହା ମରୁଭୂମିରେ ପରିଣତ ହୋଇଗଲା ।

ଖ୍ୱାରିଜମର ସାହାଙ୍କ ପୁଅ ଜଲାଲଉଦ୍ଦିନ ଏହି ବନ୍ୟା ବିରୁଦ୍ଧରେ ସାହସର ସହିତ ଯୁଦ୍ଧ କଲେ । ସେ ସିନ୍ଧୁ ନଦୀ ପର୍ଯ୍ୟନ୍ତ ହଟି ଆସିଥିଲେ ଏବଂ କଥିତ ଅଛି ଯେ ସେଠାରେ କଠୋର ଚାପ ପାଇ ସେ ଘୋଡ଼ା ଉପରେ ୩୦ ଫୁଟ ଉଚ୍ଚରୁ ନଦୀ ଭିତରକୁ ଡେଇଁପଡ଼ି ପହଁରି ଚାଲି ଆସିଥିଲେ । ସେ ଦିଲ୍ଲୀ ରାଜଦରବାରରେ ଆଶ୍ରୟ ପାଇଲେ । ଚେଙ୍ଗିଜ୍ ଆଉ ତାଙ୍କର ପଶ୍ଚାଦ୍ଧାବନ କରିବାକୁ ଉଚିତ୍ ମନେକଲେ ନାହିଁ ।

ସେଲଜୁକ ତୁର୍କ ଓ ବାଗଦାଦର କପାଳ ଭଲ । ଚେଙ୍ଗିଜ୍ ସେମାନଙ୍କୁ ଶାନ୍ତିରେ ଛାଡ଼ିଦେଲେ ଏବଂ ଉତ୍ତରପଟେ ରୁଷକୁ ଯାତ୍ରା କଲେ । ସେ କଏଭ୍‌ର ଗ୍ରାଣ୍ଡ ଡିଉକଙ୍କୁ ( ସାମନ୍ତ ରାଜ ) ପରାସ୍ତ କରି ବନ୍ଦୀ କଲେ । ସେ ସିଆ ବା ତାଙ୍ଗୁତ୍‌ମାନଙ୍କର ବିଦ୍ରୋହ ଦମନ କରିବା ନିମନ୍ତେ ପୂର୍ବକୁ ଫେରିଲେ ।

୧୨୨୭ ରେ ୭୨ ବର୍ଷ ବୟସରେ ଚେଙ୍ଗିଜ୍ ମଲେ । ତାଙ୍କର ସାମ୍ରାଜ୍ୟ ପଶ୍ଚିମରେ କୃଷ୍ଣ ସାଗରଠାରୁ ପୂର୍ବରେ ପ୍ରଶାନ୍ତ ମହାସାଗର ପର୍ଯ୍ୟନ୍ତ ବିସ୍ତୃତ ଥିଲା ଏବଂ ଏହା ଏବେ ସୁଦ୍ଧା ଶକ୍ତିଶାଳୀ ଓ ବର୍ଦ୍ଧିଷ୍ଣୁ ଥିଲା । ମଙ୍ଗୋଲିଆରେ କ୍ଷୁଦ୍ର କାରାକୋରମ ସହର ଏବେ ସୁଦ୍ଧା ତାଙ୍କର ରାଜଧାନୀ ଥିଲା । ଯାଯାବର ହୋଇ ସୁଦ୍ଧା ସେ ଜଣେ ଅତ୍ୟନ୍ତ ଦକ୍ଷ ସଙ୍ଗଠକ ଥିଲେ ଏବଂ ତାଙ୍କୁ ସାହାଯ୍ୟ କରିବା ନିମନ୍ତେ ସୁଦକ୍ଷ ମନ୍ତ୍ରୀ ନିଯୁକ୍ତ କରି ବୁଦ୍ଧିମତ୍ତାର ପରିଚୟ ଦେଇଥିଲେ । ତାଙ୍କ ସାମ୍ରାଜ୍ୟ ଏତେ ଦ୍ରୁତ ବେଗରେ ଜୟ କରା ହୋଇଥିଲେ ସୁଦ୍ଧା ତାଙ୍କ ମୃତ୍ୟୁ ପରେ ଭାଙ୍ଗି ପଡ଼ି ନ ଥିଲା ।

ଇରାନୀ ଓ ଆରବ ଐତିହାସିକଙ୍କ ଦୃଷ୍ଟିରେ ଚେଙ୍ଗିଜ୍ ଜଣେ ପିଶାଚ—ତାଙ୍କୁ "ଭଗବାନଙ୍କ ଅଭିଶାପ" ବୋଲି କୁହାଯାଇଥିଲା । ଅତି ନିଷ୍ଠୁର ଲୋକ ଭାବରେ ତାଙ୍କୁ ଚିତ୍ରଣ କରାଯାଇଛି । ସେ ନିଷ୍ଠୁର ଥିଲେ ସନ୍ଦେହ ନାହିଁ; କିନ୍ତୁ ତାଙ୍କ ଅମଳର ଅନ୍ୟ ଶାସକମାନଙ୍କଠାରୁ ସେ କିଛି ଅଲଗା ଧରଣର ନ ଥିଲେ । ପରିମାଣରେ କମ୍ ହେଲେ ସୁଦ୍ଧା ଭାରତରେ ଆଫଗାନ ରାଜାମାନେ ସେହିପରି ଥିଲେ । ୧୧୫୦ ଖ୍ରୀ:ରେ ଆଫଗାନ-ମାନେ ଯେତେବେଳେ ଗଜନୀ ଦଖଲ କଲେ, ସେତେବେଳେ ସେମାନେ ଏକ ପୁରାତନ କଳହର ପ୍ରତିଶୋଧ ନେବା ନିମନ୍ତେ ଏହି ସହରକୁ ଧ୍ୱଂସ ଓ ବିନଷ୍ଟ କରିଦେଲେ । 'ସାତଦିନ ପର୍ଯ୍ୟନ୍ତ ଧ୍ୱଂସ, ଲୁଣ୍ଠନ ଓ ହତ୍ୟାକାଣ୍ଡ କ୍ରମାନ୍ୱୟରେ ଚାଲିଲା । ଯେଉଁ

ଲୋକ ହାବୁଡ଼ରେ ପଡ଼ିଲା, ତାକୁ ହତ୍ୟା କରାଗଲା ଏବଂ ସମସ୍ତ ନାରୀ ଓ ବାଳକ ବାଳିକା-ମାନଙ୍କୁ ବନ୍ଦୀ କରାଗଲା । ମାମୁଦ ରାଜାମାନଙ୍କର (ଅର୍ଥାତ୍ ସୁଲତାନ ମାମୁଦଙ୍କ ବଂଶଧରଙ୍କର) ସମସ୍ତ ପ୍ରାସାଦ ଓ କୋଠା ଆଦି ନଷ୍ଟ କରି ଦିଆ ଯାଇଥିଲା । ପୃଥିବୀରେ ଏହାର ସମକକ୍ଷ କିଛି ନଥିଲା" । ନିଜର ମୁସଲମାନ ଭାଇମାନଙ୍କ ପ୍ରତି ମୁସଲମାନ-ମାନଙ୍କର ଏପରି ବ୍ୟବହାର । ଗୁଣ ଦିଗରୁ ଦେଖିଲେ ଏହା ଭିତରେ ଏବଂ ଆଫଗାନ ରାଜାଙ୍କ ଅଧୀନରେ ଭାରତରେ ଯାହା ଘଟିଥିଲା ତାହା ଓ ମଧ୍ୟ-ଏସିଆରେ ଏବଂ ଇରାନରେ ଚେଙ୍ଗିଜଙ୍କ ଧ୍ୱଂସଲୀଳା ଭିତରେ ବାଛିବାର କିଛି ନାହିଁ । ଖ୍ୱାରିଜମର ଶାହା ତାଙ୍କ ରାଜଦୂତକୁ ହତ୍ୟା କରିବାରୁ ଚେଙ୍ଗିଜ୍ ବିଶେଷ ଭାବରେ ତାଙ୍କ ଉପରେ କ୍ରୋଧାନ୍ୱିତ ହୋଇଥିଲେ । ତାଙ୍କ ପକ୍ଷରେ ଏହା ଏକ ପ୍ରକାର ପ୍ରତିଶୋଧମୂଳକ ଲଢ଼ାଇ । ଅନ୍ୟତ୍ର ଚେଙ୍ଗିଜ୍ ଖୁବ୍ ଧ୍ୱଂସଲୀଳା କରିଥିଲେ । କିନ୍ତୁ ମଧ୍ୟ-ଏସିଆରେ ଯେପରି ହୋଇଥିଲା ଏହା ସେପରି ନୁହେଁ ।

ସହର ଧ୍ୱଂସ କରିବା ପଛରେ ଚେଙ୍ଗିଜଙ୍କର ଆଉ ଏକ ମତଲବ ଥିଲା । ତାଙ୍କଠାରେ ଯାଯାବର ଭାବ ଥିଲା ଏବଂ ସେ ସହର ଓ ନଗରସବୁକୁ ଘୃଣା କରୁଥିଲେ । ସେ ମରୁପ୍ରାନ୍ତର ବା ବିସ୍ତୃତ ସମତଳ ଭୂମିରେ ବାସ କରିବାକୁ ଭଲ ପାଉଥିଲେ । ଏକ-ସମୟରେ ଚୀନର ସମସ୍ତ ସହର ଧ୍ୱଂସ କରିଦେବାର ଅଭିଳାଷ ଚେଙ୍ଗିଜଙ୍କର ଥିଲା; ମାତ୍ର ସୌଭାଗ୍ୟବଶତଃ ସେ ସେଥିରୁ ବିରତ ହୋଇଥିଲେ । ତାଙ୍କର ଭାବ ଥିଲା ଯାଯାବର ଜୀବନ ସହିତ ସଭ୍ୟତାକୁ ମିଶାଇଦେବା; କିନ୍ତୁ ଏହା ହୋଇ ନ ଥିଲା କି ହେବା ସମ୍ଭବ ନୁହେଁ ।

ତୁ ଚେଙ୍ଗିଜ୍‌ଙ୍କ ନାମରୁ ହୁଏତ ଅନୁମାନ କରିବୁ ଯେ ସେ ଜଣେ ମୁସଲମାନ; କିନ୍ତୁ ତାହା ନୁହେଁ । ତାଙ୍କର ନାମ ଏକ ମଙ୍ଗୋଲ ନାମ । ଚେଙ୍ଗିଜ୍ ଧର୍ମ ପ୍ରତି ଖୁବ୍ ସହିଷ୍ଣୁ ଭାବ ଦେଖାଇଥିଲେ । ତାଙ୍କ ଧର୍ମର ନାମ ଥିଲା 'ଶାମାଇ' ଧର୍ମ—'ଅନନ୍ତ ନୀଳ ଆକାଶ'ର ପୂଜା । ସେ ଚୀନ ତାଓ ଧର୍ମର ସାଧୁମାନଙ୍କ ସହିତ ଖୁବ୍ ଚର୍ଚ୍ଚା ଚଳାଇ-ଥିଲେ; ମାତ୍ର ଶାମାଇ ଧର୍ମକୁ ମାନି ଚଳିଥିଲେ ଏବଂ ବିପଦବେଳେ ଆକାଶକୁ ଅନାଉ-ଥିଲେ ।

ଏ ଚିଠିର ପ୍ରଥମରେ ତୁ ଲକ୍ଷ୍ୟ କରିବୁ ଯେ ମଙ୍ଗୋଲମାନଙ୍କର ଏକ ଆସେମ୍ବ୍ଲି ଦ୍ୱାରା ଚେଙ୍ଗିଜ୍ "ପ୍ରଧାନ ଖାଁ" ରୂପେ 'ନିର୍ବାଚିତ' ହୋଇଥିଲେ । ଏହି ଆସେମ୍ବ୍ଲି ପ୍ରକୃତରେ ଏକ ସାମନ୍ତବାଦୀ ଆସେମ୍ବ୍ଲି ଥିଲା, ଜନସାଧାରଣଙ୍କ ସଭା ନୁହେଁ । ଚେଙ୍ଗିଜ୍ ତେଣୁ ଏ ଜାତିର ମୁଖ୍ୟ ସାମନ୍ତ ଥିଲେ ।

ସେ ନିରକ୍ଷର ଥିଲେ ଏବଂ ତାଙ୍କ ଅନୁଗାମୀମାନେ ମଧ୍ୟ ନିରକ୍ଷର ଥିଲେ । ସମ୍ଭବତଃ ଲେଖିପାରିବା ଏକ ଜିନିଷ ଅଛି ବୋଲି ଦୀର୍ଘକାଳ ପର୍ଯ୍ୟନ୍ତ ସେ ଜାଣି ବି ନ ଥିଲେ । ମୁହଁରେ ବାର୍ତ୍ତା ପଠାଯାଉଥିଲା ଏବଂ ସାଧାରଣତଃ ଛନ୍ଦ, ଢଗଢମାଳି ଓ ପଦ୍ୟ ଆକାରରେ ଏହା ପଠାଯାଉଥିଲା । ମୌଖିକ ବାର୍ତ୍ତା ଦ୍ୱାରା କିପରି ଏକ ବିଶାଳ ସାମ୍ରାଜ୍ୟର କାର୍ଯ୍ୟ ଚାଲୁଥିଲା, ତାହା ବାସ୍ତବିକ ଆଚମ୍ବିତ କଥା । ଯେତେବେଳେ ଲେଖିବା ବୋଲି ଗୋଟାଏ ଜିନିଷ ଥିବାର ଚେଙ୍ଗିଜ୍ ଜାଣିପାରିଲେ, ସେ ତତ୍‌କ୍ଷଣାତ୍ ଅନୁଭବ କଲେ ଯେ ଏହା ଅତ୍ୟନ୍ତ ଦରକାରୀ ଓ ମୂଲ୍ୟବାନ ଜିନିଷ ଏବଂ ସଙ୍ଗେ ସଙ୍ଗେ ଏହା ଶିକ୍ଷା କରିବା ପାଇଁ ସେ ତାଙ୍କର ପୁଅ ଓ ପ୍ରଧାନ ଅଫିସରମାନଙ୍କୁ ହୁକୁମ ଦେଲେ । ସେ ମଧ୍ୟ ହୁକୁମ କଲେ ଯେ ମଙ୍ଗୋଲମାନଙ୍କର ପୁରାତନ ପ୍ରଚଳିତ ଆଇନ ଏବଂ ତାଙ୍କର ନିଜ ଉକ୍ତିସବୁ ଲିଖିତ ହୋଇ ରହିବ । ଧାରଣା ଥିଲା ଯେ ଏହି ପ୍ରଚଳିତ ଆଇନ ଚିରକାଳ ପାଇଁ "ଅପରିବର୍ତ୍ତନୀୟ ଆଇନ" ହୋଇ ରହିବ ଏବଂ କେହି ତାହା ଅମାନ୍ୟ କରିପାରିବେ ନାହିଁ । ଏପରିକି ସମ୍ରାଟ ବି ଏହି ଅନୁସାରେ ଚଳିବେ । କିନ୍ତୁ ଏହି "ଅପରିବର୍ତ୍ତନୀୟ ଆଇନ" ଏବେ ଆଉ ନାହିଁ ଓ ଆଧୁନିକ ମଙ୍ଗୋଲମାନଙ୍କଠାରେ ଏହାର ସ୍ମୃତି ବା ପରମ୍ପରା ନାହିଁ ।

ପ୍ରତ୍ୟେକ ଦେଶ ଓ ପ୍ରତ୍ୟେକ ଧର୍ମର ପୂର୍ବପ୍ରଚଳିତ ଆଇନ ଓ ଲିଖିତ ଆଇନ ରହିଛି ଏବଂ ଅନେକ ସମୟରେ ଏହା ଅନୁମାନ କରାଯାଏ ଯେ ଏହି ଆଇନ ଚିରକାଳ ପାଇଁ "ଅପରିବର୍ତ୍ତନୀୟ ଆଇନ" ହୋଇ ରହିବ । ବେଳେ ବେଳେ ଏହା ଏକ "ରହସ୍ୟବ୍ୟଞ୍ଜକ" ଅର୍ଥାତ୍ ଭଗବାନ କରିଛି "ରହସ୍ୟ ପ୍ରକାଶ" କରିଛନ୍ତି ବୋଲି ବିଶ୍ବାସ କରାଯାଏ ଏବଂ ଯାହା ଭଗବାନ ପ୍ରକାଶ କରିଛନ୍ତି ବୋଲି ଧରାଯାଏ, ତାହା ପରିବର୍ତ୍ତନୀୟ ବୋଲି ବିଶ୍ବାସ କରାଯାଇ ପାରେ ନାହିଁ । ମାତ୍ର ଆଇନ ପ୍ରଚଳିତ ଅବସ୍ଥା ସହିତ ଖାପ ଖାଇବା ପାଇଁ ହୋଇଥାଏ । ଏବଂ ଆମର ଉନ୍ନତିରେ ସାହାଯ୍ୟ କରିବା ନିମନ୍ତେ କରାଯାଇଥାଏ । ଅବସ୍ଥାର ଯଦି ପରିବର୍ତ୍ତନ ହୁଏ, ତେବେ ପୁରାତନ ଆଇନ ସେଥିରେ ଖାପ ଖାଇବ କିପରି ? ପରିବର୍ତ୍ତିତ ଅବସ୍ଥା ସହିତ ସେଗୁଡ଼ିକର ଅବଶ୍ୟ ପରିବର୍ତ୍ତନ ହେବ, ନଚେତ୍ ପୃଥିବୀ ଅଗ୍ରସର ହେଉଥିଲା ବେଳେ ଏହା ଲୌହଶିକୁଳି ରୂପେ ଆମକୁ ପଛକୁ ଟାଣିବ । କୌଣସି ଆଇନ "ଅପରିବର୍ତ୍ତନୀୟ ଆଇନ" ହୋଇ ପାରେନା । ଏହା ଜ୍ଞାନ ଉପରେ ଅବଶ୍ୟ ପ୍ରତିଷ୍ଠିତ ହେବ ଏବଂ ଜ୍ଞାନବୃଦ୍ଧି ସଙ୍ଗେ ସଙ୍ଗେ ଏହାର ବୃଦ୍ଧି ହେବ ।

ସମ୍ଭବତଃ ଆବଶ୍ୟକ ମୁତାବକ ଚେଙ୍ଗିଜ୍ ଖାଁଙ୍କ ସମ୍ବନ୍ଧରେ ମୁଁ ତୋତେ କେତେକ ବିସ୍ତୃତ ବିବରଣୀ ଓ ସମ୍ବାଦ ଦେଇଛି । କିନ୍ତୁ ସେ ବ୍ୟକ୍ତିଙ୍କ ପ୍ରତି ମୋର ମୋହ ଅଛି । ମୋ ପରି ଜଣେ ସହରବାସୀ, ସାମନ୍ତ ପ୍ରଥାର ଘୃଣାକାରୀ, ଶାନ୍ତିପୂର୍ଣ୍ଣ ଓ ଅହିଂସ

ବ୍ୟକ୍ତିକୁ ଏହି ଖ୍ରୀଷ୍ଟିଣ, ନିଷ୍ଠୁର ଏବଂ ଯାଯାବର ଜାତିର ହିଂସ୍ର ସାମନ୍ତ ପ୍ରଭୃ ମୋହିତ କରିବା ଏକ ବିସ୍ମୟକର ଜିନିଷ ନୁହେଁ କି ?

## ୭୮ । ମଙ୍ଗୋଲମାନେ ଦୁନିଆରେ ପ୍ରାଧାନ୍ୟ ଲଭ କଲେ

ଜୁନ୍ ୨୬, ୧୯୩୨

ଚେଙ୍ଗିଜ୍ ଖାଁ ମରିବା ପରେ ତାଙ୍କର ପୁତ୍ର ଓଗୋତେଇ ଖାଁ ପ୍ରଧାନ ଖାଁ ହେଲେ । ଚେଙ୍ଗିଜ୍ ଓ ତାଙ୍କ ଅମଲର ମଙ୍ଗୋଲମାନଙ୍କ ତୁଳନାରେ ସେ ଦୟାଶୀଳ ଓ ଶାନ୍ତମୂର୍ତ୍ତି ଥିଲେ । ସେ କହିଥିଲେ, "ଆମର କାଗାନ ଚେଙ୍ଗିଜ୍ ଖୁବ୍ ପରିଶ୍ରମ କରି ସାମ୍ରାଜ୍ୟ ଗୃହ ନିର୍ମାଣ କରିଥିଲେ । ଏବେ ସମୟ ଆସିଛି ଆମେ ଲୋକଙ୍କୁ ଶାନ୍ତି ଓ ସମୃଦ୍ଧି ଆଣିଦେବା ଏବଂ ସେମାନଙ୍କର ଭାର ଲାଘବ କରିବା ।" କିପରି ଏକ ସାମନ୍ତ ପ୍ରଭୃ ତାର ନିଜର ସାମନ୍ତୀୟ ଦୃଷ୍ଟିରୁ ଚିନ୍ତା କରୁଛି ଲକ୍ଷ୍ୟ କର ।

କିନ୍ତୁ ଅଭିଯାନର ଯୁଗ ଶେଷ ହୋଇ ନ ଥିଲା ଏବଂ ମଙ୍ଗୋଲମାନେ ଏବେ ସୁଦ୍ଧା ତେଜସ୍ୱୀ ଥିଲେ । ମହାନ୍ ସେନାପତି ସାବୁତେଇଙ୍କ ଅଧୀନରେ ୟୁରୋପ ଉପରେ ଦ୍ୱିତୀୟ ବାର ଆକ୍ରମଣ ହେଲା । ୟୁରୋପର ସୈନ୍ୟ ଓ ସେନାପତିମାନେ ସାବୁତେଇଙ୍କ ସମକକ୍ଷ ନ ଥିଲେ । ଯୁଦ୍ଧ ସହକାରେ ନିଜର କ୍ଷେତ୍ର ପ୍ରସ୍ତୁତ କରିବା ପୂର୍ବରୁ ଗୁପ୍ତଚର ଓ ଆଗୁଆ ଏଜେଣ୍ଟମାନଙ୍କୁ ଖବର ଆଣିବା ନିକାଶେ ଶତ୍ରୁରାଜ୍ୟକୁ ପଠାଇ ଏହିସବୁ ରାଜ୍ୟର ରାଜନୀତିକ ଓ ସାମରିକ ପରିସ୍ଥିତି କିପରି ଥିଲା ତାହା ଅଗ୍ରସର ହେବା ପୂର୍ବରୁ ସେ ଭଲରୂପେ ଜାଣିଥିଲେ । ଯୁଦ୍ଧକ୍ଷେତ୍ରରେ ଯୁଦ୍ଧକଳାରେ ସେ ନିପୁଣ ଥିଲେ ଏବଂ ତାଙ୍କ ସହିତ ତୁଳନା କଲେ ୟୁରୋପୀୟ ସେନାପତିମାନେ ନୂଆ ଶିକ୍ଷାର୍ଥୀ ପରି ମନେ ହେଉଥିଲେ । ସାବୁତେଇ ବାଗଦାଦ୍ ଓ ଦକ୍ଷିଣ-ପଶ୍ଚିମରେ ସେଲ୍‌ଜୁକମାନଙ୍କୁ ଶାନ୍ତିରେ ଛାଡ଼ିଦେଇ ସିଧା ରୁଷକୁ ଯାତ୍ରା କଲେ । ଛଅ ବର୍ଷ କାଳ ସେ ଯାତ୍ରା କରିବାରେ ଲାଗିଲେ । ମସ୍କୋ, କିଏଭ, ପୋଲଣ୍ଡ, ହଙ୍ଗେରି, କ୍ରାକୋ ଲୁଣ୍ଠନ ଓ ଧ୍ୱଂସ କଲେ । ୧୨୪୧ରେ ମଧ୍ୟୟୁରୋପସ୍ଥ ନିମ୍ନ ସଲେସିଆର ଲିଗ୍ନେଜ୍‌ନିକଟରେ ଏକ ପୋଲଣ୍ଡ ଓ ଜର୍ମାନ ସେନା ନିପାତ ହେଲେ । ସମଗ୍ର ୟୁରୋପର ଅଧୋଗତି ହେଲା ପରି ମନେହେଲା । ମଙ୍ଗୋଲମାନଙ୍କୁ ବାଧା ଦେବା ପାଇଁ କେହି ନ ଥିଲେ । ଯଦିଓ ଦ୍ୱିତୀୟ ଫ୍ରେଡ଼ରିକଙ୍କୁ ପୃଥିବୀର ଏକ ଆଶ୍ଚର୍ଯ୍ୟ ବୋଲି କୁହାଯାଉଥିଲା, ତଥାପି ମଙ୍ଗୋଲିଆରୁ ଯେଉଁ ପ୍ରକୃତ ଆଶ୍ଚର୍ଯ୍ୟ ମାଡ଼ିଆସିଲା ତାହା ଆଗରେ ସେ ଖୁବ୍ କ୍ଷୀଣ ପରି ଜଣାପଡ଼ୁଥିବେ । ୟୁରୋପର

ରାଜା ଓ ଶାସକମାନଙ୍କର ଅନିଶ୍ଚିତ ଅବସ୍ଥା ହୋଇ ପଡ଼ିଥିଲା । ଏତିକିବେଳେ ହଠାତ୍ ଅପ୍ରତ୍ୟାଶିତ ଭାବରେ ସାହାଯ୍ୟ ଆସିଲା ।

ଓଗୋତେଇ ମରି ଯାଇଥିଲେ ଏବଂ ତାଙ୍କର ଉତ୍ତରାଧିକାରୀଙ୍କୁ ପାଇଁ କିଛି ଗୋଳମାଳ ହୋଇଥିଲା । ତେଣୁ ୟୁରୋପରେ ମଙ୍ଗୋଲସେନା ପରାସ୍ତ ନ ହୋଇଥିଲେ ସୁଦ୍ଧା ପଛକୁ ଫେରିଲେ ଏବଂ ୧୨୪୨ ରେ ନିଜର ମାତୃଭୂମି ଆଡ଼କୁ ଯାତ୍ରା କଲେ । ୟୁରୋପ ପୁନର୍ବାର ନିଶ୍ୱାସ ମାରିଲା ।

ଇତ୍ୟବସରେ ମଙ୍ଗୋଲମାନେ ଚୀନରେ ବିସ୍ତାରଲାଭ କରିଥିଲେ ଏବଂ ଉତ୍ତର-ଚୀନରେ କିନ ଏବଂ ଦକ୍ଷିଣ-ଚୀନରେ ସୁଙ୍ଗମାନଙ୍କୁ ବି ସମ୍ପୂର୍ଣ୍ଣରୂପେ ଲୋପ କରିଦେଇଥିଲେ । ୧୨୫୨ରେ ମଙ୍ଗୁ ଖାଁ ପ୍ରଧାନ ଖାଁ ହେଲେ ଏବଂ ସେ କୁବଲାଇଙ୍କୁ ଚୀନର ଶାସକରୂପେ ନିଯୁକ୍ତ କଲେ । କାରାକୋରମଠାରେ ମଙ୍ଗୁଙ୍କ ରାଜପରିଷଦକୁ ଏସିଆ ଓ ୟୁରୋପରୁ ବହୁସଂଖ୍ୟକ ଲୋକ ଆସିଥିଲେ; ଅଥଚ ପ୍ରଧାନ ଖାଁ ଯାଯାବରମାନଙ୍କ ପରି ତମ୍ବୁରେ ବାସ କରୁଥିଲେ । କିନ୍ତୁ ତମ୍ବୁଗୁଡ଼ିକ ଆଡ଼ମ୍ବରପୂର୍ଣ୍ଣ ଥିଲା ଏବଂ ମହାଦେଶର ଧନ ଓ ଲୁଣ୍ଠିତ ଦ୍ରବ୍ୟରେ ପୂରିଥିଲା । ବଣିକମାନେ ବିଶେଷତଃ ମୁସଲମାନ ବଣିକ ଆସିଥିଲେ ଏବଂ ମଙ୍ଗୋଲମାନଙ୍କୁ ଭଲ କ୍ରେତାରୂପେ ପାଇଲେ । ସେ କାଳର ବିଜ୍ଞାନକ୍ଷେତ୍ରରେ ମୁଣ୍ଡ ପୂରାଉଥିବା କାରିଗର, ଜ୍ୟୋତିଷ, ଗଣିତଜ୍ଞ ଓ ଅନ୍ୟ ଲୋକସବୁ ଏହି ତମ୍ବୁନଗରୀରେ ଏକତ୍ର ହେଲେ । ଏହି ନଗରୀ ସମଗ୍ର ଜଗତରେ ପ୍ରଭୁତ୍ୱ କଲା ପରି ମନେ ହେଉଥିଲା । ବିଶାଳ ମଙ୍ଗୋଲ ସାମ୍ରାଜ୍ୟରେ ଶାନ୍ତି ଓ ଶୃଙ୍ଖଳା କେତେକେ ପରିମାଣରେ ଥିଲା ଏବଂ ମହାଦେଶ ମଧ୍ୟଦେଇ ବାଣିଜ୍ୟପଥରେ ବହୁତ ଲୋକ ଏପାଖ ସେପାଖ ଯିବା ଆସିବା କରୁଥିଲେ । ଇଉରୋପ ଓ ଏସିଆ ପରସ୍ପର ସହିତ ନିକଟ ସମ୍ପର୍କରେ ଆସିଲା ।

ତା ପରେ କାରାକୋରମରେ ଧର୍ମଚର୍ଚ୍ଚା କରୁଥିବା ଲୋକଙ୍କ ଭିତରେ ପ୍ରତିଯୋଗିତା ଚାଲିଲା । ପ୍ରତ୍ୟେକ ଧର୍ମର ଲୋକେ ଏହି ବିଶ୍ୱବିଜେତାମାନଙ୍କୁ ନିଜ ଧର୍ମରେ ଦୀକ୍ଷିତ କରିବା ନିମନ୍ତେ ଚାହୁଁଥିଲେ । ଏହି ସର୍ବଶକ୍ତିମାନ୍ ଲୋକେ ଯେଉଁ ଧର୍ମ ଗ୍ରହଣ କରିବେ, ତାହା ଅବଶ୍ୟ ସର୍ବଶକ୍ତିମାନ୍ ହେବ ହିଁ ହେବ ଏବଂ ଅନ୍ୟସବୁ ଧର୍ମ ଉପରେ ଜୟଲାଭ କରିବ । ପୋପ ରୋମରୁ ଦୂତ ପ୍ରେରଣ କଲେ; ନେଷ୍ଟୋରୀୟ ଖ୍ରୀଷ୍ଟିୟମାନେ ଆସିଲେ; ମୁସଲମାନମାନେ ସେଠି ଥିଲେ ଏବଂ ବୌଦ୍ଧ ବି ସେଠିପରି ରହିଥିଲେ । ମଙ୍ଗୋଲମାନେ କୌଣସି ଧର୍ମ ଗ୍ରହଣ କରିବାକୁ ବ୍ୟସ୍ତତା ଦେଖାଉ ନ ଥିଲେ । ସେମାନେ ଅତି ଧର୍ମପ୍ରବଣ ଲୋକ ନ ଥିଲେ । ମନେହୁଏ ଏକ ସମୟରେ ପ୍ରଧାନ ଖାଁ ଖ୍ରୀଷ୍ଟଧର୍ମ ଗ୍ରହଣ କରିବାର ଇଙ୍ଗିତ ଦେଖାଉଥିଲେ; କିନ୍ତୁ ସେ ପୋପଙ୍କ ଅଧିକାର ମାନିବାକୁ ପ୍ରସ୍ତୁତ ନ ଥିଲେ । ଶେଷକୁ ମଙ୍ଗୋଲମାନେ ଯେଉଁ ଅଞ୍ଚଳରେ ବସତି

କରୁଥିଲେ, ସେହି ସ୍ଥାନର ଧର୍ମ ଗ୍ରହଣ କରିଗଲେ । ଚୀନ୍ ଓ ମଙ୍ଗୋଲିଆରେ ସେମାନଙ୍କ ଭିତରୁ ଅଧିକାଂଶ ବୌଦ୍ଧ ହେଲେ । ମଧ୍ୟ-ଏସିଆରେ ସେମାନେ ମୁସଲମାନ ହେଲେ । ସମ୍ଭବତଃ ରୁଷ ଓ ହଙ୍ଗେରୀରେ କେତେକ ଖ୍ରୀଷ୍ଟୀୟ ହେଲେ ।

ରୋମର ଭାଟିକାନରେ ଥିବା ପୋପଙ୍କ ଲାଇବ୍ରେରୀରେ ଏବେ ସୁକ (ପ୍ରଧାନ ଖାଁ ମଙ୍ଗୁ) ପୋପଙ୍କ ପାଖକୁ ଲେଖିଥିବା ମୂଳ ଚିଠି ରକ୍ଷିତ ହୋଇଛି । ଦେଖାଯାଏ ଯେ ଓଗୋଟେଇଙ୍କ ମୃତ୍ୟୁ ପରେ ପୁନର୍ବାର ଇଉରୋପ ଆକ୍ରମଣ ନ କରିବାକୁ ସତର୍କବାଣୀ ଶୁଣାଇବା ଲାଗି ପୋପ ଏକ ପ୍ରତିନିଧି ନୂତନ ଖାଁଙ୍କ ପାଖକୁ ପଠାଇଥିଲେ । ଖାଁ ଉତ୍ତର ଦେଲେ ଯେ ଇଉରୋପୀୟମାନେ ତାଙ୍କ ପ୍ରତି ଉପଯୁକ୍ତ ବ୍ୟବହାର ନ କରିବାରୁ ସେ ଇଉରୋପ ଆକ୍ରମଣ କରିଥିଲେ ।

ତଥାପି ମଙ୍ଗୁଙ୍କ ଅମଳରେ ଆଉ ଏକ ଅଭିଯାନ ଓ ଧ୍ୱଂସର ପ୍ରବାହ ଆସିଲା । ତାଙ୍କର ଭାଇ ହୁଲାଗୁ ଇରାନର ଶାସକ ଥିଲେ । କୌଣସି ବିଷୟରେ ବାଗଦାଦର ଖଲିଫାଙ୍କ ଉପରେ ବିରକ୍ତ ହୋଇ ନିଜର ପ୍ରତିଶ୍ରୁତି ରକ୍ଷା କରିବା ନିମନ୍ତେ ତାଙ୍କୁ ଧମକ ଦେଇ ହୁଲାଗୁ ତାଙ୍କ ନିକଟକୁ ଏକ ବାର୍ତ୍ତା ପ୍ରେରଣ କଲେ ଏବଂ କହିପଠାଇଲେ— ଭବିଷ୍ୟତରେ ଭଲ ଆଚରଣ କରିବ, ନଚେତ୍ ତମେ ତମର ସାମ୍ରାଜ୍ୟ ହରାଇବ । ଖଲିଫା ଖୁବ୍ ବୁଦ୍ଧିଆ ଲୋକ ନ ଥିଲେ କିମ୍ବା କିଛି ଅଭିଜ୍ଞତାରୁ ଶିଖି ନ ଥିଲେ । ସେ ଏକ ଅପମାନଜନକ ଜବାବ ପଠାଇଲେ ଓ ବାଗଦାଦର ମଙ୍ଗୋଲ ଦୂତମାନଙ୍କୁ ଅପମାନିତ କରାଇଲେ । ଏଥିରେ ହୁଲାଗୁଙ୍କ ମଙ୍ଗୋଲ ରକ୍ତ ତାତିଉଠିଲା । କ୍ରୋଧବଶ ହୋଇ ସେ ବାଗଦାଦ ଯାତ୍ରା କଲେ ଏବଂ ୪୦ ଦିନ ଅବରୋଧ ପରେ ତାହା ଅଧିକାର କଲେ । ଆରବ ଉପନ୍ୟାସବର୍ଣ୍ଣିତ ନଗର ଏବଂ ୫୦୦ ବର୍ଷବ୍ୟାପୀ ସାମ୍ରାଜ୍ୟର ସଞ୍ଚିତ ସମସ୍ତ ସମ୍ପଦ ଏହିଠାରୁ ଶେଷ ପାଇଗଲା । ଖଲିଫା, ତାଙ୍କର ପୁତ୍ର ଓ ନିକଟ ସମ୍ପର୍କୀୟମାନଙ୍କୁ ମାରି ଦିଆଗଲା । କେତେ ସପ୍ତାହ ଧରି ବ୍ୟାପକ ହତ୍ୟାକାଣ୍ଡ ଚାଲିଲା । ଏଥିରେ ଟାଇଗ୍ରିସ ନଦୀ ମାଇଲ ମାଇଲବ୍ୟାପୀ ରକ୍ତରଞ୍ଜିତ ହୋଇଗଲା । କଥିତ ଅଛି, ପାଖେ ଦଶ ଲକ୍ଷ ଲୋକ ମରିଯାଇଥିଲେ । ସମସ୍ତ କଳା, ସାହିତ୍ୟ, ସମ୍ପଦ ଓ ଲାଇବ୍ରେରୀ ଧ୍ୱଂସ କରି ଦିଆଗଲା । ବାଗଦାଦକୁ ସମ୍ପୂର୍ଣ୍ଣରୂପେ ନଷ୍ଟ କରି ଦିଆଗଲା । ଏପରି କି ପଶ୍ଚିମ ଏସିଆର ହଜାର ବର୍ଷର ପୁରାତନ ଜଳସେଚନପ୍ରଣାଳୀ ହୁଲାଗୁଙ୍କଦ୍ୱାରା ଧ୍ୱଂସପ୍ରାପ୍ତ ହେଲା ।

ଆଲେପ୍ପୋ, ଏଡ୍ରେସା ଓ ଆହୁରି ଅନେକ ନଗରର ଏହି ଦଶା ଘଟିଲା ଏବଂ ପଶ୍ଚିମ-ଏସିଆ ଉପରେ ତମିର ଗ୍ରସ୍ତ୍ରାପାତ ହେଲା । ଏହିକାଳର ଜଣେ ଐତିହାସିକ କହନ୍ତି ଯେ ଏହା "ବିଜ୍ଞାନ ଓ ଗୁଣିବିକାଶର ଦୁର୍ଭିକ୍ଷ ବେଳ ।"

ପାଲେଷ୍ଟାଇନକୁ ପଠାଯାଇଥିବା ମଙ୍ଗୋଲସେନା ଇଜିପ୍ଟର ସୁଲତାନ ବେବରସିଙ୍କ ଦ୍ୱାରା ପରାଜିତ ହୋଇଥିଲା । ଏହି ସୁଲତାନଙ୍କ ଏକ ମଜାଦାର ନାମ ଥିଲା—ତାହା ହେଉଛି 'ବନ୍ଧୁକଦାର''; କାରଣ ତାଙ୍କର ଏକ ସେନାବାହିନୀ ବନ୍ଧୁକସଜ୍ଜିତ ଥିଲା । ଆମେ ଏବେ ବନ୍ଧୁକଯୁଗରେ ପହଞ୍ଚିଲୁ । ଅନେକ କାଳ ଆଗରୁ ଚୀନାମାନେ ବନ୍ଧୁକ ବାରୁଦର ବ୍ୟବହାର ଜାଣିଥିଲେ । ମଙ୍ଗୋଲମାନେ ସମ୍ଭବତଃ ଏହା ତାଙ୍କଠାରୁ ଶିଖିଥିଲେ ଏବଂ ବନ୍ଧୁକ ତାଙ୍କର ବିଜୟରେ ଢେର ସାହାଯ୍ୟ କରିଥିଲା । ମଙ୍ଗୋଲମାନଙ୍କ ଜରିଆରେ ହିଁ ଇଉରୋପରେ ବନ୍ଧୁକ ପ୍ରଚଳନ ହୋଇଥିଲା ।

୧୨୫୮ ଖ୍ରୀ: ରେ ବାଗଦାଦର ଧ୍ୱଂସ ହେବାରୁ ଆବ୍‌ବାସି ସାମ୍ରାଜ୍ୟର ଯାହା ବାକି ଥିଲା, ତାହା ବି ଶେଷ ହୋଇଗଲା । ପଶ୍ଚିମ-ଏସିଆରେ ବିଶିଷ୍ଟ ଆରବ ସଭ୍ୟତାର ଏହିଠାରେ ସମାପ୍ତି ହେଲା । ବହୁଦୂରସ୍ଥ ଦକ୍ଷିଣ-ସ୍ପେନରେ ଗ୍ରାନାଡ଼ା ଆରବ ପରମ୍ପରା ତଥାପି ଚଳାଇଥିଲା । ଏହା ଶେଷ ହୋଇଯିବାକୁ ପ୍ରାୟ ଆହୁରି ୨୦୦ ବର୍ଷ ରହିଥିଲା । ଆରବର ଶ୍ରେଷ୍ଠତ୍ୱ ଶୀଘ୍ର ଅଧଃପତିତ ହେଲା ଏବଂ ସେହିଦିନଠାରୁ ଏହାର ଅଧିବାସୀ ଇତିହାସରେ କିଛି ମହତ୍ତ୍ୱ ଭାଗ ନେଇ ନାହାନ୍ତି । ପରେ ସେମାନେ ଅଟୋମାନ ତୁର୍କୀ ସାମ୍ରାଜ୍ୟର ଅଙ୍ଗ ହୋଇଗଲେ । ୧୯୧୪-୧୮ର ମହାସମର ଭିତରେ ତୁର୍କିମାନଙ୍କ ବିରୁଦ୍ଧରେ ଇଂରେଜମାନଙ୍କଦ୍ୱାରା ଉତ୍ତେଜିତ ଏକ ଆରବ ବିଦ୍ରୋହ ହୋଇଥିଲା । ସେହିଦିନଠାରୁ ଆରବ ଉଣା ଅଧିକେ ସ୍ୱାଧୀନ ହୋଇଛି ।

ଦୁଇ ବର୍ଷ ପର୍ଯ୍ୟନ୍ତ କୌଣସି ଖଲିଫା ରହିଲେ ନାହିଁ । ତାପରେ ଇଜିପ୍ଟର ସୁଲତାନ ବେବରସ ଶେଷ ଆବ୍‌ବାସି ଖଲିଫାଙ୍କର ଜଣେ ନିକଟ ସମ୍ପର୍କୀୟଙ୍କୁ ଖଲିଫା ରୂପେ ମନୋନୀତ କଲେ । କିନ୍ତୁ ତାଙ୍କର କୌଣସି ରାଜନୀତିକ କ୍ଷମତା ନ ଥିଲା ଓ ସେ କେବଳ ଜଣେ ଧର୍ମଗୁରୁ ଥିଲେ । ୩୦୦ ବର୍ଷ ପରେ କନଷ୍ଟାଣ୍ଟିନୋପଲର ତୁର୍କୀ ସୁଲତାନ ଶେଷ ଖଲିଫାଙ୍କଠାରୁ ଖଲିଫା ଉପାଧି ପାଇଥିଲେ । କେତେକ ବର୍ଷ ପୂର୍ବେ ମୁସ୍ତାଫା କେମାଲପାଶାଙ୍କ ଦ୍ୱାରା ଉଭୟ ସୁଲତାନ ଓ ଖଲିଫା ଲୋପ ହେବା ପର୍ଯ୍ୟନ୍ତ ତୁର୍କୀ ସୁଲତାନମାନେ ଖଲିଫା ଥିଲେ ।

ମୁଁ ମୋର କାହାଣୀରୁ ଅନ୍ୟ ଆଡ଼କୁ ଚାଲିଯାଇଛି । ପ୍ରଧାନ ଖାଁ ମଙ୍ଗୁ ୧୨୩୯ ରେ ମଲେ । ତାଙ୍କ ମୃତ୍ୟୁ ପୂର୍ବରୁ ସେ ତିବ୍ବତ ଜୟ କରିଥିଲେ । ଚୀନର ଶାସକ କୁବଲାଇ ଖାଁ ଏବେ ପ୍ରଧାନ ଖାଁ ହେଲେ । ସେ ଅନେକ ଦିନରୁ ଚୀନରେ ଥିଲେ ଏବଂ ସେ ଦେଶକୁ ଭଲ ପାଉଥିଲେ । ତେଣୁ ସେ କାରାକୋରମରୁ ପେକିଂକୁ ତାଙ୍କ ରାଜଧାନୀ ଉଠାଇନେଲେ । ସହରର ନାମ ଖାବାଲିକ୍—"ଖାଁ ନଗରୀ"—ବୋଲି ବଦଳାଇଦେଲେ । ଚୀନ ବ୍ୟାପାରରେ କୁବଲାଇଙ୍କ ଆଗ୍ରହ ଯୋଗୁଁ ସେ ବିରାଟ ସାମ୍ରାଜ୍ୟ ପ୍ରତି ଅବହେଳା କଲେ ଏବଂ କ୍ରମେ ବଡ଼ ମଙ୍ଗୋଲ ଶାସକମାନେ ସ୍ୱାଧୀନ ହୋଇଗଲେ ।

କୁବଲାଇ ତାଙ୍କର ଚୀନ ଅଭିଯାନ ଶେଷ କରିଥିଲେ; କିନ୍ତୁ ପୁରାତନ ମଙ୍ଗୋଲ ଅଭିଯାନଠାରୁ ତାଙ୍କର ଅଭିଯାନ ସମ୍ପୂର୍ଣ୍ଣ ଭିନ୍ନ ଢଙ୍ଗର ଥିଲା । ବହୁତ କମ୍ ନିଷ୍ଠୁରତା ଓ ଧ୍ୱଂସ ହୋଇଥିଲା । ଚୀନ ଆଗରୁ ନିଜ ପକ୍ଷ କୁବଲାଇଙ୍କୁ ସଭ୍ୟ କରି ଦେଇଥିଲା । ଚୀନାମାନେ ତାଙ୍କୁ ଆଦରର ସହିତ ଗ୍ରହଣ କଲେ ଓ ତାଙ୍କୁ ଆପଣାର ଲୋକ ପରି ବ୍ୟବହାର କରିଥିଲେ । ପ୍ରକୃତରେ ସେ ଏକ ରକ୍ଷଣଶୀଳ ଚୀନ ବଂଶ—ୟୁଆନ୍ ବଂଶ ସ୍ଥାପନା କରିଥିଲେ । କୁବଲାଇ ତାଙ୍କ ସାମ୍ରାଜ୍ୟରେ ଟୋଙ୍ଗକିଂ, ଆନାମ ଓ ବର୍ମା ନିଜ ରାଜ୍ୟରେ ମିଶାଇଲେ । ସେ ଜାପାନ ଓ ମାଲୟସିଆ ଜୟ କରିବାକୁ ଚେଷ୍ଟା କରିଥିଲେ; ମାତ୍ର ମଙ୍ଗୋଲମାନେ ସମୁଦ୍ରରେ ଚଳପ୍ରଚଳ ନ ହୋଇଥିବାରୁ ଏବଂ ଜାହାଜ ନିର୍ମାଣ ଜାଣି ନ ଥିବାରୁ ଅକୃତକାର୍ଯ୍ୟ ହେଲେ ।

ମଙ୍ଗୁ ଖାଁଙ୍କ ରାଜୁତି କାଳରେ ଫ୍ରାନ୍ସର ରାଜା ନବମ ଲୁଇଙ୍କଠାରୁ ଜଣେ ରାଜଦୂତ ତାଙ୍କ ନିକଟକୁ ଆସିଥିଲେ । ମୁସଲମାନମାନଙ୍କ ବିରୁଦ୍ଧରେ ମଙ୍ଗୋଲ ଓ ଇଉରୋପର ଖ୍ରୀଷ୍ଟିୟ ଶକ୍ତିଙ୍କ ଭିତରେ ଏକ ମିତ୍ରତା ସ୍ଥାପନର ପ୍ରସ୍ତାବ ଲୁଇ ପଠାଇଥିଲେ । ବିଚରା ଲୁଇ କ୍ରୁଜେଡ୍ ବେଳେ ବନ୍ଦୀ ହୋଇ ବଡ଼ ଦୁର୍ଦ୍ଦଶା ଭୋଗିଥିଲେ । କିନ୍ତୁ ମଙ୍ଗୋଲମାନେ ଏପରି ମିତ୍ରତା ପ୍ରତି ଆଗ୍ରହ ଦେଖାଇ ନ ଥିଲେ କିମ୍ବା କୌଣସି ଧାର୍ମିକ ଜାତିଙ୍କୁ ଆକ୍ରମଣ କରିବା ନିମନ୍ତେ ଆଗ୍ରହାନ୍ୱିତ ନ ଥିଲେ ।

ସେମାନେ କାହିଁକି ବା ଇଉରୋପର କ୍ଷୁଦ୍ର ରାଜ୍ୟ ଓ ଯୁବରାଜଙ୍କ ସଙ୍ଗେ ମିତ୍ରତା ବାନ୍ଧନ୍ତେ ? କାହା ବିରୁଦ୍ଧରେ ? ପଶ୍ଚିମ ୟୁରୋପୀୟ ରାଜ୍ୟ ବା ଇସଲାମୀ ରାଜ୍ୟର ଲଢ଼ୁଆ-ପଣକୁ ସେମାନଙ୍କର ଟିକିଏ ହେଲେ ଭୟ କରିବାର ନ ଥିଲା । କେବଳ ଭାଗ୍ୟକ୍ରମେ ପଶ୍ଚିମ-ୟୁରୋପ ସେମାନଙ୍କ କବଳରୁ ରକ୍ଷା ପାଇଥିଲା । ସେଲଜୁକ ତୁର୍କମାନେ ତାଙ୍କଠାରେ ବଶ୍ୟତା ସ୍ୱୀକାର କଲେ ଓ ରାଜସ୍ୱ ଦେଇଥିଲେ । କେବଳ ଇଜିପ୍ଟର ସୁଲତାନ ଏକ ମଙ୍ଗୋଲ ସେନାକୁ ପରାସ୍ତ କରିଥିଲେ; କିନ୍ତୁ ଏଥିରେ ସନ୍ଦେହ ନାହିଁ ଯେ ସେମାନେ ଯଦି ମନ ଲଗାଇ ଚେଷ୍ଟା କରିଥାଆନ୍ତେ, ତେବେ ସେମାନଙ୍କୁ ନିଶ୍ଚୟ ପରାସ୍ତ କରି ପାରିଥାଆନ୍ତେ । ସାରା ଏସିଆ ଓ ୟୁରୋପରେ ବିଶାଳ ମଙ୍ଗୋଲ ସାମ୍ରାଜ୍ୟ ବିସ୍ତୃତ ଲଭିଥିଲା । ମଙ୍ଗୋଲ ବିଜୟ ସହିତ ତୁଳନା କଲାଭଳି ଇତିହାସରେ କୌଣସି ଘଟଣା ହୋଇ ନାହିଁ । ଏପରି ବିଶାଳ ସାମ୍ରାଜ୍ୟ କେବେହେଲେ ହୋଇ ନ ଥିଲା । ବାସ୍ତବିକ ସେତେବେଳେ ମଙ୍ଗୋଲମାନେ ବିଶ୍ୱପ୍ରଭୁ ବୋଲି ବୋଧ ହେଉଥିବେ । କେବଳ ସେମାନେ ଭାରତ ମଧ୍ୟଦେଇ ଯାଇ ନ ଥିବାରୁ ସେତେବେଳେ ଭାରତ ତାଙ୍କ ହାତରୁ ରକ୍ଷା ପାଇଲା । ଠିକ୍ ଭାରତ ଆକାରର ପଶ୍ଚିମ-ୟୁରୋପ ମଧ୍ୟ ଏହି ସାମ୍ରାଜ୍ୟର ବହିର୍ଭୂତ ଥିଲା । କିନ୍ତୁ ଏହି ସ୍ଥାନଗୁଡ଼ିକ ଏକପ୍ରକାର ସେମାନଙ୍କ ଅନୁଗ୍ରହ ଉପରେ ରହିଥିଲା ଏବଂ ଏହାକୁ ଗ୍ରାସ କରିବାକୁ ଯେପର୍ଯ୍ୟନ୍ତ ମଙ୍ଗୋଲମାନଙ୍କ ଖିଆଲକୁ ଆସି ନ ଥିଲା, ସେପର୍ଯ୍ୟନ୍ତ ରହିଥିଲା । ୧୩ଶ ଶତାବ୍ଦୀରେ ଏହିପରି ଅବଶ୍ୟ ବୋଧ ହୋଇଥିବ ।

କିନ୍ତୁ ମଙ୍ଗୋଲମାନଙ୍କ ଅଦ୍ଭୁତ ତେଜ କମିଗଲା ପରି ବୋଧ ହେଲା; ବିଜୟ କରିବାର ପ୍ରେରଣା ମଉଳି ପଡ଼ିଲା । ତୋର ମନେରଖିବା ଉଚିତ ଯେ ସେହି କାଳରେ ଲୋକେ ପଦବ୍ରଜରେ ବା ଅଶ୍ୱପୃଷ୍ଠରେ ଧୀରେ ଧୀରେ ଯାତାୟାତ କରୁଥିଲେ । ଦ୍ରୁତ ଗମନାଗମନର କୌଣସି ଦ୍ରୁତ ପନ୍ଥା ନ ଥିଲା । ନିଜ ମଙ୍ଗୋଲିଆ ଦେଶରୁ ସାମ୍ରାଜ୍ୟର ପଶ୍ଚିମ ସୀମାନ୍ତର ଇଉରୋପକୁ ଯିବା ପକାଶେ ଏକ ସେନାକୁ ଗୋଟିଏ ବର୍ଷ ଲାଗି ଯାଉଥିବ । ନିଜର ସାମ୍ରାଜ୍ୟ ଭିତରଦେଇ ଏହି ମହାନ୍ ଯାତ୍ରାମାନଙ୍କରେ ଯେତେବେଳେ ଲୁଣ୍ଠନର କୌଣସି ସୁଯୋଗ ନାହିଁ, ସେତେବେଳେ ସେମାନେ ଅଭିଯାନ ଲାଗି ବିଶେଷ ଆଗ୍ରହ ପ୍ରକାଶ କରୁ ନ ଥିଲେ । ଏହା ଛଡ଼ା ବାରମ୍ବାର ଯୁଦ୍ଧରେ ସଫଳତା ହେତୁ ଏବଂ ଲୁଣ୍ଠନଦ୍ୱାରା ମୋଗଲ ସେନାମାନେ ଲୁଣ୍ଠିତ ଧନରେ ଧନୀ ହୋଇଥିଲେ । ସେମାନଙ୍କ ଭିତରୁ ଅନେକଙ୍କର ବହୁତ ଦାସ ରହିଥିଲେ । ତେଣୁ ସେମାନେ ଧୀରସ୍ଥିର ହୋଇଗଲେ ଓ ଉଦାର ଏବଂ ଶାନ୍ତିପୂର୍ଣ୍ଣ ବାଟ ଧରିବାକୁ ଆରମ୍ଭ କଲେ । ଯେଉଁ ଲୋକ ନିଜର ଇଚ୍ଛା ମୁତାବକ ସବୁ ଜିନିଷ ପାଇଥାଏ, ସେ ବିଶ୍ୱବର ଶାନ୍ତି ଓ ଶୃଙ୍ଖଳା ସପକ୍ଷରେ ମତଦିଏ ।

ବିଶାଳ ମଙ୍ଗୋଲ ସାମ୍ରାଜ୍ୟର ଶାସନ ଅବଶ୍ୟ ଏକ କଷ୍ଟକର କାର୍ଯ୍ୟ ହୋଇଥିବ; ତେଣୁ ଏହା ବିଭାଗ ହେବାରେ କୌଣସି ବିଚିତ୍ରତା ନାହିଁ । କୁବଲାଇ ଖାଁ ୧୨୯୨ ରେ ମଲେ । ତାଙ୍କ ପରେ ଆଉ ପ୍ରଧାନ ଖାଁ ନ ଥିଲେ । ସାମ୍ରାଜ୍ୟ ପାଞ୍ଚୋଟି ବୃହତ୍ତ ଅଞ୍ଚଳରେ ବିଭକ୍ତ ହୋଇଥିଲା ।

୧ । ଚୀନ ସାମ୍ରାଜ୍ୟ—ମଙ୍ଗୋଲିଆ, ମାଞ୍ଚୁରିଆ ଓ ତିବ୍ବତ ଏହାର ଅନ୍ତର୍ଗତ ଥିଲା । କୁବଲାଇ ଖାଁଙ୍କ ଓ୍ୟାନ୍ ବଂଶର ବଂଶଧରମାନଙ୍କ ଅଧୀନରେ ଏହା ମୁଖ୍ୟ ରାଜ୍ୟ ଥିଲା ।

୨ । ସୁଦୂର ପଶ୍ଚିମକୁ ରୁଷ, ପୋଲାଣ୍ଡ ଓ ହଙ୍ଗେରି 'ସୁବର୍ଣ୍ଣ ଗୋଷ୍ଠୀ'ମାନଙ୍କ ସାମ୍ରାଜ୍ୟ ଥିଲା । (ମଙ୍ଗୋଲଙ୍କୁ ସେଠି ଏହି ନାମରେ ଡାକୁଥିଲେ ।)

୩ । ଇରାନ୍, ମେସୋପୋଟାମିଆ ଓ ମଧ୍ୟ ଏସିଆର ଏକାଂଶରେ ଇଲଖାନ ସାମ୍ରାଜ୍ୟ ଥିଲା—ହୁଲାଗୁ ଏହା ସ୍ଥାପନା କରିଥିଲେ ଏବଂ ସେଲଜୁକ ତୁର୍କମାନେ ଏହାକୁ ରାଜସ୍ୱ ଦେଉଥିଲେ ।

୪ । ମଧ୍ୟ-ଏସିଆରେ ତିବ୍ବତର ଉତ୍ତରକୁ ବିଶାଳ ତୁର୍କୀ ଥିଲା । ଏହାକୁ ଜଗତାଇ ସାମ୍ରାଜ୍ୟ ବୋଲି କହୁଥିଲେ ।

୫ । ମଙ୍ଗୋଲିଆ ଓ 'ସୁବର୍ଣ୍ଣ ଗୋଷ୍ଠୀ' ରାଜ୍ୟ ଭିତରେ ମଙ୍ଗୋଲମାନଙ୍କ ସାଇବେରିଆ ସାମ୍ରାଜ୍ୟ ଥିଲା ।

ଯଦିଓ ସୁବିଶାଳ ମଙ୍ଗୋଲ ସାମ୍ରାଜ୍ୟ ବିଭକ୍ତ ହୋଇଥିଲା, ତଥାପି ଏହି ପାଞ୍ଚ ବିଭାଗର ପ୍ରତ୍ୟେକଟି ହେଉଛି ଗୋଟିଏ ଗୋଟିଏ ବିଶାଳ ସାମ୍ରାଜ୍ୟ ।

## ୭୯ । ମହାନ୍ ପରିବ୍ରାଜକ ମାର୍କୋପୋଲୋ

ଜୁନ୍ ୨୭, ୧୯୩୨

କାରାକୋରମରେ ପ୍ରଧାନ ଖାଁଙ୍କ ରାଜଦରବାର କଥା ତତେ କହିଛି । ମଙ୍ଗୋଲ-ମାନଙ୍କ ଯଶ ଓ ତାଙ୍କ ବିଜୟଗୌରବଦ୍ୱାରା ଆକୃଷ୍ଟ ହୋଇ କିପରି ବହୁ ବଣିକ, କାରିଗର, ବିଦ୍ୱାନଲୋକ ଓ ଧର୍ମପ୍ରଚାରକମାନେ ସେଠାକୁ ଆସିଥିଲେ, ସେ କଥା କହିଛି । ମଙ୍ଗୋଲମାନେ ସେମାନଙ୍କୁ ଆସିବା ନିମନ୍ତେ ଉତ୍ସାହିତ କରିଥିବାରୁ ସେମାନେ ଆସୁଥିଲେ । ମଙ୍ଗୋଲମାନେ ଏକ ଅଦ୍ଭୁତ ଲୋକ, କେତେକ ଭାବରେ ଅତ୍ୟନ୍ତ କର୍ମକୁଶଳ ଏବଂ ଆଉ କେତେକ ବ୍ୟାପାରରେ ପ୍ରାୟ ବାଳକୋଚିତ । ଏପରିକି ତାଙ୍କର ପ୍ରଚଣ୍ଡ ଓ କ୍ରୁର ସ୍ୱଭାବ ଭୟପ୍ରଦ ହେଲେ ସୁଦ୍ଧା ସେଥିରେ ବାଳକୋଚିତ ଭାବ ରହିଥିଲା । ମୋର ମନେହୁଏ, ସେମାନଙ୍କ ଭିତରେ ଏହି ଯେଉଁ ବାଳକୋଚିତ ଭାବ ଥିଲା, ତାହାହିଁ ସେହି ଭୀଷଣ ଯୋଦ୍ଧା-ମାନଙ୍କ ପ୍ରତି ଏକ ଆକର୍ଷଣ ଜାତ କରିଥିଲା । କେତେ ଶହ ବର୍ଷ ପରେ ଜଣେ ମଙ୍ଗୋଲ ବା ମୋଗଲ (ଭାରତରେ ଏହି ନାମରେ ସେମାନଙ୍କୁ ଡାକୁଥିଲେ) ଏହି ଦେଶ ଜୟ କଲେ । ସେ ହେଉଛନ୍ତି ବାବର ଓ ତାଙ୍କ ମାତା ଚେଙ୍ଗିଜ୍ ଖାଁଙ୍କ ବଂଶଧର ଥିଲେ । ଭାରତ ବିଜୟ କରିସାରି ସେ ଶୀତଳ ସମୀରଣ, ପୁଷ୍ପ, ଉଦ୍ୟାନ ଏବଂ କାବୁଲ ଉତ୍ତରାଞ୍ଚଳର ତରଭୁଜ ପାଇଁ ବ୍ୟାକୁଳ ହୋଇଉଠିଲେ । ସେ ଏକ ଆମୋଦଦାୟକ ବ୍ୟକ୍ତି ଥିଲେ ଓ ସେ ତାଙ୍କର ଯେଉଁ ସ୍ମୃତିଗାଥା ଲେଖି ଯାଇଛନ୍ତି, ସେଥିରେ ତାଙ୍କର ମାନବିକତା ଓ ଆକର୍ଷଣୀ ଶକ୍ତିର ପରିଚୟ ମିଳେ ।

ଏହିରୂପେ ମଙ୍ଗୋଲମାନେ ତାଙ୍କ ଦରବାରକୁ ବିଦେଶରୁ ଦର୍ଶକ ଆଣିବାରେ ଉତ୍ସାହିତ କରୁଥିଲେ । ସେମାନଙ୍କର ଜ୍ଞାନପିପାସା ଥିଲା ଓ ସେମାନଙ୍କଠାରୁ ଶିକ୍ଷା କରିବାକୁ ଚାହୁଁଥିଲେ । ମୁଁ ତୋତେ କହିଥିଲି, ତୋର ମନେଥିବ ଚେଙ୍ଗିଜ୍ ଖାଁ ଲେଖିପାରିବା ବୋଲି ଗୋଟିଏ ଜିନିଷ ଯେତେବେଳେ ଜାଣିପାରିଲେ, ସେତେବେଳେ ସେ ସଙ୍ଗେ ସଙ୍ଗେ ତାର ମହତ୍ତ୍ୱ ବୁଝିପାରିଥିଲେ ଏବଂ ଏହା ଶିକ୍ଷା କରିବା ନିମନ୍ତେ ନିଜର କର୍ମଚାରୀମାନଙ୍କୁ ଆଦେଶ ଦେଇଥିଲେ । ସେମାନଙ୍କର ଉନ୍ମୁକ୍ତ ଓ ଗ୍ରହଣକ୍ଷମ ମନ ଥିଲା ଏବଂ ଅନ୍ୟ-

ମାନଙ୍କଠାରୁ ଶିକ୍ଷା କରିପାରୁଥିଲେ । କୁବ୍ଲାଇ ଖାଁ ପେକିଂରେ ବସତି କରି ସାରିଲା ପରେ ଏବଂ ଏକ ସମ୍ମାନାସ୍ପଦ ଚୀନ ସମ୍ରାଟ ହେଲା ପରେ ବିଦେଶରୁ ଦର୍ଶକଙ୍କ ଆଗମନକୁ ବିଶେଷ ଭାବରେ ଉତ୍ସାହିତ କରିଥିଲେ । ଭେନିସରୁ ନିକୋଲେ ପୋଲୋ ଓ ମାଫିଓ ପୋଲୋ ଦୁଇ ଭାଇ ତାଙ୍କ ନିକଟକୁ ଆସିଥିଲେ । ଏମାନେ ବଣିକ ଥିଲେ । ସେମାନେ ବ୍ୟବସାୟ ଅନ୍ୱେଷଣରେ ବୋଖାରା ପର୍ଯ୍ୟନ୍ତ ଯାଇଥିଲେ । କୁବଲାଇ ଖାଁ ଇରାନରେ ହୁଲାଗୁଙ୍କ ନିକଟକୁ ପଠାଇଥିବା କେତେକ ଦୂତଙ୍କୁ ସେମାନେ ସେଠାରେ ଭେଟିଲେ । ଏହି ଯାତ୍ରାପଥରେ ଯୋଗଦେବା ନିମନ୍ତେ ସେମାନେ ଆଗ୍ରହ ପ୍ରକାଶ କଲେ ଏବଂ ଏହି-ରୂପେ ପେକିଂ ପ୍ରଧାନ ଖାଁଙ୍କ ରାଜଦରବାରକୁ ସେମାନେ ଗଲେ ।

ନିକୋଲେ ଓ ମାଫିଓଙ୍କୁ କୁବ୍ଲାଇ ଖାଁ ଖୁବ୍ ଆଦର ଦେଖାଇଲେ ଏବଂ ସେମାନେ ଇଉରୋପ ଖ୍ରୀଷ୍ଟଧର୍ମ ଓ ପୋପ ସମ୍ବନ୍ଧରେ ତାଙ୍କୁ କହିଲେ । କୁବଲାଇ ଅତ୍ୟନ୍ତ ଖୁସି ହେଲେ ଏବଂ ଖ୍ରୀଷ୍ଟଧର୍ମ ପ୍ରତି ଆକୃଷ୍ଟ ହୋଇଥିବା ପରି ବୋଧହୁଏ । ସେ ୧୨୬୯ରେ ପୋପଙ୍କ ନିକଟକୁ ଏକ ବାର୍ତ୍ତା ପଠାଇ ପୋଲୋମାନଙ୍କୁ ପୁନର୍ବାର ଇଉରୋପ ପଠାଇ ଦେଲେ । "ସପ୍ତକଳାରେ ପରିଚିତ ବିଚକ୍ଷଣ ବ୍ୟକ୍ତି" ଏବଂ ଖ୍ରୀଷ୍ଟଧର୍ମର ଯଥାର୍ଥତା ପ୍ରତି-ପାଦନ କରିବାରେ ଦକ୍ଷ ୧୦୦ ଜଣ ବିଦ୍ୱାନ ବ୍ୟକ୍ତି ତାଙ୍କ ନିକଟକୁ ପଠାଇବା ନିମନ୍ତେ ସେ ମାଗିଥିଲେ । କିନ୍ତୁ ପୋଲୋ ଦୁଇ ଭାଇ ଫେରିଆସି ଇଉରୋପ ଓ ପୋପଙ୍କ ଦୁର୍ଦ୍ଦଶା ଦେଖିଲେ । ସେତେବେଳେ ଏପରି ଏକଶହ ଲୋକ ନ ଥିଲେ । ଦୁଇ ବର୍ଷ ପରେ ସେମାନେ ଦୁଇ ଜଣ ଖ୍ରୀଷ୍ଟୀୟ ସନ୍ନ୍ୟାସୀଙ୍କୁ ସଙ୍ଗରେ ନେଇ ପୁନର୍ବାର ଫେରିଲେ । ଆହୁରି ବଡ଼ କଥା ହେଉଛି ଯେ ସେମାନେ ନିକୋଲେଙ୍କ ପୁତ୍ରଙ୍କୁ ସାଙ୍ଗରେ ନେଇଥିଲେ । ସେ ହେଉଛନ୍ତି ମାର୍କୋ ନାମକ ଜଣେ ଯୁବକ ।

ପୋଲୋ ତିନିହେଁ ତାଙ୍କର ବିରାଟ ଯାତ୍ରା ଆରମ୍ଭ କଲେ ଏବଂ ସମସ୍ତ ଏସିଆଖଣ୍ଡ ସ୍ଥଳପଥରେ ଅତିକ୍ରମ କଲେ । କିପରି ବିରାଟ ଯାତ୍ରା ! ଆଜି ସୁଦ୍ଧା ପୋଲୋମାନେ ଯେଉଁ ରାସ୍ତାରେ ଆସିଥିଲେ, ସେଥିରେ ଗଲେ ବର୍ଷକର ଅଧିକାଂଶ ସମୟ ଲାଗିଯିବ । ପୋଲୋ-ମାନେ ଆଂଶିକ ଭାବରେ ହୁଏନସାଂଙ୍କର ପୁରାତନ ପଥ ଅନୁସରଣ କରିଥିଲେ । ସେମାନେ ପାଲେଷ୍ଟାଇନ ଦେଇ ଆରମେନିଆକୁ ଗଲେ । ସେଠାରୁ ମେସୋପୋଟାମିଆ ଗଲେ ଓ ପାରସ୍ୟ ଉପସାଗରକୁ ଗଲେ; ସେଠାରେ ଭାରତୀୟ ବଣିକମାନଙ୍କୁ ଭେଟିଲେ । ଇରାନ୍ ଅତିକ୍ରମ କରି ବାଲୁକା ଓ ପର୍ବତ ଉପର ଦେଇ କାସ୍‌ଗରକୁ ଗଲେ ଏବଂ ତା'ପରେ ଖୋଟାନ, ଲୋପ୍‌ନୋରରେ ପହଞ୍ଚିଲେ । ପୁନର୍ବାର ମରୁଭୂମି ପଡ଼ିଲା ଏବଂ କ୍ରମେ ଯାଇ ସେମାନେ ଚୀନ ଓ ପେକିଂର ସମତଳଭୂମିରେ ପ୍ରବେଶ କଲେ । ସେମାନଙ୍କ ସାଥିରେ ସମ୍ରାଟଙ୍କ ଅନୁମତିପତ୍ର ଥିଲା । ପ୍ରଧାନ ଖାଁ ନିଜେ ତାଙ୍କୁ ଏକ ସ୍ୱର୍ଣ୍ଣପଦକ ଦେଇଥିଲେ ।

ପୁରାତନ ରୋମ ଅମଳରେ ଚୀନ ଓ ସିରିଆ ମଧ୍ୟରେ ଏହା ହିଁ ସ୍ଥଳପଥ ଥିଲା । ଅଳ୍ପ କେତେଦିନ ପୂର୍ବେ ସୁଏନହେଡ଼େନ ନାମକ ଜଣେ ସୁଇଡେନର ଆବିଷ୍କାରକ ଓ ପରିବ୍ରାଜକ ଗୋବି ମରୁଭୂମି ଅତିକ୍ରମ କରି ଯାତ୍ରା କରିଥିବାର ବିବରଣୀ ମୁଁ ପଢ଼ିଥିଲି । ସେ ପେକିଂଠୁ ମରୁଭୂମି ଅତିକ୍ରମ କରି ଲୋପ୍‌ନୋର ହ୍ରଦ ସ୍ପର୍ଶ କରି ପଶ୍ଚିମରେ ଖୋଟାନ ଓ ଆକ୍ସୁର ଆଗକୁ ଯାଇଥିଲେ । ତାଙ୍କ ସହିତ ସମସ୍ତ ଆଧୁନିକ ସୁବିଧା ଥିଲା; ଅଥଚ ତାଙ୍କ ଯାତ୍ରାରେ ତାଙ୍କୁ କଷ୍ଟ ଓ ଦୁଃଖର ସମ୍ମୁଖୀନ ହେବାକୁ ପଡ଼ିଥିଲା । ୭୦୦ ଓ ୧୩୦୦ ବର୍ଷ ପୂର୍ବେ ଯେତେବେଳେ ପୋଲୋମାନେ ଓ ହୁଏନସାଂ ସେ ପଥରେ ଯାଇଥିଲେ, ସେ ଯାତ୍ରା କପରି ବା ହୋଇ ନ ଥିବ ! ସୁଏନହେଡ଼େନ ଏକ ଆଗ୍ରହଜନକ ଆବିଷ୍କାର କରିଥିଲେ । ସେ ଦେଖିଲେ ଯେ ଲୋପ୍‌ନୋର ହ୍ରଦ ତାହାର ସ୍ଥାନ ପରିବର୍ତ୍ତନ କରିଛି । ଦୀର୍ଘକାଳ ପୂର୍ବେ ୪ର୍ଥ ଶତାବ୍ଦୀରେ ଲୋପ୍‌ନୋରକୁ ବହି ଆସୁଥିବା ଟାରିନ ନଦୀ ତାର ଗତି ବଦଳାଇଛି ଏବଂ ମରୁଭୂମି ବାଲିରେ ତାର ପୁରାତନ ଗତିପଥ ଆଚ୍ଛାଦିତ ହୋଇଯାଇଛି । ସେଠାରେ ଥିବା ପୁରାତନ ଲୋଲାନ ନଗର ବାହାର ଦୁନିଆରୁ ବିଚ୍ଛିନ୍ନ ହୋଇ ଯାଇଛି ଏବଂ ସେଠାର ଅଧିବାସୀମାନେ ଏହି ଧ୍ୱଂସର ସମ୍ମୁଖୀନ ହୋଇଛନ୍ତି । ନଦୀ ଯୋଗୁ ହ୍ରଦର ବି ସ୍ଥାନ ପରିବର୍ତ୍ତନ ହୋଇଛି ଏବଂ ପୁରାତନ ସ୍ଥଳ ଓ ବାଣିଜ୍ୟପଥ ସେହିପରି ବଦଳିଛି । ସୁଏନହେଡ଼େନର ଅତି ନିକଟରେ କେତେ ବର୍ଷ ପୂର୍ବେ ପୁନର୍ବାର ଦେଖିଲେ ଯେ ଟାରିନ୍ ନଦୀ ତାର ଗତି ବଦଳାଇଛି ଏବଂ ପୁରୁଣା ଅବସ୍ଥାକୁ ପୁନର୍ବାର ଫେରିଯାଇଛି । ହ୍ରଦ ମଧ୍ୟ ସେହିପରି ବଦଳିଛି । ଟାରିନ ପୁନର୍ବାର ପୁରାତନ ଲୋଲାନ ନଗରର ଧ୍ୱଂସାବଶେଷ ନିକଟ ଦେଇ ଯାଇଛି ଏବଂ ହୁଏତ ୧୬୦୦ ବର୍ଷ ପର୍ଯ୍ୟନ୍ତ ବ୍ୟବହାର ହୋଇ ନ ଥିବା ପୁରାତନ ପଥ ପୁନର୍ବାର ବ୍ୟବହାର ହୋଇପାରେ; ମାତ୍ର ଓଟଙ୍କ ଜାଗାରେ ହୁଏତ ମୋଟର ଗାଡ଼ି ବ୍ୟବହାର ହେବ । ଏହି କାରଣରୁ ଲୋପ୍‌ନୋରକୁ ଭ୍ରମଣକାରୀ ହ୍ରଦ ବୋଲି କହନ୍ତି । ମୁଁ ତୋତେ ଟାରିନ ନଦୀ ଓ ଲୋପ୍‌ନୋରର ଭ୍ରମଣ ବିଷୟ କହୁଛି । କପରି ଜଳଧାରାର ଗତି ବିସ୍ତୃତ ଅଞ୍ଚଳରେ ପରିବର୍ତ୍ତନ ହୁଏ ଏବଂ ତେଣୁ ଇତିହାସ ବି ବଦଳାଇ ଦିଏ, ସେ ବିଷୟରେ ତୋର ଏଥିରୁ ଗୋଟାଏ ଧାରଣା ଜନ୍ମିବ । ଆମେ ଦେଖିଆସିଛୁ ପୂର୍ବକାଳରେ ମଧ୍ୟ-ଏସିଆ ଜନାକୀର୍ଣ୍ଣ ହୋଇ ରହିଥିଲା ଏବଂ ଏହାର ଅଧିବାସୀ ଦଳକୁ ଦଳ ପଶ୍ଚିମ ଓ ଦକ୍ଷିଣ ବିଜୟ କରିବାକୁ ଯାଇଥିଲେ । ଆଜି ଏହା ଏକ ପ୍ରକାର ପରିତ୍ୟକ୍ତ ଅଞ୍ଚଳ ହୋଇ ରହିଛି, ଅଳ୍ପ କେତେକ ସହର ଓ ଖୁବ୍ କମ୍ ଲୋକ ରହିଛନ୍ତି । ସମ୍ଭବତଃ ସେତେବେଳେ ସେଠାରେ ଅଧିକ ଜଳ ଥିଲା ଏବଂ ତେଣୁ ଅଧିକ ଲୋକଙ୍କୁ ଏହା ରକ୍ଷାରକ୍ଷଣ କରି ପାରୁଥିଲା । ଜଳବାୟୁ ଶୁଷ୍କ ହେବାରୁ ଏବଂ ଜଳ ବିଶେଷ ପରିମାଣରେ ନ ମିଳିବାରୁ ଲୋକସଂଖ୍ୟା କମିଗଲା ।

ଏହି ଦୀର୍ଘ ଯାତ୍ରାମାନଙ୍କରେ ଗୋଟିଏ ସୁବିଧା ଥିଲା । ଯେ କୌଣସି ବ୍ୟକ୍ତି ନୂତନ ଭାଷା ବା ଭାଷାଗୁଡ଼ିକ ଶିକ୍ଷା କରିବାକୁ ସମୟ ପାଉଥିଲା । ଭେନିସରୁ ପେକିଂରେ ପହଞ୍ଚିବାକୁ ସମସ୍ତ ତିନି ପୋଲୋଙ୍କୁ ସାଢ଼େ ତିନି ବର୍ଷ ଲାଗିଗଲା ଏବଂ ଏହି ଦୀର୍ଘକାଳ ଭିତରେ ମାର୍କୋ ମଙ୍ଗୋଲ ଭାଷାରେ ପ୍ରବୀଣ ହେଲେ ଓ ଚୀନ ଭାଷା ମଧ୍ୟ ଶିକ୍ଷା କରିଥିଲେ । ମାର୍କୋ ପ୍ରଧାନ ଖାଁଙ୍କ ପ୍ରିୟ ହୋଇ ଉଠିଲେ ଏବଂ ପ୍ରାୟ ୧୭ ବର୍ଷ କାଳ ସେ ତାଙ୍କ ପାଖରେ ରହିଥିଲେ । ସେ ତାଙ୍କୁ ଶାସନକର୍ତ୍ତା କଲେ ଏବଂ ସରକାରୀ କାର୍ଯ୍ୟରେ ଚୀନର ବିଭିନ୍ନ ଅଞ୍ଚଳକୁ ସେ ଯାଉଥିଲେ । ଯଦିଓ ମାର୍କୋ ଓ ତାଙ୍କ ପିତା ଗୃହ ପ୍ରତ୍ୟାବର୍ତ୍ତନ ଲାଗି ବ୍ୟାକୁଳ ହୋଇ ଭେନିସକୁ ଫେରି ଆସିବାକୁ ଚାହୁଁଥିଲେ, ତଥାପି ଖାଁଙ୍କ ଅନୁମତି ପାଇବା ସହଜ ନ ଥିଲା । ଶେଷରେ ଫେରି ଆସିବାର ସୁଯୋଗ ତାଙ୍କୁ ମିଳିଲା । କୁବଲାଇଙ୍କ ଦାଦା ପୁଅ ଭାଇ ଇରାନରେ ଥିବା ଇଲଖାନ ସାମ୍ରାଜ୍ୟର ମଙ୍ଗୋଲ ଶାସକଙ୍କ ସ୍ତ୍ରୀ ମରିଗଲେ । ସେ ପୁନର୍ବାର ବିବାହ ହେବାକୁ ଚାହିଁଲେ । କିନ୍ତୁ ତାଙ୍କ ନିଜ ସମ୍ପ୍ରଦାୟ ବାହାରେ ବିବାହ ନ ହେବା ନିମନ୍ତେ ତାଙ୍କର ପୁରାତନ ଭାର୍ଯ୍ୟା ତାଙ୍କଠାରୁ ପ୍ରତିଶ୍ରୁତି କରାଇ ନେଇଥିଲେ । ତେଣୁ ଆର୍ଗନ (ଏହାହିଁ ତାଙ୍କର ନାମ ଥିଲା) ପେକିଂରେ କୁବଲାଇ ଖାଁଙ୍କ ନିକଟକୁ ଦୂତ ପଠାଇଲେ ଏବଂ ତାଙ୍କ ସମ୍ପ୍ରଦାୟର ଏକ ଉପଯୁକ୍ତା ନାରୀ ପଠାଇବା ନିମନ୍ତେ ତାଙ୍କୁ ଅନୁରୋଧ କଲେ ।

କୁବଲାଇ ଖାଁ ଏକ ଯୁବତୀ ମଙ୍ଗୋଲ ରାଜକୁମାରୀ ବାଛିଲେ ଏବଂ ତିନି ପୋଲୋ ଅଭିଜ୍ଞ ପରିବ୍ରାଜକ ହୋଇଥିବାରୁ ତାକୁ ତାଙ୍କ ସଙ୍ଗରେ ପଠାଇ ଦିଆଗଲା । ସେମାନେ ସମୁଦ୍ରରେ ଚୀନର ଦକ୍ଷିଣରୁ ସୁମାତ୍ରାକୁ ଗଲେ ଓ ସେଠାରେ କିଛି କାଳ ରହିଥିଲେ । ସେତେବେଳେ ସୁମାତ୍ରାରେ ଶ୍ରୀ ବିଜୟଙ୍କର ବୌଦ୍ଧ ସାମ୍ରାଜ୍ୟ ସମୃଦ୍ଧି ଲାଭ କରିଥିଲା; ମାତ୍ର ଏହାର ପତନର ଚିହ୍ନ ଦେଖାଯାଉଥିଲା । ସୁମାତ୍ରାରୁ ଏହି ଦଳ ଦକ୍ଷିଣ-ଭାରତକୁ ଗଲେ । ଦକ୍ଷିଣ-ଭାରତର ପାଣ୍ଡ୍ୟ ରାଜ୍ୟରେ ସମୃଦ୍ଧିଶାଳୀ କାୟାଲ ବନ୍ଦର ମାର୍କୋ ପରିଦର୍ଶନ କରିବା କଥା ମୁଁ ତୋତେ ଆଗରୁ କହିଛି । ସେ ରାଜକୁମାରୀ, ମାର୍କୋ ଓ ତାଙ୍କ ଦଳ ଭାରତରେ ଦୀର୍ଘକାଳ ରହିଥିଲେ । ସେମାନେ କିଛି ତରତର ହେଲା ପରି ମନେ ହୁଏନା ଏବଂ ଇରାନରେ ପହଞ୍ଚିବାକୁ ସେମାନଙ୍କୁ ଦୁଇ ବର୍ଷ ଲାଗିଗଲା । କିନ୍ତୁ ଇତ୍ୟବସରରେ ଚାହିଁ ବସିଥିବା ବର ମରିଗଲା । ସେ ଦୀର୍ଘକାଳ ଅପେକ୍ଷା କରିଥିଲେ । ସମ୍ଭବତଃ ତାଙ୍କ ମୃତ୍ୟୁଦ୍ୱାରା ସେପରି ଦୁର୍ଭାଗ୍ୟର କଥା ହୋଇ ନ ଥିଲା । ଯୁବତୀ ରାଜକୁମାରୀ ଆର୍ଗନଙ୍କର ପୁତ୍ରକୁ ବିବାହ ହେଲେ । ତାଙ୍କର ବୟସ ରାଜକୁମାରୀଙ୍କଠାରୁ ବହୁତ ବେଶୀ ଥିଲା ।

ପୋଲୋମାନେ ରାଜକୁମାରୀଙ୍କୁ ସେଠାରେ ଛାଡ଼ିଦେଲେ ଏବଂ କନଷ୍ଟାଣ୍ଟିନୋପଲ ଦେଇ ଘରକୁ ଫେରିଲେ । ସେମାନେ ଘର ଛାଡ଼ିବାର ୨୪ ବର୍ଷ ପରେ ୧୨୯୫ରେ

ଭେନିସରେ ପହଞ୍ଚିଲେ । ତାଙ୍କ କେହି ଚିହ୍ନି ପାରିଲେ ନାହିଁ ଏବଂ କଥିତ ଅଛି ଯେ ନିଜର ପୁରାତନ ବନ୍ଧୁ ଓ ଅନ୍ୟମାନଙ୍କୁ ପ୍ରଭାବିତ କରିବା ପାଇଁ ସେମାନେ ଏକ ଭୋଜି ଦେଲେ ଏବଂ ଏହି ଭୋଜି ମଝିରେ ସେମାନେ ନିଜର ଗଦିବାଲା ପୋଷାକ ଖୋଲିଲେ । ସଙ୍ଗେ ସଙ୍ଗେ ହୀରା, ନୀଳା, ମୋତି ଓ ଅନ୍ୟାନ୍ୟ ମୂଲ୍ୟବାନ ଜିନିଷପତ୍ର ଗଦା ହୋଇଗଲା ଏବଂ ଅତିଥିମାନେ ଆଶ୍ଚର୍ଯ୍ୟ ହୋଇଗଲେ । ତଥାପି ପୋଲୋମାନଙ୍କର ଚୀନ ଓ ଭାରତରେ ଅଲୌକିକ ଯାତ୍ରାକାହାଣୀ କମ୍ ଲୋକ ବିଶ୍ୱାସ କରିଥିଲେ । ସେମାନେ ଭାବିଥିଲେ ଯେ ମାର୍କୋ, ତାଙ୍କର ପିତା ଓ ଖୁଡ଼ୁତା ଅତିରଞ୍ଜିତ କରୁଛନ୍ତି । ନିଜର କ୍ଷୁଦ୍ର ଭେନିସ୍ ପ୍ରଜାତନ୍ତ୍ରରେ ରହି ଚୀନ ଓ ଏସିଆର ଅନ୍ୟ ରାଜ୍ୟଗୁଡ଼ିକର ଆକୃତି ଓ ଧନ ବିଷୟରେ ସେମାନେ ଧାରଣା କରିପାରୁ ନ ଥିଲେ ।

ତିନି ବର୍ଷ ପରେ ୧୨୯୫ରେ ଜେନଓ୍ୱା ସହର ସହିତ ଭେନିସର ଯୁଦ୍ଧ ଲାଗିଲା । ଏ ଉଭୟେ ସାମୁଦ୍ରିକ ଶକ୍ତି ଓ ପରସ୍ପରର ପ୍ରତିଦ୍ୱନ୍ଦୀ ଥିଲେ ଏବଂ ସେମାନଙ୍କ ମଧ୍ୟରେ ଏକ ବିରାଟ ନୌଯୁଦ୍ଧ ଲାଗିଥିଲା । ଭେନିସବାସୀ ପରାସ୍ତ ହେଲେ ଏବଂ ଜେନଓ୍ୱାବାଲା ସେମାନଙ୍କ ଭିତରୁ କେତେସହସ୍ରଙ୍କୁ ବନ୍ଦୀ କଲେ । ଆମର ବନ୍ଧୁ ମାର୍କୋପୋଲୋ ଏମାନଙ୍କ ଭିତରେ ଜଣେ ବନ୍ଦୀ ଥିଲେ । ଜେନେଓ୍ୱାର କାରାଗାରରେ ବସି ସେ ତାଙ୍କର ଭ୍ରମଣ ବୃତ୍ତାନ୍ତ ଲେଖିଲେ ବା ଏକପ୍ରକାର ଲେଖାଇଥିଲେ । ଏହିପରି ଭାବରେ ମାର୍କୋ ପୋଲୋଙ୍କ ଯାତ୍ରାକାହାଣୀ ଆତ୍ମପ୍ରକାଶ କଲା । କୌଣସି ଭଲ କାର୍ଯ୍ୟ କରିବା ନିମନ୍ତେ ବନ୍ଦୀଶାଳା କପରି ଉପଯୁକ୍ତ ସ୍ଥାନ !

ଏହି ଭ୍ରମଣ ବୃତ୍ତାନ୍ତରେ ମାର୍କୋ ବିଶେଷ ଭାବରେ ଚୀନ ଓ ଏହା ମଧ୍ୟଦେଇ ଯେଉଁ ସବୁ ଭ୍ରମଣ କରିଥିଲେ, ତାହା ବର୍ଣ୍ଣନା କରିଛନ୍ତି; ସେ କେତେକ ପରିମାଣରେ ଶ୍ୟାମ, ଜାଭା, ସୁମାତ୍ରା, ସିଂହଳ ଓ ଦକ୍ଷିଣ-ଭାରତର ବର୍ଣ୍ଣନା ବି କରିଛନ୍ତି । ବୃହତ୍ ଚୀନ ସମୁଦ୍ର ବନ୍ଦରମାନଙ୍କରେ ପ୍ରାଚ୍ୟର ସମସ୍ତ ଅଞ୍ଚଳରୁ ଜାହାଜ ଠୁଳ ହେଉଥିବା କଥା ସେ ଲେଖିଛନ୍ତି । କେତେକ ଜାହାଜ ଏପରି ବଡ଼ ଥିଲା ଯେ ତାହା ୩୦୦।୪୦୦ ନାବିକ ଚଳାଉଥିଲେ । ଚୀନ ଏକ ଶସ୍ୟଶ୍ୟାମଳା ଓ ସମୃଦ୍ଧିଶାଳୀ ଦେଶ ଥିଲା, ସେଠାରେ ଅନେକ ସହର ଓ ନଗର ଥିଲା । "ରେଶମ ଲୁଗା, ସୁନା ଓ ଅନେକ ସୁନ୍ଦର ଧୂପଗ୍ରାସ୍ୱୀ" ତିଆରି ହେଉଥିଲା ଏବଂ ସୁନ୍ଦର ଉଦ୍ୟାନ ଓ ଅଙ୍ଗୁର କ୍ଷେତମାନ ଥିଲା ଏବଂ ଯାତ୍ରାପଥରେ "ଉତ୍କୃଷ୍ଟ ପାନ୍ଥନିବାସ" ନିର୍ମିତ ହୋଇଥିଲା । ରାଜକୀୟ ବାର୍ତ୍ତା ନେବା ଆଣିବା ସକାଶେ ଏକ ବିଶେଷ ବାର୍ତ୍ତାବହ ବିଭାଗ ଥିବା ସେ କହିଯାଇଛନ୍ତି । ଘୋଡ଼ାମାନଙ୍କ ଦ୍ୱାରା ୨୪ଘଣ୍ଟା ଭିତରେ ତିନିଶହି ମାଇଲ ହିସାବରେ ଏହି ବାର୍ତ୍ତା ଯାଉଥିଲା—ବାସ୍ତବିକ୍ ଏହା ଖୁବ୍ ଭଲ ଉପାୟ । ସେ ଆମକୁ କହନ୍ତି ଯେ କାଠ ପରିବର୍ତ୍ତେ ଚୀନର ଲୋକେ କୃଷ୍ଣପ୍ରସ୍ତର ବ୍ୟବହାର କରୁଥିଲେ; ସେମାନେ ମାଟି ଖୋଳି ଏହା ବାହାର କରୁଥିଲେ । ସ୍ପଷ୍ଟ ଭାବରେ ଏହାର

ଅର୍ଥ ହେଉଛି ଯେ ସେମାନେ କୋଇଲାଖଣିରେ କାର୍ଯ୍ୟ କରୁଥିଲେ ଏବଂ ଜାଳରୂପେ କୋଇଲା ବ୍ୟବହାର କରୁଥିଲେ । କୁବଲାଇ ଖାଁ କାଗଜମୁଦ୍ରା ପ୍ରଚଳନ କରିଥିଲେ । ଅର୍ଥାତ୍ ଆଜକାଲି ଯେପରି ହେଉଛି, ସେ ସେହିପରି ସୁନାରେ ଅସୁଲ ଦେବାର ପ୍ରତିଶ୍ରୁତି ଦେଇ କାଗଜ ନୋଟ ଚଲାଇଥିଲେ । ଏହା ଅତ୍ୟନ୍ତ ଆଗ୍ରହଜନକ । ଧାର ସୂତ୍ରେ କାରବାର କରିବାର ଆଧୁନିକ କୌଶଳ ଯେ ପ୍ରୟୋଗ କରିଥିଲେ ବୋଲି ଏଥିରୁ ଜଣାଯାଏ । ଚୀନରେ ପ୍ରେଷ୍ଟର ଜନ୍ ନାମକ ଜଣେ ଶାସକଙ୍କ ଅଧୀନରେ ଗୋଟିଏ ଖ୍ରୀଷ୍ଟୀୟ ବସତି ଥିଲା ବୋଲି ମାର୍କୋ ଉଲ୍ଲେଖ କରିଯାଇଛନ୍ତି । ଇଉରୋପର ଲୋକେ ଏଥିରେ ଚକିତ ହୋଇ ଯାଇଥିଲେ । ସମ୍ଭବତଃ ଏମାନେ ମଙ୍ଗୋଲିଆର ପୁରାତନ ନେଷ୍ଟୋରିଆନ୍ ।

ଜାପାନ, ବର୍ମା ଓ ଭାରତ ବିଷୟରେ ସେ ମଧ୍ୟ ଲେଖିଥିଲେ । ସମସ୍ତ ସମୟରେ ସେ ଯାହା ଦେଖିଥିଲେ ଏବଂ ଯାହା ଶୁଣିଥିଲେ, ତାହା ଲେଖିଯାଇଛନ୍ତି । ମାର୍କୋଙ୍କ ବର୍ଣ୍ଣିତ କାହାଣୀ ଏକ ବଡ଼ଧରଣର ଭ୍ରମଣବୃତ୍ତାନ୍ତ ରୂପେ ଥିଲା ଏବଂ ଏବେ ବି ରହିଛି । ଇଉରୋପର କ୍ଷୁଦ୍ର ରାଜ୍ୟଗୁଡ଼ିକରେ ସୀମାବଦ୍ଧ ଓ କ୍ଷୁଦ୍ର ହିଂସାଦ୍ୱେଷରେ ପରିପୂର୍ଣ୍ଣ ଲୋକଙ୍କର ଏହା ଆଖି ଖୋଲିଦେଲା । ଏଥିରେ ସେମାନେ ବ୍ୟାପକ ଜଗତର ଶ୍ରେଷ୍ଠତା, ସମ୍ପଦ ଓ ଅଲୌକିକ ଜିନିଷସବୁ ଜାଣିପାରିଲେ । ସେମାନଙ୍କର କଳ୍ପନାଶକ୍ତି ଜାଗ୍ରତ ହେଲା, ସାହସିକ କାର୍ଯ୍ୟ କରିବାର ଭାବ ବଢ଼ିଲା ଓ ଲାଳସା ଜନ୍ମିଲା । ଅଧିକ ଭାବରେ ଜଳଯାତ୍ରା କରିବାକୁ ଏହାହିଁ ସେମାନଙ୍କୁ ପ୍ରବର୍ତ୍ତାଇଲା । ଇଉରୋପର ବିକାଶ ହେଉଥିଲା । ଏହାର ଜୀବନ୍ତ ସଭ୍ୟତା ନିଜର ପାଦ ନିକ୍ଷେପ କରୁଥିଲା ଏବଂ ମଧ୍ୟଯୁଗର କଟକଣା ବିରୁଦ୍ଧରେ ସଂଗ୍ରାମ କରୁଥିଲା । ଯୁବକ ମନୁଷ୍ୟତା ପାଇବାର ପୂର୍ବ ଅବସ୍ଥା ପରି ଏହା ତେଜପୂର୍ଣ୍ଣ ଥିଲା । ଏହି ସମୁଦ୍ରଯାତ୍ରା ଓ ସମ୍ପଦ ଏବଂ ସାହସିକ କାର୍ଯ୍ୟ କରିବାର ଆକାଂକ୍ଷା ଯୋଗୁଁ ପରେ ଇଉରୋପୀୟମାନେ ଆମେରିକା, ଉତ୍ତମାଶା ଅନ୍ତରୀପ, ପ୍ରଶାନ୍ତ ମହାସାଗର, ଭାରତବର୍ଷ, ଚୀନ ଓ ଜାପାନକୁ ଯାଇଥିଲେ । ସମୁଦ୍ରପଥ ପୃଥିବୀର ରାଜପଥ ହେଲା ଏବଂ ମହାଦେଶ ମଧ୍ୟଦେଇ ଯାଇଥିବା ବିରାଟ ସ୍ଥଳପଥର ଗୁରୁତ୍ୱ କମିଗଲା ।

ମାର୍କୋ ପୋଲୋ ଛାଡ଼ିବାର ଅଳ୍ପ କେତେଦିନ ପରେ ପ୍ରଧାନ ଖାଁ କୁବଲାଇ ମରିଗଲେ । ସେ ଯେଉଁ ଓ୍ୟାନ ବଂଶ ଚୀନରେ ସ୍ଥାପନ କରିଥିଲେ, ତାହା ତାଙ୍କ ପରେ ବେଶିଦିନ ରହିଲା ନାହିଁ । ଦ୍ରୁତବେଗରେ ମଙ୍ଗୋଲ ଶକ୍ତି କ୍ଷୁନ୍ନ ହେଲା ଏବଂ ବିଦେଶୀଙ୍କ ବିରୁଦ୍ଧରେ ଏକ ଚୀନ ଜାତୀୟଭାବ ଜାଗ୍ରତ ହେଲା । ୭୦ ବର୍ଷ ଭିତରେ ଦକ୍ଷିଣ ଚୀନରୁ ମଙ୍ଗୋଲମାନଙ୍କୁ ତଡ଼ି ଦିଆଗଲେ ଏବଂ ଜଣେ ଚୀନବାସୀ ନାନକିଂରେ ସମ୍ରାଟରୂପେ ନିଜକୁ ପ୍ରତିଷ୍ଠିତ କଲେ । ଆଉ ୧୨ବର୍ଷ ପରେ ୧୩୬୮ରେ ଓ୍ୟାନବଂଶ ପୂର୍ଣ୍ଣଭାବରେ ଲୋପ

ପାଇଗଲା ଏବଂ ମଙ୍ଗୋଲମାନଙ୍କୁ 'ମହାନ ପ୍ରାଚୀର'ର ସେପଟକୁ ତଡ଼ି ଦିଆଗଲା । ଏବେ ଚୀନରେ "ମିଙ୍ଗ୍ ମିଂ" ବଂଶ ନାମକ ଆଉ ଏକ ଚୀନବଂଶ ବାହାରିଲା । ଦୀର୍ଘକାଳ ପ୍ରାୟ ୩୦୦ବର୍ଷ ପର୍ଯ୍ୟନ୍ତ ଏହି ବଂଶ ଚୀନରେ ଶାସନ କଲା ଏବଂ ଏହିକାଳକୁ ଚୀନର ଏକ ସୁଶାସନ, ସମୃଦ୍ଧି ଓ ସଂସ୍କୃତି କାଳ ବୋଲି ଧରାଯାଏ । ବିଦେଶୀ ଅଭିଯାନ ବା ସାମ୍ରାଜ୍ୟ-ବାଦୀରୂପେ ରାଜ୍ୟ ଦଖଲର କୌଣସି ଉଦ୍ୟମ ହୋଇ ନ ଥିଲା ।

ଚୀନରେ ମଙ୍ଗୋଲ ସାମ୍ରାଜ୍ୟ ଭାଙ୍ଗି ଯିବା ପରେ ଚୀନ ଓ ଇଉରୋପ ମଧ୍ୟରେ ସମ୍ପର୍କ ବନ୍ଦ ହୋଇଗଲା । ସ୍ଥଳପଥ ଏଣିକି ନିରାପଦ ନ ଥିଲା । ଜଳପଥ ଏପର୍ଯ୍ୟନ୍ତ ବେଶି ବ୍ୟବହାର ହୋଇ ନ ଥିଲା ।

## ୭୦ । ରୋମାନ ଚର୍ଚ୍ଚ ସଂଗ୍ରାମଶୀଳ ହେଲା

ଜୁନ ୨୮, ୧୯୩୨

ଚୀନକୁ ୧୦୦ ବିଦ୍ୱାନ ଲୋକ ପଠାଇବାକୁ ଅନୁରୋଧ କରି କୁବଲାଇ ଖାଁ ପୋପ୍‌ଙ୍କ ନିକଟକୁ ବାର୍ତ୍ତା ପ୍ରେରଣ କରିବା ବିଷୟ ମୁଁ ତୋତେ କହିଛି । କିନ୍ତୁ ପୋପ୍ ସେପରି କିଛି କଲେ ନାହିଁ । ସେତେବେଳେ ତାଙ୍କ ଅବସ୍ଥା ଖରାପ ଥିଲା । ତୁ ବୋଧହୁଏ ମନେ ରଖିଥିବୁ, ଏତେବେଳେ ସମ୍ରାଟ୍ ୨ୟ ଫ୍ରେଡ଼ରିକ୍‌ଙ୍କ ମୃତ୍ୟୁପରେ ୧୨୫୦ ରୁ ୧୨୭୩ ପର୍ଯ୍ୟନ୍ତ ଇଉରୋପରେ କୌଣସି ସମ୍ରାଟ୍ ନ ଥିଲେ । ମଧ୍ୟ-ଇଉରୋପ ସେତେବେଳେ ଏକ ବିପଦସଙ୍କୁଳ ଅବସ୍ଥାରେ ଥିଲା, ବିଶୃଙ୍ଖଳା ପୂରି ରହିଥିଲା ଏବଂ ଦସ୍ୟୁଦଳ ଘୂରିଆଡ଼େ ଲୁଣ୍ଠନ କରୁଥିଲେ । ୧୨୭୩ରେ ହାପ୍‌ସ୍‌ବର୍ଗ ବଂଶର ରୁଡୋଲଫ୍ ସମ୍ରାଟ ହେଲେ; କିନ୍ତୁ ଏହା-ଦ୍ୱାରା ଅବସ୍ଥାର ବିଶେଷ କିଛି ଉନ୍ନତ ହେଲା ନାହିଁ । ଇଟାଲୀ ସେ ସାମ୍ରାଜ୍ୟ ଭିତରୁ ଖସିଗଲା ।

କେବଳ ଯେ ରାଜନୈତିକ ବିଶୃଙ୍ଖଳା ଥିଲା ତାହା ନୁହେଁ, ରୋମାନ୍ ଧର୍ମ ଦୃଷ୍ଟିକୋଣରୁ ଯାହା କହନ୍ତି ଧର୍ମକ୍ଷେତ୍ରରେ ବିଶୃଙ୍ଖଳା ମଧ୍ୟ ଆରମ୍ଭ ହୋଇଥିଲା । ଲୋକେ ଆଉ ସେପରି ଧର୍ମସଂସ୍ଥା (ଚର୍ଚ୍ଚ)ର ଆଦେଶକୁ ପାଳନ କରୁ ନ ଥିଲେ । ସେମାନଙ୍କ ଭିତରେ ସନ୍ଦେହ ଜାଗ୍ରତ ହେଲା । ଧାର୍ମିକ ବ୍ୟାପାରରେ ସନ୍ଦେହ ରହିବା ଏକ ବିପଜ୍ଜନକ ଜିନିଷ । ଆଗରୁ ଆମେ ଦେଖିଛେ, ସମ୍ରାଟ ୨ୟ ଫ୍ରେଡରିକ୍ ପୋପ୍‌ଙ୍କ ସହ କେପରୁଆ ବ୍ୟବହାର କରୁଥିଲେ ଏବଂ ତାଙ୍କୁ ଜାତିବାସନ୍ଦ କରିବା ପ୍ରତି ବିଶେଷ ଖାତିର କରୁ

ନ ଥିଲେ । ଏପରିକି ସେ ଲିଖିତ ଆକାରରେ ତାଙ୍କ ସହିତ ତର୍କ କଲେ ଏବଂ ଏହି ଯୁକ୍ତିରେ ପ୍ରଧାନ ଧର୍ମଯାଜକ ଯଥାଯଥ ଉତ୍ତର ଦେଇ ପାରି ନ ଥିଲେ । ଏତେବେଳେ ଇଉରୋପରେ ଫ୍ରେଡ଼୍‌ରିକ୍‌ଙ୍କ ପରି ଅନେକ ସନ୍ଦେହୀ ଅବଶ୍ୟ ଥିବେ । ଆହୁରି ଅନେକ ଲୋକ ଥିଲେ, ଯେଉଁମାନେ ଧର୍ମ ବା ପ୍ରଧାନ ଧର୍ମଯାଜକଙ୍କ ଦାବୀ ପ୍ରତି ସନ୍ଦେହ ବା ଆପତ୍ତି ଦର୍ଶାଇ ନ ଥିଲେ ମଧ୍ୟ ଧର୍ମରେ ବଡ଼ ବଡ଼ ଲୋକଙ୍କର ବ୍ୟଭିଚାର ଓ ବିଳାସ ଦେଖି ଅସନ୍ତୋଷ ପ୍ରକାଶ କରୁଥିଲେ ।

ଏକପ୍ରକାର ଅପମାନଜନକ ଭାବରେ କ୍ରୁଜେଡ଼୍ ଶେଷ ପାଉଥିଲା । ଉଚ୍ଚ ଆଶା ଓ ଉତ୍ସାହରେ ଏହା ଆରମ୍ଭ ହୋଇଥିଲା; କିନ୍ତୁ କୌଣସି ଫଳ ହେଲା ନାହିଁ ଏବଂ ଏପରି ବ୍ୟର୍ଥତାରେ ସର୍ବଦା ଏକ ପ୍ରତିକ୍ରିୟା ଜାତହୁଏ । ଧର୍ମ ଯାହା ଥିଲା ସେଥିରେ ପୂର୍ଣ୍ଣରୂପେ ସନ୍ତୁଷ୍ଟ ନ ହୋଇ ଲୋକମାନେ ଅସ୍ପଷ୍ଟ ରୂପେ ଓ କ୍ରମେ ଅନ୍ୟତ୍ର ଆଲୋକ ଖୋଜିବାକୁ ଆରମ୍ଭ କଲେ । ଧର୍ମସଂସ୍ଥା ହିଂସା ଦ୍ୱାରା ପ୍ରତିଶୋଧ ନେଲା ଏବଂ ଆତଙ୍କବାଦ ପନ୍ଥାଦ୍ୱାରା ଲୋକଙ୍କ ମନକୁ ଆୟତ୍ତ କରିବାକୁ ଚେଷ୍ଟା କଲା । ମନୁଷ୍ୟର ମନ ଯେ ଅତ୍ୟନ୍ତ ପ୍ରବଞ୍ଚକ ଜିନିଷ ଏବଂ ତା' ବିରୁଦ୍ଧରେ ପାଶବିକ ବଳ ପ୍ରୟୋଗ ଅତି ନଗଣ୍ୟ ଅସ୍ତ୍ର, ତାହା ସେ ଭୁଲିଗଲେ । ଏହିରୂପେ ତାହା ବ୍ୟକ୍ତିବିଶେଷ ଓ ସମଷ୍ଟିଗତ ବିବେକର ଉଦ୍ଦୀପନା ବନ୍ଦ କରିଦେବା ପାଇଁ ଚେଷ୍ଟା କଲା । ଏହା ସନ୍ଦେହକୁ ଯୁକ୍ତି ଓ ବିବେଚନା ଦ୍ୱାରା ସମ୍ମୁଖୀନ ହେବାକୁ ଚେଷ୍ଟା ନ କରି ମୁଷ୍ଟି ପ୍ରହାର ଓ ଭୟ ଦେଖାଇବାର ଉଦ୍ୟମ କଲା ।

୧୧୫୫ ଆରମ୍ଭରେ ଇଟାଲୀର ବ୍ରେସ୍କିଆର ଆର୍ଣ୍ଣୋଲଡ଼୍ ନାମକ ଜଣେ ଲୋକପ୍ରିୟ ଓ ନିଷ୍ପାପର ପ୍ରଚାରକଙ୍କ ଉପରେ ଗୀର୍ଜାର କୋପଦୃଷ୍ଟି ପଡିଲା । ଆର୍ଣ୍ଣୋଲଡ଼୍ ପାଦ୍ରିମାନଙ୍କର ବିଳାସ ଓ ବ୍ୟଭିଚାର ବିରୁଦ୍ଧରେ ପ୍ରଚାର କଲେ । ତାଙ୍କୁ ଗିରଫ କରାଯାଇ ଫାଶୀଖୁଣ୍ଟରେ ଝୁଲାଇ ଦିଆଗଲା ଏବଂ ତାପରେ ତାଙ୍କର ମୃତ ଦେହକୁ ଜାଳି ଦିଆଗଲା ଓ ଲୋକେ ଯେପରି କୌଣସି ପ୍ରକାର ସ୍ମୃତିରକ୍ଷା ନ କରି ପାରନ୍ତି ସେଥିଲାଗି ତାଙ୍କର ଭସ୍ମକୁ ଟାଇବର ନଦୀରେ ନିକ୍ଷେପ କରାଗଲା । ଶେଷ ପର୍ଯ୍ୟନ୍ତ ଆର୍ଣ୍ଣୋଲଡ଼୍ ବଡ଼ ଧୀର ଓ ଗମ୍ଭୀର ଥିଲେ ।

ପୋପ୍ ଏତେଦୂର ଗଲେ ଯେ ଯେଉଁସବୁ ଶ୍ରେଷ୍ଠବଡ଼ ଖ୍ରୀଷ୍ଟୀୟ ସମ୍ପ୍ରଦାୟ ଶ୍ରେଷ୍ଠ ଶ୍ରେଷ୍ଠ କଥାରେ ଭିନ୍ନମତ ପୋଷଣ କଲେ କିମ୍ବା ପାଦ୍ରୀମାନଙ୍କୁ ଅଧିକ ସମାଲୋଚନା କଲେ, ସେମାନଙ୍କୁ ଜାତିଚ୍ୟୁତ କରିଦେଲେ । ଏହି ଲୋକମାନଙ୍କ ବିରୁଦ୍ଧରେ ବିଧିବଦ୍ଧ ଧର୍ମଯୁଦ୍ଧ ଘୋଷିତ ହେଲା ଏବଂ ତାଙ୍କ ବିରୁଦ୍ଧରେ ପ୍ରତ୍ୟେକ ପ୍ରକାର ଉଦ୍‌ବେଗଜନକ କ୍ରୂରତା ଓ ଖିଷଣ ବ୍ୟବହାର କରାଗଲା । ଫ୍ରାନ୍‌ସର ଦକ୍ଷିଣରେ ଆଲବିଜେଓଇ (ଅଥବା

ଆଲବିଜେନ୍‌ସ) ଓ ଓ୍ୱାଲଡୋ ନାମକ ଜଣେ ଲୋକଙ୍କ ଅନୁଚର ଓ୍ୱାଲଡେନ୍‌ସମାନଙ୍କପ୍ରତି ଏହିପରି ବ୍ୟବହାର କରାଯାଇଥିଲା ।

ଏହି ସମୟରେ କିମ୍ବା ଟିକିଏ ଆଗରୁ ଇଟାଲୀରେ ଜଣେ ଲୋକ ବାସ କରୁଥିଲେ । ଖ୍ରୀଷ୍ଟଧର୍ମ ଭିତରେ ସେ ଜଣେ ଅତ୍ୟନ୍ତ ଚିତ୍ତାକର୍ଷକ ବ୍ୟକ୍ତି ଥିଲେ । ସେ ହେଉଛନ୍ତି ଆସିସିର ଫ୍ରାନ୍‌ସିସ୍ । ସେ ଜଣେ ଧନୀ ବ୍ୟକ୍ତି; ସେ ଧନ ପରିତ୍ୟାଗ କରି ଦରିଦ୍ରତାର ଶପଥ ଗ୍ରହଣ କଲେ ଏବଂ ପୀଡ଼ିତ ଓ ଦରିଦ୍ର ଲୋକଙ୍କର ସେବା କରିବା ନିମନ୍ତେ ବାହାରିଲେ । କୁଷ୍ଠରୋଗୀ ସର୍ବାପେକ୍ଷା ଅସହାୟ ଓ ଅଯତ୍ନଶୀଳ ହୋଇ ପଡ଼ିଥିବାରୁ ସେ ବିଶେଷଭାବରେ ସେମାନଙ୍କର ସେବାରେ ନିଜକୁ ନିଯୁକ୍ତ କଲେ । ସେ ଏକ ସଂଘ ସ୍ଥାପନ କଲେ । ଏହାକୁ 'ସେଣ୍ଟ ଫ୍ରାନସିସ୍ ସଂଘ' କହନ୍ତି । ଏହା ଏକପ୍ରକାର ବୌଦ୍ଧ ସଂଘ ପରି । ସେ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ପ୍ରଚାର ଓ ସେବା କରିବା ପାଇଁ ଗଲେ । ଖ୍ରୀଷ୍ଟ ଯେପରି ବାସ କରୁଥିଲେ, ସେହିପରି ବାସ କରିବାକୁ ଚେଷ୍ଟା କଲେ । ଅନେକ ସଂଖ୍ୟକ ଲୋକ ତାଙ୍କ ପାଖକୁ ଆସୁଥିଲେ ଏବଂ ଅନେକେ ତାଙ୍କର ଶିଷ୍ୟ ହେଲେ । ଏପରିକି ଧର୍ମଯୁଦ୍ଧ ଲାଗିଥିଲାବେଳେ ସେ ଇଜିପ୍ଟ ଓ ପାଲେଷ୍ଟାଇନକୁ ଯାଇଥିଲେ । ସେ ଖ୍ରୀଷ୍ଟଧର୍ମ ଗ୍ରହଣ କରିଥିଲେ ସୁଦ୍ଧା ତାଙ୍କର ଭଦ୍ର ଓ ପ୍ରୀତିଦାୟକ ବ୍ୟକ୍ତିତ୍ୱକୁ ମୁସଲମାନମାନେ ସମ୍ମାନ ଦେଖାଉଥିଲେ ଏବଂ କୌଣସି ପ୍ରକାରେ ତାଙ୍କ କାର୍ଯ୍ୟରେ ବାଧା ଦେଉ ନ ଥିଲେ । ସେ ୧୧୮୧ ରୁ ୧୨୨୬ ପର୍ଯ୍ୟନ୍ତ ବଞ୍ଚିଥିଲେ । ତାଙ୍କ ମୃତ୍ୟୁ ପରେ ତାଙ୍କର ସଂଘ ସହିତ ଚର୍ଚ୍ଚର ଉଚ୍ଚ କର୍ମଚାରୀମାନଙ୍କର ସଂଘର୍ଷ ଲାଗିଲା । ସମ୍ଭବତଃ ଦରିଦ୍ର ଜୀବନ ଉପରେ ଏପରି ଜୋର ଦେବାଟା ଚର୍ଚ୍ଚ ପସନ୍ଦ କରୁ ନ ଥିଲା । ଚର୍ଚ୍ଚ ଏହି ଆଦିମ ଖ୍ରୀଷ୍ଟୀୟ ଧର୍ମମନ୍ତ୍ର ଭୁଲି ଯାଇଥିଲା । ୧୩୧୮ରେ ମାର୍ସେଲିସରେ ବିଧର୍ମୀ ବୋଲି ୪ ଜଣ ଫ୍ରାନ୍‌ସୀସ୍ ପ୍ରଚାରକଙ୍କୁ ଜୀବନ୍ତ ପୋଡ଼ି ଦିଆଯାଇଥିଲା ।

କେତେକ ବର୍ଷ ପୂର୍ବେ ସେଣ୍ଟଫ୍ରାନ୍‌ସିସ୍‌ଙ୍କୁ ସମ୍ମାନ ଦେଖାଇବା ନିମନ୍ତେ କ୍ଷୁଦ୍ର ଆସିସି ସହରରେ ମହାନ ଉତ୍ସବ ହୋଇଥିଲା । ସେତେବେଳେ ଏହା କାହିଁକି ହୋଇଥିଲା, ମୁଁ ଭୁଲି ଯାଇଛି । ସମ୍ଭବତଃ ତାଙ୍କ ମୃତ୍ୟୁର ୭୦୦ ବାର୍ଷିକ ଉତ୍ସବ ପାଳିତ ହୋଇଥିଲା ।

ଧର୍ମ ଭିତରେ ଫ୍ରାନ୍‌ସୀସ୍ ସଂଘ ପରି, କିନ୍ତୁ ଭାବରେ ତାହାଠାରୁ ଅଲଗା, ଆଉ ଏକ ନୂତନ ସଂଘର ଉଦୟ ହେଲା । ଏହାକୁ ଜଣେ ସ୍ପେନବାସୀ ସେଣ୍ଟ ଡୋମିନିକ୍ ସ୍ଥାପନ କରିଥିଲେ ଏବଂ ଏହାର ନାମ ହେଉଛି 'ଡୋମାନିକାନ ସଂଘ' । ଏହା ଆକ୍ରମଣଶୀଳ ଓ ରକ୍ଷଣଶୀଳ ଥିଲା । ତାଙ୍କ ମତରେ ଧର୍ମବିଶ୍ୱାସ ରକ୍ଷା କରିବା ଭଳି ପବିତ୍ର କର୍ତ୍ତବ୍ୟ

ତୁଳନାରେ ଅନ୍ୟସବୁ କାର୍ଯ୍ୟ ବୃଥା । ପ୍ରବର୍ତ୍ତାଇବା ଦ୍ୱାରା ଯଦି ଏହା ନ ହୋଇପାରେ ତେବେ ହିଂସାରେ ଏହା କରିବାକୁ ପଡ଼ିବ ।

୧୨୩୩ରେ ଯାହାକୁ କହନ୍ତି ଇନକ୍ୱିଜିସନ୍ ଆରମ୍ଭ କରି ଚର୍ଚ୍ଚ ବିଧିବଦ୍ଧ ଭାବରେ ଧର୍ମକ୍ଷେତ୍ରରେ ହିଂସାର ରାଜୁତି ଆରମ୍ଭ କଲା । ଏହା ଏକପ୍ରକାର ଅଦାଲତ, ଯାହା ଲୋକଙ୍କର ଧର୍ମବିଶ୍ୱାସର ରକ୍ଷଣଶୀଳତା ବିଷୟରେ ବିଚାର କରୁଥିଲା ଏବଂ ଯଦି ଲୋକେ ଏହାର ମାପ ଅନୁସାରେ କମ ବୋଲି ମନେ ହେଉଥିଲେ, ତେବେ ସାଧାରଣତଃ ପୋଡ଼ି ମାରି ଦିଆଯାଉଥିଲା । 'ବିଧର୍ମୀ''ଙ୍କୁ ବରାବର ଶୀକାର ପରି ଖୋଜା ଯାଉଥିଲା ଏବଂ ଶହ ଶହ ଲୋକଙ୍କୁ ପୋଡ଼ି ମାରି ଦିଆଯାଇଥିଲା । ସେମାନଙ୍କର ମତ ପରିବର୍ତ୍ତନ କରିବା ନିମନ୍ତେ ତାଙ୍କୁ ଯେଉଁ ଯନ୍ତ୍ରଣା ଦିଆଯାଉଥିଲା, ତାହା ପୋଡ଼ିବା ଅପେକ୍ଷା ଆହୁରି କଦର୍ଯ୍ୟ । ଅନେକ ନିରୀହ ଅଭାଗିନୀ ସ୍ତ୍ରୀ ଲୋକଙ୍କୁ ଡାହାଣୀ ବୋଲି ପୋଡ଼ି ଦିଆଯାଇଥିଲା । କିନ୍ତୁ ଅନେକ ସମୟରେ ବିଶେଷତଃ ଇଂଲଣ୍ଡ ଓ ସ୍କଟ୍‌ଲଣ୍ଡରେ ଜନତା ଦ୍ୱାରା ଏ କାର୍ଯ୍ୟ ହେଉଥିଲା—ଇନ୍‌କ୍ୱିଜିସନ୍ ଆଦେଶ ଦ୍ୱାରା ନୁହେଁ ।

ପ୍ରତ୍ୟେକ ଲୋକଙ୍କୁ ସମ୍ବାଦଦାତା ହେବା ନିମନ୍ତେ ଆଦେଶ କରି ପୋପ 'ଧର୍ମବିଶ୍ୱାସୀମାନଙ୍କୁ ନିର୍ଦ୍ଦେଶ' ବାହାର କଲେ । ସେ ରସାୟନଶାସ୍ତ୍ରର ନିନ୍ଦା କଲେ ଏବଂ ଏହା ପୈଶାଚିକ କଳା ବୋଲି ଘୋଷଣା କଲେ । ଏହିସବୁ ହିଂସା ଓ ଆତଙ୍କ ନିଷ୍ଠାର ସହିତ କରାଯାଇଥିଲା । ସେମାନେ ବିଶ୍ୱାସ କରୁଥିଲେ ଯେ ଲୋକଙ୍କୁ ନିଆଁରେ ପୋଡ଼ି ଦେବାଦ୍ୱାରା ସେମାନେ ତାହାର ଆତ୍ମା ଓ ଅନ୍ୟମାନଙ୍କର ଆତ୍ମାକୁ ରକ୍ଷା କରୁଥିଲେ । ଧର୍ମପ୍ରଚାରକମାନେ ଅନେକ ସମୟରେ ଅନ୍ୟମାନଙ୍କ ଉପରେ ନିଜର କର୍ତ୍ତୃତ୍ୱ ଜବରଦସ୍ତ ଲଦନ୍ତି । ସେମାନଙ୍କୁ ନିଜ ମତଗ୍ରହଣ କରିବା ନିମନ୍ତେ ବାଧ କରନ୍ତି ଏବଂ ବିଶ୍ୱାସ କରନ୍ତି ଯେ ସେମାନେ ଏକ ସାଧାରଣ ସେବା କରୁଛନ୍ତି । ଭଗବାନଙ୍କ ନାମରେ ସେମାନେ ବଧ କରିଛନ୍ତି ଓ ନରହତ୍ୟା ବି କରିଛନ୍ତି । "ଅମର ଆତ୍ମା" ରକ୍ଷା କରିବା ନାମରେ ମରଣଶୀଳରକୁ ପାଉଁଶରେ ପରିଣତ କରିବାକୁ ସେମାନେ ଦ୍ୱିଧା କରିନାହାନ୍ତି । ଧର୍ମର କାର୍ଯ୍ୟବିବରଣୀ ଅତି ଖରାପ । କିନ୍ତୁ ମୋର ମନେହୁଏ, ବିନା ଉତ୍ତେଜନାରେ ନିଷ୍ଠୁରତା ପ୍ରୟୋଗ କରିବା ବିଷୟରେ ଇନ୍‌କ୍ୱିଜିସନ୍ ସହିତ ଆଉ କିଛି ତୁଳନା କରାଯାଇ ପାରେ ନାହିଁ । ଅଥଚ ଅଦ୍ଭୁତ କଥା ଯେ ଯେଉଁ ଲୋକମାନେ ଏଥିନିମନ୍ତେ ଦାୟୀ, ସେମାନେ ନିଜର ବ୍ୟକ୍ତିଗତ ଲାଭ ପାଇଁ ନୁହେଁ, ଏକ ଠିକ୍ ଜିନିଷ ପାଇଁ କାର୍ଯ୍ୟ କରିବାର ଦୃଢ଼ ବିଶ୍ୱାସ ପୋଷଣ କରି ଏହା କରିଥିଲେ ।

ଏଣେ ପୋପ୍‌ମାନେ ଇଉରୋପରେ ଏହିପରି ଆତଙ୍କ ରାଜୁତି ବିସ୍ତାର କଲେ ସତ, କିନ୍ତୁ ସେମାନେ ରାଜା ଓ ସମ୍ରାଟଙ୍କୁ ପ୍ରଭୁଭାବରେ ଦେଶରେ ଯେଉଁ ସ୍ଥାନ ଅଧିକାର

କରିଥିଲେ ତାହା ହରାଇବାରେ ଲାଗିଲେ । କୌଣସି ସମ୍ରାଟଙ୍କୁ ଜାତିଚ୍ୟୁତ କରିବା ଓ ବଶ୍ୟତା ସ୍ୱୀକାର କରାଇବା ନିମନ୍ତେ ତାଙ୍କୁ ଉପସ୍ଥିତ କରିବାର ଦିନ ଚାଲିଯାଇଥିଲା । ଯେତେବେଳେ ପବିତ୍ର ରୋମାନ ସାମ୍ରାଜ୍ୟ ଖରାପ ଅବସ୍ଥାରେ ପଡ଼ିଲା ଏବଂ କୌଣସି ସମ୍ରାଟ ନ ଥିଲେ କିମ୍ବା ସମ୍ରାଟ ରୋମଠାରୁ ବହୁ ଦୂରରେ ରହିଲେ, ସେତେବେଳେ ଫ୍ରାନ୍ସର ରାଜା ପୋପମାନଙ୍କ କାର୍ଯ୍ୟରେ ହସ୍ତକ୍ଷେପ କରିବାକୁ ଲାଗିଲେ । ୧୩୦୩ରେ ପୋପଙ୍କ କୌଣସି କାର୍ଯ୍ୟରେ ରାଜା ଅସନ୍ତୁଷ୍ଟ ହେଲେ । ସେ ତାଙ୍କ ନିକଟକୁ ଏକ ଲୋକ ପଠାଇଲେ । ସେ ବଳପୂର୍ବକ ପୋପଙ୍କ ନିଜ ପ୍ରାସାଦରେ ତାଙ୍କ ଶୟନାଗାରରେ ପ୍ରବେଶ କଲା ଏବଂ ତାଙ୍କୁ ମୁହେଁ ମୁହେଁ ଅପମାନ ଦେଲା । କୌଣସି ଦେଶରେ ଏପରି ଅପମାନ-ଜନକ ବ୍ୟବହାର ପ୍ରତି ନାପସନ୍ଦ ପ୍ରକାଶ କରାଗଲା ନାହିଁ । ଏହା ସହିତ କାନୋସାଠାରେ ବରଫରେ ଖାଲି ଗୋଡ଼ରେ ଅପେକ୍ଷା କରିଥିବା ସମ୍ରାଟଙ୍କ ତୁଳନା କର ।

କେତେକ ବର୍ଷ ପରେ ୧୩୦୯ରେ ଜଣେ ଫରାସୀ ଲୋକ ନୂତନ ପୋପ ହେଲେ । ସେ ଫ୍ରାନ୍ସର ଆଭିଗ୍ନୋନଠାରେ ନିଜର ବାସସ୍ଥାନ କଲେ । ଏହିଠାରେ ଧର୍ମଯାଜକମାନେ ୧୩୭୭ ପର୍ଯ୍ୟନ୍ତ ଅନେକ ପରିମାଣରେ ଫରାସୀ ରାଜାମାନଙ୍କ ପ୍ରଭାବରେ ବାସ କରୁଥିଲେ । ତତ୍ପରବର୍ଷ ୧୩୭୮ରେ କାର୍ଡ଼ିନାଲ ଗୋଷ୍ଠୀଭିତରେ ବିବାଦ ହେଲା । ଏହାକୁ 'ଗ୍ରେଟ୍ ସିଜ୍‌ମ୍" କହନ୍ତି । ଦୁଇଦଳ ଧର୍ମଯାଜକ ଦୁଇଟି ପୋପ ନିର୍ବାଚନ କଲେ । ଜଣେ ପୋପ ରୋମରେ ବାସକଲେ ଏବଂ ତାଙ୍କୁ ସମ୍ରାଟ ଓ ଉତ୍ତର-ଇଉରୋପର ଅଧିକାଂଶ ରାଜ୍ୟ ସ୍ୱୀକାର କଲେ । ଅନ୍ୟ ଜଣଙ୍କ ନାମ ହେଲା ପୋପ-ବିରୋଧୀ । ସେ ଆଭିଗ୍ନୋନରେ ବାସକଲେ ଏବଂ ତାଙ୍କୁ ଫରାସୀ ରାଜା ଓ ତାଙ୍କର କେତେକ ମିତ୍ର ସମର୍ଥନ କଲେ । ୪୦ ବର୍ଷ ପର୍ଯ୍ୟନ୍ତ ଏହା ଚାଲିଲା ଏବଂ ଧର୍ମଯାଜକ ଓ "ପୋପ୍ ବିରୋଧୀ" ପରସ୍ପରଙ୍କୁ ଅଭିଶାପ ଦେଲେ ଓ ଜାତି ବାସନ୍ଦ କଲେ । ୧୪୧୭ରେ ଏକ ମିମାଂସା ହେଲା ଏବଂ ଉଭୟ ଦଳ ଜଣେ ନୂତନ ପୋପ ନିର୍ବାଚନ କଲେ । ସେ ରୋମରେ ରହୁଥିଲେ । କିନ୍ତୁ ଏହି ଦୁଇ ପୋପଙ୍କ ଭିତରେ ଏପରି ଅଶୋଭନୀୟ ବିବାଦ ହେତୁ ସେତେବେଳେ ଇଉରୋପ ଲୋକଙ୍କ ଉପରେ ଖୁବ୍ ଖରାପ ଫଳ ପଡ଼ିଥିଲା । ମର୍ତ୍ତ୍ୟରେ ଭଗବାନଙ୍କ ପ୍ରତିନିଧି ଓ ଦୂତ ବୋଲି କଥିତ ଲୋକମାନେ ଯଦି ଏପରି ବ୍ୟବହାର କରନ୍ତି ତେବେ ଲୋକେ ତାଙ୍କର ପବିତ୍ରତା ଓ ସଚ୍ଚୋଟ ପଣିଆରେ ସନ୍ଦେହ କରନ୍ତି । ତେଣୁ ଏହି ବିବାଦ ଅନ୍ଧ ଭାବରେ ଧାର୍ମିକ କର୍ତ୍ତୃତ୍ୱକୁ ସ୍ୱୀକାର କରିବା ମନୋଭାବ ଲୋକଙ୍କ ଭିତରୁ ବହୁ ପରିମାଣରେ ଦୂର କରିବାରେ ସାହାଯ୍ୟ କରିଥିଲା । କିନ୍ତୁ ଏହାକୁ ଆହୁରି ଦୋହଲାଇ ଦେବାର ଦରକାର ପଡ଼ିଲା ।

ଉଇକ୍ଲିଫ୍ ନାମକ ଜଣେ ଇଂରେଜ ମୁକ୍ତଭାବରେ ଚର୍ଚ୍ଚର ସମାଲୋଚନା ଆରମ୍ଭ କରିଥିଲେ । ସେ ଜଣେ ପାଦ୍ରୀ ଏବଂ ଅକ୍ସଫୋର୍ଡ଼ର ଅଧ୍ୟାପକ ଥିଲେ । ଖ୍ରୀଷ୍ଟଧର୍ମ ପୁସ୍ତକ (ବାଇବଲ)ର ପ୍ରଥମ ଇଂରେଜ ଅନୁବାଦରୂପେ ସେ ପ୍ରସିଦ୍ଧ । ତାଙ୍କ

ଜୀବନକାଳରେ ସେ ରୋମର ଧର୍ମଯାଜକଙ୍କ କ୍ରୋଧରୁ କୌଣସି ପ୍ରକାର ରକ୍ଷା ପାଇ ପାରିଥିଲେ; କିନ୍ତୁ ୧୪୧୫ରେ ତାଙ୍କ ମୃତ୍ୟୁର ୩୧ ବର୍ଷ ପରେ ଧର୍ମମଣ୍ଡଳୀ ହୁକୁମ ଦେଲା ଯେ ତାଙ୍କର ହାଡ଼ ଖୋଳା ହୋଇ ଉଚିତ ପ୍ରକାରେ ପୋଡ଼ି ଦିଆଯାଉ । ଏ କଥା ମଧ୍ୟ କରାଗଲା ।

ଯଦିଓ ଉଇକ୍ଲିଫଙ୍କ ହାଡ଼ ଖୋଳି ବାହାର କରି ପୋଡ଼ି ଦିଆଗଲା, ତଥାପି ତାଙ୍କ ମତ ସହଜରେ ଦମନ କରାଯାଇ ପାରିଲା ନାହିଁ ଏବଂ ଏହା ପ୍ରସାର ଲଭିଲା । ଏପରିକି ଏହା ବୋହେମିଆ (ବା ଆଧୁନିକ ନାମାନୁସାରେ ଜେକୋସ୍ଲୋଭିକିଆ)ରେ ପହଞ୍ଚିଲା ଏବଂ ଜନ୍‌ହସ୍ ଏଥିରେ ପ୍ରଭାବିତ ହେଲେ । ସେ ପ୍ରେଗ ବିଶ୍ୱବିଦ୍ୟାଳୟର ଅଧ୍ୟକ୍ଷ ହୋଇଥିଲେ । ସେ ତାଙ୍କର ମତ ପ୍ରକାଶେ ପୋପଙ୍କଦ୍ୱାରା ଜାତିଚ୍ୟୁତ ହୋଇଥିଲେ; କିନ୍ତୁ ସେ ଅତ୍ୟନ୍ତ ଲୋକପ୍ରିୟ ଥିବାରୁ ତାଙ୍କର ନିଜ ସହରରେ ସେମାନେ କିଛି କରିପାରିଲେ ନାହିଁ । ତେଣୁ ସେମାନେ ଏକ କୌଶଳ ପ୍ରୟୋଗ କଲେ । ତାଙ୍କୁ ସମ୍ରାଟ ଏକ ନିରାପତ୍ତା-ଚରଣ ପତ୍ର ଦେଲେ ଏବଂ ସୁଇଜରଲଣ୍ଡର କନଷ୍ଟାନ୍‌ସକୁ ତାଙ୍କୁ ନିମନ୍ତ୍ରଣ କରାଗଲା । ସେଠାରେ ଧର୍ମସଭା (କାଉନସିଲ)ର ବୈଠକ ହେଉଥିଲା । ସେ ସେଠାକୁ ଯାଇଥିଲେ । ତାଙ୍କୁ ନିଜର ଭୁଲ ସ୍ୱୀକାର କରିବାକୁ କୁହାଗଲା । ସେ ବିଷୟରେ ନିଜର ହୃଦ୍‌ବୋଧ ନ ହେଲା ପର୍ଯ୍ୟନ୍ତ ତାହା କରିବେ ନାହିଁ ବୋଲି ସେ ଅସ୍ୱୀକାର କଲେ । ତାପରେ ସେମାନେ ପ୍ରତିଶ୍ରୁତି ଓ ନିରାପଦ ବ୍ୟବହାର ପାଇଁ ଜବାବ ସତ୍ତ୍ୱେ ତାଙ୍କୁ ଜୀବନ୍ତ ପୋଡିଦିଆଗଲା । ଏହା ୧୪୧୫ ଖ୍ରୀଷ୍ଟାବ୍ଦରେ ହୋଇଥିଲା । ହସ୍ ଜଣେ ଅତ୍ୟନ୍ତ ସାହସୀ ଥିଲେ ଏବଂ ସେ ଯାହା ମିଥ୍ୟା ବୋଲି ଜାଣିଥିଲେ ତାହା ସ୍ୱୀକାର କରିବା ଅପେକ୍ଷା ଯନ୍ତ୍ରଣାଦାୟକ ମୃତ୍ୟୁକୁ ଶ୍ରେୟସ୍କର ବୋଲି ମଣିଥିଲେ । ସେ ବିବେକ ଓ ବାଣୀର ସ୍ୱାଧୀନତା ଲାଗି ଶହୀଦ ହୋଇ ମଲେ । ସେ ଜେକ୍ ଲୋକମାନଙ୍କର ଏକ ବୀର ଏବଂ ଆଜି ସୁଦ୍ଧା ଜେକୋସ୍ଲୋଭାକିଆରେ ତାଙ୍କର ସ୍ମୃତିପୂଜା ହେଉଛି ।

ଜନ୍‌ହସଙ୍କର ଶହୀଦ ହୋଇ ମରିବା ବୃଥା ଯାଇ ନ ଥିଲା । ଅଗ୍ନିକଣା ପରି ବୋହେମିଆରେ ତାଙ୍କର ଅନୁଗାମୀଙ୍କ ଭିତରେ ବିଦ୍ରୋହ ନିଆଁ ଜଳିଲା । ସେମାନଙ୍କ ବିରୁଦ୍ଧରେ ପୋପ ଧର୍ମଯୁଦ୍ଧ ଘୋଷଣା କଲେ । ଧର୍ମଯୁଦ୍ଧ ଭାରି ଶସ୍ତା ଥିଲା, ସେଥିପାଇଁ କିଛି ଦେବାକୁ ପଡ଼ୁ ନ ଥିଲା ଏବଂ ଅନେକ ବଦମାସ ଓ ଦୁଃସାହସିକ ଲୋକେ ଏଥିରେ ସୁବିଧା ଉଠାଉଥିଲେ । ଏହି ଧର୍ମଯୁଦ୍ଧକାରୀମାନେ "ଅତ୍ୟନ୍ତ ପ୍ରଚଣ୍ଡ ନୃଶଂସତା" (ଏଚ୍. ଜି. ଓ୍ୱେଲ୍‌ସ କହନ୍ତି) ନିରୀହ ଲୋକଙ୍କ ଉପରେ କରିଥିଲେ । କିନ୍ତୁ ଯେତେବେଳେ ହୋସାଇଟମାନେ (ହୁସ୍‌ଙ୍କ ଅନୁଚର) ତାଙ୍କର ଯୁଦ୍ଧସଙ୍ଗୀତ ଗାଇ ଆସିଲେ, ସେତେବେଳେ ଧର୍ମଯୁଦ୍ଧକାରୀମାନେ ପଳାଇଗଲେ । ସେମାନେ ଯେଉଁ ପଥରେ ଆସିଥିଲେ,

ଦ୍ରୁତବେଗରେ ସେହିବାଟେ ଫେରିଗଲେ । ଯେପର୍ଯ୍ୟନ୍ତ ନିରୀହ ଗ୍ରାମବାସୀମାନଙ୍କୁ ହତ୍ୟା ଓ ଲୁଣ୍ଠନ କରିଯାଇ ପାରୁଥିଲା, ସେପର୍ଯ୍ୟନ୍ତ ଧର୍ମଯୁଦ୍ଧକାରୀମାନଙ୍କ ଭିତରେ ଅଦମ୍ୟ ସାମରିକ ଉତ୍ସାହ ଦେଖା ଯାଉଥିଲା; କିନ୍ତୁ ସଙ୍ଗଠିତ ଯୋଦ୍ଧାମାନଙ୍କ ଆଗମନରେ ସେମାନେ ପଳାଇଗଲେ ।

ଏକଚ୍ଛତ୍ର ଓ ଏକଦେଶଦର୍ଶୀ ଧର୍ମ ବିରୁଦ୍ଧରେ ଏହିରୂପେ ଅନେକ ବିଦ୍ରୋହ ଆରମ୍ଭ ହେଲା । ଏହା ସମଗ୍ର ଇଉରୋପରେ ବିସ୍ତୃତି ଲଭିଲା ଓ ତାହାକୁ ଦୁଇଟି ବିରୋଧୀ ଶିବିରରେ ପରିଣତ କଲା ଏବଂ ଖ୍ରୀଷ୍ଟଧର୍ମ କାଥଲିକ ପ୍ରୋଟେଷ୍ଟାଣ୍ଟ - ଏହି ଦୁଇ ଭାଗରେ ବିଭକ୍ତ ହୋଇଗଲା ।

## ୭୧ । କର୍ତ୍ତୃତ୍ୱବାଦ ବିରୁଦ୍ଧରେ ଲଢ଼ାଇ

ଜୁନ୍ ୩୦, ୧୯୩୨

ମୋର ଆଶଙ୍କା ହୁଏ ଇଉରୋପର ଧାର୍ମିକ ବିବାଦର ବିବରଣୀ ତୋତେ ନୀରସ ଲାଗିବ; କିନ୍ତୁ ଏଗୁଡ଼ିକର ମହତ୍ତ୍ୱ ଅଛି । ଆଧୁନିକ ଇଉରୋପ କିପରି ବୃଦ୍ଧି ପାଇଲା ଏହା ଆମକୁ ଜଣାଇଦିଏ । ଇଉରୋପକୁ ବୁଝିବାରେ ଏଗୁଡ଼ିକ ସାହାଯ୍ୟ କରେ । ୧୬ଶ ଶତାବ୍ଦୀ ଓ ପରେ ଇଉରୋପରେ ଯେଉଁ ଧାର୍ମିକ ସ୍ୱାଧୀନତା ଲାଗି ସଂଗ୍ରାମ ବୃଦ୍ଧି ପାଇଲା ଏବଂ ତା'ପରେ ଯେଉଁ ରାଜନୀତିକ ସ୍ୱାଧୀନତା ପାଇଁ ସଂଗ୍ରାମ ହେଲା, ତାହା ପ୍ରକୃତରେ ଏକ ସଂଗ୍ରାମର ଦୁଇଟି ଭାଗ । ଏହା କର୍ତ୍ତୃତ୍ୱବାଦ ବିରୁଦ୍ଧରେ ସଂଗ୍ରାମ । ପବିତ୍ର ରୋମାନ ସମ୍ରାଟ ପଦ ଓ ପୋପପଦ ଉଭୟେ ଏକଚ୍ଛତ୍ର କର୍ତ୍ତୃତ୍ୱର ପ୍ରତିନିଧିତ୍ୱ କରୁଥିଲେ ଏବଂ ସେମାନେ ମନୁଷ୍ୟର ଆତ୍ମା ଦମନ କରିଦେବାକୁ ଚେଷ୍ଟା କରୁଥିଲେ । "ଈଶ୍ୱରଦତ୍ତ ଅଧିକାର" ବଳରେ ସମ୍ରାଟ ଥିଲେ । ପୋପଙ୍କର ସେ ଅଧିକାର ତ ଆହୁରି ବେଶୀ ଏବଂ ସେ ଯାହା ଆଦେଶ ଦେଉଥିଲେ, ତାକୁ ପ୍ରଶ୍ନ କରିବାର ବା ଅମାନ୍ୟ କରିବାର କାହାରି ଅଧିକାର ରହୁ ନଥିଲା । ମାନିନେବା ହିଁ ଏକ ମହତ୍ ଗୁଣ ଥିଲା । ଏପରିକି ବ୍ୟକ୍ତିଗତ ବିଚାରପ୍ରୟୋଗ ହିଁ ପାପବୋଲି ଧରିଯାଉଥିଲା । ଏହିରୂପେ ଅନ୍ଧ ଆଦେଶ ପାଳନ ଓ ସ୍ୱାଧୀନତା ଏହା ମଧ୍ୟରେ ସମସ୍ୟା ପରିଷ୍କାର ହୋଇଗଲା । ଅନେକ ଶତାବ୍ଦୀ ପର୍ଯ୍ୟନ୍ତ ଇଉରୋପରେ ବିବେକର ସ୍ୱାଧୀନତା ଏବଂ ପରେ ରାଜନୀତିକ ସ୍ୱାଧୀନତା ଲାଗି ମହାନ ଲଢ଼େଇ ଜାରି ହୋଇଥିଲା । ଅନେକ ଉତ୍ଥାନ ପତନ ଓ ବହୁ କଷ୍ଟଭୋଗ ପରେ କେତେକ ପରିମାଣରେ ସଫଳତା ଲାଭ ହୋଇଥିଲା । କିନ୍ତୁ ଯେତିକିବେଳେ ସ୍ୱାଧୀନତାର ଲକ୍ଷ୍ୟରେ ପହଞ୍ଚିଲେଣି ବୋଲି ଲୋକେ ନିଜକୁ ଧନ୍ୟବାଦ ଦେଇଥିଲେ, ସେତେବେଳେ ଦେଖାଗଲା ଯେ ତାଙ୍କର ଧାରଣା

ଏକ ମସ୍ତ ଭୁଲ୍ । ଆର୍ଥିକ ସ୍ୱାଧୀନତା ବ୍ୟତିରେକେ ଏବଂ ଯେପର୍ଯ୍ୟନ୍ତ ଦାରିଦ୍ର୍ୟ ରହିଥିବ, ସେ ପର୍ଯ୍ୟନ୍ତ ପ୍ରକୃତ ସ୍ୱାଧୀନତା ମିଳି ନ ପାରେ । ଅନାହାରୀ ଲୋକଙ୍କୁ ସ୍ୱାଧୀନ କହିବା ଅର୍ଥ ତାଙ୍କୁ ଉପହାସ କରିବା । ତେଣୁ ପରବର୍ତ୍ତୀ କାର୍ଯ୍ୟ ହେଉଛି ଆର୍ଥିକ ସ୍ୱାଧୀନତା ପାଇଁ ଲଢ଼ାଇ ଏବଂ ଏହି ଲଢ଼ାଇ ଆଜି ସମଗ୍ର ଦୁନିଆରେ ହେଉଛି । କେବଳ ଏକମାତ୍ର ଦେଶ ଅର୍ଥାତ୍ ରୁଷ ବା ସୋଭିଏଟ୍ ଇଉନିୟନରେ ସାଧାରଣ ଭାବରେ ଲୋକେ ଏହି ଆର୍ଥିକ ସ୍ୱାଧୀନତା ପାଇଛନ୍ତି ବୋଲି କୁହାଯାଇପାରେ ।

ଭାରତରେ ବିବେକର ସ୍ୱାଧୀନତା ଲାଗି କେବେ ଏପରି ଲଢ଼ାଇ ଲାଗି ନଥିଲା; କାରଣ ଆଦିମ କାଳରୁ କେବେହେଲେ କାହାରିକୁ ଏ ଅଧିକାରରୁ ବଞ୍ଚିତ କରାଯାଇନାହିଁ । ଲୋକେ ନିଜ ମତାନୁସାରେ ଯେକୌଣସି ଧର୍ମରେ ବିଶ୍ୱାସ କରିପାରୁଥିଲେ ଏବଂ କୌଣସି ପ୍ରକାର ବାଧବାଧକତା ନ ଥିଲା । ମୁଷ୍ଟି ଓ ଯଷ୍ଟି ପ୍ରହାରରେ ନୁହେଁ, ଯୁକ୍ତି ଓ ତର୍କଦ୍ୱାରା ଲୋକମାନଙ୍କ ମନ ଉପରେ ପ୍ରଭାବ ପକାଇବାର ଉଦ୍ୟମ ହେଉଥିଲା । ଅବଶ୍ୟ ବେଳେ ବେଳେ ବାଧବାଧକତା ବା ହିଂସା ପ୍ରୟୋଗ ହୋଇପାରିଥାଏ; କିନ୍ତୁ ପୁରାତନ ଆର୍ଯ୍ୟ ଶାସ୍ତ୍ରରେ ବିବେକର ସ୍ୱାଧୀନତା ଅଧିକାର ସ୍ୱୀକୃତ ହୋଇଥିଲା । ଏହାର ଫଳ ଖୁବ୍ ଭଲ ହୋଇ ନ ଥିଲା ଏକଥା ଶୁଣିଲାବେଳକୁ ହୁଏତ ଆଶ୍ଚର୍ଯ୍ୟ ଲାଗିପାରେ । ଏହି ସ୍ୱାଧୀନତା ବିଷୟରେ ନିର୍ଭର ହେବାରୁ ଲୋକେ ଏ ସମ୍ବନ୍ଧରେ ଜାଗ୍ରତ ଆଉ ନ ଥିଲେ ଏବଂ କ୍ରମେ ସେମାନେ ଏକ ଅଧୋଗାମୀ ଧର୍ମର ଆଚାର, ପୂଜାପର୍ବାଣି ଓ କୁସଂସ୍କାରରେ ଅଧିକ ଭାବରେ ଲିପ୍ତ ହୋଇଗଲେ । ସେମାନଙ୍କ ଭିତରେ ଏକପ୍ରକାର ଧର୍ମ ମତବାଦ ବୃଦ୍ଧି ପାଇଲା । ଏହା ତାଙ୍କୁ ବହୁ ପଛକୁ ଘେନିଗଲା ଏବଂ ଧାର୍ମିକ କର୍ତ୍ତୃତ୍ୱର ଦାସରୂପେ ପରିଣତ କଲା । କୌଣସି ଧର୍ମଯାଜକ ବା ଅନ୍ୟ ବ୍ୟକ୍ତିବିଶେଷର କର୍ତ୍ତୃତ୍ୱ ନୁହେଁ, 'ଧର୍ମ ପୁସ୍ତକ' ପ୍ରଥା ଓ ପ୍ରଚଳିତ ରୀତିସବୁର କର୍ତ୍ତୃତ୍ୱ କାମ କଲା; ତେଣୁ ଆମେ ବିବେକର ସ୍ୱାଧୀନତା ବିଷୟରେ କହୁଥିବା ବେଳେ ଓ ଏଥିଲାଗି ଗର୍ବ ଅନୁଭବ କରୁଥିବାବେଳେ ପ୍ରକୃତରେ ଆମେ ଏଥିରୁ ବହୁ ଦୂରରେ ଥିଲେ ଏବଂ ପୁରାତନ ପୁସ୍ତକ ଓ ଆଚାର ରୀତି ଆମ ଉପରେ ଯେଉଁ ଭାବରେ ଚାପ ପକାଇଥିଲା ସେଥିରେ ବାନ୍ଧି ହୋଇ ଯାଇଥିଲେ । କର୍ତ୍ତୃତ୍ୱ ଓ କର୍ତ୍ତୃତ୍ୱବାଦ ଆମ ଉପରେ ରାଜତ୍ୱ କଲା ଏବଂ ଆମର ମନକୁ ନିୟନ୍ତ୍ରଣ କଲା । ଆମର ଶରୀରକୁ ଯେଉଁ ଜଞ୍ଜିର ବେଳେବେଳେ ବାନ୍ଧିଦିଏ, ତାହା ଅତ୍ୟନ୍ତ ଦୁଃଖଦାୟକ । କିନ୍ତୁ କେତେକ ଭାବ ଓ ଅନ୍ଧଧାରଣା ରୂପକ ଯେଉଁ ଅଦୃଶ୍ୟ ଜଞ୍ଜିର ଆମର ମନକୁ ବାନ୍ଧି ଦେଇଥାଏ ତାହା ଅଧିକ ଖରାପ । ଏଗୁଡ଼ିକ ଆମର ନିଜ ଗଢ଼ା ଏବଂ ଯଦିଓ ଅନେକ ସମୟରେ ଆମେ ଏ ସମ୍ବନ୍ଧରେ ସଚେତନ ନ ଥାଉ, ତଥାପି ଏହାର କ୍ରୁର ବନ୍ଧନରେ ଆମେ ପଡ଼ି ରହିଥାଉ ।

ଭାରତକୁ ମୁସଲମାନମାନେ ଆକ୍ରମଣକାରୀ ରୂପେ ଆସିବାରେ ଧର୍ମରେ ଏକପ୍ରକାର ବାଧ୍ୟବାଧକତା ପ୍ରଚଳନ ହେବାର ଦେଖାଗଲା । ପ୍ରକୃତରେ ବିଜେତା ଓ ବିଜିତ ଭିତରେ ଏହା ଏକ ରାଜନୀତିକ ଯୁଦ୍ଧ ଥିଲା; କିନ୍ତୁ ଏହା ଧର୍ମ ଭାବରେ ରଞ୍ଜିତ ହୋଇଥିଲା ଏବଂ ବେଳେ ବେଳେ ଏଥିଲାଗି ଧର୍ମ ଦୃଷ୍ଟିରୁ ଶାନ୍ତି ଦିଆଯାଉଥିଲା; କିନ୍ତୁ ଇସଲାମ ଧର୍ମ ଏ ପ୍ରକାର ଶାନ୍ତିର ପକ୍ଷପାତୀ ବୋଲି ଅନୁମାନ କରିବା ଭୁଲ । ୧୬୧୦ରେ ଜଣେ ସ୍ପେନୀୟ ମୁସଲମାନ ଅନ୍ୟ ଆରବମାନଙ୍କ ସହିତ ସ୍ପେନରୁ ତଡ଼ା ଖାଇଲାବେଳେ ଦେଇଥିବା ଏକ ବକ୍ତୃତା ବଡ଼ ଆଗ୍ରହଜନକ । ସେ ଧର୍ମ ବିଗ୍ରହ ସଙ୍ଗ ବିରୁଦ୍ଧରେ ପ୍ରତିବାଦ କରିଥିଲେ—"ଆମର ବିଜେତା ପୂର୍ବପୁରୁଷମାନେ ଯେତେବେଳେ କ୍ଷମତାରେ ଥିଲେ, ସେତେବେଳେ ସେମାନେ ସ୍ପେନରୁ ଖ୍ରୀଷ୍ଟଧର୍ମ ବିଲୋପ କରିବା ନିମନ୍ତେ କେବେ ଥରେ ହେଲେ ଉଦ୍ୟମ କରିଥିଲେ କି ? ସେମାନେ କ'ଣ ତୁମର ପ୍ରଥାସବୁ ମୁକ୍ତ ଭାବରେ ବ୍ୟବହାର କରିବାକୁ ତୁମର ପୂର୍ବପୁରୁଷମାନଙ୍କୁ ଛାଡ଼ି ଦେଇ ନ ଥିଲେ ? ଅଥଚ ଏହା ସଙ୍ଗେ ସଙ୍ଗେ ତାଙ୍କର ବନ୍ଧନ ସେମାନଙ୍କ ହାତରେ ନ ଥିଲା କି ? ......କେବେ ବା ଯଦି ବଳପୂର୍ବକ ଦୀକ୍ଷା ଗ୍ରହଣର କିଛି ଦୃଷ୍ଟାନ୍ତ ମିଳେ, ତେବେ ଏହା ଏତେ ବିରଳ ଯେ ଉଲ୍ଲେଖଯୋଗ୍ୟ ନୁହେଁ ଏବଂ ଯେଉଁ ଲୋକଙ୍କର ଭଗବତ୍ ଭୟ ଓ ଧର୍ମପ୍ରବର୍ତ୍ତକ (ପ୍ରଫେଟ)ଙ୍କ କଥା ଯାହାଙ୍କ ଆଖି ଆଗରେ ନ ଥାଏ ସେହିମାନେ ଏପରି ଚେଷ୍ଟା କରିଛନ୍ତି ଏବଂ ଏହା କରିବା ଦ୍ୱାରା ସେମାନେ ଇସଲାମର ଧର୍ମାଦେଶ ଓ ଆଇନମାନଙ୍କର ପ୍ରତ୍ୟକ୍ଷ ଭାବରେ ସମ୍ପୂର୍ଣ୍ଣ ବିପରୀତ ରୂପେ କାର୍ଯ୍ୟ କରିଛନ୍ତି । ଧର୍ମାଦେଶର ବିରୁଦ୍ଧାଚରଣ ନକଲେ କେହି କେବେ ମୁସଲମାନର ପବିତ୍ର ନାମର ଏପରି ଅବମାନନା କରିପାରେନା । ତମ ଆମ ଭିତରେ ବିଭିନ୍ନ ଧର୍ମବିଶ୍ୱାସ ଯୋଗୁଁ ବିଧିବଦ୍ଧ ରକ୍ତପିପାସୁ ପଞ୍ଚାୟତ ଗଠନ କରି ତମର ଧର୍ମବିଗ୍ରହ ସଭ (ଇନକ୍ୱିଜିସନ) ଭଳି କୌଣସି ଗୋଟିଏ ହେଲେ ଦୃଷ୍ଟାନ୍ତ ଦେଖାଇ ପାରିବ ନାହିଁ । ଏ କଥା ସତ୍ୟ ଯେ ଆମର ଧର୍ମ ଗ୍ରହଣ କରିବାକୁ ରାଜିଥିବା ପ୍ରତ୍ୟେକ ଲୋକକୁ ଆଲିଙ୍ଗନ କରିବା ନିମନ୍ତେ ଆମର ବାହୁ ସର୍ବଦା ଉନ୍ମୁକ୍ତ ଥିଲା; କିନ୍ତୁ ପବିତ୍ର କୋରାନ ଅନୁସାରେ ଅନ୍ୟ ଧର୍ମବିଶ୍ୱାସ ଉପରେ ଅତ୍ୟାଚାର କରିବାର ଅନୁମତି ନାହିଁ ।"

ତେଣୁ ଧାର୍ମିକ ସହିଷ୍ଣୁତା ଓ ବିବେକର ସ୍ୱାଧୀନତା ଯାହା ପୁରାତନ ଭାରତୀୟ ଜୀବନର ଏପରି ସ୍ପଷ୍ଟ ଲକ୍ଷଣ ଥିଲା, ତାହା କେତେକ ପରିମାଣରେ ଆମଠାରୁ ଖସିଗଲା ଏବଂ ଇଉରୋପ କ୍ରମେ ତାହା ଗ୍ରହଣ କଲା ଓ ତାହା ପରେ ଅନେକ ସଂଗ୍ରାମ ଭିତର ଦେଇ ଏହି ନୀତି ପ୍ରଚଳନ କରିବା ଲାଗି ଅଗ୍ରସର ହେଲା । ଆଜି ବେଳେ ବେଳେ ଭାରତରେ ସାମ୍ପ୍ରଦାୟିକ ବିବାଦ ହେଉଛି ଏବଂ ହିନ୍ଦୁ ଓ ମୁସଲମାନ ପରସ୍ପର ସହିତ ଲଢ଼ୁଛନ୍ତି ଓ ପରସ୍ପରକୁ ହତ୍ୟା କରୁଛନ୍ତି । ଏହା ସତ୍ୟ ଯେ କେତେକ ସ୍ଥାନରେ କେବଳ ସମୟେ ସମୟେ ଏହା ଘଟେ ଏବଂ ଆମେ ଅଧିକ ଭାବରେ ଶାନ୍ତି ଓ ବନ୍ଧୁ ଭାବରେ ବାସ କରୁ;

କାରଣ ଆମ ସମସ୍ତଙ୍କର ସ୍ୱାର୍ଥ ଏକ । ଧର୍ମ ନାମରେ କୌଣସି ହିନ୍ଦୁ ବା ମୁସଲମାନ ନିଜ ଭାଇ ସହିତ ଲଢ଼ାଇ କରିବା ଅତ୍ୟନ୍ତ ଲଜ୍ଜାଜନକ । ଆମକୁ ଅବଶ୍ୟ ଏହା ଶେଷ କରିବାକୁ ହେବ ଏବଂ ଆମେ ନିଶ୍ଚୟ ଏହା କରିବୁ । କିନ୍ତୁ ଧର୍ମର ଆବରଣରେ ଯେଉଁ ସବୁ ରୀତି, ପ୍ରଚଳିତ ପ୍ରଥା ଓ କୁସଂସ୍କାର, ଜଟିଳ ଆଦର୍ଶବାଦ ଆମକୁ ବାନ୍ଧି ରଖିଛୁ, ସେଥିରୁ ମୁକ୍ତ ପାଇବା ଏକ ଗୁରୁତ୍ୱପୂର୍ଣ୍ଣ ଜିନିଷ ।

ଧର୍ମଗତ ସହନଶୀଳତା ପରି ରାଜନୀତିକ ସ୍ୱାଧୀନତା ଦିଗରେ ମଧ୍ୟ ଭାରତ ଭଲ ଭାବରେ ଆରମ୍ଭ କରିଥିଲା । ଆମର ଗ୍ରାମ-ପ୍ରଜାତନ୍ତ୍ର କଥା ତୋର ମନେ ଥିବ, ସେଥିରେ ମୂଳତଃ କପରି ଭାବରେ ରାଜାର କ୍ଷମତା ସୀମାବଦ୍ଧ କରି ଦିଆଯାଇଥିଲା । ଇଉରୋପର ରାଜାଙ୍କ ପରି ରାଜାଙ୍କର ଏକ ଐଶ୍ୱରିକ ଅଧିକାର ଅଛି—ଏହି ଧାରଣା ଏଠାରେ ନଥିଲା । ଆମର ସମସ୍ତ ରାଜନୀତି ଗ୍ରାମ୍ୟ ସ୍ୱାଧୀନତା ଉପରେ ପ୍ରତିଷ୍ଠିତ ହୋଇଥିବାରୁ ରାଜା କିଏ ସେଥିପ୍ରତି ଲୋକଙ୍କର ଧ୍ୟାନ ନଥିଲା । ତାଙ୍କର ସ୍ଥାନୀୟ ସ୍ୱାଧୀନତା ଯଦି ଅକ୍ଷୁର୍ଣ୍ଣ ରହେ, ତେବେ ଉପରେ କିଏ ପ୍ରଭୁ ରହିଛି ସେଥିରେ ତାଙ୍କର ଯାଏ ଆସେ କେତେ ? କିନ୍ତୁ ଏହା ଏକ ବିପଜ୍ଜନକ ଓ ନିର୍ବୋଧ ଧାରଣା । କ୍ରମେ ଉପରେ ଥିବା ପ୍ରଭୁ ନିଜର କ୍ଷମତା ବୃଦ୍ଧି କଲା ଏବଂ ଗ୍ରାମର ସ୍ୱାଧୀନତା ଉପରେ ହସ୍ତକ୍ଷେପ କଲା । ଏପରି ବେଳ ପହଞ୍ଚିଲା ଯେତେବେଳେ କେବଳ ମନମୁଖୀ ଏକଛତ୍ର ସମ୍ରାଟମାନେ ରାଜୁତି କଲେ । କୌଣସି ଗ୍ରାମ ସ୍ୱାୟତ୍ତଶାସନ ରହିଲା ନାହିଁ ଏବଂ ଉପରୁ ତଳପର୍ଯ୍ୟନ୍ତ କୌଣସିଠାରେ ସ୍ୱାଧୀନତାର ସତ୍ତା ସୁଦ୍ଧା ଦେଖାଗଲା ନାହିଁ ।

## ୭୨ । ମଧ୍ୟଯୁଗର ଅତିକ୍ରମ

ଜୁଲାଇ ୯, ୧୯୩୨

୧୩ଶ ଶତାବ୍ଦୀଠାରୁ ୧୪ଶ ଶତାବ୍ଦୀ ପର୍ଯ୍ୟନ୍ତ ଇଉରୋପ ପ୍ରତି ପୁନର୍ବାର ଆମେ ଦୃଷ୍ଟି ପକାଇବା । ସେଠାରେ ଯଥେଷ୍ଟ ପରିମାଣରେ ବିଶୃଙ୍ଖଳା, ହିଂସା ଓ ବିବାଦ ଦୃଷ୍ଟି-ଗୋଚର ହୁଏ । ଭାରତରେ ଅବସ୍ଥା ଅତ୍ୟନ୍ତ ଖରାପ ଥିଲା । କିନ୍ତୁ ଇଉରୋପ ତୁଳନାରେ ଭାରତ ପ୍ରାୟ ଶାନ୍ତିପୂର୍ଣ୍ଣ ଥିଲା ବୋଲି କୁହାଯାଇ ପାରେ ।

ମଙ୍ଗୋଲମାନେ ଇଉରୋପକୁ ବନ୍ଧୁକ ବାରୁଦ ନେଇଥିଲେ ଏବଂ ଏବେ ବନ୍ଧୁକର ବ୍ୟବହାର ହେବାକୁ ଲାଗିଲା । ରାଜାମାନେ ତାଙ୍କର ବିଦ୍ରୋହୀ ସାମନ୍ତ ପ୍ରଭୁ-ମାନଙ୍କୁ ଦମନ କରିବା ନିମନ୍ତେ ଏହାର ସୁବିଧା ଉଠାଇଲେ । ଏହି କାର୍ଯ୍ୟରେ ସେମାନେ

ସହରର ବଣିକ୍ ସମ୍ପ୍ରଦାୟଙ୍କର ସାହାଯ୍ୟ ପାଇଲେ । ସାମନ୍ତମାନଙ୍କର ନିଜ ଭିତରେ କ୍ଷୁଦ୍ର ବ୍ୟକ୍ତିଗତ ଯୁଦ୍ଧ କରିବାର ଅଭ୍ୟାସ ଥିଲା । ଏଥିରେ ସେମାନେ ଦୁର୍ବଳ ହୋଇ ପଡ଼ୁଥିଲେ; କିନ୍ତୁ ମଫସଲ ଅଞ୍ଚଳ ବି ଏଥିରେ ବିଶୃଙ୍ଖଳ ହେଉଥିଲା । ରାଜାର କ୍ଷମତା ବଢ଼ିବା ସଙ୍ଗେ ସଙ୍ଗେ ସେ ଏହିସବୁ ବ୍ୟକ୍ତିଗତ ଯୁଦ୍ଧକୁ ଦମନ କରିଦେଲେ । କେତେକ ସ୍ଥାନରେ ମୁକୁଟ ଲାଗି ଦୁଇଟି ପ୍ରତିଦ୍ୱନ୍ଦୀ ପକ୍ଷଙ୍କ ଭିତରେ ଗୃହଯୁଦ୍ଧ ଲାଗୁଥିଲା । ଏହିରୂପେ ଇଂଲଣ୍ଡରେ ୟର୍କ ବଂଶ ଓ ଲଙ୍କାଷ୍ଟାର ବଂଶ ଭିତରେ ବିବାଦ ଲାଗିଥିଲା । ପ୍ରତ୍ୟେକ ଦଳ ନିଜର ପ୍ରତୀକରୂପେ ଗୋଲାପଫୁଲ ବ୍ୟବହାର କଲେ । ଗୋଟିଏ ଦଳର ଧଳାଗୋଲାପ ଓ ଅନ୍ୟଟିର ଥିଲା ଲାଲ । ସେଥିପାଇଁ ଏହି ଯୁଦ୍ଧକୁ 'ଗୋଲାପ ଯୁଦ୍ଧ' ବୋଲି କହନ୍ତି । ଏହି ଗୃହଯୁଦ୍ଧରେ ବହୁସଂଖ୍ୟକ ସାମନ୍ତ ନିହତ ହୋଇଥିଲେ । ଧର୍ମଯୁଦ୍ଧ (କ୍ରୁଜେଡ୍) ଦ୍ୱାରା ବି ସେଥିଭିତରୁ ଅନେକ ମରିଯାଇଥିଲେ । ଏହିରୂପେ ସାମନ୍ତମାନେ କ୍ରମେ ଆୟତ୍ତାଧୀନ ହେଲେ । କିନ୍ତୁ ଏହାର ଅର୍ଥ ନୁହେଁ ଯେ ଏହି ସାମନ୍ତମାନଙ୍କ ହାତରୁ ଲୋକଙ୍କ ହାତକୁ କ୍ଷମତା ଆସିଲା । ରାଜା ହିଁ ଅଧିକତର କ୍ଷମତାଶାଳୀ ହେଲେ । ଲୋକେ ଯେଉଁ ଢଙ୍ଗରେ ସେହି ଢଙ୍ଗରେ ରହିଲେ । କେବଳ ବ୍ୟକ୍ତିଗତ ଯୁଦ୍ଧ କମ୍ ହୋଇଯିବା ଦ୍ୱାରା ସେମାନଙ୍କର ଅବସ୍ଥା କିଞ୍ଚିତ୍ ଉନ୍ନତ ହୋଇଥିଲା । ମାତ୍ର ରାଜା ଅଧିକରୁ ଅଧିକ ଭାବରେ ସର୍ବଶକ୍ତିମାନ ଓ ସ୍ୱେଚ୍ଛାଚାରୀ ସମ୍ରାଟ ହୋଇଗଲେ । ରାଜା ଓ ନୂତନ ବଣିକଶ୍ରେଣୀ ଭିତରେ ସଂଗ୍ରାମ ଏପର୍ଯ୍ୟନ୍ତ ଲାଗି ନ ଥିଲା ।

ଯୁଦ୍ଧ ଓ ହତ୍ୟାକାଣ୍ଡ ଅପେକ୍ଷା ୧୩୪୮ ବେଳକୁ ଇଉରୋପରେ ଯେଉଁ ମହାନ୍ ମହାମାରୀ (ପ୍ଲେଗ୍) ଲାଗିଗଲା, ତାହା ଆହୁରି ଭୀଷଣ । ଏହା ରୁଷ ଓ ଏସିଆ ମାଇନରରୁ ଇଂଲଣ୍ଡ ପର୍ଯ୍ୟନ୍ତ ସମସ୍ତ ଇଉରୋପରେ ବ୍ୟାପିଗଲା । ଏହା ଇଜିପ୍ଟ, ଉତ୍ତର-ଆଫ୍ରିକା ଓ ମଧ୍ୟ ଏସିଆକୁ ଯାଇଥିଲା ଏବଂ ତା' ପରେ ପଶ୍ଚିମ ଆଡ଼କୁ ପ୍ରସାର ଲଭିଲା । ଏହାକୁ 'କୃଷ୍ଣ ମୃତ୍ୟୁ' (Black death) କହନ୍ତି ଏବଂ ଏଥିରେ ଲକ୍ଷ ଲକ୍ଷ ସଂଖ୍ୟାରେ ଲୋକ ମରିଗଲେ । ଇଂଲଣ୍ଡର ଲୋକସଂଖ୍ୟାର ଏକତୃତୀୟାଂଶ ମରିଯାଇଥିଲେ ଏବଂ ଚୀନ ଓ ଅନ୍ୟତ୍ର ମୃତ୍ୟୁ ସଂଖ୍ୟା ଖୁବ୍ ବେଶୀ ଥିଲା । ଆଶ୍ଚର୍ଯ୍ୟର କଥା, ଏହା ଭାରତକୁ ଆସି ନ ଥିଲା ।

ଏହି ନିଦାରୁଣ ବିପତ୍ତି ଫଳରେ ଲୋକସଂଖ୍ୟା ବହୁତ କମିଗଲା ଏବଂ ଅନେକ ସମୟରେ ଜମି ଚାଷ କରିବା ନିମନ୍ତେ ଯଥେଷ୍ଟ ଲୋକ ମିଳିଲେ ନାହିଁ । ଲୋକ ଅଭାବରୁ ଶ୍ରମିକମାନଙ୍କର ଶୋଚନୀୟ ନିମ୍ନତମ ମଜୁରିହାର କିଞ୍ଚିତ ବଢ଼ିବାକୁ ଲାଗିଲା । କିନ୍ତୁ ଭୂସ୍ୱାମୀ ଓ ମେଦଶାଳୀ ଲୋକେ ପାର୍ଲାମେଣ୍ଟଗୁଡ଼ିକୁ ନିୟନ୍ତ୍ରଣ କରୁଥିଲେ ଏବଂ ପୁରାତନ ମଜୁରି-ହାରରେ କାର୍ଯ୍ୟ କରିବାକୁ ଓ ଆଉ ଅଧିକ ଦାବୀ ନ କରିବା ନିମନ୍ତେ ଲୋକଙ୍କୁ ବାଧ୍ୟ କରିବା ପାଇଁ ଆଇନ ପାଶ୍ କଲେ । ଅସହ୍ୟ ଶୋଷଣରେ ତଳେଟଳାନ୍ତ ହେବାରୁ କୃଷକ ଓ ଦରିଦ୍ର ଲୋକେ ବିଦ୍ରୋହ କଲେ । ସମସ୍ତ ପଶ୍ଚିମ ଇଉରୋପରେ ଗୋଟିକ ପରେ

ଗୋଟିଏ ଏହିପରି କୃଷକ ବିଦ୍ରୋହ ଘଟିଲା । ଫ୍ରାନ୍ସରେ ୧୩୫୮ରେ ଏକ ବିଦ୍ରୋହ ହେଲା, ଯାହାକୁ କହନ୍ତି 'ଜାକେରି' । ଇଂଲଣ୍ଡରେ ଓ୍ୱାଟ୍ ଟାଇଲରଙ୍କ ବିଦ୍ରୋହ ଘଟିଥିଲା । ଏଥିରେ ୧୩୮୧ରେ ଇଂରେଜ ରାଜାଙ୍କ ସମ୍ମୁଖରେ ଟାଇଲରଙ୍କୁ ବଧ କରାଯାଇଥିଲା । ଏହି ବିଦ୍ରୋହ ଦୁଇର ଦମନ ନିଷ୍ଠୁର ଭାବରେ କରାଗଲା । କିନ୍ତୁ ନୂତନ ସାମ୍ୟଭାବ ଧୀରେ ଧୀରେ ବିସ୍ତାର ଲଭୁଥିଲା । ଲୋକେ ନିଜ ଭିତରେ ପଗ୍ଚରିବାକୁ ଆରମ୍ଭ କଲେ ଯେ ଅନ୍ୟମାନେ ଧନୀ ହୋଇଛନ୍ତି ଏବଂ ପ୍ରତ୍ୟେକ ଜିନିଷ ସେମାନଙ୍କ ପାଖରେ ପ୍ରଚୁର ଥିବା ଅବସ୍ଥାରେ ଆମେ ବା କାହିଁକି ଦରିଦ୍ର ଓ ଅନାହାରକ୍ଲିଷ୍ଟ ହୋଇ ରହିବୁ ? କେତେକ ମାଲିକ ଓ ଅନ୍ୟମାନେ ଦାସ କାହିଁକି ବା ହେବେ ? କାହିଁକି ବା କେତେକ ଲୋକ ସୁନ୍ଦର ପୋଷାକ ପିନ୍ଧିବେ ଏବଂ ଅନ୍ୟମାନେ ଲଜ୍ଜା ଘୋଡ଼ାଇବା ପାଇଁ କନାଖଣ୍ଡେ ସୁଦ୍ଧା ପାଇବେ ନାହିଁ ? କର୍ତ୍ତୃତ୍ୱ ପ୍ରତି ବଶ୍ୟତା ସ୍ୱୀକାର କରିବାର ଯେଉଁ ପୁରୁଣା ଧାରଣା ଉପରେ ସମଗ୍ର ସାମନ୍ତ ପ୍ରଥା ପ୍ରତିଷ୍ଠିତ ହୋଇଥିଲା, ତାହା ଭାଙ୍ଗି ପଡ଼ୁଥିଲା । ତେଣୁ କୃଷକମାନେ ବାରମ୍ବାର ବିଦ୍ରୋହ କଲେ; କିନ୍ତୁ ସେମାନେ ଅତ୍ୟନ୍ତ ଦୁର୍ବଳ ଓ ଅସଂଗଠିତ ଥିଲେ ଓ ସେମାନଙ୍କୁ ଦମନକରି ଦିଆଗଲା । କେତେକ ଦିନ ପରେ ସେମାନେ ପୁନର୍ବାର ଜାଗ୍ରତ ହୋଇଥିଲେ ।

ଇଂଲଣ୍ଡ ଓ ଫ୍ରାନ୍ସ ବରାବର ପରସ୍ପର ସହିତ ଯୁଦ୍ଧରେ ଲିପ୍ତ ଥିଲେ । ୧୪ଶ ଶତାବ୍ଦୀର ଆରମ୍ଭରୁ ୧୫ଶ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ସେମାନଙ୍କ ଭିତରେ 'ଏକଶତ ବର୍ଷବ୍ୟାପୀ ଯୁଦ୍ଧ' ଚାଲିଥିଲା । ଫ୍ରାନ୍ସର ପୂର୍ବରେ ବର୍ଗଣ୍ଡି ଥିଲା । ଏହା ଏକ ଶକ୍ତିଶାଳୀ ରାଜ୍ୟ, ଫ୍ରାନ୍ସ ରାଜାଙ୍କର ନାମକୁ ମାତ୍ର ଅଧୀନ ଥିଲା । କିନ୍ତୁ ବର୍ଗଣ୍ଡି ଅତ୍ୟନ୍ତ ଉଦ୍ଧତ ଓ କଷ୍ଟଦାୟକ ଆଧୀନ ରାଜ୍ୟ ଥିଲା ଏବଂ ଫ୍ରାନ୍ସ ବିରୁଦ୍ଧରେ ଇଂରେଜ ଓ ଅନ୍ୟ ଶତ୍ରୁମାନେ ମଧ୍ୟ ତାଙ୍କ ସହିତ ଚକ୍ରାନ୍ତ କରିଥିଲେ । ଫ୍ରାନ୍ସ କ୍ଷଣକାଳ ନିମନ୍ତେ ଚତୁର୍ଦିଗରୁ ସଙ୍କୁଚିତ ହୋଇ ଆସିଥିଲା । ପଶ୍ଚିମ-ଫ୍ରାନ୍ସର ଉତ୍ତର ଅଞ୍ଚଳ ଦୀର୍ଘକାଳରୁ ଇଂରେଜ ଅଧୀନରେ ଥିଲା ଏବଂ ଇଂଲଣ୍ଡର ରାଜା ନିଜକୁ ଫ୍ରାନ୍ସର ରାଜା ଆଖ୍ୟା ଦେଲେ । ଯେତେବେଳେ ଫ୍ରାନ୍ସର ଭାଗ୍ୟ ପତନ ଅବସ୍ଥାରେ ଥିଲା ଏବଂ ତାର ଅନ୍ୟ କୌଣସି ଆଶା ରହିଲା ନାହିଁ, ସେତେବେଳେ ଏକ ଯୁବତୀ କୃଷକ ବାଳିକା ଆଶା ଓ ବିଜୟ ଘେନି ଆସି ପହଞ୍ଚିଲା । ଅର୍ଲିଅନ୍ସର କୁମାରୀ ଜନ୍-ଡା ଆର୍କ୍ (ବା ଜୋଆନ୍ ଅଫ୍ ଆର୍କ) ସମ୍ବନ୍ଧରେ ତୁ କିଛି ଜାଣୁ । ସେ ତୋର ପୂଜ୍ୟା ବୀର ରମଣୀ । ସେ ହତୋତ୍ସାହ ଲୋକଙ୍କ ଭିତରେ ବିଶ୍ୱାସ ଜନ୍ମାଇଥିଲେ ଏବଂ ମହାନ୍ ଉଦ୍ୟମ ଲାଗି ସେମାନଙ୍କୁ ପ୍ରେରଣା ଦାନ କରିଥିଲେ ଏବଂ ତାଙ୍କର ନେତୃତ୍ୱରେ ଫରାସୀ ଲୋକେ ନିଜ ଦେଶରୁ ଇଂରେଜମାନଙ୍କୁ ତଡ଼ି ଦେଇଥିଲେ । କିନ୍ତୁ ଏସବୁ ପାଇଁ ତାଙ୍କୁ ପୁରସ୍କାର ମିଳିଲା କରେଣ୍ଟରେ ବିଗ୍ଚର । ଇନ୍‌କ୍ୱିଜିସନ୍‌ର ଶାସ୍ତି ମିଳିଲା ଓ ଜୀବନ ବିପଦସଙ୍କୁଳ ହେଲା । ଇଂରେଜମାନେ ତାଙ୍କୁ ଗିରଫ କଲେ, ତାଙ୍କୁ

ଯାଦୁକରୀ ଚର୍ଚ୍ଚ ଘୋଷଣା ପ୍ରକାଶ କଲା ଏବଂ ତାପରେ ରୁଏନ୍ ବଜାରରେ ୧୪୩୦ ରେ ତାଙ୍କୁ ପୋଡ଼ି ଦିଆଗଲା । ଅନେକ ବର୍ଷ ପରେ ତାଙ୍କୁ ନିନ୍ଦା କରିଥିବା ସିଦ୍ଧାନ୍ତକୁ ବଦଳାଇ ଯାହା ହୋଇଥିଲା ତାହା ଖଣ୍ଡନ କରିବା ପାଇଁ ରୋମାନ ଚର୍ଚ୍ଚ ଚେଷ୍ଟା କରିଥିଲା । ଦୀର୍ଘକାଳ ପରେ ସେମାନେ ତାଙ୍କୁ ଏକ ସନ୍ନ୍ୟାସିନୀ ବୋଲି ଆଖ୍ୟା ଦେଇଥିଲେ ।

ଜନ୍ ବା ଜୋଆନ୍ ଫ୍ରାନ୍‌ସର ଯଶୋଗାନ କରୁଥିଲା ଏବଂ ବିଦେଶୀଙ୍କ ହାତରୁ ତାହାର ପିତୃଭୂମିକୁ ରକ୍ଷାକରିବା କଥା କହୁଥିଲା । ମତପ୍ରକାଶ କରିବାର ଏହା ଏକ ନୂତନ ଢଙ୍ଗ । ସେ ସମୟରେ ଲୋକଙ୍କ ଭିତରେ ସାମନ୍ତବାଦୀ ଧାରଣା ଏତେ ବେଶୀ ଥିଲା ଯେ ସେମାନେ ଜାତୀୟତା ବିଷୟ ଚିନ୍ତା କରୁ ନ ଥିଲେ । ତେଣୁ ଜୋଆନ୍ ଯେପରି ଭାବରେ କଥା କହିଲେ, ସେଥିରେ ସେମାନେ ଆଶ୍ଚର୍ଯ୍ୟ ହୋଇଗଲେ ଏବଂ ସେମାନେ ପ୍ରାୟ ତାଙ୍କୁ ବୁଝିପାରିଲେ ନାହିଁ । ଜନ୍-ଦା ଆର୍କଙ୍କଠାରୁ ଫ୍ରାନ୍‌ସରେ ଜାତୀୟତାର କଳ୍ପିତ ଆରମ୍ଭ ହୋଇଛି ବୋଲି ଆମେ ଧରିପାରୁ ।

ଇଂରେଜମାନଙ୍କୁ ନିଜ ଦେଶରୁ ତଡ଼ିସାରି ଫରାସୀ ରାଜା ବର୍ଗଣ୍ଡିକୁ ଗଲେ । ଏହା ତାଙ୍କୁ ଭାରି ହଇରାଣ କରିଥିଲା । ସେ ଏହି ପ୍ରଭାବଶାଳୀ ରାଜ୍ୟକୁ ନିଜ ଆୟତ୍ତକୁ ଆଣିଲେ ଏବଂ ୧୪୮୩ ବେଳକୁ ବର୍ଗଣ୍ଡି ଫ୍ରାନ୍‌ସର ଏକ ଅଂଶ ହୋଇଗଲା । ଫରାସୀ ରାଜା ଏବେ ଏକ ଶକ୍ତିଶାଳୀ ସମ୍ରାଟ ହୋଇଗଲେ । ସେ ସମସ୍ତ ସାମନ୍ତ ପ୍ରଭୁମାନଙ୍କୁ ଦମନ କରିଥିଲେ କିମ୍ବା ଆୟତ୍ତରେ ଆଣିଥିଲେ । ବର୍ଗଣ୍ଡି ଫ୍ରାନ୍‌ସରେ ମିଶିବା ଫଳରେ ଫ୍ରାନ୍‌ସ ଓ ଜର୍ମାନୀ ସଂଲଗ୍ନ ହୋଇଗଲା । ଉଭୟଙ୍କର ସୀମାନ୍ତ ପରସ୍ପରକୁ ସ୍ପର୍ଶ କଲା । କିନ୍ତୁ ଫ୍ରାନ୍‌ସ ଏକ ଦୃଢ଼କେନ୍ଦ୍ରିକ ରାଜତନ୍ତ୍ର ଥିବାବେଳେ ଜର୍ମାନ ଦୁର୍ବଳ ଥିଲା ଓ ଅନେକ ରାଜ୍ୟରେ ବିଭକ୍ତ ହୋଇ ଯାଇଥିଲା ।

ଇଂଲଣ୍ଡ ସ୍କଟଲାଣ୍ଡ ଜୟ କରିବାକୁ ବି ଚେଷ୍ଟା କରୁଥିଲା । ଏହାଲାଗି ଦୀର୍ଘକାଳ ସଂଗ୍ରାମ ଲାଗିଥିଲା ଏବଂ ସ୍କଟଲଣ୍ଡ ଅନେକ ସମୟରେ ଇଂଲଣ୍ଡ ବିରୁଦ୍ଧରେ ଫ୍ରାନ୍‌ସ ପକ୍ଷ ନେଉଥିଲା । ୧୩୧୪ରେ ବ୍ୟାନକ୍‌ବର୍ଣ୍ଣଠାରେ ରବର୍ଟ ବ୍ରୁସ୍‌ଙ୍କ ଅଧୀନରେ ସ୍କଟମାନେ ଇଂରେଜଙ୍କୁ ପରାସ୍ତ କଲେ ।

ଏହାର ଆହୁରି ଆଗରୁ ଦ୍ୱାଦଶ ଶତାବ୍ଦୀରେ ଆୟର୍ଲଣ୍ଡ ଦଖଲ ପାଇଁ ଇଂରେଜମାନେ ଚେଷ୍ଟା କରୁଥିଲେ । ଏହା ୭୦୦ ବର୍ଷ ତଳର କଥା ଏବଂ ସେହି ଦିନଠାରୁ ଆୟର୍ଲଣ୍ଡରେ ବରାବର ଯୁଦ୍ଧ, ବିଦ୍ରୋହ, ଆତଙ୍କ ଓ ଭୀତ ସଂଘର୍ଷ ଚାଲିଛି । ଏହି କ୍ଷୁଦ୍ର ଦେଶଟି ବିଦେଶୀ କର୍ତ୍ତୃତ୍ୱ ଆଗରେ ବଶ୍ୟତା ସ୍ୱୀକାର କରିବାକୁ ଅସ୍ୱୀକାର କରିଛି ଏବଂ ଯୁଗ ଯୁଗ ଧରି ବିଦ୍ରୋହ କରିଛି ଓ ଘୋଷଣା କରିଛି ଯେ ଏହା ବଶ୍ୟତା ସ୍ୱୀକାର କରିବ ନାହିଁ ।

୧୩ଶ ଶତାବ୍ଦୀରେ ଇଉରୋପରେ ଆଉ ଏକ କ୍ଷୁଦ୍ର ରାଜ୍ୟ ସୁଇଜରଲଣ୍ଡ ନିଜର ସ୍ୱାଧୀନତା ଦାବୀ ଉପରେ ଜୋର ଦେଲା । ଏହା ପବିତ୍ର ରୋମାନ ସାମ୍ରାଜ୍ୟର ଏକ ଅଂଶ ଥିଲା ଏବଂ ଅଷ୍ଟ୍ରିଆ ଏହାକୁ ଶାସନ କରୁଥିଲା । ତୁ ଉଇଲିୟମ ଟେଲ ଓ ତାଙ୍କ ପୁତ୍ରଙ୍କ କାହାଣୀ ଅବଶ୍ୟ ପଢ଼ିଥିବୁ, କିନ୍ତୁ ସମ୍ଭବତଃ ଏହା ସତ୍ୟ ନୁହେଁ । ବିଶାଳ ସାମ୍ରାଜ୍ୟ ବିରୁଦ୍ଧରେ ସୁଇଜରଲଣ୍ଡ କୃଷକମାନଙ୍କର ବିଦ୍ରୋହ ଏବଂ ଏହା ମାନି ନ ନେବା ନିମନ୍ତେ ମତପ୍ରକାଶ ଏକ ଅଧିକ ଆଶ୍ଚର୍ଯ୍ୟଜନକ କଥା । ପ୍ରଥମେ ତିନୋଟି ଅଞ୍ଚଳ ବିଦ୍ରୋହ କରିଥିଲେ ଏବଂ ୧୨୯୧ରେ ସେମାନେ ଏକ "ଅମର ସଙ୍ଘ" ଗଢ଼ିଥିଲେ । ଅନ୍ୟାନ୍ୟ ଅଞ୍ଚଳ ସେଗୁଡ଼ିକ ସହିତ ଯୋଗଦେଲେ ଏବଂ ୧୪୯୧ରେ ସୁଇଜରଲଣ୍ଡ ଏକ ସ୍ୱାଧୀନ ପ୍ରଜାତନ୍ତ୍ରରେ ପରିଣତ ହେଲା । ଏହା ବିଭିନ୍ନ ପ୍ରଦେଶର ରାଷ୍ଟ୍ରସଙ୍ଘ ହେଲା ଏବଂ ଏହାକୁ ସୁଇସ୍ କନ୍‌ଫେଡ଼େରେସନ୍ ବୋଲି କୁହାଯାଏ । ଅଗଷ୍ଟ ମାସର ପହିଲା ତାରିଖରେ ସୁଇଜରଲଣ୍ଡର ପର୍ବତଚୂଳମାନଙ୍କରେ ଆମେ ଯେ ନିଆଁ ଜଳିବା ଦେଖିଥିଲେ, ତୋର ମନେ ଅଛି ତ ? ଏହା ସୁଇଜରଲଣ୍ଡର ଜାତୀୟ ଦିବସ, ତାଙ୍କ ବିପ୍ଳବ ଆରମ୍ଭର ବାର୍ଷିକ ଉତ୍ସବ । ଅଷ୍ଟ୍ରୀୟାନ ଶାସକଙ୍କ ବିରୁଦ୍ଧରେ ଉଠିବା ପାଇଁ ନିଆଁ ଜାଳିବା ଥିଲା ସେମାନଙ୍କର ସଂକେତ ।

ଇଉରୋପର ପୂର୍ବକୁ କନଷ୍ଟାଣ୍ଟିନୋପଲରେ କଣ ହେଉଥିଲା ? ତୋର ମନେ ଥିବ ୧୨୦୪ ଖ୍ରୀ:ରେ ଗ୍ରୀକ୍‌ମାନଙ୍କଠାରୁ ଲାଟିନ୍ କ୍ରୁଜେଡର୍‌ମାନେ ଏହି ନଗର ଦଖଲ କରିଥିଲେ । ୧୨୬୧ରେ ଏହି ଲୋକେ ଗ୍ରୀକ୍‌ମାନଙ୍କଦ୍ୱାରା ବିତାଡ଼ିତ ହେଲେ । ସେମାନେ ପୁନର୍ବାର ପୂର୍ବୀୟ ସାମ୍ରାଜ୍ୟରେ ନିଜକୁ ପ୍ରତିଷ୍ଠା କଲେ । କିନ୍ତୁ ଆଉ ଏକ ବିପଦ ଆସୁଥିଲା ।

ମଙ୍ଗୋଲମାନେ ଯେତେବେଳେ ଏସିଆ ପାରହୋଇ ଅଗ୍ରସର ହେଲେ, ସେତେବେଳେ ୫୦,୦୦୦ ଅଟୋମାନ ତୁର୍କ ତାଂକ ଆଗମନରେ ପଳାଇ ଗଲେ । ଏମାନେ ସେଲଜୁକ୍ ତୁର୍କଙ୍କଠାରୁ ସ୍ୱତନ୍ତ୍ର । ସେମାନେ ଓସ୍‌ମାନ୍ ବା ଓସ୍ମାନ୍ ନାମକ ଏକ ପୂର୍ବ ପୁରୁଷ ବା ବଂଶର ସ୍ଥାପୟିତାଙ୍କୁ ମାନୁଥିଲେ । ସେଥିପାଇଁ ସେମାନଙ୍କୁ ଅଟୋମାନ୍ ବା ଓସ୍ମାନ୍‌ଲି ତୁର୍କ କହୁଥିଲେ । ଏହି ଅଟୋମାନ୍‌ଗଣ ପଶ୍ଚିମ-ଏସିଆରେ ସେଲଜୁକଙ୍କ ଆଶ୍ରୟ ଗ୍ରହଣ କଲେ । ସେଲଜୁକ ତୁର୍କମାନେ ଦୁର୍ବଳ ହୋଇ ପଡ଼ିବାରୁ ଅଟୋମାନ୍‌ଙ୍କ କ୍ଷମତା ବୃଦ୍ଧି ହେଲା ପରି ମନେ ହୁଏ । ସେମାନେ ବିସ୍ତାର କରିବାକୁ ଲାଗିଲେ । ପୂର୍ବରୁ ବହୁଲୋକ ଯେପରି କରିଥିଲେ, ସେପରି କନଷ୍ଟାଣ୍ଟିନୋପଲକୁ ଆକ୍ରମଣ କରିବା ପରିବର୍ତ୍ତେ ସେମାନେ ଏହା ଅତିକ୍ରମ କରିଗଲେ ଏବଂ ୧୩୫୩ରେ ଇଉରୋପକୁ ପାର ହୋଇଗଲେ । ସେମାନେ ଦ୍ରୁତବେଗରେ ବିସ୍ତାର ଲଭିଲେ ।

ବୁଲଗେରିଆ ଓ ସର୍ବିଆ ଏବଂ ଆଡ୍ରିଆନୋପ୍ଲ ତାଙ୍କର ରାଜଧାନୀ ହେଲା । ଏହିରୂପେ ଅଟୋମାନ୍ ସାମ୍ରାଜ୍ୟ କନଷ୍ଟାଣ୍ଟିନୋପଲ୍‌ର ଦୁଇ ପଟରେ ଏସିଆ ଓ ଇଉରୋପରେ ବିସ୍ତାରିତ ହେଲା । କନଷ୍ଟାଣ୍ଟିନୋପଲ ପରିବେଷ୍ଟିତ ହେଲା, ମାତ୍ର ନଗରଟି ତାର ବାହାରେ ରହିଥିଲା । କିନ୍ତୁ ଉନ୍ନତ ୧,୦୦୦ ବର୍ଷର ପୂର୍ବୀୟ ରୋମାନ୍ ସାମ୍ରାଜ୍ୟ କେବଳ ଏହି ନଗରଟିରେ ସୀମାବଦ୍ଧ ରହିଲା ଏବଂ ତାର ଆଉ କିଛି ନ ଥିଲା । ଯଦିଓ ତୁର୍କମାନେ ଦ୍ରୁତବେଗରେ ପୂର୍ବୀୟ ସାମ୍ରାଜ୍ୟକୁ ଗ୍ରାସକରି ପକାଉଥିଲେ, ତଥାପି ସୁଲତାନ ଓ ସମ୍ରାଟଙ୍କ ଭିତରେ ବନ୍ଧୁତ୍ୱସମ୍ପର୍କ ଥିଲାପରି ମନେହୁଏ ଏବଂ ସେମାନେ ପରସ୍ପରର ପରିବାରରେ ବିବାହ କରିଥିଲେ । ଶେଷରେ ୧୪୫୩ ରେ କନ୍‌ଷ୍ଟାଣ୍ଟିନୋପଲ ତୁର୍କମାନଙ୍କ ହାତରେ ପଡ଼ିଲା । ଆମେ ଏବେ କେବଳ ଅଟୋମାନ୍ ତୁର୍କଙ୍କ ସମ୍ବନ୍ଧରେ ଉଲ୍ଲେଖ କରିବା । ସେଲ୍‌ଜୁକମାନେ କେଉଁଆଡ଼େ ଲୁଚି ଯାଇଛନ୍ତି ।

କନ୍‌ଷ୍ଟାଣ୍ଟିନୋପଲର ପତନ ଅନେକ କାଳରୁ ଆଶା କରାଯାଉଥିଲେ ସୁଦ୍ଧା ଏହା ଏକ ବିରାଟ ଘଟଣା ଯାହାକି ଇଉରୋପକୁ ଦୋହଲାଇ ଦେଇଥିଲା । ଏହାର ଅର୍ଥ ଏକ ହଜାର ବର୍ଷର ପୁରୁଣା ପୂର୍ବୀୟ ଗ୍ରୀକ୍ ସାମ୍ରାଜ୍ୟର ପୂର୍ଣ୍ଣ ବିଲୋପ । ଏହାର ଅର୍ଥ ମୁସଲମାନଙ୍କର ଇଉରୋପ ଉପରେ ଆକ୍ରମଣ । ତୁର୍କମାନେ ବିସ୍ତାର କରିବାରେ ଲାଗିଲେ ଏବଂ ବେଳେ ବେଳେ ବୋଧ ହେଲା ସେମାନେ ଇଉରୋପ ଜୟ କରିଯିବେ । କିନ୍ତୁ ଭିଏନାଦ୍ୱାର ନିକଟରେ ସେମାନଙ୍କୁ ଗତିରୋଧ କରାଗଲା ।

ଷଷ୍ଠ ଶତାବ୍ଦୀରେ ସମ୍ରାଟ ଜଷ୍ଟିନିଅନ ଯେଉଁ ସେଣ୍ଟ ସୋଫିଆ ଗୀର୍ଜା ନିର୍ମାଣ କରିଥିଲେ, ତାକୁ ଏକ ମସଜିଦରେ ପରିଣତ କରାଗଲା । ଏହାର ନାମ ହେଲା ଆୟୋ-ସୋଫିଆ ଏବଂ ଏହାର ସମ୍ପଦ ଲୁଣ୍ଠନ ହୋଇଥିଲା । ଏଥିରେ ଇଉରୋପ ଉତ୍ତେଜିତ ହୋଇ ପଡ଼ିଥିଲା; କିନ୍ତୁ କିଛି କରିପାରି ନ ଥିଲା । ଯାହାହେଉ ପ୍ରକୃତରେ ଦେଖିବାକୁ ଗଲେ ତୁର୍କ ସୁଲତାନମାନେ ରକ୍ଷଣଶୀଳ ଗ୍ରୀକ୍ ଚର୍ଚ୍ଚ ପ୍ରତି ସହନଶୀଳ ଭାବ ଦେଖାଉଥିଲେ ଏବଂ କନଷ୍ଟାଣ୍ଟିନୋପଲ ଦଖଲ ପରେ ୨ୟ ସୁଲତାନ ମହମ୍ମଦ ପ୍ରକୃତରେ ନିଜକୁ ଗ୍ରୀକ୍ ଚର୍ଚ୍ଚର ରକ୍ଷକ ବୋଲି ଘୋଷଣା କରିଥିଲେ । ପରେ ସୁଲେମାନ ନାମରେ କଥିତ ଜଣେ ସୁଲତାନ ନିଜକୁ ପୂର୍ବୀୟ ସମ୍ରାଟଙ୍କ ପ୍ରତିନିଧି ବୋଲି ବିଚାରି ସିଜର ଉପାଧି ଗ୍ରହଣ କଲେ । ପୁରାତନ ପରମ୍ପରାର ଏହିପରି ଶକ୍ତି ଥିଲା ।

କନ୍‌ଷ୍ଟାଣ୍ଟିନୋପଲର ଗ୍ରୀକ୍‌ମାନେ ଅଟୋମାନ ତୁର୍କମାନଙ୍କୁ ବିଶେଷ ଅନାଦର କରିଥିବାର ଦେଖାଯାଏ ନାହିଁ । ସେମାନେ ଦେଖିଥିଲେ ଯେ ପୁରାତନ ସାମ୍ରାଜ୍ୟ ପତନ ଅବସ୍ଥାରେ ହେଲାଣି । ସେମାନେ ପଶ୍ଚିମରେ ଖ୍ରୀଷ୍ଟୀୟାନ ଓ ପୋପଙ୍କ ଅପେକ୍ଷା ତୁର୍କମାନଙ୍କୁ ପସନ୍ଦ କରିଥିଲେ । ଲାଟିନ କ୍ରୁଜେଡ଼ରମାନଙ୍କର ଅତ୍ୟାଚାର ଫଳ ସେମାନେ ଭୋଗି-

ଥିଲେ । କଥିତ ଅଛି ଯେ ୧୫୩ରେ କନଷ୍ଟାଣ୍ଟିନୋପଲର ଶେଷ ଅବରୋଧ ବେଳେ ଜଣେ ବିଜାଣ୍ଟାଇନ୍ ସାମନ୍ତ କହିଥିଲେ, "ପୋପଙ୍କ ମୁକୁଟ ଅପେକ୍ଷା ପ୍ରଫେଟଙ୍କ ପଗଡ଼ି ଭଲ" ।

ତୁର୍କମାନେ ଜାନିସାରି ନାମକ ଏକ ବିଶେଷ ସେନାବାହିନୀ ଗଢ଼ିଥିଲେ । ସେମାନେ ଖ୍ରୀଷ୍ଟିୟାନମାନଙ୍କଠାରୁ ଏକ ପ୍ରକାର କର ସ୍ୱରୂପ କ୍ଷୁଦ୍ର ଖ୍ରୀଷ୍ଟୀୟାନ ପିଲମାନଙ୍କୁ ନେଇଗଲେ ଏବଂ ସେମାନଙ୍କୁ ବିଶେଷ ଶିକ୍ଷା ଦେଲେ । ଶ୍ରେଷ୍ଠ ଶ୍ରେଷ୍ଠ ପିଲମାନଙ୍କୁ ତାଙ୍କର ବାପମାଙ୍କଠାରୁ ଅଲଗା କରି ଆଣିବା ଏକ ନିଷ୍ଠୁର କଥା ଥିଲା; କିନ୍ତୁ ଏହି ବାଳକମାନଙ୍କର କିଛି ସୁବିଧା ବି ହୋଇଥିଲା । କାରଣ ସେମାନେ ଉତ୍ତମରୂପେ ଶିକ୍ଷିତ ହୋଇଥିଲେ ଓ ଏକ ପ୍ରକାର ସାମରିକ ଆଭିଜାତ୍ୟ ଶ୍ରେଣୀ ହେଲେ । ଏହି ଜାନିସାରି-ବାହିନୀ ଅଟୋମାନ ତୁର୍କମାନଙ୍କର ସ୍ତମ୍ଭ ସ୍ୱରୂପ ଥିଲା । ଜାନିସାରି ଶବ୍ଦଟି ଜାନ୍ (ଜୀବନ) ନିସାର (ତ୍ୟାଗ) — ଯେ ନିଜର ଜୀବନ ତ୍ୟାଗ କରେ—ଏହିଥିରୁ ଆସିଛି ।

ସେହିରୂପେ ଜାନିସାରିମାନଙ୍କ ପରି ଇଜିପ୍ଟରେ ଏକ "ମାମେଲୁକ ବାହିନୀ ଗଢ଼ା ହୋଇଥିଲା । ଏହା ସବଶକ୍ତିମାନ ହେଲା ଏବଂ ଏହିଥିରୁ ଇଜିପ୍ଟର ସୁଲତାନ ସବୁ ହୋଇଥିଲେ ।

ଅଟୋମାନ ସୁଲତାନମାନେ କନଷ୍ଟାଣ୍ଟିନୋପଲ ନେବା ପରେ ତାଙ୍କର ପୂର୍ବ-ତନ ବିଜାଣ୍ଟାଇନ ସମ୍ରାଟମାନଙ୍କଠାରୁ ବିଳାସ ଓ ବ୍ୟଭିଚାର ଆଦି ଅନେକ ମନ୍ଦ ଅଭ୍ୟାସ ଶିଖିଥିଲେ । ସମଗ୍ର ବିଜାଣ୍ଟାଇନର ନିମ୍ନଗାମୀ ରାଜକୀୟ ପ୍ରଥା ତାଙ୍କୁ ଗ୍ରାସ କରିଥିଲା ଏବଂ କ୍ରମେ ତାଙ୍କର ଶକ୍ତି କ୍ଷୟ କଲା; କିନ୍ତୁ କେତେକାଳ ପର୍ଯ୍ୟନ୍ତ ସେମାନେ ଦୃଢ଼ଥିଲେ ଓ ଖ୍ରୀଷ୍ଟୀୟାନ ଇଉରୋପ ତାଙ୍କୁ ଭୟ କରୁଥିଲା । ସେମାନେ ଇଜିପ୍ଟ ଜୟ କଲେ ଏବଂ କେତେବେଳେ ଦୁର୍ବଳ ଓ କ୍ଷମତାହୀନ ଆବାସି ପ୍ରତିନିଧିଙ୍କଠାରେ ଥିବା ଖଲିଫା ଉପାଧି ଗ୍ରହଣ କରୁଥିଲେ । ସେହି ଦିନଠାରୁ କେତେ ବର୍ଷ ପର୍ଯ୍ୟନ୍ତ ଅଟୋମାନ ସୁଲତାନମାନେ ନିଜକୁ ଖଲିଫା ଆଖ୍ୟା ଦେଲେ । ଶେଷରେ ମୁସ୍ତାଫା କେମାଲପାଶା ସୁଲତାନ ଓ ଖଲିଫା ଉଭୟ ପ୍ରଥା ଉଠାଇ ଦେଇଥିଲେ ।

କନ୍ଷ୍ଟାଣ୍ଟିନୋପଲ ପତନର ତାରିଖ ଇତିହାସରେ ଏକ ମହତ୍ତ୍ୱ ଦିବସ । ଏହାହିଁ ଏକ ଯୁଗର ଶେଷ ଓ ଅନ୍ୟ ଯୁଗର ଆରମ୍ଭ ବୋଲି ଧରାଯାଏ । ମଧ୍ୟଯୁଗର କାଳ ପୂରିଗଲା । ଅନ୍ଧକାର ଯୁଗର ଏକ ହଜାର ବର୍ଷ ଶେଷ ହେଲା ଏବଂ ଇଉରୋପରେ ଶୃଙ୍ଖଳା ଦେଖାଗଲା ଏବଂ ନୂତନ ଜୀବନ ଓ ଶକ୍ତି ଦୃଷ୍ଟିଗୋଚର ହେଲା । ଏହାକୁ 'ପୁନର୍ଜାଗରଣ' କହନ୍ତି—ବିଦ୍ୟା ଓ କଳାର ପୁନର୍ଜନ୍ମ । ମନେହେଲା ଲୋକେ ଯେପରି ଏକ

ଦେଶ ନିଦ୍ରାରୁ ଉଠୁଛନ୍ତି ଏବଂ ସେମାନେ ଅନେକ ଶତାବ୍ଦୀ ପୂର୍ବର ପୁରାତନ ଗ୍ରୀସର ସଶଃ କାଳ ପ୍ରତି ଦୃଷ୍ଟି ନିକ୍ଷେପ କରୁଛନ୍ତି ଏବଂ ସେଥିରୁ ପ୍ରେରଣାଲାଭ କରୁଛନ୍ତି । ଚର୍ଚ୍ଚ ଯେଉଁ ବିଷାଦମୟ ଓ ବିମର୍ଷ ଜୀବନ ଉତ୍ସାହିତ କରୁଥିଲା ଏବଂ ଯେଉଁ ଜଣ୍ଡିତ ମାନବିକ ଭାବକୁ ଆବଦ୍ଧ କରି ରଖିଥିଲା, ତା ବିରୁଦ୍ଧରେ ମନୁଷ୍ୟର ମନ ପ୍ରାୟ ବିଦ୍ରୋହ କରି ଉଠିଲା । ଗ୍ରୀସମାନଙ୍କର ପୁରାତନ ସୌନ୍ଦର୍ଯ୍ୟପ୍ରୀତି ଦେଖାଗଲା ଏବଂ ଅଙ୍କନ, ମୂର୍ତ୍ତିଗଠନ ଓ କାରୁ-କାର୍ଯ୍ୟର ସୁନ୍ଦର କାମରେ ଇଉରୋପ ପ୍ରତିଷ୍ଠିତ ହୋଇଗଲା ।

ଅବଶ୍ୟ ଏହିରୁ କନ୍‌ଷ୍ଟାଣ୍ଟିନୋପଲର ହଠାତ୍ ପତନରେ ହୋଇ ନ ଥିଲା । ଏପରି ଭାବିବା ନିରର୍ଥକ । ତୁର୍କମାନେ ଏହି ନଗର ଦଖଲ କରିବା ଦ୍ୱାରା କେବଳ ପରିବର୍ତ୍ତନକୁ ସାମାନ୍ୟ ଭାବରେ ଆଗେଇ ଦେଲେ; କାରଣ ଏହା ଫଳରେ ବହୁ ସଂଖ୍ୟକ ବିଦ୍ୱାନ ବ୍ୟକ୍ତି ଓ ପଣ୍ଡିତ ଏହା ଛାଡ଼ି ପଶ୍ଚିମକୁ ଗଲେ । ସେମାନେ ପାଶ୍ଚାତ୍ୟ ଅଞ୍ଚଳ ଗ୍ରୀକ ସାହିତ୍ୟର ସମ୍ପଦକୁ ପସନ୍ଦ କରିବା ଅବସ୍ଥାରେ ଥିବାବେଳେ ସେ ତାହା ସେଠାଆସି ଇଟାଲୀରେ ପହଞ୍ଚିଲେ । ଏହି ଭାବରେ ପୁନର୍ଜାଗରଣରେ ଏହି ନଗରର ପତନ କିଛିଟା ପରିମାଣରେ ସାହାଯ୍ୟ କରିଥିଲା ।

କିନ୍ତୁ ବିରାଟ ପରିବର୍ତ୍ତନର ଏହା ଏକ କ୍ଷୁଦ୍ର କାରଣ । ପୁରାତନ ଗ୍ରୀକ ସାହିତ୍ୟ ଓ ଚିନ୍ତା ଇଟାଲୀରେ କିମ୍ବା ମଧ୍ୟଯୁଗ ଅବସ୍ଥାରେ ବା ପାଶ୍ଚାତ୍ୟ ଦେଶରେ କିଛି ନୂଆ କଥା ନ ଥିଲା । ବିଶ୍ୱବିଦ୍ୟାଳୟମାନଙ୍କରେ ଲୋକେ ଏହା ତଥାପି ପଢ଼ୁଥିଲେ ଏବଂ ବିଦ୍ୱାନ ଲୋକେ ଏହା ଜାଣିଥିଲେ । କିନ୍ତୁ ଏହା ମୁଷ୍ଟିମେୟଙ୍କ ଭିତରେ ସୀମାବଦ୍ଧ ଥିଲା ଏବଂ ପ୍ରଚଳିତ ଜୀବନ ଦୃଷ୍ଟି ସହିତ ଏହା ଖାପ ଖାଉ ନ ଥିବାରୁ ବିସ୍ତାର ଲାଭ କରିପାରି ନ ଥିଲା । ଲୋକଙ୍କ ମନରେ ସନ୍ଦେହ ଆରମ୍ଭ ହେବା ସଙ୍ଗେ ସଙ୍ଗେ ଜୀବନ ପ୍ରତି ନୂତନ ଦୃଷ୍ଟିକୋଣ ନିମନ୍ତେ ଧୀରେ ଧୀରେ କ୍ଷେତ୍ର ପ୍ରସ୍ତୁତ ହୋଇଗଲେ । ସେମାନେ ପ୍ରଚଳିତ ଅବସ୍ଥା ପ୍ରତି ଅସନ୍ତୁଷ୍ଟ ହୋଇଥିଲେ ଏବଂ ତାଙ୍କୁ ଅଧିକ ସନ୍ତୋଷଦାନ କରିବା ଭଳି କିଛି ବ୍ୟବସ୍ଥା ଖୋଜିଲେ । ଏହିପରି ସନ୍ଧାନ ଓ ବ୍ୟଗ୍ର ଅବସ୍ଥାରେ ରହିଥିଲା ବେଳେ ସେମାନଙ୍କର ମନ ପୁରାତନ ଗ୍ରୀସ ଜଡ଼ବାଦୀ ଦର୍ଶନ ଆବିଷ୍କାର କଲା ଏବଂ ତାର ସାହିତ୍ୟ ସେମାନେ ଗଭୀର ଭାବରେ ଅଧ୍ୟୟନ କଲେ । ସେମାନଙ୍କର ଅଭିଳଷିତ ଜିନିଷ ପରି ଏହା ମନେ ହେଲା ଏବଂ ଏହା ଆବିଷ୍କାର କରିବାରେ ସେମାନଙ୍କ ଭିତରେ ଉତ୍ସାହ ପୂରିଗଲା ।

ଇଟାଲୀରେ ପ୍ରଥମେ ପୁନର୍ଜାଗରଣ ଆରମ୍ଭ ହେଲା । ପରେ ଏହା ଫ୍ରାନ୍ସ ଏବଂ ଇଂଲଣ୍ଡ ଓ ଅନ୍ୟତ୍ର ଦେଖାଦେଲା । ଏହା କେବଳ ଗ୍ରୀକ ଚିନ୍ତା ଓ ସାହିତ୍ୟର ପୁନରାବିଷ୍କାର ନ ଥିଲା, ଏହା ତା ଅପେକ୍ଷା ବୃହତ୍ ଓ ମହତ୍ ଥିଲା । ଦୀର୍ଘକାଳ ଧରି ଇଉରୋପର

ଅନ୍ତରରେ ଯେଉଁ ପ୍ରକ୍ରିୟା ଚାଲିଥିଲା, ଏହା ତାହାର ବାହ୍ୟ ଅଭିବ୍ୟକ୍ତି ମାତ୍ର । ଏହି ଆନ୍ଦୋଳନ ଅନେକ ରୂପରେ ପ୍ରକାଶିତ ହେଲା । ପୁନର୍ଜାଗରଣ ସେଥିରୁ ଗୋଟିଏ ରୂପ ମାତ୍ର ।

## ୭୩ । ସମୁଦ୍ର ପଥର ଆବିଷ୍କାର

ଜୁଲାଇ ୩, ୧୯୩୨

ଆମେ ଇଉରୋପରେ ଏପରି ଅବସ୍ଥାରେ ପହଞ୍ଚିଛେ ଯେତେବେଳେ ମଧ୍ୟଯୁଗୀୟ ଜଗତ ଭାଙ୍ଗିବାକୁ ଆରମ୍ଭ କରିଛି ଏବଂ ତା ସ୍ଥାନରେ ଏକ ନୂତନ ବ୍ୟବସ୍ଥା ଦେଖା ଦେଉଛି । ପ୍ରଚଳିତ ଅବସ୍ଥା ବିରୁଦ୍ଧରେ ଅସନ୍ତୋଷ ଦେଖାଦେଇଛି ଏବଂ ଏହି ଭାବ ହିଁ ପରିବର୍ତ୍ତନ ଓ ପ୍ରଗତିର ଜନ୍ମଦାତା । ଯେଉଁସବୁ ଶ୍ରେଣୀ ସାମନ୍ତପ୍ରଥା ଏବଂ ଧାର୍ମିକ ବ୍ୟବସ୍ଥାରେ ଶୋଷିତ ହେଉଥିଲେ, ସେମାନେ ଅସନ୍ତୁଷ୍ଟ ହୋଇଗଲେ । ଆମେ ଦେଖିଛେ କୃଷକ ବିଦ୍ରୋହ ଅଥବା ଫରାସୀରେ ଯାହାକୁ କହନ୍ତି ଜାକେରି ( ଜାକେ ନାମକ ଏକ କୃଷକ ନାମରୁ ଆସିଛି ), ତାହା ଘଟିଥିଲା । କିନ୍ତୁ କୃଷକମାନେ ଏବେ ସୁଦ୍ଧା ଅନୁନ୍ନତ ଓ ଦୁର୍ବଳ ଥିଲେ ଏବଂ ବିଦ୍ରୋହ ସତ୍ତ୍ୱେ କିଛି ଲାଭ କରିପାରିଲେ ନାହିଁ । ତାଙ୍କ ଦିନଦାଳ ଆସିବା ଆହୁରି ଡେରି ଥିଲା । ପୁରାତନ ସାମନ୍ତଶ୍ରେଣୀ ଏବଂ ଯେଉଁ ନୂତନ ଜାଗ୍ରତ ମଧ୍ୟବିତ୍ତ ଶ୍ରେଣୀଙ୍କର କ୍ଷମତା ବୃଦ୍ଧି ହେଉଥିଲା ସେହି ଶ୍ରେଣୀ, ଏହି ଉଭୟଙ୍କ ଭିତରେ ହିଁ ପ୍ରକୃତ ବିବାଦ ଲାଗିଥିଲା । ସାମନ୍ତପ୍ରଥା ବୁଝାଉଥିଲା ଭୂମି ହିଁ ଧନସମ୍ପଦର ମୂଳ ଅର୍ଥାତ୍ ପ୍ରକୃତରେ ଭୂମି ହିଁ ଅସଲ । କିନ୍ତୁ ଏବେ ଭୂମିରୁ ଭିନ୍ନ, ଏକ ନୂତନ ପ୍ରକାର ଧନ ସଞ୍ଚିତ ହେଲା । ଏହା ହେଉଛି ତିଆରି ଜିନିଷ ଓ ବେପାରଦ୍ୱାରା ଏବଂ ଏଥିରେ ନୂତନ ମଧ୍ୟବିତ୍ତ ଶ୍ରେଣୀ ବା ବୁର୍ଜୋୟା ଶ୍ରେଣୀ ଲାଭବାନ ହେଲେ ଏବଂ ଏଥିରେ ତାଙ୍କର ଶକ୍ତି ବୃଦ୍ଧି ହେଲା । ଏହି ବିବାଦ ଏକ ପୁରାତନ ବିବାଦ ହୋଇଗଲାଣି । ଏବେ ଆମେ ଯାହା ଦେଖୁଛେ, ସେଥିରେ ଦୁଇ ପକ୍ଷର ସ୍ଥିତି ବଦଳିଗଲାଣି । ସାମନ୍ତପ୍ରଥା ବର୍ତ୍ତମାନ ସୁଦ୍ଧା ପ୍ରଚଳିତ ଥିଲେ ବି ଆତ୍ମରକ୍ଷାମୂଳକ ଅବସ୍ଥାରେ ରହିଛି । ବୁର୍ଜୋୟା ଶ୍ରେଣୀ ନିଜର ଶକ୍ତିରେ ବିଶ୍ୱାସ ସ୍ଥାପନ କରି ଆକ୍ରମଣଶୀଳ ହୋଇଛି । ଶହ ଶହ ବର୍ଷ ଧରି ଏହି ସଂଗ୍ରାମ ଚାଲିଆସିଛି, ବୁର୍ଜୋୟା ଶ୍ରେଣୀ ଅଧିକରୁ ଅଧିକ ଭାବରେ ଜୟଲାଭ କରୁଛି । ଇଉରୋପର ବିଭିନ୍ନ ଦେଶରେ ଏହା ବିଭିନ୍ନ ଧରଣର ରହିଛି । ପୂର୍ବୀୟ ଇଉରୋପରେ ପ୍ରାୟ କୌଣସି ସଂଗ୍ରାମ କରିବାକୁ ପଡ଼ି ନ ଥିଲା । ପାଶ୍ଚାତ୍ୟ ଦେଶରେ ବୁର୍ଜୋୟାମାନେ ପ୍ରଥମେ ପ୍ରାଧାନ୍ୟ ଲାଭ କଲେ ।

ପୁରାତନ ପ୍ରତିବନ୍ଧକ ଭାଙ୍ଗିଯିବାଦ୍ୱାରା ଅନେକ ଦିଗରେ ଯଥା ବିଜ୍ଞାନ, କଳା, ସାହିତ୍ୟ, କାରୁକାର୍ଯ୍ୟ ଓ ନୂତନ ଆବିଷ୍କାର ଦିଗରେ ଉନ୍ନତି ହୋଇଥିଲା । ମନୁଷ୍ୟର ଭାବ ଯେତେବେଳେ ତାର ବନ୍ଧନ ଭାଙ୍ଗିଦିଏ, ସର୍ବଦା ଏପରି ଘଟେ; ଏହା ପ୍ରସାରିତ ହୁଏ ଓ ବୃଦ୍ଧି ପାଏ । ସେହିପରି ଆମ ଦେଶକୁ ସ୍ୱାଧୀନତା ଆସିଲେ ଆମ ଦେଶର ଲୋକଙ୍କର ଏବଂ ଧୀମତ୍ତାର ଉନ୍ନତି ହେବ ଏବଂ ସବୁଦିଗରେ ବିସ୍ତୃତି ଲାଭ କରିବ ।

ଧର୍ମର କର୍ତ୍ତୃତ୍ୱ କୋହଳ ହୋଇଯିବାରୁ ଓ ଦୁର୍ବଳ ହୋଇପଡ଼ିବାରୁ ଲୋକେ ଧର୍ମମନ୍ଦିର ଓ ଧର୍ମରେ ବେଶୀ ପଇସା ଖର୍ଚ୍ଚ କଲେ ନାହିଁ । ଅନେକ ସ୍ଥାନରେ ସୁନ୍ଦର କୋଠାମାନ ଗଢ଼ିଉଠିଲା; କିନ୍ତୁ ସେଗୁଡ଼ିକ ସବୁ ଟାଉନ୍‌ହଲ ବା ସେହିପରି କିଛି ଥିଲା । ଗୋଥୀୟ ରୀତିମାନ ଚାଲିଥିଲା ଏବଂ ତା ସ୍ଥାନରେ ଏକ ନୂତନ ରୀତି ଦେଖାଗଲା ।

ଠିକ୍ ଏତିକବେଳକୁ ଯେତେବେଳେ ପଶ୍ଚିମ ଇଉରୋପରେ ନୂତନ ଶକ୍ତି ସଞ୍ଚାର ହେଉଥିଲା, ସେତେବେଳେ ପୂର୍ବର ସୁବର୍ଣ୍ଣ ପ୍ରତି ଲୋଭ ଉପୁଜିଲା । ମାର୍କୋ ପୋଲୋ ଓ ଅନ୍ୟ ଯେଉଁ ପରିବ୍ରାଜକମାନେ ଭାରତ ଓ ଚୀନକୁ ଯାଇଥିଲେ ତାଙ୍କର ବର୍ଣ୍ଣିତ କାହାଣୀରେ ଇଉରୋପର କଳ୍ପନାଶକ୍ତି ଜାଗ୍ରତ ହେଲା ଏବଂ ପ୍ରାଚ୍ୟର ଏହି ଅଜଣା ସମ୍ପଦର ଲାଳସା ଅନେକ ଲୋକଙ୍କୁ ସମୁଦ୍ରକୁ ଟାଣିନେଲା । ଠିକ୍ ଏହି ସମୟରେ କନଷ୍ଟାଣ୍ଟିନୋପଲର ପତନ ହେଲା । ତୁର୍କମାନେ ପ୍ରାଚ୍ୟକୁ ଯାଇଥିବା ଜଳ ଓ ସ୍ଥଳପଥ ନିୟନ୍ତ୍ରଣ କଲେ ଏବଂ ସେମାନେ ବିଶେଷ ଭାବରେ ବାଣିଜ୍ୟକୁ ଉତ୍ସାହିତ କଲେ ନାହିଁ । ବଡ଼ ବଡ଼ ବଣିକ ଓ ବେପାରୀମାନେ ଏଥିରେ ବିରକ୍ତ ହେଲେ । ଯେଉଁ ନୂତନ ଦୁଃସାହସିକ ଶ୍ରେଣୀ ପ୍ରାଚ୍ୟରୁ ସୁନା ପାଇବାକୁ ଇଚ୍ଛା କରୁଥିଲେ, ସେମାନେ ମଧ୍ୟ ବିରକ୍ତ ହୋଇଗଲେ । ତେଣୁ ସ୍ୱର୍ଣ୍ଣପ୍ରସୂ ପ୍ରାଚ୍ୟ ଦେଶରେ ପହଞ୍ଚିବା ପାଇଁ ସେମାନେ ନୂତନ ପଥର ଅନ୍ୱେଷଣ କଲେ ।

ଆମର ପ୍ରତ୍ୟେକ ସ୍କୁଲ ଛାତ୍ରକୁ ଜଣା ଯେ ପୃଥିବୀ ଗୋଲ ଏବଂ ଏହା ସୂର୍ଯ୍ୟର ଚତୁର୍ଦ୍ଦିଗରେ ବୁଲେ । ଏହା ଆମମାନଙ୍କ ପକ୍ଷରେ ସୁସ୍ପଷ୍ଟ ଜିନିଷ । କିନ୍ତୁ ପୁରାକାଳରେ ଏହା ଲୋକଙ୍କ ଆଗରେ ସୁସ୍ପଷ୍ଟ ଜଣାପଡ଼ି ନ ଥିଲା ଏବଂ ଯେଉଁ ଲୋକେ ଏହା କହିବାକୁ ସାହସ କରିଥିଲେ ବା କହିଥିଲେ, ସେମାନଙ୍କୁ ଧର୍ମ ହଇରାଣ କରିଥିଲା । କିନ୍ତୁ ଧର୍ମର ମତ ସତ୍ତ୍ୱେ ଅଧିକରୁ ଅଧିକ ଲୋକ ଚିନ୍ତା କରିବାକୁ ଲାଗିଲେ ଯେ ପୃଥିବୀ ଗୋଲ । ଯଦି ଏହା ଗୋଲ ହୋଇଥାଏ ତାହାହେଲେ ପଶ୍ଚିମ ଦେଇ ଗଲେ ଚୀନ ଓ ଭାରତରେ ପହଞ୍ଚିବା ସମ୍ଭବ ହେବ, କେତେକ ଲୋକ ଏହିପରି ଚିନ୍ତା କରୁଥିଲେ । ଆଉ କେତେକ ଆଫ୍ରିକା ଦେଇ ଭାରତରେ ପହଞ୍ଚିବାର ଚିନ୍ତା କରୁଥିଲେ । ତୋର ମନେରଖିବା ଦରକାର ଯେ ସେତେବେଳେ କୌଣସି ସୁଏଜ କେନାଲ ନ ଥିଲା ଏବଂ ଜାହାଜସବୁ ଭୂମଧ୍ୟସାଗରରୁ ଲୋହିତସାଗରକୁ ଯାଇପାରୁ ନ ଥିଲା । ମାଲ ଓ ବେପାର ଜିନିଷ ଭୂମଧ୍ୟସାଗର ଓ ଲୋହିତ

ସାଗର ମଧ୍ୟବର୍ତ୍ତୀ ଅଞ୍ଚଳରେ ସମ୍ଭବତଃ ଓଟ ପିଠିରେ ସ୍ଥଳପଥରେ ପଠାଯାଉଥିଲା ଏବଂ ଆରପଟେ ପୁଣି ଜାହାଜରେ ପଠାଯାଉଥିଲା । କେତେବେଳେ ହେଲେ ଏହା ସୁବିଧାଜନକ ନ ଥିଲା । ଇଜିପ୍ଟ ଓ ସିରିଆ ତୁର୍କମାନଙ୍କ ଅଧୀନରେ ରହିଥିବାରୁ ଏହି ପଥ ଆହୁରି କଷ୍ଟକର ହୋଇପଡ଼ିଲା ।

କିନ୍ତୁ ଭାରତର ସମ୍ପଦଲାଳସା ଲୋକଙ୍କୁ ଉତ୍ତେଜିତ କଲା ଓ ଟାଣିବାକୁ ଲାଗିଲା । ଜଳଯାତ୍ରା ଉଦ୍ଭାବନ କରିବାରେ ସ୍ପେନ୍ ଓ ପର୍ତ୍ତୁଗାଲ ନେତୃତ୍ୱ ନେଲା । ସେତିକିବେଳେ ସ୍ପେନ୍ ମୁର୍ ବା ସାରାସେନମାନଙ୍କୁ ଗ୍ରାନାଡ଼ାରୁ ତଡ଼ି ଦେଉଥାଏ । ଆରାଗାନର ଫର୍ଡିନାଣ୍ଡ ଓ କାଷ୍ଟାଇଲର ଇସାବେଲାଙ୍କ ଭିତରେ ବୈବାହିକ ସମ୍ବନ୍ଧ ହେତୁ ଖ୍ରୀଷ୍ଟୀୟ ସ୍ପେନ୍ ଏକଜ ମିଳିତ ହୋଇଗଲା ଏବଂ ୧୪୯୨ରେ ଇଉରୋପର ଅନ୍ୟ ପାଖରେ ତୁର୍କମାନେ କନଷ୍ଟାଣ୍ଟି-ନୋପଲ ନେବାର ପ୍ରାୟ ୫୦ ବର୍ଷ ପରେ ଆରବ ଅଧିକୃତ ଗ୍ରାନାଡ଼ାର ପତନ ହେଲା । ସ୍ପେନ୍ ତତ୍‌କ୍ଷଣାତ୍ ଇଉରୋପରେ ଏକ ପ୍ରଧାନ ଖ୍ରୀଷ୍ଟୀୟ ଶକ୍ତି ହୋଇଗଲା ।

ପର୍ତ୍ତୁଗୀଜମାନେ ପୂର୍ବକୁ ଯିବାକୁ ଚେଷ୍ଟାକଲେ । ସ୍ପେନବାସୀ ପଶ୍ଚିମକୁ ଯିବାକୁ ଉଦ୍ୟମ କଲେ । ୧୪୪୫ରେ ଭର୍ଡ଼ ଅନ୍ତରୀପ ପର୍ତ୍ତୁଗୀଜମାନେ ଆବିଷ୍କାର କରିବା ଦ୍ୱାରା ପ୍ରଥମେ ଖୁବ୍ ଅଗ୍ରସର ହୋଇପାରିଲେ । ଏହି ଅନ୍ତରୀପଟି ଆଫ୍ରିକାର ପଶ୍ଚିମରେ । ଆଫ୍ରିକାର ମାନଚିତ୍ର ଦେଖ, ତମେ ଦେଖିପାରିବ ଯେ ଜଣେ ଇଉରୋପରୁ ଏହି ଅନ୍ତରୀପକୁ ଜଳଯାତ୍ରା କଲେ ଦକ୍ଷିଣ-ପଶ୍ଚିମକୁ ତାକୁ ଯିବାକୁ ପଡ଼ିବ । ଭର୍ଡ଼ ଅନ୍ତରୀପକୁ ପ୍ରଦକ୍ଷିଣ କରି ଯିବାକୁ ହୁଏ ଏବଂ ଦକ୍ଷିଣ-ପଶ୍ଚିମ ଦିଗକୁ ଯିବା ଏହିଠାରୁ ଆରମ୍ଭ ହୁଏ । ଭର୍ଡ଼ ଅନ୍ତରୀପ ଆବିଷ୍କାର ଏକ ଅତ୍ୟନ୍ତ ଆଶାପ୍ରଦ ଚିହ୍ନ; କାରଣ ଏଥିରେ ଲୋକେ ବିଶ୍ୱାସ କଲେ ଯେ ସେମାନେ ଆଫ୍ରିକା ଦେଇ ଭାରତକୁ ଯାଇପାରିବେ ।

ଯାହାହେଉ ଆଫ୍ରିକାର ଚତୁର୍ଦ୍ଦିଗରେ ବୁଲିଆସିବାକୁ ଆହୁରି ୪୦ ବର୍ଷ ଲାଗିଗଲା । ୧୪୮୬ରେ ବାର୍ଥଲୋମେଉ ଡିଆଜ୍ ନାମକ ଜଣେ ପର୍ତ୍ତୁଗୀଜ୍ ଆଫ୍ରିକାର ଦକ୍ଷିଣକୋଣ ପର୍ଯ୍ୟନ୍ତ ଯାଇଥିଲେ; ଅର୍ଥାତ୍ ଉତ୍ତମାଶା ଅନ୍ତରୀପରେ ପହଞ୍ଚିଲେ । କେତେକ ବର୍ଷ ଭିତରେ ଭାସ୍କୋଡ଼ାଗାମା ନାମକ ଆଉ ଏକ ପର୍ତ୍ତୁଗୀଜ ଏହି ଆବିଷ୍କାରର ସୁବିଧା ନେଲେ ଏବଂ ଉତ୍ତମାଶା ଅନ୍ତରୀପ ଦେଇ ଭାରତକୁ ଆସିଲେ । ଭାସ୍କୋଡ଼ାଗାମା ୧୪୯୭ରେ ମାଲାବାର ଉପକୂଳରେ କାଲିକଟଠାରେ ପହଞ୍ଚିଥିଲେ ।

ତେଣୁ ଭାରତ ପହଞ୍ଚିବା ପ୍ରତିଯୋଗିତାରେ ପର୍ତ୍ତୁଗୀଜମାନେ ଜିତିଲେ । କିନ୍ତୁ ଇତ୍ୟବସରରେ ପୃଥିବୀର ଆରପାଖରେ ବିରାଟ ଘଟଣାମାନ ଘଟୁଥିଲା ଏବଂ ସ୍ପେନ ସେଥିରେ ଲାଭବାନ ହେଉଥିଲା । ୧୪୯୨ ରେ ଖ୍ରୀଷ୍ଟଫର କଲମ୍ବସ ଆମେରିକାରେ ପହଞ୍ଚିଥିଲେ ।

କଲମ୍ବସ ଜଣେ ଦରିଦ୍ର ଜେନେଓ୍ୱାବାସୀ ଥିଲେ ଏବଂ ପୃଥିବୀ ଗୋଲ ବୋଲି ବିଶ୍ୱାସ କରି ସେ ପଶ୍ଚିମ ଯାତ୍ରାଦ୍ୱାରା ଜାପାନ ଓ ଭାରତକୁ ଯିବାକୁ ଚାହୁଁଥିଲେ । କିନ୍ତୁ ଯାତ୍ରା ଯେତେଦିନ ଲାଗିଲା, ତେତେଦିନ ଲାଗିବ ବୋଲି ସେ ଅନୁମାନ କରି ନ ଥିଲେ । ସେ ରାଜାମାନଙ୍କ ପାଖକୁ ଯାଇ ତାଙ୍କର ଆବିଷ୍କାର ଯାତ୍ରାରେ ତାଙ୍କୁ ସାହାଯ୍ୟ କରିବା ନିମନ୍ତେ ସେମାନଙ୍କୁ ଅନୁରୋଧ କରୁଥିଲେ । ଶେଷରେ ସ୍ପେନ୍‌ର ଫର୍ଡିନାଣ୍ଡ ଓ ଇସାବେଲା ସାହାଯ୍ୟ କରିବାକୁ ସମ୍ମତ ହେଲେ ଏବଂ କଲମ୍ବସ ତିନୋଟି କ୍ଷୁଦ୍ର ଜାହାଜ ଓ ୮୮ ଜଣ ଲୋକ ସହ ଯାତ୍ରା ଆରମ୍ଭ କଲେ । ଏକ ଅଜଣା ସ୍ଥାନକୁ ଏପରି ଜଳଯାତ୍ରା ବଡ଼ ସାହସିକ କାର୍ଯ୍ୟ; କାରଣ ଆଗରେ କଣ ଅଛି କାହାରିକୁ ଜଣା ନ ଥିଲା । କିନ୍ତୁ କଲମ୍ବସଙ୍କ ବିଶ୍ୱାସ ଥିଲା ଏବଂ ତାଙ୍କର ବିଶ୍ୱାସ ଯଥାର୍ଥ ହୋଇଥିଲା । ୬୯ ଦିନ ଜଳଯାତ୍ରା କଲାପରେ ସେମାନେ ଏକ ସ୍ଥଳଭାଗରେ ପହଞ୍ଚିଲେ । କଲମ୍ବସ ଭାବିଲେ ଏହା ହେଉଛି ଭାରତ । ପ୍ରକୃତରେ ଏହା ଓ୍ୱେଷ୍ଟ ଇଣ୍ଡିଜ୍‌ର ଏକ ଦ୍ୱୀପ । କଲମ୍ବସ ଆମେରିକା ମହାଦେଶରେ କେବେହେଁ ପହଞ୍ଚି ନ ଥିଲେ ଏବଂ ତାଙ୍କର ମଲାବେଳକୁ ସୁଦ୍ଧା ସେ ବିଶ୍ୱାସ କରୁଥିଲେ ଯେ ସେ ଏସିଆରେ ପହଞ୍ଚିଛନ୍ତି । ତାଙ୍କର ଏହି ଅଦ୍ଭୁତ ଭୁଲ୍ ଆଜିପର୍ଯ୍ୟନ୍ତ ରହିଛି । ଏହି ଦ୍ୱୀପଗୁଡ଼ିକୁ ଆଜିସୁଦ୍ଧା ଓ୍ୱେଷ୍ଟ ଇଣ୍ଡିଜ୍ (ପଶ୍ଚିମ ଭାରତୀୟ ଦ୍ୱୀପପୁଞ୍ଜ) ବୋଲି କୁହାଯାଉଛି ଏବଂ ଆମେରିକାର ମୂଳ ଅଧିବାସୀଙ୍କୁ ଲୋହିତ ଭାରତୀୟ ବା ରେଡ଼୍ ଇଣ୍ଡିଆନ ବୋଲି ଆଜିସୁଦ୍ଧା କୁହାଯାଏ ।

କଲମ୍ବସ ଇଉରୋପକୁ ଫେରିଆସିଲେ ଏବଂ ତପ୍ରର ବର୍ଷ ଆହୁରି ଅଧିକ ଜାହାଜ ନେଇ ଯାତ୍ରା କଲେ । ଭାରତକୁ ନୂତନ ପଥ ଆବିଷ୍କାର ବୋଲି ଭାବି ସେତେବେଳେ ଇଉରୋପରେ ଖୁବ୍ ଗୁଣ୍ଡଗୋଳ୍ ଖେଳି ଯାଇଥିଲା । ଏହାର ଅଳ୍ପଦିନ ପରେ ଭାସ୍କୋଡ଼ାଗାମା ତାଙ୍କର ପ୍ରାଚ୍ୟ ଜଳଯାତ୍ରା ଆରମ୍ଭକଲେ ଏବଂ କାଲିକଟରେ ପହଞ୍ଚିଲେ । ପୂର୍ବ ଓ ପଶ୍ଚିମରୁ ନୂତନ ଆବିଷ୍କାର ସମ୍ବାଦ ପହଞ୍ଚିବାରୁ ଇଉରୋପରେ ଗୁଣ୍ଡଗୋଳ୍ ଆହୁରି ବଢ଼ିଗଲା । ଏହି ନୂତନ ଦେଶଗୁଡ଼ିକରେ କର୍ତ୍ତୃତ୍ୱ କରିବା ନିମନ୍ତେ ପର୍ତ୍ତୁଗାଲ ଓ ସ୍ପେନ ଭିତରେ ପ୍ରତିଦ୍ୱନ୍ଦିତା ଥିଲା । ଏତେବେଳେ ପ୍ରଧାନ ଧର୍ମଯାଜକ (ପୋପ୍) କ୍ଷେତ୍ରକୁ ବାହାରିପଡ଼ିଲେ ଏବଂ ସ୍ପେନୀୟମାନ ଓ ପର୍ତ୍ତୁଗୀଜଙ୍କ ଭିତରେ କୌଣସି ବିବାଦ ହେବାରେ ବାଧା ଦେବା ନିମନ୍ତେ ସେ ପର ମୁଣ୍ଡରେ ହାତ ବୁଲାଇ ନିଜର ଉଦାରତା ଦେଖାଇଲେ । ୧୪୯୩ ରେ ସେ ଗୋଟିଏ ଘୋଷଣାପତ୍ର (bull) ବାହାର କଲେ । ଏହାକୁ 'ସୀମା ନିର୍ଦ୍ଦେଶକ ଘୋଷଣାପତ୍ର' କହନ୍ତି । କୌଣସି କାରଣରୁ ପୋପଙ୍କ ଘୋଷଣା ବା ନିର୍ଦ୍ଦେଶଗୁଡ଼ିକୁ "ବୁଲ୍" ବୋଲି କୁହାଯାଏ । ସେ କଳ୍ପନାରେ ଉତ୍ତରରୁ ଦକ୍ଷିଣ ପର୍ଯ୍ୟନ୍ତ ଏଜୋର୍ସର ୧୦୦ ଲିଗ୍ ( ଏକ ଲିଗ୍ ହେଉଛି ତିନି ମାଇଲ ) ପଶ୍ଚିମକୁ ଏକ ରେଖା ଟାଣିଦେଲେ ଏବଂ ଘୋଷଣା କଲେ ଯେ ଏହି ରେଖାର ପୂର୍ବଦିଗସ୍ଥ ସମସ୍ତ ଅଖ୍ରୀଷ୍ଟୀୟ ଭୂମି ପର୍ତ୍ତୁଗାଲର ଏବଂ ଏହି ରେଖାର ପଶ୍ଚିମସ୍ଥ ଭୂମି ସ୍ପେନ୍‌ର । ଇଉରୋପ ଛଡ଼ା ପ୍ରାପ୍ୟ ସମଗ୍ର ଦୁନିଆକୁ ପୋପ୍ ଦାନ କରିଦେଲେ

ଏବଂ ଏହା କରିବା ପାଇଁ ପୋପଙ୍କୁ କଷ୍ଟ ଦେବାକୁ ପଡ଼ି ନ ଥିଲା । ସ୍ୱାକୋର୍ସ ଦ୍ୱୀପ ଆଟଲାଣ୍ଟିକ୍ ମହାସାଗର ଭିତରେ ଏବଂ ସେଠାରୁ ୧୦୦ ଲିଗ୍ ଗ୍ଧଡ଼ି ଅର୍ଥାତ୍ ତାର ପଶ୍ଚିମକୁ ୩୦୦ ମାଇଲ ଗ୍ଧଡ଼ି ରେଖା ଟଣାହେବା ଦ୍ୱାରା ସମଗ୍ର ଉତ୍ତର-ଆମେରିକା ଓ ଦକ୍ଷିଣ-ଆମେରିକାର ଅଧିକାଂଶ ରାଜ୍ୟ ପଶ୍ଚିମରେ ରହିଯିବ । ତେଣୁ କାର୍ଯ୍ୟତଃ ପୋପ୍ ସ୍ପେନକୁ ଆମେରିକା ରାଜ୍ୟଗୁଡ଼ିକ ଦେଲେ ଏବଂ ଭାରତ, ଚୀନ, ଜାପାନ ଓ ଅନ୍ୟ ପୂର୍ବୀୟ ଦେଶ ତଥା ସମଗ୍ର ଆଫ୍ରିକା ପର୍ତ୍ତୁଗାଲକୁ ଦେଲେ ।

ପର୍ତ୍ତୁଗୀଜମାନେ ଏହି ବିରାଟ ରାଜ୍ୟ ଦଖଲ କରିବାରେ ଲାଗିପଡ଼ିଲେ । ଏହା ସେପରି ସହଜ ନୁହେଁ । କିନ୍ତୁ ସେମାନେ କିଛି ଅଗ୍ରଗତି କଲେ ଏବଂ ପୂର୍ବଦିଗକୁ ମାଡ଼ି ଚାଲିଲେ । ୧୫୧୦ରେ ସେମାନେ ଗୋଆରେ ପହଞ୍ଚିଲେ; ୧୫୧୧ରେ ମାଲୟ ଉପ-ଦ୍ୱୀପର ମାଲାକ୍କାରେ; ଅଳ୍ପଦିନ ପରେ ଜାଭା ଓ ୧୫୧୬ରେ ଚୀନରେ ପହଞ୍ଚିଲେ । ଏହାର ଅର୍ଥ ନୁହେଁ ଯେ ସେମାନେ ଏସବୁ ସ୍ଥାନ ଦଖଲ କରିଗଲେ । କେବଳ କେତେକ ଜାଗାରେ ଓହ୍ଲାଇଥିଲେ ମାତ୍ର । ପୂର୍ବପଟେ ସେମାନଙ୍କର ଭବିଷ୍ୟତ୍ କାର୍ଯ୍ୟକଳାପ ସମ୍ବନ୍ଧରେ ଆମେ ପରବର୍ତ୍ତୀ ଏକ ଚିଠିରେ ଆଲୋଚନା କରିବା ।

ପୂର୍ବରେ ପର୍ତ୍ତୁଗୀଜମାନଙ୍କ ଭିତରେ ଫର୍ଡିନାଣ୍ଡ ମାଗେଲାନ ନାମକ ଜଣେ ବ୍ୟକ୍ତି ଥିଲେ । କିନ୍ତୁ ପର୍ତ୍ତୁଗୀଜ ପ୍ରଭୁମାନଙ୍କ ସହିତ ତାଙ୍କର ବିବାଦ ହେଲା ଓ ଇଉରୋପକୁ ଫେରି ସେ ଏକ ସ୍ପେନ୍ ପ୍ରଜା ହେଲେ । ଉତ୍ତମାଶା ଅନ୍ତରୀପ ଦେଇ ପୂର୍ବ ପଥରେ ଭାରତ ଓ ପୂର୍ବୀୟ ଦ୍ୱୀପପୁଞ୍ଜକୁ ଯାଇସାରିଥିବାରୁ ସେ ଏବେ ପଶ୍ଚିମ ପଥରେ ଆମେରିକା ଦେଇ ଯିବାକୁ ଇଚ୍ଛା କଲେ । ସମ୍ଭବତଃ ଜାଣିଥିଲେ ଯେ କଲମ୍ବସ ଯେଉଁ ଦେଶ ଆବିଷ୍କାର କରିଛନ୍ତି, ତାହା ଏସିଆ ନୁହେଁ । ବାସ୍ତବିକ ୧୫୧୩ ରେ ବାଲବୋଆ ନାମକ ଜଣେ ସ୍ପେନବାସୀ ମଧ୍ୟ ଆମେରିକାରେ ପାନାମା ପର୍ବତ ଅତିକ୍ରମ କରି ପ୍ରଶାନ୍ତ ମହାସାଗରରେ ପହଞ୍ଚିଥିଲେ । କୌଣସି କାରଣରୁ ସେ ଏହାକୁ ଦକ୍ଷିଣ ସାଗର ନାମ ଦେଇଥିଲେ । ତାର ଉପକୂଳରେ ଛିଡ଼ାହୋଇ ସେ ଦାବୀକଲେ ଯେ ଏହି ନୂତନ ସାଗର ଏବଂ ଏହାର କୂଳବର୍ତ୍ତୀ ସମସ୍ତ ସ୍ଥଳଭାଗ ତାଙ୍କର ପ୍ରଭୁ ସ୍ପେନ ରାଜାଙ୍କ ଦଖଲରେ ।

୧୫୧୯ ରେ ମାଗେଲାନ ତାଙ୍କର ପଶ୍ଚିମ ଜଳଯାତ୍ରା ଆରମ୍ଭ କଲେ । ଏହା ତାଙ୍କର ସମସ୍ତ ଜଳଯାତ୍ରା ଭିତରେ ଦୀର୍ଘକାଳ ସ୍ଥାୟୀ ହୋଇଥିଲା । ତାଙ୍କ ସାଥିରେ ୫ଟି ଜାହାଜ ଓ ୨୭୦ ଜଣ ଲୋକ ଥିଲେ । ସେ ଆଟଲାଣ୍ଟିକ ପାରହୋଇ ଦକ୍ଷିଣ-ଆମେରିକାକୁ ଗଲେ ଏବଂ ସେହି ମହାଦେଶର ଶେଷ-ସ୍ଥଳୀରେ ପହଞ୍ଚିବା ପର୍ଯ୍ୟନ୍ତ ଦକ୍ଷିଣକୁ ଯାତ୍ରାକଲେ । ଗୋଟିଏ ଜାହାଜ ଭାଙ୍ଗିଯାଇଥିଲା ଏବଂ ଆଉ ଗୋଟିଏ ଗ୍ଧଡ଼ିଗଲେ; ଆଉ ତିନୋଟି ଜାହାଜ ରହିଲା । ଏହା ସାହାଯ୍ୟରେ ସେ ଦକ୍ଷିଣ-ଆମେରିକା ମହାଦେଶ ଓ ଏକ

ଦ୍ୱୀପମଧ୍ୟସ୍ଥ ସଙ୍କୀର୍ଣ୍ଣ ପ୍ରଣାଳୀ ପାର ହୋଇଗଲେ ଏବଂ ଅନ୍ୟପାଖରେ ଉନ୍ମୁକ୍ତ ସାଗରରେ ପହଞ୍ଚିଲେ । ଏହା ପ୍ରଶାନ୍ତ ମହାସାଗର । ମାଗେଲନ୍ ଏହି ନାମ ଦେଇଥିଲେ । କାରଣ ଆଟଲାଣ୍ଟିକ ତୁଳନାରେ ଏହା ଅତ୍ୟନ୍ତ ଶାନ୍ତିପୂର୍ଣ୍ଣ ଥିଲା । ପ୍ରଶାନ୍ତ ମହାସାଗରରେ ପହଞ୍ଚିବାକୁ ତାଙ୍କୁ ୧୦ ମାସ ଲାଗିଗଲା । ସେ ଯେଉଁ ପ୍ରଣାଳୀ ମଧ୍ୟଦେଇ ଗଲେ, ତାହା ମାଗେଲନ ପ୍ରଣାଳୀ ନାମରେ ଆଜିସୁଦ୍ଧା ପରିଚିତ ।

ମାଗେଲନ ସାହସର ସହିତ ଉତ୍ତରକୁ ଚାଲିଲେ ଓ ତାପରେ ଅଜଣା ସାଗର ପାରହୋଇ ଉତ୍ତର-ପଶ୍ଚିମକୁ ଗଲେ । ଏହା ତାଙ୍କ ଜଳଯାତ୍ରାର ସର୍ବାପେକ୍ଷା କଷ୍ଟଦାୟକ ଅଂଶ । କେହି ଜାଣି ନ ଥିଲେ ଯେ ଏହା ଏତେଦିନ ଲାଗିଯିବ । ପ୍ରାୟ ୪ମାସ ପର୍ଯ୍ୟନ୍ତ (ଠିକ୍ ୧୦୮ ଦିନ କାଳ) ସେମାନେ ସାଗର ମଝିରେ ରହିଥିଲେ । ସାମାନ୍ୟ ମାତ୍ର ଖାଦ୍ୟ ଓ ପାନୀୟ ତାଙ୍କ ପାଖରେ ଥିଲା । ଅବଶେଷରେ ଅତ୍ୟଧିକ କ୍ଳେଶ ସହ୍ୟକରି ଫିଲିପାଇନ ଦ୍ୱୀପରେ ପହଞ୍ଚିଲେ । ସେଠାରେ ଲୋକମାନେ ତାଙ୍କ ପ୍ରତି ବନ୍ଧୁଭାବ ଦେଖାଇଲେ ଏବଂ ସେମାନଙ୍କୁ ଖାଦ୍ୟ ଦେଲେ ଓ ଉପହାର ଦେଲେ । କିନ୍ତୁ ସ୍ପେନବାସୀ ବଡ଼ ଉଦ୍ଧତ ଓ ଗର୍ବୀ ଥିଲେ । ମାଗେଲନ ଦୁଇଜଣ ସାମନ୍ତଙ୍କ ଭିତରେ ଏକ କ୍ଷୁଦ୍ର ଯୁଦ୍ଧରେ ଭାଗନେଲେ ଏବଂ ସେଥିରେ ନିହତ ହେଲେ । ସ୍ପେନବାସୀଙ୍କ ଅହଙ୍କାରଭାବ ଯୋଗୁଁ ଅନେକ ସ୍ପେନବାସୀ ସେଠା ଦ୍ୱୀପ ଲୋକମାନଙ୍କଦ୍ୱାରା ନିହତ ହେଲେ ।

ସ୍ପେନବାସୀ ମସଲା ଦ୍ୱୀପ ଖୋଜୁଥିଲେ । ସେଠାରୁ ଦାମିକା ମସଲାସବୁ ଆସୁଥିଲା । ସେମାନେ ଏହା ଖୋଜିବାରେ ଲାଗିଲେ । ଆଉ ଗୋଟିଏ ଜାହାଜକୁ ଛାଡ଼ିବାକୁ ପଡ଼ିଲା ଓ ପୋଡ଼ି ଦିଆଗଲା । କେବଳ ଦୁଇଟି ମାତ୍ର ରହିଲା । ସ୍ଥିରହେଲା ଯେ ଏଥିରୁ ଗୋଟିଏ ପ୍ରଶାନ୍ତ ମହାସାଗର ଦେଇ ସ୍ପେନକୁ ଫେରିଯିବ ଏବଂ ଅନ୍ୟଟି ଉତ୍ତମାଶା ଅନ୍ତରୀପ ଦେଇ ଯିବ । ପ୍ରଥମ ଜାହାଜଟି ବେଶୀଦୂର ଯାଇପାରିଲା ନାହିଁ । ପର୍ତ୍ତୁଗୀଜମାନେ ତାକୁ ଧରିନେଲେ । କିନ୍ତୁ ଅନ୍ୟଟି (ଭିକ୍ଟୋରିଆ) ଆଫ୍ରିକା ପ୍ରଦକ୍ଷିଣ କରି ଯାତ୍ରା କରିବାର ଠିକ୍ ତିନିବର୍ଷ ପରେ ୧୫୨୨ରେ ମାତ୍ର ୧୮ଟି ଲୋକ ସହ ସ୍ପେନର ସେଭିଲରେ ପହଞ୍ଚିଲା । ଏହା ସମଗ୍ର ଦୁନିଆରେ ଭ୍ରମଣ କରିଥିଲା ଏବଂ ପ୍ରଥମ ଜାହାଜ ଯେ କି ଏପରି ପର୍ଯ୍ୟଟନ କରିଥିଲା ।

ମୁଁ ଭିକ୍ଟୋରିଆ ଜଳଯାତ୍ରା ସମ୍ବନ୍ଧରେ ଟିକିଏ ବିସ୍ତୃତ ଭାବରେ ଲେଖିଛି; କାରଣ ଏହା ଏକ ଅଦ୍ଭୁତ ଜଳଯାତ୍ରା ଥିଲା । ଏବେ ଆମେ ସମୁଦ୍ର ପାର ହେଲାବେଳେ ସକଳ ପ୍ରକାର ସ୍ୱାଚ୍ଛନ୍ଦ୍ୟ ପାଉ ଏବଂ ବୃହତ୍ତ୍ ଜାହାଜମାନଙ୍କରେ ଦୀର୍ଘ ଯାତ୍ରା କରୁଁ । କିନ୍ତୁ ସମସ୍ତ ପ୍ରକାର ବିପଦ ଓ ଦୁର୍ଦ୍ଦଶାର ସମ୍ମୁଖୀନ ହୋଇ ଯେଉଁ ପ୍ରଥମ ଜଳଯାତ୍ରୀମାନେ ତାଙ୍କର ପରବର୍ତ୍ତୀ ଲୋକମାନଙ୍କ ପାଇଁ ସମୁଦ୍ର ପଥ ଆବିଷ୍କାର କରିବା ନିମନ୍ତେ ଅଜଣା

ସାଗରରେ ନିଜକୁ ଝାସ ଦେଇଥିଲେ, ସେମାନଙ୍କ କଥା ଅଲଗା। ସେକାଳର ସ୍ପେନବାସୀ ଓ ପର୍ତ୍ତୁଗୀଜମାନେ ଗର୍ବୀ, ଧାର୍ମିକ ଓ ନିଷ୍ଠୁର ଥିଲେ; କିନ୍ତୁ ସେମାନେ ଅଦ୍ଭୁତ ଭାବରେ ସାହସୀ ଥିଲେ ଓ ଦୁଃସାହସର ଭାବ ତାଙ୍କ ଭିତରେ ପୂର୍ଣ୍ଣ ରହିଥିଲା।

ମାଗେଲାନ୍ ପୃଥିବୀର ଚତୁର୍ଦ୍ଦିଗରେ ଭ୍ରମଣ କରୁଥିଲା ବେଳେ କୋର୍ଟେସ ମେକ୍ସିକୋ ସହରରେ ପ୍ରବେଶ କରୁଥିଲେ ଏବଂ ସ୍ପେନ ରାଜାଙ୍କ ପାଇଁ ଆଜଟେକ ସାମ୍ରାଜ୍ୟ ଜୟ କଲେ। ମୁଁ ତୋତେ ଆଗରୁ ଏ ସମ୍ବନ୍ଧରେ ଓ ଆମେରିକାର ମାୟା ସଭ୍ୟତା ସମ୍ବନ୍ଧରେ କିଛି କହିଛି। କୋର୍ଟେସ ୧୫୧୯ରେ ମେକ୍ସିକୋରେ ପହଞ୍ଚିଲେ। ପିଜାରୋ ୧୫୩୦ରେ ଦକ୍ଷିଣ ଆମେରିକାର ଇଙ୍କା ସାମ୍ରାଜ୍ୟ (ଯେଉଁଠି ଏବେ ପେରୁ ଅଛି)ରେ ପହଞ୍ଚିଲେ। ସାହସ ଓ ଧାର୍ମିକତା, ବିଶ୍ୱାସଘାତକତା ଓ ନିଷ୍ଠୁରତାଦ୍ୱାରା ଏବଂ ସେଠା ଅଧିବାସୀଙ୍କ ଆଭ୍ୟନ୍ତରୀଣ ବିବାଦର ସୁବିଧା ଉଠାଇ କୋର୍ଟେସ ଓ ପିଜାରୋ ଦୁଇଟି ପୁରାତନ ସାମ୍ରାଜ୍ୟ ଲୋପ କରିଦେବାରେ କୃତକାର୍ଯ୍ୟ ହେଲେ। କିନ୍ତୁ ଦୁଇଟିଯାକ ସାମ୍ରାଜ୍ୟ ଅଚଳ ହୋଇଯାଇଥିଲା ଏବଂ କେତେକ ଭାବରେ ଅତି ଆଦିମକାଳୀନ ହୋଇ ପଡ଼ିଥିଲା; ତେଣୁ ପ୍ରଥମ ଧକ୍କାରେ ତାସଘର ପରି ଏହା ଭାଙ୍ଗି ପଡ଼ିଲା।

ମହାନ୍ ଉଦ୍ଭାବକ ଓ ଆବିଷ୍କାରକମାନେ ଯେଉଁସବୁ ସ୍ଥାନକୁ ଯାଉଥିଲେ, ସେଠାରେ ଲୁଟ୍ କରିବାକୁ ବ୍ୟଗ୍ର ହୋଇ ଦୁଃସାହସିକ ଦଳସବୁ ତାଙ୍କ ପରେ ଗଲେ। ଏମାନଙ୍କଦ୍ୱାରା ବିଶେଷ ଭାବରେ ସ୍ପେନ ଅଧିକୃତ ଆମେରିକା କଷ୍ଟ ଭୋଗିଥିଲା ଏବଂ ଏପରିକି ସେମାନେ କଲମ୍ବସଙ୍କ ପ୍ରତି ମଧ୍ୟ ଅତ୍ୟନ୍ତ ଖରାପ ବ୍ୟବହାର କରିଥିଲେ। ଏହା ସଙ୍ଗେ ସଙ୍ଗେ ଅବିଶ୍ରାନ୍ତ ଭାବରେ ପେରୁ ଓ ମେକ୍ସିକୋରୁ ସ୍ପେନକୁ ସୁନା ଓ ରୁପାର ସୁଅ ଛୁଟିଥାଏ। ଏହି ମୂଲ୍ୟବାନ ଧାତୁ ପ୍ରଚୁର ପରିମାଣରେ ଆସି ଇଉରୋପକୁ ଝଲସାଇ ଦେଲା ଏବଂ ସ୍ପେନ ଇଉରୋପର ପ୍ରଧାନ ଶକ୍ତି ହୋଇଉଠିଲା। ଏହି ସୁନା ଓ ରୁପା ଇଉରୋପର ଅନ୍ୟ ରାଜ୍ୟକୁ ଗଲା ଏବଂ ଏହିରୂପେ ପୂର୍ବଦେଶୀୟ ପଦାର୍ଥ କିଣିବା ନିମନ୍ତେ ପ୍ରଚୁର ଧନ ରହିଥିଲା।

ପର୍ତ୍ତୁଗାଲ ଓ ସ୍ପେନର ସଫଳତା ଦେଖି ଅନ୍ୟ ରାଜ୍ୟ ବିଶେଷତଃ ଫ୍ରାନ୍ସ, ଇଂଲଣ୍ଡ, ହଲାଣ୍ଡ ଓ ଉତ୍ତର-ଜର୍ମାନ ସହରଗୁଡ଼ିକର ଲୋକଙ୍କର ଅନୁମାନ ବଢ଼ିବା ସ୍ୱାଭାବିକ। ସେମାନେ ପ୍ରଥମେ ଉତ୍ତରପଥ ଦେଇ ଏସିଆ ଓ ଆମେରିକାକୁ ରାସ୍ତା ପାଇବା ନିମନ୍ତେ କଠିନ ଉଦ୍ୟମ କଲେ; ନରଓ୍ୱେର ଉତ୍ତରରେ ପୂର୍ବକୁ ଏବଂ ଗ୍ରୀନଲାଣ୍ଡ ଦେଇ ପଶ୍ଚିମକୁ ଯିବାକୁ ଚେଷ୍ଟା କରୁଥିଲେ। କିନ୍ତୁ ସେମାନେ ଏଥିରେ ଅକୃତକାର୍ଯ୍ୟ ହେଲେ ଓ ପୁରୁଣା ରାସ୍ତାରେ ଯିବାକୁ ପଡ଼ିଥିଲା। ପୃଥିବୀର ନୂତନ ଅଂଶ ବାହାରିଥିବା, ସମ୍ପଦ ଓ

ଅତ୍ୟାଶ୍ଚର୍ଯ୍ୟଜନକ ଜିନିଷସବୁ ପ୍ରଥମେ ଲୋକେ ଦେଖୁଥିବେ, ଏପରି ଅବସ୍ଥାରେ କପରି ବିସ୍ମୟ-କର କାଳ ହୋଇ ନ ଥିବ ! ! ଗୋଟିକ ପରେ ଗୋଟିଏ ନୂତନ ଆବିଷ୍କାର ହେଲା । ନୂତନ ସାଗର ଓ ନୂତନ ମହାଦେଶ ଓ ଅପର୍ଯ୍ୟାପ୍ତ ଧନ ପୂରି ରହିଛି, କେବଳ ତାହା ଖୋଲିବାର ଯାଦୁମନ୍ତ୍ର ପଢ଼ାହେବା ମାତ୍ରେ ଲୋକେ ହାତପଇଠ କରିବା ପାଇଁ ଝାଙ୍କ ବସିଛନ୍ତି । ସମଗ୍ର ବାୟୁମଣ୍ଡଳ ଏହି ଦୁଃସାହସିକ କୁହୁକ କାହାଣୀରେ ଭରି ଯାଇଥିବ ।

ପୃଥିବୀ ଏବେ ସଙ୍କୀର୍ଣ୍ଣତର ହୋଇ ଯାଇଛି ଏବଂ ଏଥିରେ ଆବିଷ୍କାର କରିବାକୁ କିଛି ନାହିଁ—ଏହିପରି ମନେ ହେଉଛି । କିନ୍ତୁ ତାହା ନୁହେଁ; କାରଣ ବିଶେଷତଃ ଆଧୁନିକ ଭାରତରେ ବିଜ୍ଞାନ ଆମ ଆଗରେ ପ୍ରକାଣ୍ଡ ନୂତନ କ୍ଷେତ୍ରମାନ ଉନ୍ମୁକ୍ତ କରିଛି, ଯାହା ଆବିଷ୍କାର ହେବା ଦରକାର ଏବଂ ଦୁଃସାହସର ଅଭାବ ନାହିଁ ।